ସୂର୍ଯ୍ୟନାରାୟଣ ଦାସ



# ଜଗନ୍ନାଥ ମନ୍ଦିର ଓ ଜଗନ୍ନାଥ ତତ୍ତ୍ୱ

# ଜଗନ୍ନାଥ ମନ୍ଦିର
# ଓ
# ଜଗନ୍ନାଥ ତତ୍ତ୍ୱ

ପଣ୍ଡିତ ସୂର୍ଯ୍ୟନାରାୟଣ ଦାଶ ଏମ୍‌. ଏ

ଫ୍ରେଣ୍ଡସ୍ ପବ୍ଲିଶର୍ସ

# ଦିପଦ

ବହୁବର୍ଷ ପରେ "ଶ୍ରୀ ଜଗନ୍ନାଥ ମନ୍ଦିର ଓ ଜଗନ୍ନାଥ ତତ୍ତ୍ୱ" ନୂତନ କଳେବର ଧାରଣ କରି ପ୍ରକାଶିତ ହେଲା । ଏଥିରେ ବହୁ ନୂତନ ତଥ୍ୟ ଦିଆଯାଇଛି ଏବଂ ଆଲୋଚନାଗୁଡ଼ିକୁ ସୁବୋଧ କରିବା ପାଇଁ ଚେଷ୍ଟା କରାଯାଇଛି । ବିଷୟ କ୍ରମରେ ମଧ୍ୟ ବହୁତ ପରିବର୍ତ୍ତନ କରାଯାଇଛି । ଏହି ସବୁ କାରଣରୁ ଗ୍ରନ୍ଥର କଳେବର ବହୁତ ବୃଦ୍ଧି ପାଇଛି ।

ଗ୍ରନ୍ଥର ସର୍ବାଙ୍ଗୀନ ଉନ୍ନତି କରିବା ପାଇଁ ଇଚ୍ଛାଥିଲେ ମଧ୍ୟ ମୋର ସ୍ୱାସ୍ଥ୍ୟ ଅନୁକୂଳ ନ ଥିବାରୁ ଏହା ପୂର୍ଣ୍ଣ ହୋଇ ପାରି ନାହିଁ ।

ମୋର କନିଷ୍ଠ ଭ୍ରାତା ଶ୍ରୀ ରାଧାକୃଷ୍ଣ ଦାସ ବି. ଏ. ମୋତେ ବିଶେଷ ଭାବରେ ସାହାଯ୍ୟ କରିଥିବାରୁ ତାଙ୍କୁ ଆଶୀର୍ବାଦ ଜଣାଉଅଛି ।

ଫ୍ରେଣ୍ଡସ୍ ପବ୍ଲିସର୍ସର ସତ୍ତ୍ୱାଧିକାରୀ ପ୍ରକାଶକ ଶ୍ରୀ ସହଦେବ ପ୍ରଧାନ ଗ୍ରନ୍ଥ ମୁଦ୍ରଣରେ ତତ୍ପରତା ଦେଖାଇଥିବାରୁ ତାଙ୍କୁ ଧନ୍ୟବାଦ ଓ ଆଶୀର୍ବାଦ ଜଣାଉଅଛି ।

ଶ୍ରୀ ସୂର୍ଯ୍ୟନାରାୟଣ ଦାଶ

୧୯୬୬ ସେପ୍ଟେମ୍ବର ୧୫
ଲଣ୍ଡା ଦେଉଳ
କଟକ-୨

# ଶ୍ରୀ ଜଗନ୍ନାଥ ମନ୍ଦିର

## ସୂଚିପତ୍ର

ବିଷୟ ପୃଷ୍ଠା

| ବିଷୟ | ପୃଷ୍ଠା |
|---|---|

# ଶ୍ରୀଜଗନ୍ନାଥ ମନ୍ଦିର

## ପ୍ରଥମ ପରିଚ୍ଛେଦ

### ଶ୍ରୀକ୍ଷେତ୍ରର ପରିଚୟ

ପୂର୍ବ ପ୍ରାଚୀନ କାଳରେ ଶ୍ରୀକ୍ଷେତ୍ର ବା ପୁରୁଷୋତ୍ତମକ୍ଷେତ୍ର ନାମରେ ବିଶେଷ ଭାବରେ ପରିଚିତ ଥିଲି । ପୁରାଣମାନଙ୍କରେ ଶ୍ରୀକ୍ଷେତ୍ର ମାହାତ୍ମ୍ୟ, ପୁରୁଷୋତ୍ତମ ମାହାତ୍ମ୍ୟ ନାମରେ ସ୍ୱତନ୍ତ୍ର ପରିଚ୍ଛେଦଗୁଡ଼ିକ ଥିବାର ଦେଖାଯାଏ । ବ୍ରହ୍ମପୁରାଣ, ସ୍କନ୍ଦପୁରାଣ, ପଦ୍ମପୁରାଣ ପ୍ରଭୃତିରେ ଏପରି ସ୍ୱତନ୍ତ୍ର ପରିଚ୍ଛେଦଗୁଡ଼ିକ ଅଛି । ସର୍ବକ୍ଷେତ୍ର ଭିତରେ ଶ୍ରେଷ୍ଠଥିବାରୁ ବା ସର୍ବ କ୍ଷେତ୍ରର ଆରମ୍ଭ ଥିବାରୁ ଏହି କ୍ଷେତ୍ରକୁ ଶ୍ରୀକ୍ଷେତ୍ର ବୋଲି କୁହାଯାଏ । ଶ୍ରୀ ବା ଲକ୍ଷ୍ମୀଙ୍କ ସହିତ ଏହି ନାମର କୌଣସି ସମ୍ପର୍କ ନାହିଁ । 'ପୁରୁଷୋତ୍ତମ କ୍ଷେତ୍ର' ନାମଟି ପୁରୁଷୋତ୍ତମଙ୍କ ନାମ ଅନୁସାରେ ହୋଇଛି । ଜଗନ୍ନାଥ ହିଁ ପୁରୁଷୋତ୍ତମ—ଏହା ଏଥିରୁ ସୂଚିତ ହେଉଛି ।

ନୀଳାଚଳକ୍ଷେତ୍ର ନାମଟି ନୀଳଗିରି ବା ନୀଳାଚଳ ପର୍ବତର ନାମରୁ ହୋଇଛି । ଏଥିରେ ଅଧିଷ୍ଠିତ ଠାକୁରଙ୍କ ନାମ ସହିତ କିଛି ସମ୍ପର୍କ ନାହିଁ ।

ଦଶାବତାର କ୍ଷେତ୍ର, ଭୌମ କ୍ଷେତ୍ର, ଦିବ୍ୟକ୍ଷେତ୍ର:—ପୁରୁଷୋତ୍ତମ କ୍ଷେତ୍ରକୁ ଦଶାବତାର କ୍ଷେତ୍ର ମଧ୍ୟ କୁହାଯାଏ । ଭଗବାନ ଜଗତର ମଙ୍ଗଳ ନିମନ୍ତେ ଭିନ୍ନ ଭିନ୍ନ ସମୟରେ ଅବତାର ଗ୍ରହଣ କରନ୍ତି । ଏହି କ୍ଷେତ୍ରରୁ ସବୁ ଅବତାରର ଉତ୍ପତ୍ତି । ସ୍ୱୟଂ ପୁରୁଷୋତ୍ତମ ଅବତାର ଗ୍ରହଣ କରି ଲୀଳା ଶେଷରେ ପୁଣି ସ୍ୱସ୍ଥାନ ଶ୍ରୀକ୍ଷେତ୍ରକୁ ଫେରିଆସନ୍ତି ।

> ତତ୍ରାପି ଲୋକରକ୍ଷାର୍ଥଂ ଯେଽବତାରାକୃତା ପୁରା
> ମତ୍ସ୍ୟାଦ୍ୟା ଦିବ୍ୟରୂପାବୈ ପୁରାତେ କଥିତା ମୟା ।୧୦
> ଅତ୍ର କ୍ଷେତ୍ରବରେ ବିପ୍ର ତାଂସ୍ତାନ୍ ପ୍ରକୁରୁତେ ବିଭୁଃ
> ଏତଦ୍ଧି ପରମଂ ସ୍ଥାନଂ ଦିବ୍ୟଂ ଭୌମଞ୍ଚ କଥ୍ୟତେ ।୧୧
> ମୂଳାୟତନ ମେ ତଦ୍ଧି ସୃଷ୍ଟି ପାଳନ ସଂହୃତେଃ
> ଅତ୍ରାବତୀର୍ଯ୍ୟ ଭଗବାନ୍ ପ୍ରଜାତ୍ୟନ୍ୟତ୍ର କାର୍ଯ୍ୟତଃ ।୧୨
> ବିଷ୍ଣ୍ୱାଦ୍ୟ କୃତ୍ୟଂ ପୃଥ୍ୱାହି ପୁନରତ୍ରୈବ ତିଷ୍ଠତି
> ଅତୋ ଦଶାବତାରାଣାଂ ଦର୍ଶନାଦେସ୍ତୁ ଯତ୍ଫଳମ୍ ।୧୩

ତତ୍ଫଳଂ ଲଭତେ ମର୍ତ୍ତ୍ୟୋ ଦୃଷ୍ଟ୍ୱା ଶ୍ରୀପୁରୁଷୋତ୍ତମମ୍
ଦଶାବତାର ସଙ୍କାଶ୍ୟ କଥିତା ପୁତ୍ର ମେ ତସ୍ମା ।୧୪। (୧)

(ଶିବ ସ୍କନ୍ଦଙ୍କୁ କହୁଛନ୍ତି)—"ଜନ୍ମଧ୍ୟେ ଲୋକରକ୍ଷାର୍ଥ ପୂର୍ବେ ଭଗବାନ ମତ୍ସ୍ୟାଦି ଯେଉଁ ଦିବ୍ୟ ଅବତାର ଗ୍ରହଣ କରିଥିଲେ, ତାହା ତୁମକୁ କହୁଅଛି । ବତ୍ସ, ! ନାରାୟଣ ଏହି ପୁରୁଷୋତ୍ତମ କ୍ଷେତ୍ରରେ ହିଁ ସେହି ସେହି ଅବତାରମୂର୍ତ୍ତି ପ୍ରକାଶ କରିଥିଲେ ବୋଲି ଦେବତାମାନେ ଏହି ପରମ ସ୍ଥାନକୁ ଭୌମ ଓ ଦିବ୍ୟ ବୋଲି କହିଥାନ୍ତି । ଏହି କ୍ଷେତ୍ର ହିଁ ସୃଷ୍ଟି-ସ୍ଥିତି ପାଳନର ମୂଳାୟତନ । ଭଗବାନ ଏହି ସ୍ଥାନରେ ନାନା ମୂର୍ତ୍ତିରେ ଅବତୀର୍ଣ୍ଣ ହୋଇ କାର୍ଯ୍ୟବଶତଃ ଅନ୍ୟତ୍ର ଗମନ କରନ୍ତି ଏବଂ ପୃଥିବୀ ସମ୍ବନ୍ଧରେ କର୍ତ୍ତବ୍ୟକାର୍ଯ୍ୟ ସମ୍ପାଦନପୂର୍ବକ ପୁନର୍ବାର ଏହି ସ୍ଥାନରେ ହିଁ ଅବସ୍ଥିତ ରହନ୍ତି । ଏହିହେତୁ ମତ୍ସ୍ୟାଦି ଦଶାବତାର ଦର୍ଶନାଦି କଲେ ଯେଉଁ ଫଳ ହୁଏ, ମାନବ କେବଳ ପୁରୁଷୋତ୍ତମ ଦର୍ଶନରେ ସେହି ଫଳ ଲାଭ କରିଥାଏ । ପୁତ୍ର ! ଯେଉଁ ହେତୁ ପୁରୁଷୋତ୍ତମ କ୍ଷେତ୍ରର ଦଶାବତାର କ୍ଷେତ୍ର ନାମ ହୋଇଛି, ତାହା ତୁମକୁ କହିଲି ।"

ଏଥିରୁ ଜଣାଯାଉଛି, ଏହି ପରମ ପବିତ୍ର ସ୍ଥାନର ଅନ୍ୟ ନାମ "ଭୌମ କ୍ଷେତ୍ର" ଓ "ଦିବ୍ୟ କ୍ଷେତ୍ର" ମଧ୍ୟ ଥିଲା ।

ପୁରୀ ନଗରଟି ବଙ୍ଗୋପସାଗର ( ପୂର୍ବର ନାମ ପୂର୍ବ ମହୋଦଧି ) କୂଳରେ ଅବସ୍ଥିତ । ପୂର୍ବ ଓ ଦକ୍ଷିଣକୁ ବଙ୍ଗୋପସାଗର, ପଶ୍ଚିମ ଦିଗକୁ ଓ ଉତ୍ତର ଦିଗକୁ ମଙ୍ଗଳା ବା ମିଣ୍ଟିଆଣି ନଦୀ । ବର୍ତ୍ତମାନ ସହରର କ୍ଷେତ୍ରଫଳ ପ୍ରାୟ ଦଶ ବର୍ଗମାଇଲ । ୧୯୬୧ର ଜନଗଣନା ଅନୁସାରେ ଲୋକସଂଖ୍ୟା ପ୍ରାୟ ପଂଚଶ ହଜାର ।

ଶଙ୍ଖକ୍ଷେତ୍ର:—ଦୁଇ ଶହ ବର୍ଷ ପୂର୍ବେ ବଡ଼ଦେଉଳ (ଜଗନ୍ନାଥ ମନ୍ଦିର) ଓ ଗୁଣ୍ଡିଚାବାଡ଼ି ମଧ୍ୟରେ ବାଙ୍କିମୁହାଣ ନଦୀ ପ୍ରବାହିତ ହେଉଥିଲା । ବର୍ତ୍ତମାନ ଯାହାକୁ "ଶରଧା ବାଲି" ବୋଲି କହନ୍ତି, ତାହା ପୂର୍ବେ ନଦୀର ଗର୍ଭ ଥିଲା । ରଥଯାତ୍ରାରେ ଦୁଇ ସାର ରଥ ତିଆରି ହେଉଥିଲା ଏବଂ ନଦୀର ପ୍ରତ୍ୟେକ ତଟରେ ସାରିଏ ରଥ ରହୁଥିଲା । ଏହି ବାଙ୍କିମୁହାଣ ନଦୀ ବର୍ତ୍ତମାନ ଚନ୍ଦନାରାୟଣ ମନ୍ଦିର ପାଖରେ ସମୁଦ୍ରରେ ମିଶୁଛି । ବାଙ୍କିମୁହାଣ ନଦୀ, ମିଣ୍ଟିଆଣି ନଦୀ, ମଙ୍ଗଳା ନଦୀ—ଏହି ତିନୋଟି ନଦୀ ପୁରୀକୁ ପୂର୍ବେ ତିନିଆଡ଼ୁ ବେଢ଼ି ରହିଥିଲେ ଏବଂ ଅନ୍ୟ ଦିଗଟିକୁ ସାଗର ବେଢ଼ି ରହିଥିଲା । ସେହିହେତୁ କ୍ଷେତ୍ରଟି ଦ୍ୱୀପ ଭଳି ଦେଖାଯାଉଥିଲା । ବର୍ତ୍ତମାନ ଯେଉଁଠାରେ ଜଗନ୍ନାଥ ମନ୍ଦିର ଅଛି, ସେହି ସ୍ଥାନଟିରେ ନୀଳଗିରି ନାମକ ଏକ ପର୍ବତ ଥିଲା ।

---

(୧) ସ୍କନ୍ଦପୁରାଣ—ଉତ୍କଳ ଖଣ୍ଡ, ୫୫ଶ ଅଧ୍ୟାୟ ।

ଏହି ପୁରୁଷୋତ୍ତମ କ୍ଷେତ୍ରର ବିସ୍ତୀର୍ଣ୍ଣ ଦଶଯୋଜନ ଓ ଆୟତନ ପାଞ୍ଚ ଯୋଜନ ଥିଲା ବୋଲି ବ୍ରହ୍ମପୁରାଣରେ ଲେଖାଅଛି ।

ଦଶଯୋଜନ ବିସ୍ତୀର୍ଣ୍ଣଂ ପଞ୍ଚଯୋଜନ ମାୟତମ୍
ନାନାଶ୍ଚର୍ଯ୍ୟ ସମାଯୁକ୍ତଂ କ୍ଷେତ୍ରଂ ପରମ ଦୁର୍ଲ୍ଲଭଂ । (୨)

କିନ୍ତୁ ସ୍କନ୍ଦ ପୁରାଣାନ୍ତର୍ଗତ "ଉତ୍କଳ ଖଣ୍ଡ" ଅନୁସାରେ ଏହି କ୍ଷେତ୍ରର ଆୟତନ ପଞ୍ଚକୋଶ ଏବଂ ଆକାର ତ୍ରିକୋଣ । ଏହାର ଆକାର ଶଙ୍ଖ ସଦୃଶ ଥିବାରୁ ଉତ୍କଳ ଖଣ୍ଡ ମତରେ ଏହି କ୍ଷେତ୍ରର ଅନ୍ୟ ନାମ ଶଙ୍ଖ କ୍ଷେତ୍ର ମଧ୍ୟ । କିନ୍ତୁ ବ୍ରହ୍ମପୁରାଣରେ ଶଙ୍ଖକ୍ଷେତ୍ର ନାମ ନାହିଁ । ଏହି କ୍ଷେତ୍ରର ପୂର୍ବର ଆୟତନ ପଞ୍ଚକୋଶ ଭିତରୁ ପ୍ରାୟ ଅର୍ଦ୍ଧ ଭାଗ ସମୁଦ୍ର ଜଳରେ ନିମଗ୍ନ ଏବଂ ଅପର ଭାଗର ଆକୃତି ଶଙ୍ଖ ସଦୃଶ ।

"ଏହି ଶଙ୍ଖାକାର କ୍ଷେତ୍ରର ମୂର୍ଦ୍ଧନୀ ହେଉଛି ପଶ୍ଚିମ ସୀମା । ନୀଳକଣ୍ଠ (ଇନ୍ଦ୍ରଦ୍ୟୁମ୍ନ ସରୋବର କୂଳରେ ) ଏହି ଶଙ୍ଖର ଅଗ୍ରଭାଗରେ ଅବସ୍ଥାନ କରୁଛନ୍ତି । ଶଙ୍ଖର ଉପର ଭାଗଟି ସମୁଦ୍ର ଜଳରେ ନିମଗ୍ନ । ଶଙ୍ଖର ନାଭି-ଦେଶରେ ରୋହିଣୀକୁଣ୍ଡ, ଅକ୍ଷୟବଟ ଓ ଜଗନ୍ନାଥଙ୍କ ଆସ୍ଥାନ । ଅର୍ଦ୍ଧାଶିନୀ (ମାଉସୀ ମା) ଶଙ୍ଖର ମଧ୍ୟ ଭାଗରେ ଅବସ୍ଥାନ କରୁଛନ୍ତି" (୩) । ନୀଳଗିରି ଏହି କ୍ଷେତ୍ରରେ ଶୋଭା ପାଉଛି । ଏହି ନୀଳଗିରି ପୁରୁଷୋତ୍ତମ ଜଗନ୍ନାଥଙ୍କ ନିବାସସ୍ଥଳ ।

ପୂର୍ବେ ନୀଳଗିରି ନାନା ବନରେ ଆବୃତ ଥିଲା । ଏହି ଗିରିର ଅଙ୍କଭାଗରେ ଏକକୋଶ ବ୍ୟାପି ଏକ କଳ୍ପବୃକ୍ଷ ଥିଲା । ଏହି ବୃକ୍ଷର ପଶ୍ଚିମରେ ବିଖ୍ୟାତ ରୋହିଣୀ-କୁଣ୍ଡ । ଏହି କୁଣ୍ଡ ସ୍ଫଟିକନିର୍ମିତ ସୋପାନଶ୍ରେଣୀ ଦ୍ୱାରା ଶୋଭା ପାଉଥିଲା । କୁଣ୍ଡର ପୂର୍ବତଟରେ ନୀଳକାନ୍ତମଣି ନିର୍ମିତ ଭଗବାନ ବାସୁଦେବଙ୍କ ମୂର୍ତ୍ତି ବିଦ୍ୟମାନ ଥିଲା । ଗିରିର ପଶ୍ଚିମ ଦିଗରେ ଶବରଦୀପକ ନାମରେ ଏକ ବିଖ୍ୟାତ ଆଶ୍ରମ ଥିଲା । ଏହା ଶବର ଜାତିର ଗୃହ ସମୂହରେ ବେଷ୍ଟିତ ଥିଲା । ଶବରପଲ୍ଲୀରୁ ନୀଳଗିରି ଉପରକୁ ଏକ ଏକପଦୀ ପଥ ଥିଲା (୪) । ନରସିଂହଦେବ ନୀଳଗିରିର ଅଗ୍ରଭାଗରେ ଏକ କୃଷ୍ଣାଗୁରୁ ବୃକ୍ଷ ମୂଳରେ ଅବସ୍ଥାନ କରୁଥିଲେ ।

ଆସେ ଦୁର୍ଗଦ୍ର ବସତ କୃଷ୍ଣାଗୁରୁତରୋରଧଃ
ସର୍ବାପଦଭୟହରଃ ଦିବ୍ୟସିଂହ ତନୁ ବିଭୁଃ (୫) ।

"ଏହି ପର୍ବତ ନାନାପ୍ରକାର ଲତା ଓ ଗୁଳ୍ମ ଦ୍ୱାରା ଆବୃତ । ବହୁ ପ୍ରକାର ପକ୍ଷୀ ଦ୍ୱାରା ଏହି ସ୍ଥାନ ପରିପୂର୍ଣ୍ଣ ହୋଇଛି ।

(୨) ବ୍ରହ୍ମପୁରାଣ । ୪୪ ଅ. ଶ୍ଳୋକ ୭୯ ।
(୩) ସ୍କନ୍ଦପୁରାଣ—ଉତ୍କଳ ଖଣ୍ଡ-୪ର୍ଥ ଅ. । ୯, ୫, ୭, ୨୭
(୪) ଉ. ଖ. ୭ମଅ । ୨୪-୨୯ ଶ୍ଳୋ ।
(୫) ଉ. ଖ. ୧୫ଅ. ଶ୍ଳୋ. ୮

ଏହାର ମାର୍ଗ ଶିଳାରାଶିଦ୍ୱାରା ଅବରୁଦ୍ଧ ଏବଂ ଚତୁର୍ଦ୍ଦିଗ ପରିଧିବିଶିଷ୍ଟ । କ୍ଷୁଦ୍ର କ୍ଷୁଦ୍ର ଶିଳାଖଣ୍ଡ ବିକ୍ଷିପ୍ତ ହୋଇ ପଡ଼ିରହିଛି । ଦକ୍ଷିଣ ସାଗରର ତରଙ୍ଗମାଳାରେ ଏହାର ନିତମ୍ବଦେଶ ପ୍ଲାବିତ ।" (୬) ଏଥିରୁ ଅନୁମାନ ହେଉଛି, ପୂର୍ବେ ନୀଳଗିରିରେ ବହୁତ ପଥର ଥିଲା ଏବଂ ଏହି ପର୍ବତର ପାଦଦେଶ ସମୁଦ୍ର କୂଳକୁ ଲାଗିଥିଲା ।

ସମୁଦ୍ରର ଉତ୍ତର ତୀରରେ ଅବସ୍ଥିତ ଏହି ପବିତ୍ର ପୁରୁଷୋତ୍ତମ କ୍ଷେତ୍ର ପୂର୍ବେ ବାଲୁକାମୟ ଥିଲା । ଏଥିରେ "ବିବିଧ ମନୋଜ୍ଞ କୁସୁମସମ୍ଭୂଷିତ ତରୁ ଓ ଲତାଗୁଳ୍ମାଦି ବିରାଜମାନ । ପଦ୍ମଖଣ୍ଡମଣ୍ଡିତ କେତେ ଜଳାଶୟ, କେତେ ପୁଷ୍କରିଣୀ, କେତେ ଦୀର୍ଘିକା, କେତେ ତଡ଼ାଗାଦି ବିଦ୍ୟମାନ । ଅନ୍ୟାନ୍ୟ କୂଜନପରାୟଣ ଜଳଚର ବିହଙ୍ଗମ ଓ ଅନ୍ୟାନ୍ୟ ଜଳଜାତ କୁସୁମରାଶି ଏହି ଜଳାଶୟମାନଙ୍କରେ ଶୋଭା ପାଉଛି (୭) ।"

ଏହି ପରମରମଣୀୟ ସ୍ଥାନଟି ଅତି ଶିକ୍ଷିତ ସମ୍ଭ୍ରାନ୍ତ ଲୋକସମାଜର ବାସସ୍ଥାନ ଥିଲା । ଚତୁର୍ବର୍ଣ୍ଣର ଲୋକେ, ଚତୁରାଶ୍ରମର ଲୋକେ, ବହୁ ବିଜ୍ଞ ମୁନିଋଷି ଏଠାରେ ନିବାସ କରୁଥିଲେ । "ବ୍ରହ୍ମଚର୍ଯ୍ୟ, ଗୃହସ୍ଥ, ବାନପ୍ରସ୍ଥ ଓ ଭିକ୍ଷୁ ପ୍ରଭୃତି ସ୍ୱଧର୍ମନିରତ ଚତୁର୍ବିଧ ଆଶ୍ରମର ଲୋକ ସେହି କ୍ଷେତ୍ରରେ ଅବସ୍ଥାନ କରୁଛନ୍ତି । କ୍ଷେତ୍ର ହୃଷ୍ଟପୁଷ୍ଟ ନର ନାରୀରେ ପୂର୍ଣ୍ଣ । ସର୍ବବିଧ ବିଦ୍ୟାଚର୍ଚ୍ଚାର ଆଧାର ସ୍ଥାନ ଏବଂ ସର୍ବଗୁଣ ଓ ସର୍ବଧର୍ମର ଆକର (୮) ।"

ଇନ୍ଦ୍ରଦ୍ୟୁମ୍ନ ସତ୍ୟଯୁଗର ରାଜା । ସେ ପୁରୁଷୋତ୍ତମ କ୍ଷେତ୍ରକୁ ଆସିବା ପୂର୍ବରୁ କ୍ଷେତ୍ରର ଅବସ୍ଥା ଅତି ସୁନ୍ଦର ଥିଲା । ସ୍ଥାନର ପବିତ୍ରତା, ମନୋହର ପ୍ରାକୃତିକ ଦୃଶ୍ୟ, ସୁସଭ୍ୟ ସମାଜ ଜଗତରେ ଏହାର ପ୍ରସିଦ୍ଧିକୁ ବହୁତ ବର୍ଦ୍ଧିତ କରିଥିଲା । ଇନ୍ଦ୍ରଦ୍ୟୁମ୍ନ ଏଠାକୁ ଆସିବା ପୂର୍ବରୁ ନୀଳମାଧବ ନୀଳଗିରିରେ ପୂଜା ପାଉଥିଲେ ।

"ଉତ୍କଳଖଣ୍ଡ"ରେ ଲେଖାଅଛି ଯେ ଏହି ପର୍ବତରେ ଅକ୍ଷୟବଟ, ସ୍ଫଟିକସୋପାନଶ୍ରେଣୀବିଶିଷ୍ଟ ରୋହିଣୀକୁଣ୍ଡ, ନୀଳମାଧବ, କୃଷ୍ଣାଗୁରୁ ବୃକ୍ଷ ତଳେ ନୃସିଂହ ଥିଲେ । ଶବରଦୀପକ ପଲ୍ଲୀ ପଶ୍ଚିମରେ ଥିଲା । କ୍ଷେତ୍ର ମଧ୍ୟରେ ନୀଳକଣ୍ଠ, ନୃସିଂହ ( ଗୁଣ୍ଡିଚାବାଡ଼ି ନିକଟ), ଅର୍ଦ୍ଧାଶନୀ, ମାର୍କଣ୍ଡେୟ ପୁଷ୍କରିଣୀ ଓ ମାର୍କଣ୍ଡେଶ୍ୱର, କପାଳ-ଲୋଚନ, ଯମେଶ୍ୱର, ଅଷ୍ଟଶମ୍ଭୁ ପ୍ରଭୃତି ଦେବତାମାନେ ପୂଜା ପାଉଥିଲେ । କିନ୍ତୁ ବ୍ରହ୍ମପୁରାଣ ମତରେ ଏ କ୍ଷେତ୍ରରେ ନୀଳମାଧବଙ୍କ ଅନ୍ତର୍ଦ୍ଧାନ ପରେ କୌଣସି ଶୁଭ ବୈଷ୍ଣବ ମୂର୍ତ୍ତି ପୂଜା ପାଉ ନ ଥିଲେ ।

---

(୬) ଉ. ଖ. । ୧୫ ଅ. ୩୪ ଶ୍ଳୋକ ।

(୭) ବ୍ରହ୍ମପୁରାଣ-୪୫ ଅ. । ୧୩-୧୪, ୨୬-୨୭ ।

(୮) ବ୍ରହ୍ମପୁରାଣ । ୪୨ ଅ. । ୩୨, ୩୩, ୩୪ ।

ପ୍ରତିମାଚେନ୍ଦ୍ର ନୀଲାଖ୍ୟା ସ୍ୱୟଂ ଦେବେନ ଗୋପିତା
ନ ଯତ୍ର ଦୃଶ୍ୟତେ ଯତ୍ନ୍ୟା ପ୍ରତିମା ବୈଷ୍ଣବୀ ଶୁଭା (୯) ।

ସ୍କନ୍ଦପୁରାଣରେ ଉତ୍କଳ ଖଣ୍ଡ ଅନୁସାରେ ଏଠାରେ କେବଳ ଶବରମାନେ ଏକଶବର ପଲ୍ଲୀରେ ବାସ କରୁଥିଲେ । କିନ୍ତୁ ବ୍ରହ୍ମପୁରାଣ ଅନୁସାରେ ଏଠାରେ ବହୁ ଶ୍ରେଣୀର ସୁସଭ୍ୟ ଲୋକ,—ଗୁଣବର୍ଣ୍ଣିତ ଲୋକ, ସାଧୁସନ୍ଥ ବାସ କରୁଥିଲେ ଏବଂ ଏହା ବିଦ୍ୟାଚର୍ଚ୍ଚାର ପୀଠ ଥିଲା ।

ଇନ୍ଦ୍ରଦ୍ୟୁମ୍ନ ପୁରୀକୁ ଆସିବା ପରେ ସ୍ଥାନର ମାହାତ୍ମ୍ୟ ଜଗତରେ ପ୍ରଚାରିତ ହେଲା ଏବଂ ତତ୍ସଙ୍ଗେ ସଙ୍ଗେ କ୍ଷେତ୍ରର ଆକାର ପ୍ରକାରରେ ବହୁ ଉନ୍ନତି ସାଧିତ-ହେଲା । ନୃସିଂହକ୍ଷେତ୍ର ( ଗୁଣ୍ଡିଚାବାଡ଼ି ଠାରୁ ଇନ୍ଦ୍ରଦ୍ୟୁମ୍ନ ପୁଷ୍କରଣୀ ପର୍ଯ୍ୟନ୍ତ ) ପରିଷ୍କୃତ ହୋଇ ନୃସିଂହଙ୍କ ମନ୍ଦିର ନିର୍ମିତ ହେଲା, ମହାବେଦୀ ନିର୍ମିତ ହେଲା । ସହସ୍ର ଅଶ୍ୱମେଧ ଯଜ୍ଞ ଅନୁଷ୍ଠାନ ସମ୍ପର୍କରେ ବହୁସଂଖ୍ୟକ ପ୍ରଜା ଓ ଶାସକଙ୍କ ସମାଗମ ହେଲା । ମହାବେଦୀଠାରୁ ନୀଳଗିରି ପର୍ଯ୍ୟନ୍ତ କଣ୍ଟକାକୀର୍ଣ୍ଣ ପଥକୁ ପରିଷ୍କାର କରି ନୀଳଗିରି ଉପରେ ବଳଭଦ୍ର, ଜଗନ୍ନାଥ, ସୁଭଦ୍ରା ଓ ସୁଦର୍ଶନଙ୍କ ପାଇଁ ଏକ ମନ୍ଦିର ନିର୍ମିତ ହେଲା । ଏହି ଦେବମନ୍ଦିରମାନଙ୍କର ସେବାପୂଜା ପାଇଁ ବହୁଲୋକର ଆବଶ୍ୟକ ହେବାରୁ ଲୋକବସତିର ପରିସର ମଧ୍ୟ ବହୁତ ବୃଦ୍ଧିପାଇଲା ।

ଇନ୍ଦ୍ରଦ୍ୟୁମ୍ନଙ୍କ ପରେ କ୍ଷେତ୍ରର ଅବସ୍ଥାରେ ପରିବର୍ତ୍ତନର ଧାରାବାହିକ ଇତିହାସ ମିଳିବା ସହଜ ନୁହେଁ ।

## କ୍ଷେତ୍ରର ପ୍ରାଚୀନତା

(କ) ପୌରାଣିକ ପ୍ରମାଣ—

ବେଦରେ ପୁରୁଷୋତ୍ତମକ୍ଷେତ୍ର ବା ଜଗନ୍ନାଥ ବା ଇନ୍ଦ୍ରଦ୍ୟୁମ୍ନ ମହାରାଜା ଏମାନଙ୍କର ନାମ ନାହିଁ । ଏମାନଙ୍କ ସମ୍ପର୍କୀୟ କୌଣସି ଘଟଣାର ଉଲ୍ଲେଖ ମଧ୍ୟ ନାହିଁ । କିନ୍ତୁ ତୈତ୍ତିରୀୟ ଶ୍ରୁତିରେ ଦାରୁମୂର୍ତ୍ତିର ସୂଚନା ମିଳୁଛି ।

ଅଦୌ ଯଦ୍‌ଦାରୁ ପ୍ଲବତେ ସିନ୍ଧୋଃ ପାରେ ଅପୁରୁଷମ୍
ତଦାଲଭସ୍ୱ ଦୁର୍ଦ୍ଦାନୋ ତେନ ଯାହି ପରଂସ୍ଥଳମ୍ । (୧୦)

ଏହାର ଭାଷ୍ୟରେ ଶାଂଖାୟନ ଲେଖିଛନ୍ତି—"ଆଦୌ ବିପ୍ରକୃଷ୍ଟ ଦେଶେ ବର୍ତ୍ତମାନ ଯଦ୍‌ଦାରୁ ପୁରୁଷୋତ୍ତମାଖ୍ୟ ଦେବତାଶରୀରଂ ପ୍ଲବତେ ଜଳସ୍ୟୋପରି ବର୍ତ୍ତତେ ଅପୁରୁଷମ୍ ନିର୍ମାତୃରହିତତ୍ୱେନ ଅପୁରୁଷଂ ତତ୍ ଆଲଭସ୍ୱ ଦୁର୍ଦ୍ଦାନୋ ହେ

---

(୯) ସ୍କନ୍ଦପୁରାଣ । ଉତ୍କଳ ଖଣ୍ଡ-ଅ. ୪୭, ଶ୍ଳୋ. ୨୭

(୧୦) ତୈତ୍ତିରୀୟ ଶ୍ରୁତି ।

ହୋତଃ । ତେନ ଦାରୁମୟେନ ଦେବେନ ଉପାସ୍ୟମାନେନ ପରଂସ୍ଥଳଂ ବୈଷ୍ଣବ-ଲୋକଂ ଗଚ୍ଛତ୍ୟର୍ଥଃ ।”

ଅଥର୍ବ ବେଦରେ ଉପରୋକ୍ତ ଶ୍ଳୋକର ଅନୁରୂପ ଆଉ ଏକ ଶ୍ଳୋକ ଥିବା କେହି କେହି କହନ୍ତି ।

ଅଦୌ ଯଦ୍ଦାରୁ ପ୍ଲବତେ ସିନ୍ଧୋର୍ମଧ୍ୟେ ଅପୁରୁଷମ୍
ତଦାଲଭସ୍ୱ ଦୁର୍ଦାନୋ ତେନ ଯାହି ପରଂ ସ୍ଥଳମ୍ ।

ଶ୍ରୁତିର ଏହି ବାକ୍ୟର ଅସ୍ତିତ୍ୱ ସମ୍ବନ୍ଧରେ ସନ୍ଦେହ କରିବାର କାରଣ ନାହିଁ । ଏହି ଶ୍ଳୋକର ଅନୁରୂପ ଏକ ଶ୍ଳୋକ ସ୍କନ୍ଦ ପୁରାଣର ଉତ୍କଳ ଖଣ୍ଡରେ ଲେଖା ଅଛି ଏବଂ ଶ୍ରୁତିରେ ଦାରୁମୂର୍ତ୍ତିର ମାହାତ୍ମ୍ୟ ବର୍ଣ୍ଣିତ ଥିବା କଥା ମଧ୍ୟ କୁହାଯାଇଛି ।

ଅହୋ ଭବାସ୍ତୁଂ ଖଳୁ ଭାଗ୍ୟ ରାଶି-
ର୍ନୈନାବିରାସୀଦ୍ଭୁବି ଦାରୁମୂର୍ତ୍ତିଃ ।
ଯସ୍ୟାପ୍ୟୁପାସ୍ତିଂ ଶ୍ରୁତିରାହ ମୁକ୍ତି
ପ୍ରଦାନ ମାତ୍ମଜ୍ଞ ବିମୋହିତନାମ୍ ।୨
ଯ (ସ) ଏଷ ପ୍ଲବତେ ଦାରୁଃ ସିନ୍ଧୁପାରେ ହ୍ୟପୌରୁଷଃ
ତମୁପାସ୍ୟ ଦୁରାରାଧ୍ୟଂ ମୁକ୍ତିଂଯାତି ସୁଦୁର୍ଲଭମ୍ । ୩ । (୧୧)

“ହେ ନରପତି । ତୁମର ଭାଗ୍ୟରାଶି ଅତି ଆଶ୍ଚର୍ଯ୍ୟ । ପୁରୁଷୋତ୍ତମ ଭଗବାନ ଜଗତରେ ଦାରୁମୂର୍ତ୍ତି ଧାରଣ କରି ଆବିର୍ଭୂତ ହୋଇଥିଲେ । ଶ୍ରୁତି ( ବେଦ ) ରେ କୁହାଯାଇଛି ଯେ ଏହାଙ୍କୁ ଉପାସନା କଲେ ଆତ୍ମଜ୍ଞାନବିମୋହିତ ବ୍ୟକ୍ତିମାନଙ୍କର ମଧ୍ୟ ମୋକ୍ଷଲାଭ ହୁଏ । ( ଶ୍ରୁତି ବର୍ଣ୍ଣିତ ) ସେ ଏହି ଅପୁରୁଷେୟ ଦାରୁ ସମୁଦ୍ର ତୀରରେ ଭାସମାନ ହେଉଛି । ଏ ଦୁରାରାଧ୍ୟ । ଏହାଙ୍କୁ ଉପାସନା କଲେ ଅତ୍ୟନ୍ତ ଦୁର୍ଲ୍ଲଭ ମୁକ୍ତି ପ୍ରାପ୍ତ ହୁଏ ।”

ସ୍ୱୟଂ ନାରଦ ମଧ୍ୟ ବେଦାନ୍ତରେ ଏ ଦାରୁମୂର୍ତ୍ତିଙ୍କ ବିଷୟ ଥିବା କଥା ସ୍ୱୀକାର କରିଛନ୍ତି ।

ବ୍ରହ୍ମଜ୍ଞାନନିଧିଃସାକ୍ଷାତ୍ ନାରଦଃ ପ୍ରତ୍ୟୁବାଚତମ୍
ନହି ବେଦାନ୍ତ ବଚସଃ ପରସ୍ୟା ଜ୍ଞାନମସ୍ୟ ବୈ । (୧୨)

“ବ୍ରହ୍ମଜ୍ଞାନନିଧି ନାରଦ କହିଲେ—ଏହି ପୁରୁଷୋତ୍ତମ ବେଦାନ୍ତ ବାକ୍ୟରେ ଅଜ୍ଞାତ ନୁହନ୍ତି ଏବଂ ପୁରୁଷୋତ୍ତମ ବିଷ୍ଣୁଙ୍କର କାର୍ଯ୍ୟ ପ୍ରବୃତ୍ତିସକଳ ବେଦବହିର୍ଭୂତ ନୁହେଁ ।”

---

(୧୧) ସ୍କନ୍ଦପୁରାଣ ଉତ୍କଳ ଖଣ୍ଡ ୧୧ଶ ଅଧ୍ୟାୟ
(୧୨) ଏଜନ ୨୧ଶ ଅଧ୍ୟାୟ

ଶ୍ରୁତି ଓ ପୁରାଣର ଏହି ବାକ୍ୟରୁ ପ୍ରମାଣିତ ହେଉଛି ଯେ, ଦାରୁରୂପୀ ଜଗନ୍ନାଥଙ୍କ ଅସ୍ତିତ୍ୱ ବୈଦିକ ଯୁଗରେ ମଧ୍ୟ ଥିଲା ।

ଏହି ଦାରୁ ଶ୍ୱେତଦ୍ୱୀପବାସୀ ଅନନ୍ତ ବିଶ୍ୱଦେହ ପଦ୍ମଲୋଚନ ବିଷ୍ଣୁଙ୍କର ଦେହୋଦ୍ଭୂତ ରୋମ ବିଚ୍ୟୁତ ହୋଇ ବୃକ୍ଷରୂପ ଧାରଣ କରି ମହୋଦଧିରେ ଦେଖା ଦେଇଛନ୍ତି ବୋଲି ନାରଦ ଇନ୍ଦ୍ରଦ୍ୟୁମ୍ନଙ୍କୁ ବୁଝାଇଛନ୍ତି । ପୂର୍ବେ ସ୍ୱପ୍ନରେ ରାଜା ଇନ୍ଦ୍ରଦ୍ୟୁମ୍ନ ଶ୍ୱେତଦ୍ୱୀପବାସୀ ବିଷ୍ଣୁଙ୍କ ରୂପ ଦର୍ଶନ କରିଥିଲେ ।

ଉପସ୍ଥିତଂ ତେ ତଦ୍‌ଭାଗ୍ୟଂ ସ୍ୱପ୍ନେ ଯଦ୍‌ଦୃଷ୍ଟବାନ୍ ପୁରା
ଶ୍ୱେତଦ୍ୱୀପେ ବିଶ୍ୱମୂର୍ତ୍ତି-ର୍ଦୃଷ୍ଟୋ ଯୋ ବିଷ୍ଣୁରବ୍ୟୟଃ । ୧୨
ତଦଙ୍ଗସ୍ଖଳିତଂ ରୋମ ତରୁତ୍ୱମୁପପଦ୍ୟତେ
ଅଂଶାବତାର ସ୍ଥାଣୁର୍ଯଃ ପୃଥିବ୍ୟାଂ ପରମେଷ୍ଠିନଃ । ୧୩
ସ୍କନ୍ଦପୁରାଣ, ଉତ୍କଳ ଖଣ୍ଡ । ୧୮ ଅ.

ଆପଣଙ୍କର ସେହି ଶୁଭାଦୃଷ୍ଟ ଆସିଅଛି, ଆପଣ ପୂର୍ବେ ନିଦ୍ରାବସ୍ଥାରେ ଯେଉଁ ଶ୍ୱେତଦ୍ୱୀପବାସୀ ଅନନ୍ତ ବିଶ୍ୱଦେହ ପଦ୍ମଲୋଚନଙ୍କୁ ଦେଖିଥିଲେ ତାଙ୍କର ଦେହୋତ୍ପନ୍ନ ରୋମ ବିଚ୍ୟୁତ ହୋଇ ବୃକ୍ଷଦେହ ଧାରଣ କରିଅଛି । ଭକ୍ତବତ୍ସଳ ପରମେଶ୍ୱର ଜଗତରେ ଚତୁରାନନଙ୍କର ଅଂଶାବତାର ସ୍ୱରୂପ ସ୍ଥାଣୁ ରୂପେ ଉତ୍ପନ୍ନ ହୋଇଅଛନ୍ତି ।

ରାମାୟଣରେ ଜଗନ୍ନାଥ କିମ୍ବା ପୁରୁଷୋତ୍ତମ କ୍ଷେତ୍ରର ପ୍ରସଙ୍ଗ ନାହିଁ । ମହାଭାରତରେ ଜଗନ୍ନାଥ କିମ୍ବା କ୍ଷେତ୍ରର ସ୍ପଷ୍ଟ ଉଲ୍ଲେଖ ନ ଥିଲେ ମଧ୍ୟ ଇନ୍ଦ୍ରଦ୍ୟୁମ୍ନ ପୁଷ୍କରିଣୀଚରିତ ଓ ମହାବେଦୀ ମାହାତ୍ମ୍ୟ ବର୍ଣ୍ଣିତ ଅଛି । ପୂର୍ବେ ଶ୍ରୀକ୍ଷେତ୍ର ମହାବେଦୀ ନାମରେ ମଧ୍ୟ ପରିଚିତ ଥିଲା । ଇନ୍ଦ୍ରଦ୍ୟୁମ୍ନ ମହାରାଜା ସହସ୍ର ଅଶ୍ୱମେଧ ଯଜ୍ଞ ଏହି ମହାବେଦୀ ଉପରେ କରିଥିଲେ ଏବଂ ଚତୁର୍ଦ୍ଧାମୂର୍ତ୍ତି ଏହିଠାରେ ଉଦୟ ହୋଇଥିଲେ । ପାଣ୍ଡବମାନେ ବନବାସ କରିବା ସମୟରେ ଏହି ମହାବେଦୀ ଦର୍ଶନ କରିଥିଲେ ।

ତତଃ ପ୍ରସନ୍ନା ପୃଥିବୀ ତପସ୍ୟା ନସ୍ୟ ପାଣ୍ଡବ
ପୁନରୁନ୍ମଜ୍ୟ ସଲିଳାଦ୍‌ବେଦୀରୂପା ସ୍ଥିତାବଭୌ ।
ସୈଷା ପ୍ରକାଶତେ ରାଜନ୍ ବେଦୀ ସସ୍ଥାନ ଲକ୍ଷଣା
ଆରୁହ୍ୟାତ୍ର ମହାରାଜ ବୀର୍ଯ୍ୟବାନ୍ ବୈ ଭବିଷ୍ୟତି ।
ସୈଷା ସାଗରମାସାଦ୍ୟ ରାଜନ୍ ବେଦୀ ସମାଶ୍ରିତା
ଏତାମାରୁହ୍ୟ ଭଦ୍ରନ୍ତେ ତ୍ୱମେକସ୍ତର ସାଗରମ୍ ।
ଅହଞ୍ଚ ତେ ସ୍ୱସ୍ତ୍ୟୟନ ପ୍ରଯୋକ୍ଷ୍ୟେ ତ୍ୱମେନ ମଧ୍ୟ ରୋହସେ ହ୍ୟଦ୍ୟ
ସ୍ପୃଷ୍ଟାହି ମର୍ତ୍ତ୍ୟେନ ତତଃ ସମୁଦ୍ରମେଷା ବେଦୀ ପ୍ରବିଶ ତ୍ୟାଜମୀଢ଼େ । (୧୩)

(୧୩) ମହାଭାରତ ବନପର୍ବ । ୧୧୪ ଅ । ୨୨-୨

ଅର୍ଥାତ—ତପ ପ୍ରଭାବରେ ପୃଥିବୀ ଜଳ ଭିତରୁ ଉଠି ବେଦୀ ରୂପରେ ବାହାରିଲା ଏବଂ ସେଠାରେ ଅନେକ ଯଜ୍ଞ ହେଲା, ଏହାପରେ ଦେବତାମାନେ ବାସ କରି ସ୍ୱର୍ଗ ଅଧିକାରୀ ହେଲେ । ମହାରାଜା, ଏ ସେହି ବେଦୀ ଦେଖାଯାଉଛି । ଏହା ଉପରକୁ ଉଠିଲେ ବୀର୍ଯ୍ୟବାନ୍ ହେବେ । ଏହା ବେଦୀ ସାଗରକୁ ଆଶ୍ରୟ କରି ରହିଛି ।

ମହାଭାରତ ବନପର୍ବରେ ଯେଉଁ ଇନ୍ଦ୍ରଦ୍ୟୁମ୍ନ ଉପାଖ୍ୟାନଟି ଦିଆଯାଇଛି ସେଥିରୁ ଜଣାଯାଉଛି ଯେ ଇନ୍ଦ୍ରଦ୍ୟୁମ୍ନ ମହାରାଜା ଓ ଇନ୍ଦ୍ରଦ୍ୟୁମ୍ନ ପୁଷ୍କରଣୀ ପାଣ୍ଡବ ଏପରିକି ସପ୍ତକଳ୍ପାୟୁ ମାର୍କଣ୍ଡେୟଙ୍କଠାରୁ ମଧ୍ୟ ପ୍ରାଚୀନ । ଏହି ଉପାଖ୍ୟାନରୁ ଜଣାଯାଏ, ମାର୍କଣ୍ଡେୟଙ୍କଠାରୁ ପ୍ରାବାରକର୍ଣ୍ଣ ଉଲ୍ଲୁକ ପ୍ରାଚୀନ । ପ୍ରାବାରକର୍ଣ୍ଣଠାରୁ ନାଡ଼ିଜଙ୍ଘ ବକ ପ୍ରାଚୀନ । ଏହି ବକଠାରୁ ଇନ୍ଦ୍ରଦ୍ୟୁମ୍ନ ସରୋବରରେ ବାସ କରୁଥିବା ଅକୂପାର କଚ୍ଛପ ପ୍ରାଚୀନ । ଇନ୍ଦ୍ରଦ୍ୟୁମ୍ନ ମହାରାଜା ସହସ୍ର ଅଶ୍ୱମେଧ ଯଜ୍ଞକରି ଅସଂଖ୍ୟ ଗୋଦାନ କରିଥିଲେ । ଏହି ଗୋରୁମାନଙ୍କ ଖୁରାଘାତରେ ଭୂମିରେ ଗାତ ହୋଇଗଲା । ସେହି ଗାତ ଏକ ପୁଷ୍କରଣୀରେ ପରିଣତ ହେଲା । ଏହାର ନାମ ହେଲା ଇନ୍ଦ୍ରଦ୍ୟୁମ୍ନ ପୁଷ୍କରଣୀ । ଶ୍ରୀକ୍ଷେତ୍ରର ଏହି ଇନ୍ଦ୍ରଦ୍ୟୁମ୍ନ ପୁଷ୍କରଣୀ, ମହାବେଦୀ ଓ ଜଗନ୍ନାଥଙ୍କ ପ୍ରତିଷ୍ଠା ଯୋଗୁଁ ଇନ୍ଦ୍ରଦ୍ୟୁମ୍ନ ପୁରାଣମାନଙ୍କରେ ଓ ଜନଶ୍ରୁତିରେ ପ୍ରସିଦ୍ଧ । ସପ୍ତକଳ୍ପାୟୁ ମାର୍କଣ୍ଡେୟଙ୍କଠାରୁ ଇନ୍ଦ୍ରଦ୍ୟୁମ୍ନ ବହୁ ପ୍ରାଚୀନ ଥିବାରୁ ଏବଂ ଏହି କାହାଣୀ ପଞ୍ଚପାଣ୍ଡବଙ୍କୁ କୁହାଯାଇଥିବାରୁ ଜଣାଯାଉଛି ଯେ, ମହାଭାରତ ଯୁଗର ବହୁ ପୂର୍ବରୁ ଏହି କ୍ଷେତ୍ରର ଖ୍ୟାତି ଥିଲା ।

ପୁରାଣ ଅନୁସାରେ ଏହି କ୍ଷେତ୍ରର ଅକ୍ଷୟବଟ ପ୍ରଳୟ କାଳରେ ମଧ୍ୟ ପ୍ରଳୟ-ଜଳରେ ଲୀନ ନ ହୋଇ ଅକ୍ଷୁର୍ଣ୍ଣ ରହିଥିଲା । ଏହି ପ୍ରଳୟ ସମୟରେ ସ୍ୱୟଂ ନାରାୟଣ ଓ ଶ୍ରୀକ୍ଷେତ୍ର ଏ ଦୁଇ କେବଳ ବିଦ୍ୟମାନ ଥିଲେ । ନାରାୟଣ ଏହି ଅକ୍ଷୟ ବଟ ମୂଳରେ ବଟପତ୍ର ଉପରେ ଶୋଇଥିଲେ । ମାର୍କଣ୍ଡେୟ ପ୍ରଳୟ ଜଳରେ ଭାସି ଭାସି ନାରାୟଣଙ୍କ ପାଖରେ ଆଶ୍ରୟ ନେଇଥିଲେ ।

ଚରାଚର ଜଗତ୍ୟସ୍ମିନ୍ ପ୍ରଳୟେ ପ୍ରଭବେ ଯମ
ଏତତ୍ କ୍ଷେତ୍ରଂ ମହଶ୍ଚୈବ ଦ୍ୱୌ ଏବୋପସ୍ଥିତେ ତଦା ।୧୪।

ଏହି ପୌରାଣିକ ଆଖ୍ୟାୟିକାରୁ ମଧ୍ୟ କ୍ଷେତ୍ରର ବହୁ ପ୍ରାଚୀନତାର ପରିଚୟ ମିଳୁଅଛି ।

ପୁରାଣମାନଙ୍କ ଭିତରେ ରାମାୟଣ ସର୍ବ ପ୍ରାଚୀନ । ଏଥିରେ ପୁରୁଷୋତ୍ତମ କ୍ଷେତ୍ର ବା ଜଗନ୍ନାଥଙ୍କ ବିଷୟ ନାହିଁ । ରାମାୟଣ ପରେ ମହାଭାରତ । ଏହି ଗ୍ରନ୍ଥରେ ଇନ୍ଦ୍ରଦ୍ୟୁମ୍ନ ପୁଷ୍କରଣୀ ଓ ମହାବେଦୀର ଉଲ୍ଲେଖ ଥିବାରୁ କ୍ଷେତ୍ରର ପ୍ରାଚୀନତା ସହଜରେ ଅନୁମେୟ । ମହାଭାରତ ଖ୍ରୀଷ୍ଟପୂର୍ବ ଶହଶହ ବର୍ଷ ପୂର୍ବରୁ ଥିଲା, ଏହା ବହୁ ଐତିହାସିକଙ୍କ ମତ । ମହାଭାରତର ବନ ପର୍ବରେ "ଏତତ୍ କଟାହ୍ମା ପୃଥିବୀ

(୧୪) ସ୍କନ୍ଦପୁରାଣ । ଉତ୍କଳ ଖଣ୍ଡ । ୩ୟ ଅ, ଶ୍ଳୋକ ୩୦ ।

ନଦେବ ଗୃହଭୂଷିତା" ଅର୍ଥାତ୍ ଜଗତରେ ଦେବଗୃହ ବଦଳରେ "ଏଡ଼ୁକ" ( ବୌଦ୍ଧ-ସ୍ମୃତିମନ୍ଦିର; ବା ଧାତୁଗର୍ଭ; ଧାଲିତାଗୋବା ) ହେବ । ଏହି ପଂକ୍ତିରୁ ବୁଦ୍ଧଦେବଙ୍କର ସୂଚନା ଥିବାର ଅନୁମାନ କରି ମହାଭାରତର ରଚନାର କାଳ ବୌଦ୍ଧ ଯୁଗର ବହୁ ପୂର୍ବବର୍ତ୍ତୀ ନୁହେଁ ବୋଲି କେହି କେହି ମନେ କରନ୍ତି । ଏହା ହେଲେ ମଧ୍ୟ ଶ୍ରୀକ୍ଷେତ୍ରର ପ୍ରାଚୀନତା ସମ୍ବନ୍ଧରେ ସନ୍ଦେହ ଉପୁଜୁନାହିଁ । ଅଷ୍ଟାଦଶ ପୁରାଣ ଭିତରେ ନାରଦୀୟ ପୁରାଣ, ବ୍ରହ୍ମପୁରାଣ ପ୍ରଭୃତି ପ୍ରାଚୀନ । ଏହି ପୁରାଣ ଦୁଇଟିର ରଚନା କାଳ ଖ୍ରୀଷ୍ଟପୂର୍ବ ଦ୍ୱିତୀୟ କିମ୍ବା ତୃତୀୟ ଶତକ ବୋଲି କେହି କେହି କହନ୍ତି । ପୁରୁଷୋତ୍ତମ କ୍ଷେତ୍ରର ପ୍ରସଙ୍ଗ ଏହି ଦୁଇ ପୁରାଣରେ ମଧ୍ୟ ଥିବାରୁ କ୍ଷେତ୍ରର ମାହାତ୍ମ୍ୟ ଯେ ଏହି ଗ୍ରନ୍ଥମାନଙ୍କର ରଚନା ସମୟ, ଅର୍ଥାତ୍ ଖ୍ରୀଷ୍ଟପୂର୍ବ ଦ୍ୱିତୀୟ କିମ୍ବା ତୃତୀୟ ଶତାବ୍ଦୀ, ପୂର୍ବରୁ ଖ୍ୟାତି ଲାଭ କରିଥିଲା, ଏଥିରେ ସନ୍ଦେହ ନାହିଁ ।

ପ୍ରାଚୀନ ପୁରାଣମାନଙ୍କରେ ପୁରୁଷୋତ୍ତମ କ୍ଷେତ୍ରପ୍ରସିଦ୍ଧିର ଉଲ୍ଲେଖ ଏହି କ୍ଷେତ୍ରର ପ୍ରାଚୀନତାର ଅନ୍ୟ ଏକ ନିଦର୍ଶନ ।

## ମତ୍ସ୍ୟ ପୁରାଣ

ବିମଳା ପୀଠ ବର୍ଣ୍ଣନା ପ୍ରସଙ୍ଗରେ ମତ୍ସ୍ୟପୁରାଣରେ ଲିଖିତ ଅଛି— (୧୫)

(୧) ଗୟାୟାଂ ମଙ୍ଗଳା ନାମ ବିମଳା ପୁରୁଷୋତ୍ତମେ । ( ୩୫, ୨୩ )

ଭାରତର ବିଭିନ୍ନ ପ୍ରଧାନ ତୀର୍ଥମାନଙ୍କ ମଧ୍ୟରେ ପୁରୁଷୋତ୍ତମ କ୍ଷେତ୍ର ଅଛି । ମତ୍ସ୍ୟ ପୁରାଣ ଖ୍ରୀଷ୍ଟୀୟ ତୃତୀୟ ଶତାବ୍ଦୀ ପୂର୍ବରୁ ରଚିତ ହୋଇଥିବା ପାର୍ଜିଟର ଓ ଭିନ୍‌ସେଣ୍ଟ୍ ସ୍ମିଥ୍ ଅନୁମାନ କରନ୍ତି । ଅତଏବ ଖ୍ରୀଷ୍ଟୀୟ ତୃତୀୟ ଶତାବ୍ଦୀ ପୂର୍ବରୁ ପୁରୁଷୋତ୍ତମ କ୍ଷେତ୍ରର ମାହାତ୍ମ୍ୟ ପ୍ରସିଦ୍ଧି ଲାଭ କରିସାରିଥିଲା, ଏହା କୁହାଯିବ ।

(୨) ଗୋକର୍ଣ୍ଣଂ ଗଜକର୍ଣ୍ଣଂଚ ତଥାଚ ପୁରୁଷୋତ୍ତମଃ
ଦ୍ୱାରକା କୃଷ୍ଣତୀର୍ଥଂ ଚ ତଥାର୍ବୁଦ ସରସ୍ୱତୀ । ୨୨ ଅ, ୩୮

## ରୁଦ୍ର ଯାମଳ

ଏହି ଯାମଳର ଉତ୍ତର ତନ୍ତ୍ରରେ ଜଗନ୍ନାଥଙ୍କ ନାମ ଦେଖାଯାଏ । (୧୬)

(୧) ମହାକନ୍ଦବାସୀ ମହାନନ୍ଦବାସୀ ପୁରଗ୍ରାମବାସୀ ମହାପୀଠଦେଶୀ ।
ଜଗନ୍ନାଥବକ୍ଷଃସ୍ଥଳସ୍ଥୋ ବରେଣ୍ୟୋ ବୃତାନନ୍ଦକର୍ତ୍ତା ଶିବାନନ୍ଦକର୍ତ୍ତ୍ରୀ ।
୪୪ଶ ଅଧ୍ୟାୟ (୧୧)

---

(୧୫) ମତ୍ସ୍ୟ ପୁରାଣ । ୩୫, ୧୩ ଶ ଅ

(୧୬) ରୁଦ୍ର ଯାମଳ ।

(୨) ବ୍ରହ୍ମା ବିଷ୍ଣୁଶ୍ଚ ରୁଦ୍ରଶ୍ଚ ଈଶ୍ୱରଶ୍ଚ ସଦାଶିବଃ
ତତଃ ପରଶିବଃସମ୍ଯୋଃ ଷଟ୍‌ଶିବାଃ ଷଟ୍ ପ୍ରକାଶକାଃ ।
କ୍ରିୟା ନବଷ୍ଟଃ ସର୍ବତ୍ର ଭାବନାଗ୍ରହରୂପଧୃକ୍
ସ ପଶ୍ୟତ ଜଗନ୍ନାଥଂ କମଲୋରୁଗତଂ ହରିଃ ।
୪୫ଶ ଅଧ୍ୟାୟ, ୧୦, ୧୨

## କାଳିକା ପୁରାଣ

ଭାରତର ପ୍ରଥମ ତାନ୍ତ୍ରିକ ପୀଠ ରୂପରେ 'ଓଡ୍ରଶା ଜଗନ୍ନାଥ' କାଳିକା-ପୁରାଣରେ ସ୍ଥାନ ପାଇଛି । (୧୭ କ)

ଓଡ୍ୟାଖ୍ୟଂ ପ୍ରଥମଂ ପୀଠଂ ଦ୍ୱିତୀୟଂ ଜାଲଶୈଳକଂ
ତୃତୀୟଂ ପୂର୍ଣ୍ଣ ପୀଠନ୍ତୁ କାମରୂପଂ ଚତୁର୍ଥକଂ ।
ଓଡ୍ରପୀଠଂ ପଶ୍ଚିମେତୁ ତଥୈବୋଡ୍ରେଶ୍ୱରୀ ଶିବାଂ
କାତ୍ୟାୟିନୀଂ ଜଗନ୍ନାଥ ମୋଡ୍ରେଶ ଚ ପ୍ରପୂଜୟେତ୍ ।

## ତନ୍ତ୍ର ଯାମଳ

ତନ୍ତ୍ର ଯାମଳରେ— (୧୭ ଖ)

ଭାରତେ ଚୋତ୍କଳେ ଦେଶେ ଭୂସ୍ୱର୍ଗେ ପୁରୁଷୋତ୍ତମେ
ଦାରୁରୂପୀ ଜଗନ୍ନାଥୋ ଭକ୍ତାନାମଭୟପ୍ରଦଃ ।

କୂର୍ମପୁରାଣରେ ତନ୍ତ୍ରଯାମଳର ଉଲ୍ଲେଖ ଅଛି । କୂର୍ମପୁରାଣ ଚତୁର୍ଥ ଶତାବ୍ଦୀ ବା ତା' ପରେ ରଚିତ ହୋଇଥିବା ଜଣାଯାଏ । ଅତଏବ ଖ୍ରୀଷ୍ଟୀୟ ଚତୁର୍ଥ ଶତାବ୍ଦୀ ବା ତତ୍ପୂର୍ବରୁ ପୁରୁଷୋତ୍ତମ କ୍ଷେତ୍ର ପ୍ରସିଦ୍ଧି ଲାଭ କରି ସାରିଥିଲା ବୋଲି କହିବାକୁ ହେବ ।

## ବିଷ୍ଣୁ ପୁରାଣ

ବିଷ୍ଣୁ ପୁରାଣର ଏକ ପ୍ରାଚୀନ ପୋଥିରେ ରାଜ୍ୟ ବିସ୍ତୃତ ପ୍ରସଙ୍ଗରେ "ଓଡ୍ର" ଓ "ସମୁଦ୍ରତଟ ପୁରୀ" ର ନାମ ଉଲ୍ଲେଖ ଥିବା ପାର୍ଜିଟର୍ ଲେଖିଛନ୍ତି । କେତେକ ପୋଥିରେ ଏହି ସ୍ଥାନରେ "ଓଡ୍ର" ସ୍ଥାନରେ 'ଅନ୍ଧ୍ର' ଓ 'ସମୁଦ୍ର ତଟ ପୁରୀ' ସ୍ଥାନରେ

---

(୧୭ କ) କାଳିକାପୁରାଣ . ୭୪ ଅଧ୍ୟାୟ ।
(୧୭ ଖ) ତନ୍ତ୍ର ଯାମଳ :

'ତାମ୍ରା ନଗର' ପାଠ ଥିବା ଜଣାଯାଏ । କେଉଁ ପାଠଟି ଭ୍ରମଶୂନ୍ୟ ତାହା କହି ନ ହେଲେ ମଧ୍ୟ ଓଡ୍ର ଓ ସମୁଦ୍ରତଟପୁରୀ ପାଠଟି ଯେ ଏହି କ୍ଷେତ୍ରର ପ୍ରାଚୀନତା ପ୍ରମାଣ କରୁଛି ଏଥିରେ ସନ୍ଦେହ ନାହିଁ । ଖ୍ରୀଷ୍ଟାବ୍ଦ ଚତୁର୍ଥ ଶତାବ୍ଦୀ ପୂର୍ବରୁ ଏହି ପୁରାଣ ରଚିତ ହୋଇଥିବା ଅନୁମାନ କରାଯାଏ । (୧୭ ଗ)

## ସ୍କନ୍ଦ ପୁରାଣ

ସ୍କନ୍ଦ ପୁରାଣ ଖ୍ରୀଷ୍ଟୀୟ ସପ୍ତମ ଶତାବ୍ଦୀ ପୂର୍ବରୁ ରଚିତ ହୋଇଥିବା କେହି କେହି କହନ୍ତି । ଏହି ପୁରାଣରେ ପୁରୁଷୋତ୍ତମ କ୍ଷେତ୍ର ସମ୍ବନ୍ଧରେ ବିସ୍ତୃତ ବିବରଣ ଅଛି । (୧୭ ଘ)

## ଐତିହାସିକ ପ୍ରମାଣ—

(୧) ଶ୍ରୀ ଶଙ୍କରାଚାର୍ଯ୍ୟଙ୍କ ଓଡ଼ିଶା ଆଗମନ ଓ ଜଗନ୍ନାଥ ବା ପୁରୁଷୋତ୍ତମ ପୁରୀରେ ପୀଠ ସ୍ଥାପନ ଏକ ପ୍ରଧାନ ଐତିହାସିକ ଘଟଣା । ଶଙ୍କରାଚାର୍ଯ୍ୟଙ୍କ ଆବିର୍ଭାବ କାଳ ସମ୍ବନ୍ଧରେ ମତଭେଦ ଦେଖାଯାଏ—ଖ୍ରୀଷ୍ଟୀୟ ୬ଷ୍ଠ ଶତାବ୍ଦୀଠାରୁ ୯ମ ଶତାବ୍ଦୀ ଭିତରେ ବିଭିନ୍ନ ସମୟ ବିଭିନ୍ନ ପଣ୍ଡିତଙ୍କଦ୍ୱାରା ନିର୍ଣ୍ଣିତ ହୋଇଛି । ଏହାଙ୍କ ସମୟରେ ଜଗନ୍ନାଥଙ୍କ ମନ୍ଦିର ଓ ଠାକୁରମାନଙ୍କର ସେବାପୂଜାରେ ବିଶେଷ ସଂଗଠନ ଦେଖାଯାଇଥିଲା । ସେହି କାରଣରୁ ଶଙ୍କରାଚାର୍ଯ୍ୟ ମଠ ବା ଭୋଗବର୍ଦ୍ଧନ ମଠ (ପ୍ରଚଳିତ ନାମ ଗୋବର୍ଦ୍ଧନ ମଠ) ଶ୍ରୀଜଗନ୍ନାଥ ମନ୍ଦିରର ସେବା, ନୀତି, ପ୍ରଭୃତିରେ ବିଶେଷ ଅଧିକାର ପାଇ ଆସୁଅଛି ।

(୨) ଶ୍ରୀ ଶଙ୍କରାଚାର୍ଯ୍ୟଙ୍କ ପରେ ନିମ୍ବାର୍କ ସ୍ୱାମୀ ସ୍ୱ-ପ୍ରତିଷ୍ଠିତ ଭେଦାଭେଦ ସିଦ୍ଧାନ୍ତ ପ୍ରଚାର କରିବା ପାଇଁ ପୁରୁଷୋତ୍ତମ ବା ଜଗନ୍ନାଥ ପୁରୀ ଆସିଥିଲେ । ଏହା ୯ମ ଶତାବ୍ଦୀ ପୂର୍ବର ଘଟଣା । ପୁରୀ ଓ ଓଡ଼ିଶାର ବିଭିନ୍ନ ସ୍ଥାନରେ ତାଙ୍କ ଦ୍ୱାରା ପ୍ରତିଷ୍ଠିତ କେତେକ ମଠ ଏହାର ନିଦର୍ଶନ ; ପୁରୀର ପ୍ରସିଦ୍ଧ ରାଧାବଲ୍ଲଭ ମଠ ଅନ୍ୟତମ । ଏକାଦଶ, ଦ୍ୱାଦଶ ଶତାବ୍ଦୀରେ ଗୀତଗୋବିନ୍ଦର କବି ଉତ୍କଳୀୟ ଗୋସ୍ୱାମୀ ଜୟଦେବ ଏହି ମଠରେ ବାସ କରୁଥିବା ଜଣାଯାଏ ।

(୩) ଖ୍ରୀଷ୍ଟୀୟ ୬ଷ୍ଠ ଓ ୭ମ ଶତାବ୍ଦୀରେ ବୌଦ୍ଧ ବଜ୍ରଯାନୀମାନେ ଶୂନ୍ୟପୁରୁଷ ଉପାସନାରେ ପ୍ରସିଦ୍ଧି ଲାଭ କରିଥିଲେ । ଓଡ୍ଡିଆନ୍ ବା ଓଡ଼ିଶାରୁ ବଜ୍ରଯାନ ଉଦ୍ଭବ ହୋଇଥିଲା । ଜାହୋର ବା ସାହୋର ଓଡ୍ଡିଆନ୍‌ର ପ୍ରଧାନ ନଗରୀ ଥିଲା ।

---

(୧୭ ଗ) PARGITER :— Dynasties of the Kali Age. Introduction :— ତିନ ମନ୍ଦିରେର କଥା ( ବଙ୍ଗଳା ) । ପୁରୀର କଥା ।

(୧୭ ଘ ) ସ୍କନ୍ଦପୁରାଣ ପୃ. ୧୩୮ ।

ବର୍ତ୍ତମାନର ସମ୍ବଲପୁର ଅଞ୍ଚଳ ଏହି ସାମ୍ଭୋର ଥିବା ଅନୁମାନ କରାଯାଏ । ରାଜା ଇନ୍ଦ୍ରଭୂତ, ତାଙ୍କ ଭଗିନୀ ଲକ୍ଷ୍ମୀଙ୍କରା ଓ ପୁତ୍ର ପଦ୍ମସମ୍ଭବ ବଜ୍ରଯାନର ପ୍ରଧାନ ସାଧକ ଏବଂ ଏମାନେ ଦେଶବିଦେଶରେ, ବିଶେଷତଃ ତିବ୍ବତ, ନେପାଳ ପ୍ରଭୃତି ଅଞ୍ଚଳରେ, ଏହି ଶାଖାର ତତ୍ତ୍ୱ ପ୍ରଚାର କରି ପ୍ରତିଷ୍ଠା ଲାଭ କରିଥିଲେ । ଏହି ଅଞ୍ଚଳମାନଙ୍କରେ ପଦ୍ମସମ୍ଭବ "ରିମ୍ପୋଚି" ନାମରେ ପୂଜିତ ହେଉଛନ୍ତି । ଇନ୍ଦ୍ରଭୂତ ବଜ୍ରଯାନତତ୍ତ୍ୱ ସମ୍ବନ୍ଧରେ କେତେଖଣ୍ଡ ପ୍ରାମାଣିକ ଗ୍ରନ୍ଥ ଲେଖିଛନ୍ତି; "ଜ୍ଞାନସିଦ୍ଧି" ଏମାନଙ୍କ ମଧ୍ୟରେ ଏକ ପ୍ରଧାନ ଗ୍ରନ୍ଥ । ଏଥିର ମଙ୍ଗଳାଚରଣରେ ବୁଦ୍ଧଦେବଙ୍କୁ ଜଗନ୍ନାଥ ରୂପରେ ସେ ପ୍ରାର୍ଥନା କରିଛନ୍ତି ।

(୧) ପ୍ରଣିପତ୍ୟ ଜଗନ୍ନାଥଂ ସର୍ବଜ୍ଞନ ବରାର୍ଚ୍ଚିତଂ
ସର୍ବବୁଦ୍ଧମୟଂ ସିଦ୍ଧି ବ୍ୟାପିନଂ ଗଗନୋପମଂ । ୧ମ ସର୍ଗ । (୧୮ କ)

ଏହି ଗ୍ରନ୍ଥର ଅନ୍ୟାନ୍ୟ ସ୍ଥଳରେ ମଧ୍ୟ "ଜଗନ୍ନାଥ" ନାମଟି ବୁଦ୍ଧଙ୍କୁ ବୁଝାଇବାରେ ବ୍ୟବହୃତ ହୋଇଛି ।

(୨) ସଃ ଗୁରୁଃ ଶିଷ୍ୟସତ୍ତ୍ୱାସ୍ତ ସର୍ବବୁଦ୍ଧାନୁକାରକଃ
ଇତ୍ୟୁବାଚ ଜଗନ୍ନାଥୋ ନାନ୍ୟୋ ବୈ ଗୁରବଃ ସ୍ମୃତାଃ । (ଖ)

(୩) ତାନ୍ ପ୍ରଯୁଜ୍ୟା ଜଗନ୍ନାଥୈଃ ବଜ୍ରସତ୍ତ୍ୱ ବିଭାବନୈଃ
ଭୂକବର୍ଣ୍ଣ ସମାଯୁକ୍ତ ମୁଦ୍ରାମଣ୍ଡଳକୈ ସ୍ତଥା । (ଗ)

(୪) ଅତଏବ ଜଗନ୍ନାଥ ବାଲାନାଂ ପ୍ରତିବୋଧନେ
ନବର୍ତ୍ତିଂ ଦର୍ଶୟନ୍ତ୍ୟେବ ରୂପସ୍ୟା ନତ୍ୟଦର୍ଶକାଃ । (ଘ)

(୫) ସର୍ବଜ୍ଞଃ ସର୍ବଦର୍ଶୀଂଚ ସର୍ବଲୋକାର୍ଥକାରକଃ
ତତ୍ର ତତ୍ର ଜଗନ୍ନାଥୈଃ ଦର୍ଶିତଃ କରୁଣାତ୍ମଭିଃ । (ଙ)

ଇନ୍ଦ୍ରଭୂତ "ବୁଦ୍ଧ"ଙ୍କୁ "ଜଗନ୍ନାଥ" ନାମରେ ପରିଚିତ କରାଇଥିବାରୁ ପୁର୍ବରୁ "ଜଗନ୍ନାଥ"ଙ୍କ ନାମର ସୂଚନା ଏଥିରେ ଥିବା ଅନୁମାନ କରିବା ଅସଙ୍ଗତ ନୁହେଁ । ପ୍ରାଚୀନ କାଳରୁ "ବୁଦ୍ଧଙ୍କୁ" ବିଷ୍ଣୁଙ୍କର ନବମ ଅବତାର ରୂପରେ

---

୧୮ । ଜ୍ଞାନସିଦ୍ଧି—(କ) ୧ମ ସର୍ଗ, ପ୍ରଥମ ଶ୍ଳୋକ ।
(ଖ) ୧ମ ସର୍ଗ, ୨୭ ଶ୍ଳୋକ ।
(ଗ) ୧ମ ସର୍ଗ, ୯୨ ଶ୍ଳୋକ । (ଘ) ୨ୟ ସର୍ଗ, ୨୩ ଶ୍ଳୋକ ।
(ଙ) ୫ମ ସର୍ଗ, ୮ମ ଶ୍ଳୋକ ।

ହିନ୍ଦୁମାନେ ପୂଜା କରଅଛନ୍ତି । ଓଡ଼ିଶାରେ ଜଗନ୍ନାଥ "ବୌଦ୍ଧ" ରୂପରେ ପୂଜା ପାଉଥିବା କିମ୍ବଦନ୍ତୀ ମଧ୍ୟ ପ୍ରାଚୀନ । "ବୌଦ୍ଧ" ସମ୍ବନ୍ଧରେ ଉପଯୁକ୍ତ ପ୍ରମାଣ ନ ଥିଲେ ମଧ୍ୟ ବୁଦ୍ଧଙ୍କୁ ବିଷ୍ଣୁଙ୍କ ଅବତାର ରୂପରେ ମାନ୍ୟ କରିବା ପ୍ରଥା ପ୍ରଚଳିତ ଲାଭ କରିଛି । ବହୁ ଓଡ଼ିଆ କବି ଜଗନ୍ନାଥଙ୍କୁ 'ବୌଦ୍ଧ' ବୋଲି ପରିଚିତ କରାଇଥିବା ଏହାର ପ୍ରମାଣ । ଏମାନେ "ଶୂନ୍ୟ ପୁରୁଷ" ସ୍ଥାନରେ 'ବୌଦ୍ଧ' ନାମ ବ୍ୟବହାର କରିଥିବା ସୁସ୍ପଷ୍ଟ ।

ବଜ୍ରଯାନର ଉଦ୍ଭବ ବେଳକୁ ବୈଦିକ ଦେବତା "ଶୂନ୍ୟରୂପୀ ଜଗନ୍ନାଥଙ୍କୁ" 'ବୁଦ୍ଧ' ରୂପରେ ବଜ୍ରଯାନୀ ତାନ୍ତ୍ରିକ ବୌଦ୍ଧମାନେ ଦେଖିଥିବା ସମ୍ଭବ । ଏହି ସମୟକୁ "ଜଗନ୍ନାଥ"ଙ୍କ ପ୍ରସିଦ୍ଧି ଦେଶରେ ବିଦ୍ୟମାନ ଥିବା ଏଥିରୁ ସୂଚିତ ହେଉଛି ।

ଇନ୍ଦ୍ରଭୂତି "ଓଡ଼୍ଡ଼ିୟାନ୍"ର ଲୋକ ଥିବା ସ୍ୱ-ଗ୍ରନ୍ଥରେ ଲେଖିଛନ୍ତି ।

"ଶ୍ରୀମଦୋଡ୍ଡ଼ିୟାନ ବିନିର୍ଗତା ଜ୍ଞାନସିଦ୍ଧି ନାମ ସାଧନୋପାୟିକ ସମାପ୍ତା ।
କୃତିରିୟଂ ଶ୍ରୀ ଇନ୍ଦ୍ରଭୂତିପାଦାନାମ୍ ।"

ଏହି ଓଡ଼୍ଡ଼ିୟାନ୍ "ଓଡ଼୍ଡ଼ିୟ" ବା "ଓଡ୍ୟପୀଠ" ରୂପରେ ହିନ୍ଦୁତନ୍ତ୍ର ଗ୍ରନ୍ଥମାନଙ୍କରେ ପରିଚିତ ।

ବୌଦ୍ଧ ଗ୍ରନ୍ଥମାନଙ୍କର 'ଓଡ଼୍ଡ଼ିୟାନ' ଉଡ୍ର ବା ଓଡ୍ର ଦେଶ । ଉଡ଼୍ଡ଼ିୟାନ୍‌ରେ ବଜ୍ରଯାନ ଉଦ୍ଭବ ହୋଇଥିଲା । ବଜ୍ରଯାନର ଚାରି ପ୍ରଧାନ ପୀଠ ହେଉଛି—କାମାକ୍ଷା, ଶ୍ରୀହଟ୍ଟ, ପୂର୍ଣ୍ଣଗିରି ଓ ଉଡ଼୍ଡ଼ିୟାନ୍ । କାମାକ୍ଷା ଓ ଶ୍ରୀହଟ୍ଟ ପୂର୍ବଭାରତର ପ୍ରାଚୀନ ବଙ୍ଗ ଓ ଆସାମରେ ଅବସ୍ଥିତ । ପୂର୍ଣ୍ଣଗିରି ବର୍ତ୍ତମାନର ଆନ୍ଧ୍ର ପ୍ରଦେଶର ଶ୍ରୀକାକୁଲମ୍ ଜିଲ୍ଲାର ପ୍ରସିଦ୍ଧ ଶୈବ ପୀଠ ମୁଖଲିଙ୍ଗନଗର । ଏହି ପୀଠଟି ପ୍ରାଚୀନ ଦକ୍ଷିଣ କଳିଙ୍ଗର ଅନ୍ତର୍ଭୁକ୍ତ ଥିଲା ଏବଂ ତ୍ରିକଳିଙ୍ଗାବନୀନଗର ବା ତ୍ରିକଳିଙ୍ଗନଗର ବା କଳିଙ୍ଗନଗର ନାମରେ ପରିଚିତ ଥିବା ଗଙ୍ଗବଂଶ ରାଜାମାନଙ୍କର ବହୁ ଅନୁଶାସନରୁ ଜଣାଯାଏ । ଏହି ଗଙ୍ଗ ଅନୁଶାସନମାନଙ୍କରେ ମୁଖଲିଙ୍ଗ ପୂର୍ଣ୍ଣଗିରି ନାମରେ ମଧ୍ୟ ପରିଚିତ ହୋଇଛି । ବଜ୍ରଯାନର ଏକ ମୁଖ୍ୟ ତାନ୍ତ୍ରିକ ଦେବୀ କୁରୁକୁଲା ଓଡ଼ିଶାରେ ପୂଜା ପାଉଥିଲେ; ଏହି ଦେବୀଙ୍କ କେତୋଟି ପ୍ରତିମା ଓଡ଼ିଶାରେ ମିଳିଲାଣି । ଏହିସବୁ ବିଚାରରୁ ମନେହୁଏ ଇନ୍ଦ୍ରଭୂତି ସ୍ୱ ରାଜ୍ୟର 'ଶୂନ୍ୟପୁରୁଷ' "ଜଗନ୍ନାଥ"ଙ୍କୁ ବୁଦ୍ଧ ରୂପରେ ଲେଖିଛନ୍ତି ।

(୪) ନବମ ଶତାବ୍ଦୀରେ ମୁରାରି ମିଶ୍ର ଅନର୍ଘରାଘବ ନାଟକ ରଚନା କରିଥିଲେ । ଏହି ନାଟକଟି ପୁରୁଷୋତ୍ତମରେ ପୁରୁଷୋତ୍ତମଙ୍କ ଯାତ୍ରା ସମୟରେ ଅଭିନୀତ ହୋଇଥିବା ସେ ସ୍ୱ-ଗ୍ରନ୍ଥରେ ଲେଖିଛନ୍ତି :— (୧୯)

---

୧୯ । ମୁରାରି ମିଶ୍ର—ଅନର୍ଘରାଘବ ନାଟକ ।

ନାନ୍ଦ୍ୟନ୍ତେ ସୂତ୍ର-ଧାରଃ । ଅଲମତି ବିସ୍ତରେଣ ।
ଭୋ ଭୋ ଲବଣୋଦବେଲାବନାଳୀ ତମାଲତରୁ କନ୍ଦଳସ୍ୟ,
ତ୍ରିଭୁବନମୌକମଣ୍ଡନ ମହାନୀଳମଣେଃ କମଳାକୁଚକଳଶକେଳି-
କସ୍ତୁରିକା-ପତ୍ରାଙ୍କୁରସ୍ୟ,
ଭଗବତଃ ଶ୍ରୀପୁରୁଷୋତ୍ତମସ୍ୟ ଯାତ୍ରାୟାଂ ମୁପସ୍ଥାନୀୟା ସଭାସଦଃ ।

ଏଥିରୁ ଜଣାଯାଉଛି ଯେ ନବମ ଶତାବ୍ଦୀବେଳକୁ ପୁରୁଷୋତ୍ତମ କ୍ଷେତ୍ର ଓ ପୁରୁଷୋତ୍ତମ ଜଗନ୍ନାଥଙ୍କର ମାହାତ୍ମ୍ୟ ପ୍ରାଧାନ୍ୟ ଲାଭ କରିସାରିଥିଲା ।

(୫) ଏକାଦଶ ଶତାବ୍ଦୀର ମଧ୍ୟଭାଗରେ ଶ୍ରୀକୃଷ୍ଣ ମିଶ୍ରଙ୍କଦ୍ୱାରା ସଂସ୍କୃତ ଭାଷାରେ ରଚିତ "ପ୍ରବୋଧଚନ୍ଦ୍ରୋଦୟ" ନାଟକର ଦ୍ୱିତୀୟ ଅଙ୍କର କେତେକ ଅଂଶରୁ ଜଣାଯାଏ ଯେ ନାଟକ ରଚନାବେଳକୁ ଜଗନ୍ନାଥଙ୍କ ମନ୍ଦିର ଥିଲା । ଏହା ଚୋଡ଼ଗଙ୍ଗଦେବଙ୍କ ଓଡ଼ିଶା ଅଧିକାର ପୂର୍ବର ଘଟଣା । ଅତଏବ ଚୋଡ଼ଗଙ୍ଗଙ୍କ ପୂର୍ବରୁ ପୁରୀରେ ଜଗନ୍ନାଥଙ୍କ ମନ୍ଦିର ଥିବା ପ୍ରମାଣିତ ହେଉଛି । (୧୦)

ଇତ ପ୍ରବଶ୍ୟତି ପତ୍ର ହସ୍ତେ ପୁରୁଷଃ :—

ପୁରୁଷ—ଅହମୁତ୍କଳଦେଶାଦାଗତୋଽସ୍ମି । ଅସ୍ତି ତତ୍ର ସାଗରତୀରେ ସନ୍ନିବେଶ ପୁରୁଷୋତ୍ତମସଜ୍ଞିତଂ ଦେବାୟତନମ୍ । ତସ୍ମିନ୍ଦମାନାଭ୍ୟାଂ ଭଟ୍ଟାରକାଭ୍ୟାଂ ମହାରାଜ ସକାଶଂ ପ୍ରେଷିତୋଽସ୍ମି । ଏଷା ବାରାଣସୀ । × × ×

ପୁରୁଷଃ—ଅହଂ ପୁରୁଷୋତ୍ତମାଦାଗତୋଽସ୍ମି ।

ମହାମହୋଃ—(ପତ୍ରଂ ବାଚୟତି)—ସ୍ୱସ୍ତି ବାରାଣସ୍ୟାଂ ମହାରାଜାଧିରାଜ ପରମେଶ୍ୱର ମହାମହୋପାଦାନାମ୍ ପୁରୁଷୋତ୍ତମାୟତଭାଦାତ୍ ମଦମାନୀ ସାଷ୍ଟାଙ୍ଗ-ପାତଂ ପ୍ରଣମ୍ୟବିଜ୍ଞାପୟତଃ ।"

ଶ୍ରୀକୃଷ୍ଣ ମିଶ୍ର ଚେଦୀ ରାଜା ଲକ୍ଷ୍ମୀକର୍ଣ୍ଣ (ଖ୍ରୀ: ୧୦୪୧-୧୦୭୦)ଙ୍କ ସମସାମୟିକ ଥିବା ଅନୁମାନ କରାଯାଏ ।

(୬) ଏକାଦଶ ଶତାବ୍ଦୀର ଶେଷାର୍ଦ୍ଧରେ କାଳଚୁରୀ ରାଜା ଗୋପାଳଦେବଙ୍କ ପୁଜାରୀପାଲି ଶିଳାଲେଖରେ 'ପୁରୁଷୋତ୍ତମ' ଏକ ପ୍ରଧାନ କ୍ଷେତ୍ର ଥିବା ବିଷୟ

---

୧୦ । ପ୍ରବୋଧଚନ୍ଦ୍ରୋଦୟ ନାଟକ—ଶ୍ରୀକୃଷ୍ଣ ମିଶ୍ର ।
Orissa Historical Research Journal. Vol. III. No. 1. 1954 June.
ଶ୍ରୀ କେଦାରନାଥ ମହାପାତ୍ରଙ୍କ ଦ୍ୱାରା ଉଦ୍ଧୃତ ଅଂଶ ।

ଦେବୀପ୍ରସନ୍ନ ହୋଇ ରାଜାଙ୍କୁ ବର ଦେବା ପ୍ରସଙ୍ଗରେ ବର୍ଣ୍ଣିତ ହୋଇଅଛି । (୨୧)

ଶ୍ରୀକେଦାରେ ପ୍ରୟାଗେ ଚ ପୁଷ୍କରେ ପୁରୁଷୋତ୍ତମେ
ଶ୍ରୀମେଶ୍ୱରେ ନର୍ମଦାୟାଂ ଶ୍ରୀଗୋପାଳପୁରେ ତଥା ।

(୬) ଦ୍ୱାଦଶ ଶତକର ଆରମ୍ଭରେ ମାଳବର ଜଣେ ରାଜାଙ୍କର ଏକ ଶିଳାଲିପିରେ ପୁରୁଷୋତ୍ତମ କ୍ଷେତ୍ରର ସୂଚନା ଅଛି । ଲିପିଟି ନାଗପୁର ଶିଳାଲିପି ନାମରେ ଖ୍ୟାତ ଏବଂ ବିକ୍ରମସମ୍ବତ୍ ୧୧୬୧ ବା ଖ୍ରୀ ୧୧୦୪ ରେ ଶିଳାଲିପିଟି ରଚିତ । ଏଥିରେ ପୂର୍ବ ମହୋଦଧିର ବର୍ଣ୍ଣନା ଅଛି ଏବଂ 'ପୁରୁଷୋତ୍ତମ' ନାମ ଅଛି । (୨୨)

ଦେବୋଽସୌ ପୁରୁଷୋତ୍ତମଃ ସ ଭଗବାନାଶିଶ୍ରିୟେ ଯଃ ଶ୍ରିୟା,
ଯେନେଦଂ ବଳି ବୈରବନ୍ଧବିଧୁନା ବିଶ୍ୱଂ ସମାଶ୍ୱାସିତଂ ।
ଯେନେଧାରି ବସୁନ୍ଧରେତି ଦଧତଃ ସାନନ୍ଦ ମନ୍ଦାକ୍ଷତାଂ,
ତସ୍ୟ ପ୍ରାଚ୍ୟ ପୟୋନିଧୌ ବୁଧଜନୈଃ ବ୍ୟାକସ୍ତୁତ ପ୍ରସ୍ତୁତା ।

(୮) ବିଖ୍ୟାତ ସୌରଶାସ୍ତ୍ରବିତ୍ ଶତାନନ୍ଦ 'ରତ୍ନମାଳା' ନାମକ (ଅପ୍ରକାଶିତ) ଗ୍ରନ୍ଥଟି ରଚନା କରିଥିଲେ । ସେ ଭାସ୍ୱତୀ ନାମକ ଅନ୍ୟ ଏକ ଗ୍ରନ୍ଥ କଳିଯୁଗାବ୍ଦ ୪୨୦୦ରେ ବା ଖ୍ରୀ. ୧୧୦୦ ରେ ସମାପ୍ତ କରିଥିଲେ । 'ରତ୍ନମାଳିକା'ରେ ସେ ପୁରୁଷୋତ୍ତମଙ୍କୁ ସ୍ତୁତି କରିଛନ୍ତି । ଶତାନନ୍ଦ ପୁରୁଷୋତ୍ତମବାସୀ ଥିଲେ । ପରବର୍ତ୍ତୀ ସ୍ମୃତିକାରମାନେ ତାଙ୍କ ଗ୍ରନ୍ଥକୁ ପ୍ରାମାଣିକ ରୂପେ ଗ୍ରହଣ କରି ସ୍ୱ-ସ୍ମୃତି ଗ୍ରନ୍ଥମାନଙ୍କରେ ବହୁ ବାକ୍ୟ ଉଦ୍ଧାର କରିଛନ୍ତି । (୨୩)

ଯସ୍ୟ ପ୍ରଭୋ ସର୍ବବିଧ ପ୍ରସନ୍ନ
ଜ୍ଞାନାଞ୍ଜନୈ ରଞ୍ଜିତ ଲୋଚନଶ୍ରୀ
ତ୍ରିକାଳଦର୍ଶୀ ଚ କଳୌ ନରସ୍ୟାତ୍
ତସ୍ମୈ ନମଃ ଶ୍ରୀ ପୁରୁଷୋତ୍ତମାୟ ।

"ଭାସ୍ୱତୀ" ନାମକ ଗ୍ରନ୍ଥରେ ଶତାନନ୍ଦ ନିଜର ପରିଚୟ ଦେଇଛନ୍ତି—ପିତାଙ୍କ ନାମ ଶଙ୍କର, ମାତା ସରସ୍ୱତୀ, ପୁରୁଷୋତ୍ତମନିବାସୀ, ଗ୍ରନ୍ଥ ସମ୍ପୂର୍ଣ୍ଣ ସମୟ କଳିଯୁଗାବ୍ଦ ୪୨୦୦ ।

---

୨୧ । Mahakoshal Historical Society's Papers Vol. II. ପୂଜାରୀପାଲି ଅନୁଶାସନ ।

୨୨ । Epigraphica Indica. Vol. II. P. 180.

୨୩ । ଶତାନନ୍ଦଙ୍କ ରତ୍ନମାଳିକା ଓ ଭାସ୍ୱତୀ । Quoted in O H. R. J. Vol. 3 No. 1.

ଙ୍ଖାଶ୍ୱିବେଦାଦ୍ଧ ଗତେ ଯୁଗାବ୍ଦେ ଦବ୍ୟୋକ୍ତତଃ ଶ୍ରୀପୁରୁଷୋତ୍ତମସ୍ଥ
ଶ୍ରୀମାନ୍ ଶତାନନ୍ଦୋ ଇତୀଦମାହ ସରସ୍ୱତୀ-ଶଙ୍କରସ୍ୟୋସ୍ତନୁଜଃ ।

(୯) ଖ୍ରୀଷ୍ଟୀୟ ଦ୍ୱାଦଶ ଶତାବ୍ଦୀର ପ୍ରଥମାର୍ଦ୍ଧରେ ଦକ୍ଷିଣ କଳିଙ୍ଗର ଗଙ୍ଗବଂଶୀୟ ରାଜା ଅନନ୍ତବର୍ମା ଚୋଡ଼ଗଙ୍ଗଦେବ ଓଡ଼ିଶାକୁ ଜୟ କରିବା ପରେ ସେ ଓ ତାଙ୍କ ବଂଶଧରମାନେ ପ୍ରାୟ ତିନିଶହ ବର୍ଷ ପର୍ଯ୍ୟନ୍ତ ଶ୍ରୀଜଗନ୍ନାଥ ମନ୍ଦିର ସହିତ ଘନିଷ୍ଠ ଭାବରେ ସମ୍ପୃକ୍ତ ଥିବା ବହୁ ଅଭିଲେଖ ଓ ଗ୍ରନ୍ଥରୁ ପ୍ରମାଣିତ ହୁଏ ।

(୧୦) ଦ୍ୱାଦଶ ଶତାବ୍ଦୀରେ ଶ୍ରୀ ରାମାନୁଜାଚାର୍ଯ୍ୟ ପୁରୀରୁ ଆସିଥିଲେ ଏବଂ ତାଙ୍କର ଶିଷ୍ୟ ଗୋବିନ୍ଦଙ୍କ ନାମରେ ଏକ ମଠ ପ୍ରତିଷ୍ଠା କରିଥିଲେ । ତାଙ୍କ ସମ୍ପ୍ରଦାୟ (ଶ୍ରୀ ସମ୍ପ୍ରଦାୟ)ର ବହୁ ମଠ ତାଙ୍କ ପ୍ରଭାବ ଫଳରେ ପୁରୀରେ ଓ ଓଡ଼ିଶାର ବହୁ ସ୍ଥାନରେ ପ୍ରତିଷ୍ଠିତ ହୋଇଛି ।

(୧୧) ଦ୍ୱାଦଶ ଶତାବ୍ଦୀରେ ରାମାନୁଜଙ୍କ ସମସାମୟିକ ଉତ୍କଳର ପ୍ରଥମ ଗଙ୍ଗବଂଶୀୟ ରାଜା ଅନନ୍ତବର୍ମା ଚୋଡ଼ଗଙ୍ଗଦେବ (ଖ୍ରୀ. ୧୧୧୨—୧୧୪୮)ବର୍ତ୍ତମାନର ଜଗନ୍ନାଥ ମନ୍ଦିରର ନିର୍ମାଣ କାର୍ଯ୍ୟ ଆରମ୍ଭ କରିଥିଲେ ଏବଂ ତାଙ୍କ ପରେ ତାଙ୍କ ବଂଶଧର ରାଜା ଅନଙ୍ଗଭୀମଦେବ ସମ୍ପୂର୍ଣ୍ଣ କରିଥିଲେ । ଦ୍ୱାଦଶ ଶତାବ୍ଦୀର ପ୍ରଥମାର୍ଦ୍ଧରେ ଏହି ମନ୍ଦିରର ନିର୍ମାଣ କାର୍ଯ୍ୟ ଆରମ୍ଭ ହୋଇଥିଲା । ପୂର୍ବର ମନ୍ଦିର "ବୈତମ" (ଜୀର୍ଣ୍ଣ) ହୋଇଯିବାରୁ ଚୋଡ଼ଗଙ୍ଗଦେବ ଏହି ମନ୍ଦିର ଆରମ୍ଭ କରିଥିବା ସ୍ପଷ୍ଟ । ଏହାଦ୍ୱାରା ଚୋଡ଼ଗଙ୍ଗଦେବଙ୍କ ପୂର୍ବରୁ ଜଗନ୍ନାଥଙ୍କ ଜୀର୍ଣ୍ଣ ମନ୍ଦିରର ଅବସ୍ଥିତି ପ୍ରମାଣିତ ହେଉଛି । ନଗରୀ ଓ କେନ୍ଦୁପାଟଣା ତାମ୍ର ଶାସନରେ ଚୋଡ଼ଗଙ୍ଗ ମନ୍ଦିର ନିର୍ମାଣ କରିଥିବା ସୂଚନା ଅଛି । ଚୋଡ଼ଗଙ୍ଗଙ୍କ କୀର୍ତ୍ତି ପ୍ରସଙ୍ଗରେ—

ପ୍ରାସାଦଂ ପୁରୁଷୋତ୍ତମସ୍ୟ ନୃପତିଃ କୋ ନାମ କର୍ତ୍ତୁଂକ୍ଷମ
ସ୍ତସ୍ୟେତ୍ୟାଦ୍ୟନୃପୈ-ରୁପେକ୍ଷିତ-ମୟଂ ଚକ୍ରେଥ ଗଙ୍ଗେଶ୍ୱର । (୨୪)

ପୂର୍ବ ରାଜାମାନଙ୍କ ଦ୍ୱାରା ଉପେକ୍ଷିତ ହୋଇଥିବା ପୁରୁଷୋତ୍ତମଙ୍କ ନିମନ୍ତେ ଏକ ମନ୍ଦିର ନିର୍ମାଣ କାର୍ଯ୍ୟ ଏହି ରାଜା କରିଥିଲେ ।

(୧୨) ଗଙ୍ଗବଂଶ ରାଜତ୍ୱ ଓ ତା' ପରେ (ଅର୍ଥାତ୍ ଦ୍ୱାଦଶ ଶତାବ୍ଦୀର ପ୍ରଥମ ପାଦ ଓ ତା' ପରେ) ପୁରୁଷୋତ୍ତମକ୍ଷେତ୍ର, ପୁରୁଷୋତ୍ତମ ବା ଜଗନ୍ନାଥଙ୍କ ମାହାତ୍ମ୍ୟ ବହୁ ଗ୍ରନ୍ଥରେ ଓ ମହାତ୍ମାମାନଙ୍କ ତୀର୍ଥ ଦର୍ଶନରେ ପ୍ରକଟିତ ହୋଇଛି ।

୨୪ । E. I. Vol. 18. J. A. S. B. Vol. 65.

(୧୩) ଖ୍ରୀ. ୧୧୩୭ରେ ଖୋଦିତ, ବିହାର ରାଜ୍ୟ ଅନ୍ତର୍ଗତ ଗୟା ନିକଟସ୍ଥ ଗୋବିନ୍ଦପୁର ଲିପିରୁ ଜଣାଯାଏ ଯେ ମନୋରଥ ନାମକ ଜଣେ ବ୍ୟକ୍ତି "ଶ୍ରୀ ପୁରୁଷୋତ୍ତମ"ଙ୍କୁ ତୀର୍ଥଯାତ୍ରା ଉଦ୍ଦେଶ୍ୟରେ ଆସିଥିଲେ । ଚନ୍ଦ୍ରଗ୍ରହଣ ପଡ଼ିବାରୁ ସେ "ପାରାବାର ତଟ"ରେ ସର୍ବସ୍ୱ ଦାନ କରି ଧର୍ମକର୍ମାଦି କରିଥିଲେ । (୨୪ କ)

ଗତ୍ୱା ଶ୍ରୀ ପୁରୁଷୋତ୍ତମଂ (ଭଗ)ବତୋ ହୃଦ୍ୟ ପ୍ରତିଷ୍ଠାପଦଂ
ପାରାବାର ତଟେ ପଟୀସ୍ୱପି ଲସଚ୍ଚନ୍ଦ୍ର ଚନ୍ଦ୍ରଗ୍ରହଣେଽପି ।
ସର୍ବସ୍ୱଂ ବିତତାର ତର୍ପିତପିତୃସ୍ତୋମଃ କରୋଲ୍ଲାସିତେ—
ସ୍ତୋତ୍ରୈର୍ଯଃ ପିହିତସ୍ୟ ପର୍ବଣି ବିଧୋଃ ସାହାଯ୍ୟମାପ କ୍ଷଣଂ ।

ଦ୍ୱାଦଶ ଶତାବ୍ଦୀର ପ୍ରଥମ ଭାଗ ବେଳକୁ ପୁରୀକ୍ଷେତ୍ର ଖ୍ୟାତି ଲାଭ କରିଥିଲା, ଏହି ଲିପି ଏହାର ଅନ୍ୟ ଏକ ପ୍ରମାଣ ।

(୧୪) ପୁରୀ ସହରର ପ୍ରାଚୀନତା ପ୍ରତି ଦୃଷ୍ଟି ଦେଲେ ମଧ୍ୟ ଏହି ସ୍ଥାନଟି ଅତି ପ୍ରାଚୀନ ଥିବାର ଜଣାଯାଏ । ଯମେଶ୍ୱର, କପାଳମୋଚନ, ଈଶାନେଶ୍ୱର, ପାତାଳେଶ୍ୱର ପ୍ରଭୃତି ମନ୍ଦିର ପୁରୀ ସହରର ବର୍ତ୍ତମାନର ସାଧାରଣ ରାସ୍ତାଠାରୁ ବହୁ ନିମ୍ନରେ ନିର୍ମିତ ହୋଇଛି । ଶଙ୍କରାଚାର୍ଯ୍ୟମଠ, ରାମାନୁଜକୋଟ ପ୍ରଭୃତି କେତେକ ପ୍ରାଚୀନ ସ୍ଥାନ ଭୂମଧ୍ୟସ୍ଥ ଗହ୍ୱର ଭଳି ଜଣାଯାଏ । ପୁରୀରେ ପୂର୍ବେ, ହୁଏତ, ଏପରି ବହୁ ପ୍ରାଚୀନ ସ୍ଥାନ ଥିଲା ଏବଂ ସେ ସମୟରେ ଏଗୁଡ଼ିକର ଗଭୀରତା ନ ଥିଲା । କାଳକ୍ରମେ ସମୁଦ୍ର ବାଲି ଉଡ଼ି ଆସି ଘର ବେଢ଼ା ଚତୁର୍ଦ୍ଦିଗ ଉଚ୍ଚ କରି ଦେଇଛି । ଏହି ପ୍ରାକୃତିକ ପରିବର୍ତ୍ତନ ପାଇଁ ଅବଶ୍ୟ ବହୁ କାଳ ଲାଗିଥିବ । ଶ୍ରୀ ଶଙ୍କରାଚାର୍ଯ୍ୟ ମଠ ପଞ୍ଚମ କି ଷଷ୍ଠ ଶତାବ୍ଦୀରେ ଓ ରାମାନୁଜକୋଟ ଦ୍ୱାଦଶ ଶତାବ୍ଦୀରେ ପ୍ରତିଷ୍ଠିତ ହୋଇଥିଲା । ଏ ଦିଗରୁ ମଧ୍ୟ କ୍ଷେତ୍ରର ପ୍ରାଚୀନତା ସମ୍ବନ୍ଧରେ ସନ୍ଦେହ ରହୁନାହିଁ ।

## କ୍ଷେତ୍ରର ମାହାତ୍ମ୍ୟ

ପୁରୁଷୋତ୍ତମ କ୍ଷେତ୍ର ଭାରତର ଚାରିଧାମ ଭିତରେ ଅନ୍ୟତମ ପ୍ରଧାନ କ୍ଷେତ୍ର । ପଶ୍ଚିମରେ ଦ୍ୱାରକା, ଉତ୍ତରରେ ବଦ୍ରିନାଥ, ଦକ୍ଷିଣରେ ରାମେଶ୍ୱର ଓ ପୂର୍ବରେ ପୁରୁଷୋତ୍ତମ କ୍ଷେତ୍ର—ଏହି ଚାରିଧାମ ହିନ୍ଦୁମାନଙ୍କ ପକ୍ଷରେ ଅତି ପବିତ୍ର । ଅନ୍ୟ ତିନିଧାମ ଅପେକ୍ଷା ପୁରୀ ଧାମ ମହାପ୍ରସାଦ ଯୋଗୁଁ ବେଶି ପ୍ରାଧାନ୍ୟ ଲାଭ କରିଛି ।

ପୁରାଣମାନଙ୍କରେ ଏହି ପୁରୁଷୋତ୍ତମକ୍ଷେତ୍ରର ମାହାତ୍ମ୍ୟ ବିସ୍ତୃତ ଭାବରେ ବର୍ଣ୍ଣିତ ହୋଇଅଛି । ସୃଷ୍ଟିର ପ୍ରଳୟ କାଳରେ କେବଳ ନୀଳଗିରି ଛଡ଼ା ଅନ୍ୟ ସବୁ ପଦାର୍ଥ ପ୍ରଳୟ ଜଳରେ ବୁଡ଼ିଯାଇଥିଲା । ସ୍ୱୟଂ ନାରାୟଣ ନୀଳଗିରିର ଅକ୍ଷୟବଟ ମୂଳେ ଏକ

---

(୨୪ କ) Epigraphica Indica. Vol. II. P. 339.
ଡାକ୍ତର କିଲ୍‌ହର୍ଣ୍ଣଙ୍କ ସମ୍ପାଦିତ ଗୋବିନ୍ଦପୁର ଲିପି ।

ବଟ ପତ୍ରରେ ଭାସୁଥିଲେ । ଭାସୁଥିବା ସପ୍ତକଳ୍ପଜୀବୀ-ମାର୍କଣ୍ଡେୟ ମୁନିଙ୍କୁ ନାରାୟଣ ଏହି ବୃକ୍ଷ ମୂଳରେ ଉଦର ମଧ୍ୟରେ ଅଶ୍ରୟ ଦେଇଥିଲେ । ନୀଳଗିରିର ରୋହିଣୀକୁଣ୍ଡରେ ଏକ କାକ ପତିତ ହେବାମାତ୍ରେ ଦିବ୍ୟରୂପ ଧାରଣ କରି ଚତୁର୍ଭୁଜ ହୋଇ ସ୍ୱଦେହରେ ବୈକୁଣ୍ଠକୁ ଗମନ କରିଥିଲା ।

ପୁରୁଷୋତ୍ତମ କ୍ଷେତ୍ର ସ୍ୱୟଂ ପୁରୁଷୋତ୍ତମଙ୍କର ବପୁସ୍ୱରୂପ । ପୁରୁଷୋତ୍ତମ ସର୍ବସଙ୍ଗ ପରିତ୍ୟାଗ କରି, ସୁରାସୁରମାନଙ୍କୁ ଅତିକ୍ରମ କରି, ଦେହଧାରଣ ପୂର୍ବକ ଏହି କ୍ଷେତ୍ରରେ ଅଧିଷ୍ଠାନ କରନ୍ତି । ଏହି କ୍ଷେତ୍ର ସେହି ହେତୁ ସୃଷ୍ଟି ଓ ପ୍ରଳୟର ଆକ୍ରମଣରୁ ବହିର୍ଭୂତ । ବ୍ରହ୍ମା, ସୁର, ଅସୁର, ସମସ୍ତଙ୍କ ପ୍ରତି ଏହା ଅତି ଦୁର୍ଲଭ ସ୍ଥାନ; ପୃଥିବୀରେ ଏହି ସ୍ଥାନଟି ପରମ ଗୁହ୍ୟ ।

> ସର୍ବସଙ୍ଗ ପରିତ୍ୟକ୍ତସ୍ତତ୍ର ତିଷ୍ଠାମି ଦେହଭୃତ୍
> ସୁରାସୁରାବତିକ୍ରମ୍ୟ ବର୍ତ୍ତେଽହଂ ପୁରୁଷୋତ୍ତମେ । ୩୬ ।
> ସୃଷ୍ଟ୍ୟାଲୟୈରନାକ୍ରାନ୍ତଃ କ୍ଷେତ୍ରଂ ମେ ପୁରୁଷୋତ୍ତମମ୍ । ୩୭ ।
> ପୃଥିବ୍ୟାଂ ଗୋପିତଂ ସ୍ଥାନଂ ତବାପି ସୁଦୁର୍ଲଭଂ । ୩୫ । (୨୫)

ପୁଣି, ସର୍ବଦା ଶାନ୍ତ, ବୈରାଗ୍ୟ ଓ ଜ୍ଞାନଯୁକ୍ତ ଲୋକଙ୍କ ପକ୍ଷରେ ଯେପରି ଅଜ୍ଞାନଙ୍କ ବନ୍ଧୁଳର ମଧ୍ୟ ସେପରି ଏହି କ୍ଷେତ୍ର ମୋକ୍ଷପ୍ରଦ ।

> ଅହୋ ସୁଦୁର୍ଲଭଂ କ୍ଷେତ୍ରମଜ୍ଞାନାନାଂ ବିମୋଚକମ୍
> କିଂ ପୁନଃ ସତତଂ ଶାନ୍ତ-ବୈରାଗ୍ୟ-ଜ୍ଞାନସଂଯୁତାମ୍ । (୨୫ କ)

ବିମଳାତ୍ମା ବ୍ୟକ୍ତିମାନଙ୍କର ବ୍ରତ, ତୀର୍ଥ, ଯଜ୍ଞ ଓ ଦାନରେ ଯେଉଁ ପୁଣ୍ୟ ହୁଏ, ଏହି କ୍ଷେତ୍ରରେ ଏକ ଅହୋରାତ୍ର ବାସ କଲେ ସେ ସମସ୍ତ ଫଳ ପ୍ରାପ୍ତ ହୋଇଥାଏ । ଉ. ଖ. ୧ମ ଅ. ଶ୍ଳୋ. ୪୩ ।

ଏହି ମୋକ୍ଷପ୍ରଦ କ୍ଷେତ୍ରରେ ଜନ୍ତୁପତି ଯମରାଜଙ୍କ କର୍ତ୍ତୃତ୍ୱ ନାହିଁ । ସାଗର-ତୀରଠାରୁ ଅକ୍ଷୟ ବଟର ମୂଳଦେଶ ପର୍ଯ୍ୟନ୍ତ ସ୍ଥାନରେ କୀଟ, ପକ୍ଷୀ, ମନୁଷ୍ୟ, ଯେ କେହି ପ୍ରାଣତ୍ୟାଗ କଲେ ଭଗବାନ ତାହାକୁ ମୁକ୍ତି ପ୍ରଦାନ କରନ୍ତି ।

> ସିନ୍ଧୁରାଜସ୍ୟ ସଲିଳାଦ୍ ଯାବନ୍ମୂଳଂ ବଟସ୍ୟ ବୈ
> କୀଟ ପକ୍ଷୀ ମନୁଷ୍ୟାଣାଂ ମରଣାନ୍ମୁକ୍ତିଦୋ ମତଃ । (୨୫ ଖ)

---

(୨୫) ସ୍କନ୍ଦପୁରାଣେ-ଉତ୍କଳଖଣ୍ଡ । ୧ମ ଅଧ୍ୟାୟ
(୨୫ କ) ,, ଉ. ଖ । ୨ୟ ଅ । ୧୨ ।
(୨୫ ଖ) ,, ଉ. ଖ । ୪ର୍ଥ ଅ । ୧୮ ।

ଏହି ଅନ୍ତର୍ବେଦୀ ( ସମୁଦ୍ରଠାରୁ ବଟପର୍ଯ୍ୟନ୍ତ ସ୍ଥାନର ନାମ ) ପରମ ପବିତ୍ର; ଦେବତାମାନଙ୍କର ମଧ୍ୟ ଏହା କାମ୍ୟ । ଯେଉଁମାନେ ଏହି ସ୍ଥାନରେ ଅବସ୍ଥାନ କରନ୍ତି ସେମାନେ ଶଙ୍ଖଚକ୍ରଧାରୀ ପରି ଦେଖାଯାଆନ୍ତି । ସ୍ୱର୍ଗରେ, ଅନ୍ତରୀକ୍ଷରେ, ମର୍ତ୍ତ୍ୟରେ ମୁକ୍ତିପ୍ରଦ ଯେଉଁ ସାର୍ଦ୍ଧତ୍ରିକୋଟି ସଂଖ୍ୟକ ତୀର୍ଥ ଅଛି, ସେଥି ଭିତରେ ଏହି ପୁରୁଷୋତ୍ତମ କ୍ଷେତ୍ର ସାଯୁଜ୍ୟମୁକ୍ତି ଦେବା ପାଇଁ ସମର୍ଥ ।

ପୃଥିବ୍ୟାଂ ଯାନି ତୀର୍ଥାନି ଗଗନେ ଚ ତ୍ରିପିଷ୍ଟପେ
ସାର୍ଦ୍ଧ ତ୍ରିକୋଟି ସଂଖ୍ୟାନି ସ୍ୱର୍ଗମୋକ୍ଷ ପ୍ରଦାନି ବୈ । ୨୦ ।
ତେଷାମସ୍ୟଂ ତୀର୍ଥରାଜଃ କୀର୍ତ୍ତିତଃ ପୁରୁଷୋତ୍ତମଃ
ସର୍ବେଷାଂ ମୁକ୍ତିକ୍ଷେତ୍ରାଣାମିଦଂ ସାଯୁଜ୍ୟଦଂ ମତମ୍ । ୨୧ ।

ଉ. ଖ. ୪ର୍ଥ ଅ.

ପୁରୁଷୋତ୍ତମଙ୍କ ଦାରୁମୟ ବିଗ୍ରହ ଯୋଗୁଁ ଏହି କ୍ଷେତ୍ରର ପ୍ରସିଦ୍ଧି । ମନୁଷ୍ୟ କଥା ଦୂରେ ଥାଉ, ସ୍ୱର୍ଗପୁରବାସୀ ଦେବତାମାନେ ମଧ୍ୟ ଏହି ଦାରୁବିଗ୍ରହଙ୍କ ଇୟତ୍ତା କରିବାକୁ ସମର୍ଥ ନୁହନ୍ତି । ଆନନ୍ଦସ୍ୱରୂପ ବ୍ରହ୍ମଙ୍କର ଅଂଶରେ ଜୀବର ଉତ୍ପତ୍ତି । ଏହି ଦାରୁମୟ ଦେହରେ ବ୍ରହ୍ମଙ୍କୁ ଜୀବମାନେ ଅନୁଭବ କରନ୍ତି । ଏହି ବିଗ୍ରହ ସଂସାରରେ ସକଳ ଦୁଃଖ ଦୂର କରି ଅବ୍ୟୟ ସୁଖଦାନ କରନ୍ତି ବୋଲି ବେଦାନ୍ତରେ ଦାରୁମୟ ବ୍ରହ୍ମ ରୂପେ କୀର୍ତ୍ତିତ ହୋଇଛନ୍ତି । ଏହି କ୍ଷେତ୍ରରେ ସୁଖରେ ବ୍ରହ୍ମ ଲାଭ ହୁଏ ।

ଦ୍ୟେତି ସଂସାର ଦୁଃଖାନି ଦଦାତି ସୁଖମବ୍ୟୟମ୍
ତସ୍ମାଦ୍ଦାରୁମୟଂ ବ୍ରହ୍ମ ବେଦାନ୍ତେଷୁପଗୀୟତେ ।

ଉ. ଖ । ୪ର୍ଥ ଅ. ୮୨ ।

ଦାରୁରୂପୀ ଜଗନ୍ନାଥଙ୍କ ଅବସ୍ଥିତି ଯୋଗୁଁ ଏହି କ୍ଷେତ୍ର ପରମ ପବିତ୍ର ସ୍ଥାନ ରୂପେ ଗଣ୍ୟ ଏବଂ ଏହି କ୍ଷେତ୍ର ଯୋଗୁଁ ଉତ୍କଳ ଦେଶ ପୁଣ୍ୟତମ ସ୍ଥାନ । ଇନ୍ଦ୍ରାଦି ଦେବତାମାନେ ଏହି କ୍ଷେତ୍ରରେ ସର୍ବଦା ବାସ କରନ୍ତି । ଦେବର୍ଷି ପିତୃସେବିତ ଏହି ପବିତ୍ର ଦେଶରେ ଯେଉଁମାନେ ଜନ୍ମଗ୍ରହଣ କରିଛନ୍ତି ସେମାନେ ଧନ୍ୟ ।

ପୁରୁଷୋତ୍ତମଙ୍କ ଅବସ୍ଥାନ ଯୋଗୁଁ ଏହି କ୍ଷେତ୍ର ଜଗତରେ ଦୁର୍ଲ୍ଲଭ ଏବଂ ବ୍ରହ୍ମପୁରାଣ ଅନୁସାରେ ଉତ୍କଳ ଦେଶ ମଧ୍ୟ ଜଗତରେ ଶ୍ରେଷ୍ଠ ।

"ହେ ମୁନିମାନେ ! ସେହି କ୍ଷେତ୍ରରେ ବିଖ୍ୟାତ ପୁରୁଷୋତ୍ତମ ବିରାଜମାନ, ଦିଗ ବିଭାଗ ଅନୁସାରେ ଯେତେ ଦୂର ପର୍ଯ୍ୟନ୍ତ ଉତ୍କଳ ଦେଶର ସୀମା ଅଛି, ଯେଉଁଠାରେ ବିଶ୍ୱାତ୍ମା ପୁରୁଷୋତ୍ତମ ଜଗନ୍ନାଥ ବିରାଜମାନ କୃଷ୍ଣଙ୍କର ପ୍ରସାଦରେ ସେହି ଦେଶ ପୁଣ୍ୟତମ । ରୁଦ୍ର, ଇନ୍ଦ୍ର, ଅଗ୍ନି, ପ୍ରମୁଖ ଦେବତାମାନେ ସର୍ବଦା ସେଠାରେ

ବାସ କରନ୍ତି । ଗନ୍ଧର୍ବ, ଅପ୍ସରା, ପିତୃ, ଦେବ, ମନୁଷ୍ୟ, ଯକ୍ଷ, ବିଦ୍ୟାଧର, ସିଦ୍ଧ, ମୁନି, ଋଷି, ପ୍ରଜାପତି, କିନ୍ନର, ନାଗ, ସ୍ୱର୍ଗବାସୀ, ଚତୁର୍ବେଦ, ବିବିଧ ଶାସ୍ତ୍ର, ଇତିହାସ, ପୁରାଣ, ଯଜ୍ଞ, ବିବିଧ ପୁଣ୍ୟନଦୀ, ନାନାତୀର୍ଥ, ସାଗର, ଶୈଳ—ଏମାନେ ସମସ୍ତେ ଏଠାରେ ବିଦ୍ୟମାନ । ଏପରି ପବିତ୍ର ଦେଶରେ କାହାର ବା ବାସ କରିବାକୁ ଇଚ୍ଛା ନ ହେବ ? ଏହି ଦେଶଠାରୁ ଅନ୍ୟ କୌଣସି ଦେଶର ଶ୍ରେଷ୍ଠତ୍ୱ ହୋଇ ପାରେ କି ? ସ୍ୱୟଂ ପୁରୁଷୋତ୍ତମ ଯେଉଁ ପୁଣ୍ୟ ଦେଶରେ ବିରାଜମାନ, ସେହି ଉତ୍କଳରେ ବାସ କରିବା ନରମାନେ ଧନ୍ୟ, ସେମାନେ ଜଗତରେ ଶ୍ରେଷ୍ଠ ।

ଅସ୍ତେ ତତ୍ର ମୁନିଶ୍ରେଷ୍ଠ ବିଖ୍ୟାତ ପୁରୁଷୋତ୍ତମଃ
ଯାବଦୁତ୍କଳ ମର୍ଯ୍ୟାଦା ଦକ୍ ଜମେଣ ପ୍ରକୀର୍ତ୍ତିତା ।
ତାବତ୍ କୃଷ୍ଣ ପ୍ରସାଦେନ ଦେଶଃ ପୁଣ୍ୟତମୋ ହି ସଃ
ଯତ୍ର ତିଷ୍ଠତି ବିଶ୍ୱାତ୍ମା ଦେଶେ ସ ପୁରୁଷୋତ୍ତମଃ । ୩୬
ଜଗଦ୍ବ୍ୟାପୀ ଜଗନ୍ନାଥ ସ୍ତତ୍ରସର୍ବଂ ପ୍ରତିଷ୍ଠିତମ୍
ଅହଂ ରୁଦ୍ରଶ୍ଚ ଶକ୍ରଶ୍ଚ ଦେବାଶ୍ଚାଗ୍ନି ପୁରୋଗମାଃ । ୩୭
ନିବସାମୋ ମୁନିଶ୍ରେଷ୍ଠା ସ୍ତସ୍ମିନ୍ ଦେଶେ ସଦାବୟମ୍
ଗନ୍ଧର୍ବାପ୍ସରସଃ ସର୍ବାଃ ପିତରୋ ଦେବ ମାନୁଷାଃ । ୩୮
ଯକ୍ଷା ବିଦ୍ୟାଧରା ସିଦ୍ଧା ମୁନୟଃ ସଂଶିତବ୍ରତାଃ
ଋଷୟୋ ବାଲଖିଲ୍ୟାଶ୍ଚ କଶ୍ୟ ପାଦାଃ ପ୍ରଜେଶ୍ୱରଃ । ୩୯
ସୁପର୍ଣ୍ଣାଃ କିନ୍ନରା ନାଗାସ୍ତଥାନ୍ୟେ ସ୍ୱର୍ଗବାସିନଃ
ସାଙ୍ଗାଶ୍ଚ ଚତୁରୋବେଦାଃ ଶାସ୍ତ୍ରାଣି ବିବିଧାନି ଚ । ୪୦
ଇତିହାସ-ପୁରାଣାନି ଯଜ୍ଞାଶ୍ଚବର ଦକ୍ଷିଣାଃ
ନଦ୍ୟଶ୍ଚ ବିବିଧାପୁଣ୍ୟାସ୍ତୀର୍ଥାନ୍ୟାୟତନାନି ଚ । ୪୧
ସାଗରାଶ୍ଚ ତଥାଶୈଳାସ୍ତସ୍ମିନ୍ ଦେଶେ ବ୍ୟବସ୍ଥିତାଃ
ଏବଂ ପୁଣ୍ୟତମେ ଦେଶେ ଦେବର୍ଷି ପିତୃ ସେବିତେ । ୪୨
ସର୍ବୋପଭୋଗ ସହିତେ ବାସଃ କସ୍ୟ ନରୋଚତେ
ଶ୍ରେଷ୍ଠତ୍ୱଂ କସ୍ୟ ଦେଶସ୍ୟ କି ତ୍ୱନ୍ୟଦଧିକଂ ତତଃ । ୪୩
ଅସ୍ତେ ଯତ୍ର ସ୍ୱୟଂ ଦେବୋ ମୁକ୍ତିଦଃ ପୁରୁଷୋତ୍ତମଃ
ଧନ୍ୟାସ୍ତେ ବିବୁଧ ପ୍ରଖ୍ୟା ଯେ ବସନ୍ତ୍ୟୁତ୍କଳେ ନରାଃ । ୪୪

କେବଳ ସେତିକି ନୁହେଁ, ଏ କ୍ଷେତ୍ରରେ ମଧ୍ୟ ଯେଉଁମାନେ ବାସ କରନ୍ତି ସେମାନଙ୍କର ଜୀବନ ହିଁ ସଫଳ ।

ଯେ ବସନ୍ତ୍ୟୁତ୍କଳେ କ୍ଷେତ୍ରେ ପୁଣ୍ୟେ ଶ୍ରୀପୁରୁଷୋତ୍ତମେ
ସଫଳଂ ଜୀବିତଂ ତେଷାଂ-ମୁକ୍ତଳାନାଂ ସୁମେଧସାମ୍ । ୪୬ (୨୬)

(୨୬) ବ୍ରହ୍ମପୁରାଣ । ୪୨ ଅ.

ଏହି ପରମ ପୁଣ୍ୟମୟ କ୍ଷେତ୍ରର ମାହାତ୍ମ୍ୟ ଜଗତରେ ଭଗବାନଙ୍କ ମାୟା ଯୋଗୁଁ ଗୁପ୍ତ ଥିଲା; କିନ୍ତୁ ବ୍ରହ୍ମାଙ୍କ ସ୍ତୁତିରେ ପ୍ରୀତ ହୋଇ ଭଗବାନ ଆଜ୍ଞା ଦେଲେ ଯେ ଏହି କ୍ଷେତ୍ର ଜନ-ସମାଜର ଗୋଚରୀଭୂତ ହେବ ।

ବିଧିତୋ ମେ ସ୍ତୁବତସ୍ତ୍ରବାଧୁନା
ପ୍ରକାଶମାୟ'ସ୍ୟତି ସର୍ବଗୋଚରଃ । (୨୭)

ଅପୁରୁଷେୟ ଦାରୁମୂର୍ତ୍ତି ଓ ମହାପ୍ରସାଦ ଯୋଗୁଁ ପୁରୁଷୋତ୍ତମର ମାହାତ୍ମ୍ୟ ପ୍ରସିଦ୍ଧି ଲାଭ କରିଛି । ଦାରୁମୂର୍ତ୍ତି ବେଦାନ୍ତ-ସମ୍ମତ, ସ୍ୱୟଂ ଭଗବାନ ସ୍ୱ-ଇଚ୍ଛାରେ ନିଜେ ନିଜକୁ ଗଠନ କରି ଅବିର୍ଭୂତ ହୋଇଛନ୍ତି । ସେହି ହେତୁ ଅନ୍ୟାନ୍ୟ କ୍ଷେତ୍ର ଅପେକ୍ଷା ଏହି କ୍ଷେତ୍ର ଭଗବାନଙ୍କର ଅତି ପ୍ରିୟ । ମହାପ୍ରସାଦ ସେବାରେ ଜାତି-ବର୍ଣ୍ଣର ବିଚାର ନ ଥିବାରୁ କ୍ଷେତ୍ରର ମହିମା ଜଗତବିଖ୍ୟାତ ହୋଇଛି ।

---

(୨୭) ସ୍କନ୍ଦପୁରାଣ । ଉ. ଖ । ୧୨ ଅ । ୪୨ ଶ୍ଳୋ ।

## ଦ୍ୱିତୀୟ ପରିଚ୍ଛେଦ

## ଇନ୍ଦ୍ରଦ୍ୟୁମ୍ନ

ପୁରୁଷୋତ୍ତମ କ୍ଷେତ୍ରାଧିପତି ଜଗନ୍ନାଥଙ୍କ ପ୍ରତିଷ୍ଠାତା ଇନ୍ଦ୍ରଦ୍ୟୁମ୍ନ, ଏହା ସର୍ବବାଦୀସମ୍ମତ । ଏହି ଇନ୍ଦ୍ରଦ୍ୟୁମ୍ନ ପୁଣି ସର୍ବଭୌମ ରାଜା ଥିଲେ, ଏହା ମଧ୍ୟ ସମସ୍ତେ ସ୍ୱୀକାର କରନ୍ତି । ତେବେ ସେ କେବେ ଓ କେଉଁଠାରେ ରାଜତ୍ୱ କରୁଥିଲେ, ଏହି ବିଷୟରେ ବହୁ ମତ ଦେଖାଯାଏ ।

ବ୍ରହ୍ମପୁରାଣରେ ଇନ୍ଦ୍ରଦ୍ୟୁମ୍ନ ସତ୍ୟଯୁଗର ରାଜା ବୋଲି ଲେଖାଅଛି । ନାରଦ ପୁରାଣ ଓ ସ୍କନ୍ଦ ପୁରାଣରେ ମଧ୍ୟ ଏହା ହିଁ ଲେଖାଅଛି ।

ଆସୀତ୍ କୃତଯୁଗେ ବିପ୍ରା ଇନ୍ଦ୍ରଦ୍ୟୁମ୍ନୋ ମହାନୃପଃ
ସୂର୍ଯ୍ୟବଂଶେ ସ ଧର୍ମାତ୍ମା ସ୍ରଷ୍ଟୁଃ ପଞ୍ଚମ ପୁରୁଷଃ । (୨୮)

"ସତ୍ୟ ଯୁଗରେ ସୂର୍ଯ୍ୟବଂଶରେ ଇନ୍ଦ୍ରଦ୍ୟୁମ୍ନ ନାମରେ ଏକ ମହାରାଜା ଜନ୍ମଗ୍ରହଣ କରିଥିଲେ, ସେହି ଧର୍ମାତ୍ମା ରାଜା ବ୍ରହ୍ମାଙ୍କର ପଞ୍ଚମ ପୁରୁଷ ।"

ଏହି ସୂର୍ଯ୍ୟବଂଶ-ସମ୍ଭୂତ ବ୍ରହ୍ମାଙ୍କ ପଞ୍ଚମ ପୁରୁଷ ଇନ୍ଦ୍ରଦ୍ୟୁମ୍ନ ଅବନ୍ତୀ ନଗରରେ ରାଜତ୍ୱ କରୁଥିଲେ ।

ଅବନ୍ତୀ ନାମ ନଗରୀଂ ମାଳବେ ଭୁବି ବିଶ୍ରୁତାମ୍
ଉବାସ ସର୍ବରତ୍ନାଢ୍ୟାଂ ଦ୍ୱିତୀୟାମମରାବତୀମ୍ । ୧୪
ଅଥ ସ୍ଥିତୋ ନରପତି ର୍ବିଷ୍ଣୋ ଭକ୍ତିମନୁତ୍ତମାମ୍
ଚକାର ମନସା ବାଚା କର୍ମଣା ପରମାଦ୍ଭୁତାମ୍ ।୧୫। ଉ. ଖ. ୭ମ ଅ ।

"ଦ୍ୱିତୀୟ ଅମରାବତୀ ତୁଲ୍ୟ ସର୍ବରତ୍ନମୟୀ ବିଖ୍ୟାତ ଅବନ୍ତୀ ନଗରରେ ଇନ୍ଦ୍ରଦ୍ୟୁମ୍ନ ଅବସ୍ଥାନ କରୁଥିଲେ । ସେ କାୟମନୋବାକ୍ୟରେ ବିଷ୍ଣୁଙ୍କ ପ୍ରତି ଅଟଳ ଓ ପରମ ଅଦ୍ଭୁତ ଭକ୍ତି ଦେଖାଉଥିଲେ ।"

---

(୨୮) ସ୍କନ୍ଦପୁରାଣ । ଉତ୍କଳଖଣ୍ଡ । ୭ମ ଅ । ଶ୍ଳୋ. ୬ ।

ଏହି ଇନ୍ଦ୍ରଦ୍ୟୁମ୍ନଙ୍କୁ ପୁଣି ଅନ୍ୟ ସ୍ଥାନରେ ଏହି ପୁରାଣଲେଖକ ବୈଶ୍ୟ ନୃପତି ବୋଲି ଲେଖିଛନ୍ତି—

ପଶ୍ଚିମାଦ୍ରିଂ ଗତୋ ଯାତେ ବିବସ୍ୱତି ବିଶାଂପତିଃ
ସାୟଂ ବିଧିଂ ସମାପ୍ୟାଶୁ ଶୀତଭାନୌ ସମୁଦ୍ୟତେ ।

ଉ. ଖ । ୧୧୧ ଅ. । ୧୦୦

"ସୂର୍ଯ୍ୟ ପଶ୍ଚିମାଚଳରେ ଆରୋହଣ କଲେ ଏବଂ ଚନ୍ଦ୍ର ସମୁଦିତ ହେଲେ । ଏହା ଦେଖି ବୈଶ୍ୟରାଜ ସାୟଂକୃତ୍ୟ ସମାପନ କରି···।"

ଇନ୍ଦ୍ରଦ୍ୟୁମ୍ନ ବୈଶ୍ୟ ହୁଅନ୍ତୁ କି କ୍ଷତ୍ରିୟ ହୁଅନ୍ତୁ ସେ ଯେ ସତ୍ୟଯୁଗର ରାଜା, ଏହା ସ୍କନ୍ଦପୁରାଣ ସ୍ପଷ୍ଟ ଜଣାଯାଉଛି । ଏହି ଇନ୍ଦ୍ରଦ୍ୟୁମ୍ନ ଦାରୁମୂର୍ତ୍ତି ଗଠନ କରିଥିଲେ; ମନ୍ଦିର ନିର୍ମାଣ କରାଇଥିଲେ, ବ୍ରହ୍ମାଙ୍କ ଦ୍ୱାରା ପ୍ରତିଷ୍ଠା କରାଇ ମୂର୍ତ୍ତି ସ୍ଥାପନ କରିଥିଲେ । ଏ ପୁଣି ଶ୍ରୀକ୍ଷେତ୍ରରେ ଅଶ୍ୱମେଧ ଯଜ୍ଞ କରିଥିଲେ ଏବଂ ସେହି ସମୟରେ ଇନ୍ଦ୍ରଦ୍ୟୁମ୍ନ ପୁଷ୍କରିଣୀର ଉଦୟ ହୋଇଥିଲି । ଉତ୍କଳ ରାଜା ଗାଲ ଏହାଙ୍କର ସମସାମୟିକ ।

ପଦ୍ମପୁରାଣରେ ପୁରୁଷୋତ୍ତମ ମାହାତ୍ମ୍ୟ ଲେଖାଥିଲେ ମଧ୍ୟ ଇନ୍ଦ୍ରଦ୍ୟୁମ୍ନଙ୍କ ଚରିତ ନାହିଁ ।

ସ୍କନ୍ଦପୁରାଣ ଓ ପଦ୍ମପୁରାଣ ଅପେକ୍ଷା ବ୍ରହ୍ମପୁରାଣ ଓ ନାରଦ ପୁରାଣ ପ୍ରାଚୀନ ଏବଂ ଶେଷୋକ୍ତ ପୁରାଣ ଦୁଇଟି ଖ୍ରୀଷ୍ଟୀୟ ପ୍ରଥମ କିମ୍ବା ଦ୍ୱିତୀୟ ଶତାବ୍ଦୀରେ ରଚିତ ବୋଲି କେତେକ ପଣ୍ଡିତଙ୍କ ମତ । ଏ ଦିଗରୁ ଦେଖିଲେ ଏହି ପୁରାଣମାନଙ୍କ ରଚନା ସମୟ ପୂର୍ବରୁ ଇନ୍ଦ୍ରଦ୍ୟୁମ୍ନଙ୍କ ଅସ୍ତିତ୍ୱ ଥିଲି ।

ଏହା ପୂର୍ବରୁ ମଧ୍ୟ ଇନ୍ଦ୍ରଦ୍ୟୁମ୍ନଙ୍କର ଅସ୍ତିତ୍ୱ ଥିବା ପ୍ରମାଣ ମିଳେ । ମହାଭାରତ ବନ ପର୍ବରେ ଇନ୍ଦ୍ରଦ୍ୟୁମ୍ନ ଓ ଇନ୍ଦ୍ରଦ୍ୟୁମ୍ନ ପୁଷ୍କରିଣୀର ବିଷୟ ବର୍ଣ୍ଣିତ ଅଛି । ପଞ୍ଚପାଣ୍ଡବଙ୍କଠାରୁ ଇନ୍ଦ୍ରଦ୍ୟୁମ୍ନ ବହୁ ପ୍ରାଚୀନ । ସପ୍ତକଳ୍ପ ପରମାୟୁ ଭୋଗ କରୁଥିବା ମାର୍କଣ୍ଡ ଋଷିଙ୍କ ଠାରୁ ମଧ୍ୟ ସେ ପ୍ରାଚୀନ । ମାର୍କଣ୍ଡ ସତ୍ୟଯୁଗର ଋଷି । ଏପରି ଦେଖିଲେ ଇନ୍ଦ୍ରଦ୍ୟୁମ୍ନ ସତ୍ୟଯୁଗର ରାଜା । କିନ୍ତୁ ବନ ପର୍ବରେ ଏହି ଇନ୍ଦ୍ରଦ୍ୟୁମ୍ନ ଚରିତରେ ପୁରୁଷୋତ୍ତମ କ୍ଷେତ୍ରର ନାମ ଉଲ୍ଲେଖ ନାହିଁ । ଇନ୍ଦ୍ରଦ୍ୟୁମ୍ନ ଅଶ୍ୱମେଧ ଯଜ୍ଞ କରି ଅସଂଖ୍ୟ ଗୋଦାନ କରିଥିଲେ ଏବଂ ଗୋରୁମାନଙ୍କ ଖୁରା ବାଜି ଭୂମି ଖୋଳି ହୋଇଯାଇ ଏକ ପୁଷ୍କରିଣୀ ହୋଇ ଯାଇଥିବା ବିଷୟ ମହାଭାରତରେ ଲେଖାଅଛି । ପରବର୍ତ୍ତୀ ପୁରାଣମାନଙ୍କରେ ପୁରୁଷୋତ୍ତମ ମାହାତ୍ମ୍ୟ ବର୍ଣ୍ଣିତ ସ୍ଥାନମାନଙ୍କରେ ଇନ୍ଦ୍ରଦ୍ୟୁମ୍ନ ଚତୁର୍ଦ୍ଧାମୂର୍ତ୍ତିଙ୍କ ଉଦୟ ପୂର୍ବରୁ ପୁରୁଷୋତ୍ତମ କ୍ଷେତ୍ରରେ ସହସ୍ର ଅଶ୍ୱମେଧ ଯଜ୍ଞ କରିଥିବା କଥା ବର୍ଣ୍ଣିତ ଅଛି । ଇନ୍ଦ୍ରଦ୍ୟୁମ୍ନ ପୁଷ୍କରିଣୀର ବୃତ୍ତାନ୍ତ ମଧ୍ୟ ବନ ପର୍ବର

ବୃତ୍ତାନ୍ତ ସହିତ ସମ୍ପୂର୍ଣ୍ଣ ମେଳ ହେଉଛି । ଏହି ପୁଷ୍କରଣୀର କୂର୍ମମାନଙ୍କ ପ୍ରସଙ୍ଗରେ ସ୍ଥଳ ପୁରାଣମାନଙ୍କରେ ଲେଖାଅଛି ଯେ, ଏମାନେ ପୂର୍ବେ ମନୁଷ୍ୟ ଥିଲେ ଏବଂ ଇନ୍ଦ୍ରଦ୍ୟୁମ୍ନ ନିର୍ମାଣ କରିଥିବା ଦେଉଳ ପାଇଁ ପିଠିରେ ବୋହି ବୋହି ପଥର କୂର୍ମ ପାଲଟି ଯାଇଛନ୍ତି । ବନପର୍ବର ଇନ୍ଦ୍ରଦ୍ୟୁମ୍ନଚରିତରେ ଜଗନ୍ନାଥଙ୍କ ମନ୍ଦିର ବା ଚରିତର ଉଲ୍ଲେଖ ନ ଥିଲେ ମଧ୍ୟ ପୁଷ୍କରଣୀ, ଯାଗ ଓ କୂର୍ମ ଉଲ୍ଲେଖରୁ ଏହି ଇନ୍ଦ୍ରଦ୍ୟୁମ୍ନ ଓ ପୁରୁଷୋତ୍ତମ କ୍ଷେତ୍ର ପ୍ରତିଷ୍ଠାତା ଇନ୍ଦ୍ରଦ୍ୟୁମ୍ନ ଅଭିନ୍ନ ବୋଲି କୁହାଯାଇ ପାରିବ । ବନପର୍ବାନ୍ତର୍ଗତ ଚରିତରୁ ଇନ୍ଦ୍ରଦ୍ୟୁମ୍ନ ସତ୍ୟଯୁଗର ରାଜା ବୋଲି ଅନୁମାନ ହେଉ-ଅଛି । ବନପର୍ବ ରଚନା ସମୟର ପୂର୍ବେ ଯେ ତାଙ୍କର ଅସ୍ତିତ୍ୱ ଥିଲା ଏହା ନିଶ୍ଚିତ । କାହାରି କାହାରି ମତରେ ମହାଭାରତ ଖ୍ରୀଷ୍ଟପୂର୍ବ ୫ମ କି ୬ଷ୍ଠ ଶତାବ୍ଦୀରେ ଲେଖାହୋଇଛି । କେହି କେହି ପୁଣି ଏହି ଲେଖାର ସମୟ ଖ୍ରୀଷ୍ଟପୂର୍ବ ୧ମ କି ୨ୟ ଶତାବ୍ଦୀ ବୋଲି କହନ୍ତି । ତାହାହେଲେ ଖ୍ରୀଷ୍ଟପୂର୍ବ ବହୁ ଶତାବ୍ଦୀ ପୂର୍ବରୁ ଇନ୍ଦ୍ରଦ୍ୟୁମ୍ନ-ଙ୍କର ଅସ୍ତିତ୍ୱ ଥିଲା ବୋଲି ସ୍ୱୀକାର କରିବାକୁ ହେବ ।

ଇନ୍ଦ୍ରଦ୍ୟୁମ୍ନଙ୍କ ସମ୍ବନ୍ଧରେ ବିଭିନ୍ନ ଲେଖକ ବିଭିନ୍ନ ପ୍ରକାର ଲେଖିଛନ୍ତି । ପୁଣି ଭାରତବର୍ଷରେ ବିଭିନ୍ନ ଦେଶରେ ଏହି ନାମର ରାଜା ବିଭିନ୍ନ ସମୟରେ ରାଜତ୍ୱ କରୁଥିବାର ପ୍ରମାଣ ମିଳୁଛି ; ଏହିହେତୁ ଶ୍ରୀକ୍ଷେତ୍ର ପ୍ରତିଷ୍ଠାତା ଇନ୍ଦ୍ରଦ୍ୟୁମ୍ନଙ୍କ କାଳ ସମ୍ବନ୍ଧରେ ବହୁ ମତ ଦେଖାଯାଉଛି ।

(୧) ଇଲୋରା ଗୁହା-ମନ୍ଦିର ପ୍ରତିଷ୍ଠାତା (ଚନ୍ଦ୍ର ବଂଶର ) ବୁଧଙ୍କ ପତ୍ନୀ ଇଳାଙ୍କ ବଂଶରେ ଇନ୍ଦ୍ରଦ୍ୟୁମ୍ନ ବୋଲି ଜଣେ ରାଜା ଥିବାର ଜଣାଯାଏ । ସେ ଇଲୋରା ଅଞ୍ଚଳରେ ରାଜତ୍ୱ କରୁଥିଲେ । ଏହି ଇଳାଙ୍କ ଗର୍ଭରୁ ପୁଣି ଉତ୍କଳଙ୍କ ଜନ୍ମ ବୋଲି ପୁରାଣରେ ଲେଖାଅଛି, କିନ୍ତୁ ଶ୍ରୀକ୍ଷେତ୍ର ସହିତ ଏହାଙ୍କ ସମ୍ପର୍କ କଥା କିଛି ଲେଖା ନାହିଁ । ଇଳାବଂଶ ଯଦି ଚନ୍ଦ୍ରବଂଶ ହୁଏ, ତାହାହେଲେ ସ୍କନ୍ଦପୁରାଣର ସୂର୍ଯ୍ୟବଂଶର ଇନ୍ଦ୍ରଦ୍ୟୁମ୍ନ ସହିତ ମେଳ ମଧ୍ୟ ହେଉନାହିଁ । ଅତଏବ ଇଲୋରା ରାଜା ଇନ୍ଦ୍ରଦ୍ୟୁମ୍ନଙ୍କ ସହିତ ଶ୍ରୀକ୍ଷେତ୍ରର ବା ଅବନ୍ତୀର ଇନ୍ଦ୍ରଦ୍ୟୁମ୍ନଙ୍କର କୌଣସି ସମ୍ପର୍କ ଥିବାର ଅନୁମାନ ହୁଏନାହିଁ ।

(୨) ବିଷ୍ଣୁ ପୁରାଣରେ ସ୍ୱାୟମ୍ଭୁବ ମନୁଙ୍କ ବଂଶରେ ଇନ୍ଦ୍ରଦ୍ୟୁମ୍ନଙ୍କ ନାମ ଅଛି । ୧ନାରାୟଣ, ୨ବ୍ରହ୍ମା, ୩ସ୍ୱାୟମ୍ଭୁବମନୁ, ୪ପ୍ରିୟବ୍ରତ, ୫ଆଗ୍ନୀଧ୍ର, ୬ନାଭି, ୭ଋଷଭ, ୮ଭରତ, ୯ସୁମତି, ୧୦ଇନ୍ଦ୍ରଦ୍ୟୁମ୍ନ । କିନ୍ତୁ ଏହି ଇନ୍ଦ୍ରଦ୍ୟୁମ୍ନଙ୍କ ଅନ୍ୟାନ୍ୟ ପରିଚୟ କିଛି ଦିଆଯାଇ ନାହିଁ ।

(୩) ଶ୍ରୀକୃଷ୍ଣ ଇନ୍ଦ୍ରଦ୍ୟୁମ୍ନ ନାମକ ଏକ ଅସୁରରାଜାଙ୍କୁ ବିନାଶ କରିଥିଲେ ବୋଲି ମହାଭାରତ ବନପର୍ବରେ[୨] ଲେଖାଅଛି । କିନ୍ତୁ ଏ ଇନ୍ଦ୍ରଦ୍ୟୁମ୍ନ ଜଗନ୍ନାଥ ପ୍ରତିଷ୍ଠାତା କି ନୁହନ୍ତି ସେଥିରୁ ଜାଣି ହେଉ ନାହିଁ ।

(୪) ଶାରଳା ଦାସଙ୍କ ପୂର୍ବରୁ ଇନ୍ଦ୍ରଦ୍ୟୁମ୍ନଚରିତ କୌଣସି ଓଡ଼ିଆ କବି ଲେଖିଥିବାର ଜଣାଯାଏ ନାହିଁ । ଶାରଳା ଦାସ ପଞ୍ଚଦଶ ଶତାବ୍ଦୀରେ ସ୍ୱରଚିତ 'ମହାଭାରତ' ମହାକାବ୍ୟରେ ଜଗନ୍ନାଥ ଚରିତ ବର୍ଣ୍ଣନା ପ୍ରସଙ୍ଗରେ ଇନ୍ଦ୍ରଦ୍ୟୁମ୍ନଙ୍କ ନାମ ଏକାଧିକ ସ୍ଥାନରେ ଉଲ୍ଲେଖ କରିଛନ୍ତି । ବନପର୍ବରେ ଶାରଳା ଦାସ ଇନ୍ଦ୍ରଦ୍ୟୁମ୍ନ ସାକଳ୍ପ ଦ୍ୱୀପର ରାଜା ସୋମବଂଶୀ ଗାଲମାଧବଙ୍କ ପୁତ୍ର ବୋଲି କହିଛନ୍ତି । ଗାଲମାଧବ କାଞ୍ଚନଗରର ରାଜା ଥିବା ମଧ୍ୟ ମୂଷଳୀ ପର୍ବରେ ସେ ଲେଖିଛନ୍ତି । ଏହି ପର୍ବରେ ଲେଖାଅଛି ଯେ କଳିଯୁଗରେ ବରାଟ ବଂଶର ରାଜା ମଧୁକେଶରୀଙ୍କ ପୁତ୍ର ଇନ୍ଦ୍ରଦ୍ୟୁମ୍ନ ପୁରୁଷୋତ୍ତମ କ୍ଷେତ୍ରରେ ଜଗନ୍ନାଥଙ୍କ ମନ୍ଦିର ନିର୍ମାଣ କରିଥିଲେ । ଶ୍ରୀକୃଷ୍ଣଙ୍କ ଅପୋଡ଼ା ପିଣ୍ଡ ଶ୍ରୀକ୍ଷେତ୍ରରେ ଜଗନ୍ନାଥ ରୂପରେ ପୂଜା ପାଉଛି ବୋଲି ମଧ୍ୟ ଶାରଳା ଦାସ ଲେଖିଛନ୍ତି । ଏଥିରୁ ଜଣାଯାଉଛି ଯେ ଇନ୍ଦ୍ରଦ୍ୟୁମ୍ନ ( ଶାରଳା ଦାସଙ୍କ ଅନୁସାରେ ) ଦ୍ୱାପରଯୁଗ ପୂର୍ବରୁ ନୁହନ୍ତି ଏବଂ ସେ କଳିଯୁଗର ବୋଲି ମଧ୍ୟ କୁହାଯାଇଥିବାରୁ ଶ୍ରୀକୃଷ୍ଣଙ୍କ ଦେହତ୍ୟାଗର କେତେକାଳ ପରେ ଓ କଳିର ଆରମ୍ଭ ସମୟରେ ଇନ୍ଦ୍ରଦ୍ୟୁମ୍ନ ଜୀବିତ ଥିବାର ଅନୁମାନ କରାଯାଇପାରେ ।

ପୁରାଣମାନଙ୍କରୁ ଏତିକି ଛଡ଼ା ଆଉ ବେଶି କିଛି ମୂଲ୍ୟବାନ୍ ତଥ୍ୟ ଏ ସମ୍ବନ୍ଧରେ ମିଳୁନାହିଁ । ଏ ଦିଗରୁ ଦେଖିଲେ ଇନ୍ଦ୍ରଦ୍ୟୁମ୍ନଙ୍କୁ ଇତିହାସପୂର୍ବ ଯୁଗର ବୋଲି ଧରାଯିବ । କ୍ଷେତ୍ରର ବହୁ ପ୍ରାଚୀନତା ପ୍ରତି ସନ୍ଦେହ ଉପୁଜିଲେ, ଇନ୍ଦ୍ରଦ୍ୟୁମ୍ନ ଐତିହାସିକ ଯୁଗର ଲୋକ ହେବେ ଏବଂ ଜଗନ୍ନାଥ ଏହି ଐତିହାସିକ ଯୁଗରେ ପ୍ରତିଷ୍ଠିତ ହୋଇଥିଲେ ବୋଲି କୁହାଯିବ ।

ମଧ୍ୟ-ଭାରତର ଉର୍ଚ୍ଛା ରାଜବଂଶାବଳୀ ଅନୁସାରେ ସୂର୍ଯ୍ୟବଂଶର ରାଜା ବଳଦେବରକ୍ଷଙ୍କ ପୁତ୍ର ଇନ୍ଦ୍ରଦ୍ୟୁମ୍ନ ଉର୍ଚ୍ଛାରେ ରାଜତ୍ୱ କରୁଥିଲେ ଏବଂ ସେ ପୁରୁଷୋତ୍ତମ କ୍ଷେତ୍ରର ଜଗନ୍ନାଥ ମନ୍ଦିର ନିର୍ମାଣ କରିଥିଲେ । କିନ୍ତୁ ଇନ୍ଦ୍ରଦ୍ୟୁମ୍ନଙ୍କ ସମୟ କଥା କିଛି ଲେଖାନାହିଁ । କେବଳ ପୁରୀର କିମ୍ବଦନ୍ତୀ ଉପରେ ନିର୍ଭର କରି ଇନ୍ଦ୍ରଦ୍ୟୁମ୍ନ ନାମ ଉଲ୍ଲେଖ ହୋଇଥିଲା ପରି ଜଣାଯାଏ ।

ଇନ୍ଦ୍ରଦ୍ୟୁମ୍ନଙ୍କୁ ଐତିହାସିକ ଯୁଗର ଲୋକ ବୋଲି କେତେକ ଲେଖକ ପ୍ରତିପାଦନ କରିଛନ୍ତି ।

ଉତ୍କଳରାଜା ଯଯାତି ଜଗନ୍ନାଥଙ୍କୁ କ୍ଷେତ୍ରରେ ପୁନର୍ବାର ପ୍ରତିଷ୍ଠା କରାଇଥିବା କଥା ମାଦଳାପାଞ୍ଜିରେ ଯାହା ଲେଖାଅଛି, ତାକୁ ଲକ୍ଷ୍ୟ କରି ଊନବିଂଶ ଶତାବ୍ଦୀରେ ହଣ୍ଟର ସାହେବ ଇନ୍ଦ୍ରଦ୍ୟୁମ୍ନଙ୍କୁ ଖ୍ରୀଷ୍ଟପର ପଞ୍ଚମ ଶତାବ୍ଦୀର ଲୋକ ବୋଲି ଅନୁମାନ କରିଛନ୍ତି । ରକ୍ତବାହୁର ଓଡ଼ିଶା ଆକ୍ରମଣ ସହିତ ଏହି ବିଷୟର ସମ୍ପର୍କ ରହିଛି । ଯବନମାନଙ୍କ ରାଜତ୍ୱ ପରେ "ସୁନପୁର" ଗୋପଲୀରୁ ଠାକୁରମାନଙ୍କୁ ଯଯାତି ଅଣାଇ ପୁନର୍ବାର ମନ୍ଦିରରେ ରଖାଇଲେ । ସେହି ହେତୁ ଯଯାତିଙ୍କୁ ଦ୍ୱିତୀୟ ଇନ୍ଦ୍ରଦ୍ୟୁମ୍ନ

ବୋଲି ଲୋକେ ଡାକିଲେ । ମାଦଳାପାଞ୍ଜିରେ ଏହା ଲେଖାଅଛି । ମାଦଳାପାଞ୍ଜିର ଏକ ପ୍ରତିଲିପିରେ ଶୋଭନଦେବ ଓଡ଼ିଶାରେ ୧୭ (ଛୟାନବେ) ବର୍ଷ ରାଜତ୍ୱ କରି-ଥିବାର ଜଣାଯାଏ । "ଏହି ମହାରାଜାଙ୍କ ଦ୍ୱିତୀୟ ଅଙ୍କେ ବଳୀରୁ ରକ୍ତବାହୁ ଆସିବା ବାରତାକୁ ପରମେଶ୍ୱରଙ୍କୁ ସୁନୁପୁର ଗୋପଳୀ ନେଇଗଲେ । ସେଠାରେ ମଣ୍ଡପ ଗୋଟାଏ କରି ବିଜେ କରାଇଲେ ୪୫ (ପଞ୍ଚଚାଳିଶି) ବର୍ଷ । ଏଥିଉତ୍ତାରୁ ମୋଗଲେ ପ୍ରବଳ ହୋଇଲାରୁ ସେବକେ ସେଠାରେ ପରମେଶ୍ୱରଙ୍କୁ ପାତାଳ କରି ଉପରେ ଗଛ ଲଗାଇ ରାଜ୍ୟରୁ ଅନ୍ତର ହୋଇଗଲେ । ପାତିସାଙ୍କ ଅମୁରା ରକ୍ତବାହୁ ଶ୍ରୀପୁରୁଷୋତ୍ତମ ବୋଲି ଅଇଲା । ଏ ରାଜା ଅନେକ ଯୁଦ୍ଧ କଲେ । ରହି ନ ପାରି ଝାଡ଼ଖଣ୍ଡ ଭିତରେ ରହିଲେ ।"

ଶୋଭନଦେବଙ୍କ ପରେ ଚନ୍ଦ୍ରକରଦେବ ରାଜା ହେଲେ ୧୩ (ତେର) ବର୍ଷ । ତାଙ୍କ ରାଜତ୍ୱରେ ମଧ୍ୟ ଠାକୁରଙ୍କୁ ବାହାର କରାଯାଇ ନାହିଁ । ଚନ୍ଦ୍ରକରଙ୍କ ପରେ ୩୫ (ପଞ୍ଚତିରିଶି) ବର୍ଷ "ମୋଗଲମାନେ" ଭୋଗ କଲେ । ଏପରି ମୋଟରେ ୧୪୪ (ଶହେ ଚଉରାଳିଶି) ବର୍ଷ ଠାକୁରମାନେ ପାତାଳ ହୋଇ ରହିଲେ; ଯବନମାନଙ୍କ ରାଜତ୍ୱରେ ଠାକୁରମାନଙ୍କୁ ଓଡ଼ିଶା ରାଜା ବାହାର କରି ପାରି ନ ଥିବା ସମ୍ଭବ ।

ଯବନମାନଙ୍କ ପରେ ଯଯାତି ରାଜା ହେଲେ । "ଏ ମହାରାଜାଙ୍କ ୧୧ଅଙ୍କେ ସନ୍ନ୍ୟାସୀ ବ୍ରହ୍ମଚାରୀ ବ୍ରାହ୍ମଣମାନଙ୍କୁ ପଚାରିଲେ, ଓଡ଼ିଶା ରାଜାର ପ୍ରଭୁ ଯେ ଶ୍ରୀଜଗନ୍ନାଥ ମହାପ୍ରଭୁ ସେ କାହିଁଛନ୍ତି ।......ଏହା ଶୁଣି ମହାରାଜା ସୁନୁପୁର ଗଲେ ।......ଗଛ କଟାଇ ଖୋଳାଇଲେ ।......ପରମେଶ୍ୱରଙ୍କୁ ବାହାର କଲେ । ଏମାନଙ୍କୁ ଅଣାଇ ବିଧିପତ୍ର ପ୍ରମାଣେ ଦାରୁଚ୍ଛେଦନ କରାଇ ପରମେଶ୍ୱରଙ୍କୁ ସୁମୂର୍ତ୍ତି କରାଇଲେ ।......ଶ୍ରୀପୁରୁଷୋତ୍ତମ ଶଙ୍ଖନାଭି ମଣ୍ଡଳରେ ୩୮ (ଅଠତିରିଶି) ହାତ କରି ପଟୋଳ (ମନ୍ଦିର) ଗୋଟିଏ କରି ପ୍ରତିଷ୍ଠା କରି ପରମେଶ୍ୱରଙ୍କୁ ବିଜେ କରାଇଲେ ।......" ପ୍ରାଚୀ ସମିତି ପ୍ରକାଶିତ ମାଦଳାପଞ୍ଜିରେ ଯଯାତିଙ୍କୁ ଦ୍ୱିତୀୟ ଇନ୍ଦ୍ରଦ୍ୟୁମ୍ନ ବୋଲି ଲୋକେ କହିଲେ, ଏହା ଲେଖା ନାହିଁ । କିନ୍ତୁ ହଣ୍ଟର ସାହେବ ଲେଖିଛନ୍ତି ଯେ ଯଯାତି କେଶରୀ-ବଂଶର ପ୍ରତିଷ୍ଠାତା ଏବଂ ଏହାଙ୍କର "ଦ୍ୱିତୀୟ ଇନ୍ଦ୍ରଦ୍ୟୁମ୍ନ" ଉପାଧି ଥିଲା । ଯବନ-ମାନଙ୍କୁ ବିତାଡ଼ିତ କରି ଯଯାତି ଜଗନ୍ନାଥଙ୍କୁ ପୁନର୍ବାର ପ୍ରତିଷ୍ଠା କରିଥିବା ପ୍ରସଙ୍ଗ ସହିତ ଇନ୍ଦ୍ରଦ୍ୟୁମ୍ନ ଉପାଖ୍ୟାନର ସମ୍ବନ୍ଧ ରହିଛି ବୋଲି ମଧ୍ୟ ହଣ୍ଟର ଅନୁମାନ କରନ୍ତି । ସେ କହନ୍ତି, "ଏହି ଉପାଖ୍ୟାନ (ଯଯାତି ଠାକୁରମାନଙ୍କୁ ପୁନଃପ୍ରତିଷ୍ଠା କରିବା )ରେ ଅନ୍ତତଃ ଦୁଇଟି କଥା ମିଶିଛି । ଶେଷାଂଶଟି ବୋଧହୁଏ ଖ୍ରୀ ୩୧୮ ଠାରୁ ୪୭୩ ପର୍ଯ୍ୟନ୍ତ ଓଡ଼ିଶାରେ ଯବନମାନଙ୍କ ଆଧିପତ୍ୟର ସୂଚନା ଦେଉଛି । ଏହି ଆକ୍ରମଣ-କାରୀମାନଙ୍କୁ ଯେଉଁ ଧାର୍ମିକ ନରପତି ବିତାଡ଼ିତ କରିଥିଲେ ତାଙ୍କ ବର୍ତ୍ତମାନ ସୁଦ୍ଧା

ଲୋକେ ଦ୍ୱିତୀୟ ଇନ୍ଦ୍ରଦ୍ୟୁମ୍ନ ବୋଲି କହୁଛନ୍ତି । ଖ୍ରୀ ୧୧୬୮ରେ ମନ୍ଦିରକୁ ଯେଉଁ ରାଜା ପୂର୍ଣ୍ଣନିର୍ମାଣ କଲେ ସେ ମଧ୍ୟ ଇନ୍ଦ୍ରଦ୍ୟୁମ୍ନ ଉପାଧି ପାଇଛନ୍ତି ।" ନୀଳ-ମାଧବଙ୍କ ଆରାଧନା ଓ ଅନ୍ତର୍ଦ୍ଧାନ ଏବଂ ଦାରୁରୂପୀ ଜଗନ୍ନାଥଙ୍କ ଆବିର୍ଭାବ —ଏ ଦୁଇଟି ଉପାଖ୍ୟାନର ପ୍ରସଙ୍ଗ ହଣ୍ଟର ଚର୍ଚ୍ଚା କରିଥିବେ । ହଣ୍ଟରଙ୍କ ଅନୁମାନ ସଙ୍ଗତ ବୋଧ ହେଉନାହିଁ । ଯଦି ନୀଳମାଧବ ମୂର୍ତ୍ତି ଯବନ ରାଜତ୍ୱରେ ଅନ୍ତର୍ଦ୍ଧାନ ହେଲେ, ତାହାହେଲେ ପୁନଃ ପ୍ରକାଶ ସମୟରେ ସେହି ନୀଳମାଧବଙ୍କ ମୂର୍ତ୍ତି ପୂଜା ନ ପାଇ ଚତୁର୍ଦ୍ଧାମୂର୍ତ୍ତି କିପରି ପୂଜା ପାଇଲେ ? ଯଦି ହଣ୍ଟରଙ୍କ ଅନୁମାନ ଠିକ୍ ବୋଲି ଧରାଯିବ, ତାହାହେଲେ ଯଯାତିଙ୍କ ସମୟରେ ନୀଳମାଧବ ( ଏକମୂର୍ତ୍ତି ) ଚାରିମୂର୍ତ୍ତିରେ ପରିଣତ ହେଲେ ବୋଲିବାକୁ ହେବ । ନୀଳମାଧବଙ୍କୁ ଖୋଜି ଆଣି ଜଗନ୍ନାଥାଦି ଚାରିମୂର୍ତ୍ତି କରି ପୂଜା କରିବାର କିଛି କାରଣ ଦେଖାଯାଉ ନାହିଁ । ଯଦି ଧରାଯାଏ ଯେ ନୀଳମାଧବ ମୂର୍ତ୍ତି ବୌଦ୍ଧମୂର୍ତ୍ତି ଥିଲେ ପରେ ଜଗନ୍ନାଥ ମୂର୍ତ୍ତି ହେଲେ, ତାହାହେଲେ ଯଯାତିଙ୍କ ଅମଳରେ ବା କାହିଁକି ହେଲେ, ? ଯଦି ନୀଳମାଧବଙ୍କ ବୌଦ୍ଧମୂର୍ତ୍ତି ବୋଲି ଧାରାଯିବ, ତାହାହେଲେ "ପରମ ମାହେଶ୍ୱର" ଯଯାତି ପୁଣି ତାଙ୍କୁ ଖୋଜି ଆଣିବାର କିଛି କାରଣ ନାହିଁ । ଚତୁର୍ଦ୍ଧାମୂର୍ତ୍ତି ଯଯାତିଙ୍କ ଆଗରୁ ଥିଲେ, ଯବନମାନଙ୍କ ଅମଳରେ ଏହି ମୂର୍ତ୍ତିମାନଙ୍କୁ ଲୁଚାଇ ରଖାଯାଇ ଥିଲା; ଯଯାତି ଏହି ମୂର୍ତ୍ତିମାନଙ୍କୁ ଖୋଜି ବାହାର କରି ନୂତନ କଳେବର କରାଇ ପୁନଃ ପ୍ରତିଷ୍ଠା କରାଇଥିଲେ । ସେହିହେତୁ ଲୋକେ ତାଙ୍କୁ ଦ୍ୱିତୀୟ ଇନ୍ଦ୍ରଦ୍ୟୁମ୍ନ ଉପାଧି ଦେଇଥିବା ସ୍ୱାଭାବିକ । କିନ୍ତୁ ପୁରାଣରେ, ଜନଶ୍ରୁତିରେ ଚତୁର୍ଦ୍ଧାମୂର୍ତ୍ତିଙ୍କ ଉଦୟ ଓ ପ୍ରଥମ ମନ୍ଦିର ନିର୍ମାଣ ପାଇଁ ଇନ୍ଦ୍ରଦ୍ୟୁମ୍ନ ପ୍ରସିଦ୍ଧ । ଚତୁର୍ଦ୍ଧାମୂର୍ତ୍ତିଙ୍କୁ ପୁନଃ ପ୍ରତିଷ୍ଠା କରି-ଥିବାରୁ ଯଯାତି ଦ୍ୱିତୀୟ ଇନ୍ଦ୍ରଦ୍ୟୁମ୍ନ ବୋଲାଇଲେ । ଏଥିରୁ ସ୍ପଷ୍ଟ ଜଣାଯାଉଛି ଯେ ଯଯାତି ଇନ୍ଦ୍ରଦ୍ୟୁମ୍ନ ନୁହନ୍ତି କି ଇନ୍ଦ୍ରଦ୍ୟୁମ୍ନ ୪ର୍ଥ (ଚତୁର୍ଥ) ଶତାବ୍ଦୀର ଲୋକ ନୁହନ୍ତି । ଇନ୍ଦ୍ରଦ୍ୟୁମ୍ନ ଯଯାତିଙ୍କ ପୂର୍ବର ଲୋକ । ଯଯାତିଙ୍କ ସମୟର ବହୁ ପୂର୍ବରୁ ରଚିତ ପୁରାଣମାନଙ୍କରେ ଇନ୍ଦ୍ରଦ୍ୟୁମ୍ନ ଚରିତର ଅସ୍ତିତ୍ୱ ଏହାର ଅନ୍ୟ ଏକ ପ୍ରମାଣ ।

ଏହି ଉପାଖ୍ୟାନକୁ ( ଜଗନ୍ନାଥଙ୍କୁ ପୁରୀଠାରୁ ସ୍ଥାନାନ୍ତରିତ କରିବା ଓ ଯଯାତି ଠାକୁରଙ୍କୁ ଆଣି ପୁନଃ ପ୍ରତିଷ୍ଠା କରିବା ) ଲକ୍ଷ୍ୟକରି କେହି କେହି କହନ୍ତି ଯେ ଯଯାତିଙ୍କ ପୂର୍ବରୁ ଓଡ଼ିଶାରେ ବୌଦ୍ଧମତାବଲମ୍ବୀ ରାଜାମାନେ ରାଜତ୍ୱ କରୁ-ଥିଲେ ଏବଂ ଶ୍ରୀପୁର (ମଧ୍ୟ ପ୍ରଦେଶ) ର ତ୍ରିକଳିଙ୍ଗାଧିପତି ଭବଗୁପ୍ତ ବୌଦ୍ଧ ପ୍ରଭାବରୁ ଓଡ଼ିଶାକୁ ମୁକ୍ତ କରିଥିଲେ ଓ ଯଯାତି ଏହାଙ୍କ ଅଧୀନରେ ଓଡ଼ିଶାରେ ରାଜା ହୋଇଥିଲେ । ଭବଗୁପ୍ତ ବଂଶ ଶବର ଥିବାର ଏହି ଲେଖକମାନେ ଅନୁମାନ କରନ୍ତି । ନଗେନ୍ଦ୍ରନାଥ ବସୁ "ବିଶ୍ୱକୋଷ" (ବଂ) ଗ୍ରନ୍ଥରେ "ଜଗନ୍ନାଥ" ପର୍ଯ୍ୟାୟରେ ଲେଖି-

ଛନ୍ତି—"ଅନନ୍ତର ଉତ୍କଳ ରାଜ୍ୟରେ ବୌଦ୍ଧମାନଙ୍କର ଅଧିକାର ବିସ୍ତୃତ ହେଲା । ସେହିହେତୁ ସୁଦୀର୍ଘକାଳ ଦାରୁବ୍ରହ୍ମଙ୍କ ବା ମହାବେଦୀର ମାହାତ୍ମ୍ୟ ହିନ୍ଦୁ ଜଗତରେ ଅପ୍ରକାଶିତ ରହିଲା । ବୌଦ୍ଧମାନଙ୍କର ପରାକ୍ରମ ଖର୍ବ ହେବା ପରେ ଅନାର୍ଯ୍ୟ ଶବର-ମାନେ କଳିଙ୍ଗରେ ଆଧିପତ୍ୟ ବିସ୍ତାର କଲେ ଏବଂ କ୍ରମେ ସେମାନେ ଆର୍ଯ୍ୟ ସଂସ୍ରବରେ ସଭ୍ୟ ହୋଇଗଲେ ।" (ଅନୁ) । ପୁଣି ସେ କହନ୍ତି ଯେ ଯବନମାନଙ୍କ ଭୟରେ ଏହି ଶବର ରାଜତ୍ୱ ସମୟରେ ପୁରୀରୁ ଜଗନ୍ନାଥଙ୍କୁ ମଧ୍ୟପ୍ରଦେଶର ରାଜିମ ନଗରକୁ ନେଇ ଯାଇ ସେଠାରେ ସେବା ପୂଜାର ବ୍ୟବସ୍ଥା କରୁଥିଲେ ଏବଂ ଯଯାତି ଉତ୍କଳ ସିଂହାସନ ପାଇବା ପରେ ଶବର ରାଜଧାନୀ ରାଜିମରୁ ଦାରୁମୂର୍ତ୍ତି ଆଣି ନାନା ଯାଗଯଜ୍ଞ କରି ବ୍ରାହ୍ମଣ ଦ୍ୱାରା ପୁନଃ ପ୍ରତିଷ୍ଠା କରିଥିଲେ । ମାଦଳାପାଞ୍ଜି ବର୍ଣ୍ଣିତ ରକ୍ତବାହୁ ଆକ୍ରମଣକୁ ବସୁ ମହାଶୟ ଶବରରାଜ ଶିବଗୁପ୍ତଙ୍କ ସମୟର ଏବଂ ସ୍ୱୟଂ ଶିବଗୁପ୍ତ ଜଗନ୍ନାଥଙ୍କୁ ରାଜିମ୍ ନଗରକୁ ନେଇ ଯାଇଥିବାର ଅନୁମାନ କରନ୍ତି । ଏହାପରେ ପୁଣି ସେ ଅନୁମାନ କରିଛନ୍ତି, "ଉତ୍କଳଖଣ୍ଡ ଓ ତତ୍ପରବର୍ତ୍ତୀ ଗ୍ରନ୍ଥମାନଙ୍କରେ ଶବରକର୍ତ୍ତୃକ ଯେଉଁ ପୁରୁଷୋତ୍ତମଙ୍କର ପୂଜାଦି ଲିଖିତ ଅଛି, ତାହା ଶବରରାଜାମାନଙ୍କର ସମୟର କଥା ହେବା ହିଁ ସମଧିକ ସମ୍ଭବ । ଯଯାତି ଶବର ରାଜଧାନୀରୁ ଦାରୁମୂର୍ତ୍ତି ଆଣି ନାନା ଯାଗଯଜ୍ଞ କରି ବ୍ରାହ୍ମଣ ଦ୍ୱାରା ପୁନଃ ପ୍ରତିଷ୍ଠା କରନ୍ତି । ବୋଧହୁଏ, ଏହାକୁ ଉପଲକ୍ଷ୍ୟ କରି ଉତ୍କଳଖଣ୍ଡ ପ୍ରଭୃତି ଗ୍ରନ୍ଥରେ ବ୍ରହ୍ମାକର୍ତ୍ତୃକ ଦାରୁ ବ୍ରହ୍ମଙ୍କ ପ୍ରତିଷ୍ଠା କଥା ବର୍ଣ୍ଣିତ ହୋଇଅଛି ।" ତା ଛଡ଼ା ଉତ୍କଳଖଣ୍ଡ ଅପେକ୍ଷା ପ୍ରାଚୀନ ନାରଦ ପୁରାଣ ଓ ବ୍ରହ୍ମ ପୁରାଣରେ ଶବର ବା ବ୍ରହ୍ମାଙ୍କ ପ୍ରସଙ୍ଗ ନ ଥିବାରୁ ଏହା ହୋଇଥିବା ଅନୁମାନ କରାଯାଇପାରେ ବୋଲି ସେ କହନ୍ତି ।

"ଉତ୍କଳଖଣ୍ଡ" ( ସ୍କନ୍ଦ ପୁରାଣ ) ର ଜଗନ୍ନାଥ ଉପାଖ୍ୟାନକୁ ଯଯାତିଙ୍କ ଉପାଖ୍ୟାନ ବୋଲି ବସୁ ଯାହା ଅନୁମାନ କରିଛନ୍ତି ତାହା ଠିକ୍ ନୁହେଁ । ଯଯାତି ଉତ୍କଳର ରାଜା । ସେ ଉତ୍କଳର ପୂର୍ବାଞ୍ଚଳରୁ ଯାଇ ମଧ୍ୟଅଞ୍ଚଳରେ (ସୋନପୁରରେ) ଜଗନ୍ନାଥାଦି ଚାରିମୂର୍ତ୍ତିଙ୍କୁ ଖୋଜି ଆଣି ପୁନର୍ବାର ପ୍ରତିଷ୍ଠା କରିଥିଲେ । ଇନ୍ଦ୍ରଦ୍ୟୁମ୍ନ ଅବନ୍ତୀର ରାଜା । ସେ ଉତ୍କଳକୁ ଆସି (ନୀଳମାଧବଙ୍କ ଅନ୍ତର୍ଦ୍ଧାନ ପରେ) ଜଗନ୍ନାଥ, ବଳଭଦ୍ର, ସୁଭଦ୍ରା ଓ ସୁଦର୍ଶନ—ଏ ଚାରିମୂର୍ତ୍ତି ପାଇଥିଲେ । ଏହାଛଡ଼ା ଇନ୍ଦ୍ରଦ୍ୟୁମ୍ନ ନୀଳମାଧବଙ୍କୁ ଦର୍ଶନ କରିବା ଉଦ୍ଦେଶ୍ୟରେ ପୁରୁଷୋତ୍ତମ କ୍ଷେତ୍ରକୁ ଆସିଥିଲେ; କିନ୍ତୁ ଚାରିମୂର୍ତ୍ତିଙ୍କ ଉଦୟ ଦେଖିଲେ । ପୁଣି ଯଯାତିଙ୍କ ସମୟରେ ନୀଳମାଧବଙ୍କ ଅନ୍ତର୍ଦ୍ଧାନ ବିଷୟ ନାହିଁ । କେବଳ ସ୍ଥାନାନ୍ତରିତ ହୋଇଥିବା ଚତୁର୍ଦ୍ଧା ଦାରୁମୂର୍ତ୍ତିଙ୍କୁ ଖୋଜି ବାହାର କରି ଆଣିଥିଲେ । ଏହାଙ୍କ ସମୟରେ ଜଗନ୍ନାଥଙ୍କ ପ୍ରଥମ ପ୍ରକାଶର ପ୍ରଶ୍ନ ଆଦୌ ଉଠୁନାହିଁ । ରାଜିମ୍‌ରେ ତଥାକଥିତ ଶବର ରାଜା ଶିବଗୁପ୍ତ ଓ ତାଙ୍କର ବଂଶଧରମାନଙ୍କ ଦ୍ୱାରା ଚାରି ଦାରୁମୂର୍ତ୍ତି ହୁଏତ ପୂଜା ପାଉଥିଲେ; କିନ୍ତୁ ନୀଳମାଧବ

ମୂର୍ତ୍ତି ନୁହନ୍ତି । ଏଥିରୁ ଜଣାଯାଉଛି ଯେ ଉତ୍କଳଖଣ୍ଡରେ ଶବର ପୁରୁଷୋତ୍ତମ କ୍ଷେତ୍ରରେ ନୀଳମାଧବଙ୍କୁ ପୂଜା କରୁଥିବା ଯାହା ବର୍ଣ୍ଣନା କରାଯାଇଛି, ତାହା ଯଯାତିଙ୍କ ବହୁ ପୂର୍ବର ଚରିତ । ଏହାଛଡ଼ା ନାରଦ ପୁରାଣ, ବ୍ରହ୍ମ ପୁରାଣ ପ୍ରଭୃତି ଯଯାତିଙ୍କ ବହୁ ପୂର୍ବର ରଚନା । ସେଥିରେ ବଳଭଦ୍ରାଦି ଚାରିମୂର୍ତ୍ତିଙ୍କ ଆବିର୍ଭାବ ବିଷୟ ଓ ଇନ୍ଦ୍ରଦ୍ୟୁମ୍ନ ବିଷୟ ଲେଖାଥିବାରୁ ବସୁଙ୍କ ଅନୁମାନ ଗ୍ରହଣୀୟ ହୋଇପାରୁ ନାହିଁ ।

ପୁଣି ରାଜିମରେ ଯେଉଁ ଜଗନ୍ନାଥ ମୂର୍ତ୍ତି ଅଛନ୍ତି ସେ ସ୍ୱତନ୍ତ୍ର ପୀଠ ଦେବତାରୂପରେ ପୂଜା ପାଉ ନାହାନ୍ତି । ରାଜୀବଲୋଚନ ହେଉଛନ୍ତି ରାଜିମ୍‌ର ପ୍ରଧାନ ଦେବତା । ରାଜୀବଲୋଚନଙ୍କ ମନ୍ଦିର ବେଢ଼ା ଭିତରେ ବାମନ, ବରାହ, ବଦ୍ରିନାଥ, ଜଗନ୍ନାଥ ପ୍ରଭୃତିଙ୍କ ଛୋଟ ଛୋଟ ମନ୍ଦିର ଅଛି । ପୁରୀଠାରୁ ଜଗନ୍ନାଥଙ୍କୁ ରାଜିମ୍ ନିଆ-ଯାଇଥିବାର ଯେଉଁ କାହାଣୀ ଶୁଣାଯାଏ ତାହା ଯଦି ସତ୍ୟ ହୁଏ, ତାହାହେଲେ ହିନ୍ଦୁ ସମାଜର ପ୍ରାଥମିକ ଅବସ୍ଥାରେ ଶବରମାନଙ୍କ ଦ୍ୱାରା ପୂଜା ପାଉଥିବା ‘ଜଗନ୍ନାଥ ରାଜୀବଲୋଚନଙ୍କଠାରୁ ପ୍ରାଚୀନ ହେବା ସମ୍ଭବ । କିନ୍ତୁ ରାଜିମ୍‌ର କ୍ଷେତ୍ର ଦେବତା ଜଗନ୍ନାଥ ନ ହୋଇ ରାଜୀବଲୋଚନ ହେଉଥିବାରୁ ରାଜୀମରେ ଶବରମାନେ ଜଗନ୍ନାଥଙ୍କୁ ପୂଜା କରୁଥିଲେ ଏବଂ ସେହି ଶବରମାନଙ୍କ ସମୟରେ ଇନ୍ଦ୍ରଦ୍ୟୁମ୍ନଙ୍କ ଆବିର୍ଭାବ ପ୍ରଭୃତି ଅନୁମାନ ଠିକ୍ ବୋଲି କୁହାଯାଇପାରିବ ନାହିଁ ।

ଏଥିରୁ ସ୍ପଷ୍ଟ ଜଣାଯିବ ଯେ ଯଯାତି ଇନ୍ଦ୍ରଦ୍ୟୁମ୍ନ ନୁହନ୍ତି, କିନ୍ତୁ ସେ ଜଗନ୍ନାଥଙ୍କ ପୁନଃ ପ୍ରତିଷ୍ଠା କରିଥିବାରୁ "ଦ୍ୱିତୀୟ ଇନ୍ଦ୍ରଦ୍ୟୁମ୍ନ" ବୋଲି ଲୋକେ ତାଙ୍କୁ ଡାକିଲେ ।

ରାଜିମ କିମ୍ବଦନ୍ତୀ ଓ ଯଯାତିଙ୍କ ଜଗନ୍ନାଥପୁନଃପ୍ରତିଷ୍ଠା ଘଟଣାକୁ ମିଶାଇ କେହି କେହି କହନ୍ତି ଯେ ଶ୍ରୀପୁର (ମଧ୍ୟ ପ୍ରଦେଶ )ର ଶିବଦେବ ବଂଶର ଇନ୍ଦ୍ରବଳ ହିଁ ଇନ୍ଦ୍ରଦ୍ୟୁମ୍ନ ଏବଂ ଏହି ଇନ୍ଦ୍ରବଳଙ୍କୁ ପୁରାଣଲେଖକମାନେ ଓ ଓଡ଼ିଶାର କବିମାନେ ଇନ୍ଦ୍ରଦ୍ୟୁମ୍ନ ବୋଲି ପ୍ରଚାର କରିଛନ୍ତି । ବହୁ ଅନୁମାନ ଉପରେ ଏହି ମତ ନିର୍ଭର କରୁଛି । ପ୍ରଥମ, ଇନ୍ଦ୍ରବଳଙ୍କ ସମୟରେ ଓଡ଼ିଶା ଶ୍ରୀପୁର ଅଧୀନରେ ଥିଲା । ଦ୍ୱିତୀୟ— ଇନ୍ଦ୍ରବଳ ବା ତାଙ୍କର ପୂର୍ବପୁରୁଷମାନଙ୍କର ଅଧିକାର ଯବନ ରାଜତ୍ୱ ସମୟରେ ଅକ୍ଷୁର୍ଣ୍ଣ ଥିଲା । ତୃତୀୟ—ଇନ୍ଦ୍ରବଳଙ୍କ ବଂଶ ଶବର ବଂଶ; ତେଣୁ ଇନ୍ଦ୍ରଦ୍ୟୁମ୍ନଙ୍କୁ ଶବର ବଂଶର ଲୋକ ବୋଲିବାକୁ ହେବ । ଚତୁର୍ଥ—ଯଯାତି କିମ୍ବଦନ୍ତୀକୁ ଅସ୍ୱୀକାର କରିବାକୁ ହେବ ।

ଶ୍ରୀପୁର ଶିଳାଲିପି ଅନୁସାରେ ଶବର ବଂଶର ଉଦୟନଙ୍କ ପୁତ୍ର ହେଉଛନ୍ତି ଇନ୍ଦ୍ରବଳ। । ୧. ଉଦୟନ, ୨. (ପୁତ୍ର) ଇନ୍ଦ୍ରବଳ, ୩. (ପୁତ୍ର) ନନ୍ନଦେବ ୪. (ପୁତ୍ର) ଚନ୍ଦ୍ରଗୁପ୍ତ, ୫. (ପୁତ୍ର) ହର୍ଷଗୁପ୍ତ, ୬. (ପୁତ୍ର) ଶିବଗୁପ୍ତ ବା ବାଳାର୍ଜ୍ଜୁନ । ଏହି ଶିଳାଲିପିର କାଳ ନିର୍ଦ୍ଧାରିତ ହୋଇ ନାହିଁ । କାନିଂହାମଙ୍କ ମତରେ ଶିବଗୁପ୍ତ ବାଳାର୍ଜ୍ଜୁନ ଖ୍ରୀ୪୭୫ ଠାରୁ ୫୦୦ ଭିତର ଲୋକ । ଫ୍ଲିଟ୍‌ଙ୍କ ମତରେ ଶିଳାଲିପିର

ଅକ୍ଷର ୮ମ ବା ୯ମ ଶତାବ୍ଦୀର, ଅତଏବ ଶିବଗୁପ୍ତ ୮ମ ବା ୯ମ ଶତାବ୍ଦୀର ପରବର୍ତ୍ତୀ ଲୋକ । ଏ ଦୁଇ ଐତିହାସିକଙ୍କ ସମସ୍ତ ନିରୂପଣରେ ପ୍ରାୟ ଦୁଇଶହ ବର୍ଷ ପ୍ରଭେଦ ରହିଛି । ଶ୍ରୀପୁର ଶିଳାଲିପିର ଶିବଗୁପ୍ତ, ଦୁର୍ଗ (ରାୟପୁର ଅନ୍ତର୍ଗତ) ଶିଳାଲିପିର ଶିବଦେବ ଓ କଟକ ତାମ୍ରଶାସନର ଭବଦେବଙ୍କ ପିତା ଶିବଗୁପ୍ତ ଏକ ବ୍ୟକ୍ତି ଏବଂ ଶିବଗୁପ୍ତ ୮ମ ଶତାବ୍ଦୀରେ ରାଜତ୍ୱ କରୁଥିଲେ ବୋଲି ନଗେନ୍ଦ୍ର ନାଥ ବସୁ ମତ ବ୍ୟକ୍ତ କରିଛନ୍ତି । ଯଦି ଏହି ମତକୁ ଠିକ୍ ବୋଲି ଧରାଯାଏ, ତାହାହେଲେ ଶିବଦେବଙ୍କ ରାଜତ୍ୱରେ ଯବନମାନେ ଓଡ଼ିଶା ଆକ୍ରମଣ କରିଥିଲେ ଏବଂ ଜଗନ୍ନାଥଙ୍କୁ ଶିବଦେବ ଶ୍ରୀପୁରକୁ ନେଇ ଯାଇଥିଲେ ବୋଲି କହିବାକୁ ହେବ । ଶିବଗୁପ୍ତଙ୍କ ପରେ ପ୍ରାୟ ୧୪୦ ବର୍ଷ ଯବନମାନେ ଓଡ଼ିଶା ଅଧିକାର କରିଥିଲେ ଏବଂ ଶିବଗୁପ୍ତଙ୍କ ବଂଶଧର-ମାନଙ୍କର ଆଧିପତ୍ୟ ଓଡ଼ିଶାରେ ନ ଥିଲା, କିନ୍ତୁ ବସୁଙ୍କ ମତରେ ଶବରରାଜ ଶିବଗୁପ୍ତଙ୍କ ବଂଶ ଉତ୍କଳରେ ରାଜତ୍ୱ କରୁଥିଲେ ଓ ପରେ ଯଯାତି (ବସୁଙ୍କ ମତରେ ନବମ ଶତାବ୍ଦୀ) ଜଗନ୍ନାଥଙ୍କୁ ପୁରୀକୁ ଆଣିଲେ । ବସୁଙ୍କ ମତକୁ ଗ୍ରହଣ କଲେ ଇନ୍ଦ୍ରବଳ ଓଡ଼ିଶାରେ ରାଜତ୍ୱ କରୁଥିବା କଥା ଆଦୌ ଉଠୁନାହିଁ । କାରଣ ଶିବଗୁପ୍ତଙ୍କ ପୂର୍ବ-ପୁରୁଷମାନେ ଓଡ଼ିଶାରେ ରାଜତ୍ୱ କରୁଥିବାର ପ୍ରମାଣ ମିଳୁନାହିଁ । ଅତଏବ ଶିବଗୁପ୍ତଙ୍କ ପିତାମହଙ୍କ ପିତାମହ ଇନ୍ଦ୍ରବଳ ଓଡ଼ିଶାରେ ରାଜତ୍ୱ କରୁଥିବାର ଅନୁମାନ ଠିକ୍ ନୁହେଁ ।

ପୁଣି କେତେକଙ୍କ ମତରେ ଇନ୍ଦ୍ରବଳ ଷଷ୍ଠ ଶତାବ୍ଦୀରେ ରାଜତ୍ୱ କରୁଥିଲେ ଏବଂ କୋଶଳ ତାଙ୍କ ଅଧୀନରେ ଥିଲା । ମାଳବର ଯଶୋବର୍ମଦେବ ମଗଧ ଅଧିକାର କରି (ଷଷ୍ଠ ଶତାବ୍ଦୀର ଦ୍ୱିତୀୟ ପାଦରେ) ମଗଧ ଅଧିକାର କରି କୋଶଳ ଓ ଉତ୍କଳକୁ ନିଜ ଅଧୀନରେ ଆଣିଥିଲେ । ଇନ୍ଦ୍ରବଳଙ୍କ ପୁତ୍ର ନାନ୍ନଦେବ ଯଶୋଧର୍ମଙ୍କ ଅଧୀନରେ ରହିଲେ । ପୁଣି ବାକାଟକମାନେ ନାନ୍ନଦେବଙ୍କ ନାବାଳକତ୍ୱ ସମୟରେ କୋଶଳ, ଉତ୍କଳ, କଳିଙ୍ଗ ପ୍ରଭୃତି ଅଧିକାର କରିଥିଲେ । ଏଥିରୁ ଜଣାଯାଉଛି ଯେ, ଇନ୍ଦ୍ରବଳ ଉତ୍କଳରେ ଆଧିପତ୍ୟ ବିସ୍ତାର କରିଥିବାର ଅନୁମାନ ଠିକ୍ ନୁହେଁ ।

ଏହାଛଡ଼ା ଇନ୍ଦ୍ରବଳ ଶବର ବଂଶର ବୋଲି କୁହାଯାଇଛି, କିନ୍ତୁ କିମ୍ବଦନ୍ତୀ ବା ପୁରାଣମାନଙ୍କରେ ଇନ୍ଦ୍ରଦ୍ୟୁମ୍ନ ଶବର ବଂଶର ଲୋକ ବୋଲି କୌଣସିଠାରେ କୁହାଯାଇନାହିଁ । ପୁଣି ଶବର ବଂଶୀୟ ଇନ୍ଦ୍ରବଳ ଇନ୍ଦ୍ରଦ୍ୟୁମ୍ନ ହେଲେ ଶବର ବିଶ୍ୱା-ବସୁଙ୍କ ନୀଳମାଧବ ପୂଜାର ବିଶିଷ୍ଟତା କିଛି ରହୁନାହିଁ ।

କେବଳ "ଇନ୍ଦ୍ରଦ୍ୟୁମ୍ନ" ଓ "ଇନ୍ଦ୍ରବଳ' ଏ ଦୁଇଟି ନାମରେ "ଇନ୍ଦ୍ର" ଶବ୍ଦ ଥିବାରୁ ଇନ୍ଦ୍ରଦ୍ୟୁମ୍ନ ଓ ଇନ୍ଦ୍ରବଳ ଏକ ବ୍ୟକ୍ତି ବୋଲି ଅନୁମାନ କରିବା ଠିକ୍ ହେଉ-ନାହିଁ ।

ବିହାର ପ୍ରଦେଶର ମୁଙ୍ଗେର ଜିଲ୍ଲାର ପଶ୍ଚିମ ଓ ଦକ୍ଷିଣ ଅଞ୍ଚଳରେ ଏକାଦଶ ଶତାବ୍ଦୀର ଶେଷ ଆଡ଼କୁ ଇନ୍ଦ୍ରଦବନ (ଇନ୍ଦ୍ରଦ୍ୟୁମ୍ନ) ନାମରେ ଜଣେ ରାଜପୁତ ରାଜା

ଥିଲେ ଏବଂ ସେ ସିଆବୁଦ୍ଦିନ୍ ଘୋଷଙ୍କ ଦ୍ୱାରା ବିତାଡ଼ିତ ହୋଇ ଜଗନ୍ନାଥ ଧାମକୁ ପଳାଇ ଆସିଥିଲେ, ଏଭଳି ଏକ କିମ୍ବଦନ୍ତୀ ବିହାରର ମୁସଲମାନଙ୍କ ଭିତରେ ଶୁଣାଯାଏ ବୋଲି ବୁକାନନ୍ ହାମିଲ୍ଟନ୍ ଲେଖିଛନ୍ତି । ସେ ଇନ୍ଦ୍ରପି ନାମରେ ଏକ ଗଡ଼ ନିର୍ମାଣ କରିଥିଲେ । ଏହି ଇନ୍ଦ୍ରଦ୍ୟୁମ୍ନ ପୁରୀର ଜଗନ୍ନାଥ ମନ୍ଦିର ନିର୍ମାଣ କରିଛନ୍ତି, ଏହା ଲୋକେ ଖାଲି ନାହାନ୍ତି ବୋଲି ଲେଖି ବୁକାନାନ୍ ଲୋକଙ୍କ ଧାରଣାକୁ ସନ୍ଦେହ କରିଛନ୍ତି । (୨୯) ସ୍ମିଥ୍ ଲେଖିଛନ୍ତି ଯେ କିମ୍ବଦନ୍ତୀ ଅନୁସାରେ ଖ୍ରୀ ୧୧୯୭ର ମୁସଲମାନଙ୍କ ଆକ୍ରମଣ ସମୟରେ ମଗଧରେ ଇନ୍ଦ୍ରଦ୍ୟୁମ୍ନ ପାଲ ରାଜତ୍ୱ କରୁଥିଲେ ଏବଂ ମୁଙ୍ଗେର ଜିଲ୍ଲାରେ ଇନ୍ଦ୍ରଦ୍ୟୁମ୍ନଙ୍କ ଦ୍ୱାରା ନିର୍ମିତ କେତେକ ଦୁର୍ଗକୁ ଲୋକେ ବର୍ତ୍ତମାନ ସୁଦ୍ଧା ଦେଖାଉଛନ୍ତି । (୩୦) ସ୍ମିଥ୍ ସାହେବ ବୁକାନାନ୍ ହାମିଲ୍ଟନଙ୍କ ଲେଖା ଉପରେହିଁ ନିର୍ଭର କରିଥିବାର ଅନୁମାନ ହୁଏ । ଅନ୍ୟ ଏକ ଲେଖକ ମାର୍ଟିନ୍ ବୁକାନାନ୍‌ଙ୍କ ଲେଖାରୁ କିଛି ଅଂଶ ଉଦ୍ଧାର କରି କହିଛନ୍ତି, "ଏହି ନାମର ଜଣେ ରାଜାଙ୍କ ଦ୍ୱାରା ସେଠାର (ପୁରୀର) ମନ୍ଦିର ନିର୍ମିତ ବୋଲି ସମସ୍ତେ ସ୍ୱୀକାର କରନ୍ତି ।...ଇନ୍ଦ୍ରଦ୍ୟୁମ୍ନ ପାଲ ବଂଶର କି ନାହିଁ ଏବଂ ସେ ପାଲମାନଙ୍କ ପତନ ପରେ ମଗଧ ଦଖଲ କରିଥିବା ଜଣେ ରାଜା କି ନୁହନ୍ତି, ତାହା ମୁଁ ନିର୍ଦ୍ଧାରଣ କରିପାରୁ ନାହିଁ । ମୁଁ ସନ୍ଦେହ କରୁଛି ଯେ ଇନ୍ଦ୍ରଦ୍ୟୁମ୍ନ ପ୍ରତାପରୁଦ୍ରଙ୍କ ପୂର୍ବ ପୁରୁଷ ହେବେ ; ସେ ହୁଏତ ପ୍ରାଚୀନ ଆନ୍ଧ୍ର ରାଜ୍ୟ ଭିତରକୁ ଯାଇ ଅତିଶକ୍ତ ଭାବରେ ବର୍ଦ୍ଧିତ ହୋଇଥିବା ସାମ୍ରାଜ୍ୟର ଭଗ୍ନାବଶେଷକୁ ସଂଗ୍ରହ କରି ଜଗନ୍ନାଥଙ୍କ ପ୍ରକୃତରେ ପ୍ରତିଷ୍ଠା କରିଥିବେ ।" (୩୧)

ଦ୍ୱାଦଶ ଶତାବ୍ଦୀରେ ଇନ୍ଦ୍ରଦ୍ୟୁମ୍ନଙ୍କ ଅସ୍ତିତ୍ୱ ସିଦ୍ଧାନ୍ତ କରିବା ଏକ ଭିତ୍ତିହୀନ ବ୍ୟାପାର । ଯଦି ଖ୍ରୀ ୧୧୯୮ ବେଳକୁ ମୁସଲମାନମାନେ ମଗଧ ଆକ୍ରମଣ କରିଥାଆନ୍ତି ( ସ୍ମିଥ୍‌ଙ୍କ ମତ ଅନୁସାରେ ) ତାହାହେଲେ ଏହି ଇନ୍ଦ୍ରଦ୍ୟୁମ୍ନ ଗଙ୍ଗବଂଶ ରାଜତ୍ୱ ଭିତରେ ଓଡ଼ିଶାରେ ଆଶ୍ରୟ ନେଇଥିଲେ । ସେତେବେଳକୁ ଅନଙ୍ଗଭୀମଦେବଙ୍କ ରାଜତ୍ୱ ଏବଂ ସେହି ସମୟରେ (ଖ୍ରୀ ୧୧୯୬-୯୭) ଜଗନ୍ନାଥ ମନ୍ଦିର ନିର୍ମାଣ ଆରମ୍ଭ ହୋଇସାରିଥିଲା । ଗଙ୍ଗ ବଂଶର ଏ କୀର୍ତ୍ତିକୁ ପାଲ ବଂଶର ରାଜାଙ୍କ କୀର୍ତ୍ତି ବୋଲି କହିବା ହାସ୍ୟାସ୍ପଦ କଥା । ପୁଣି ଏହି ଇନ୍ଦ୍ରଦ୍ୟୁମ୍ନ ପାଲ ପ୍ରତାପରୁଦ୍ର ଦେବଙ୍କ ପୂର୍ବପୁରୁଷ ବୋଲି ମାର୍ଟିନ ଯାହା କହିଛନ୍ତି, ତାହା ମଧ୍ୟ ଯୁକ୍ତିହୀନ ଓ ଭିତ୍ତିହୀନ ।

---

(୨୯) Buchanan's Bhagalpur Journal, J. B. & O. Research Society. Vol. XV. Pt. III & IV P. 497-89.

(୩୦) V. A. Smith—History of India. P 404

(୩୧) Eastern India. Vol. II. P. 23-24

ବୃକାନାନ୍ ହାମିଲ୍ଟନ, ସ୍ମିଥ୍ କିମ୍ବା ମାର୍ଟିନଙ୍କ ଭଳି ପୁରୁଣାକାଳର ଲେଖକମାନଙ୍କ ମତକୁ ସେତେ ଧରା ନଯାଇ ପାରେ । ଶ୍ରୀ ଜେ. ଏନ୍. ସମାଦାର ଓ ଗୁରୁଦାସ ସରକାରଙ୍କ ଭଳି ଆଧୁନିକ ଲେଖକମାନେ ଏଭଳି କିମ୍ବଦନ୍ତୀ ଉପରେ ବେଶୀ ନିର୍ଭର କରି ଐତିହାସିକ ପ୍ରମାଣକୁ ଉପେକ୍ଷା କରିଛନ୍ତି । ଇନ୍ଦ୍ରଦ୍ୟୁମ୍ନ ପାଲ ବଂଶର ରାଜା, ସେ ଦ୍ୱାଦଶ ଶତାବ୍ଦୀରେ ଜୀବିତ ଥିଲେ ଓ ଜଗନ୍ନାଥ ମନ୍ଦିର ନିର୍ମାଣ କରିଥିବା କହିଛନ୍ତି । ଏହା ଏକ ଭିତ୍ତିହୀନ ସିଦ୍ଧାନ୍ତ । ବୃକାନାନ୍ ହାମିଲ୍ଟନଙ୍କ ଅନୁମାନ ଉପରେ ଆଲୋଚନା କରି ସମାଦାର କହିଛନ୍ତି—"ଯଦି ଏହିସବୁ କାରଣରୁ ଖ୍ରୀ ୧୧୯୮ରେ ଜଗନ୍ନାଥ ମନ୍ଦିର ନିର୍ମିତ ବା ପୁନଃନିର୍ମିତ ହୋଇଥାଏ, ତାହାହେଲେ ହାମିଲ୍ଟନ ଯେଉଁ କିମ୍ବଦନ୍ତୀ ଲେଖିଛନ୍ତି ଏବଂ ଅନୁମାନ କରିଛନ୍ତି ତାହା ନିର୍ଭୁଲ ହୋଇପାରେ । ପାଲବଂଶର ଶେଷ ରାଜା ମୁସଲମାନଙ୍କ ଦ୍ୱାରା ବିତାଡ଼ିତ ହୋଇ ମୁସଲମାନ ଆକ୍ରମଣର ଅଭେଦ୍ୟ ଓଡ଼ିଶା ରାଜ୍ୟକୁ ପଳାଇ ଯାଇପାରି ଥାଆନ୍ତି । ଏବଂ ସେଠାରେ ମନ୍ଦିର ନିର୍ମାଣ କରିଥାଇ ପାରନ୍ତି" (୩୨) ଶ୍ରୀ ଯୋଗେନ୍ଦ୍ରନାଥ ସମାଦାରଙ୍କ ଏହି ଅନୁମାନ ଯେ କେତେଦୂର ଦୁର୍ବଳ ଓ ଅପ୍ରାସଙ୍ଗିକ ତାହା କହିବା ଅନାବଶ୍ୟକ । ଶ୍ରୀ ଗୁରୁଦାସ ସରକାର ନୁଲେ ପଞ୍ଚାନନଙ୍କ "ଗୋଷ୍ଠି କଥା" ନାମକ ବଙ୍ଗଳା ବହିରୁ ନିମ୍ନଲିଖିତ ଅଂଶଟି ଉଦ୍ଧାର କରିଛନ୍ତି । (୩୩)

ଇନ୍ଦ୍ରଦ୍ୟୁମ୍ନ ବୌଦ୍ଧ ରାଜା ଜଗନ୍ନାଥେ କୀର୍ତ୍ତି
ସାମ୍ୟବାଦୀ ତବୁ ବଲସୁ କ୍ଷତ୍ରୀୟ ବୃତ୍ତି ।

ଏହା ଉପରେ ସେ ଲେଖିଛନ୍ତି—"ଏହି ଇନ୍ଦ୍ରଦ୍ୟୁମ୍ନ ପୌରାଣିକ ଇନ୍ଦ୍ରଦ୍ୟୁମ୍ନଠାରୁ ଭିନ୍ନ । ସମ୍ଭବତଃ ସେ ପାଲ ବଂଶର ରାଜା ଥିଲେ ।" (ଅନୁ) । ନିଜ ମତ ସମର୍ଥନରେ ହାମିଲ୍ଟନ୍ ଓ ସମାଦାରଙ୍କ ମତ ଉଲ୍ଲେଖ କରିଛନ୍ତି । କିନ୍ତୁ ସରକାର ମହାଶୟ ସ୍ୱ-ଗ୍ରନ୍ଥର ଅନ୍ୟ ସ୍ଥାନରେ ମନ୍ଦିରର ନିର୍ମାଣ କାଳ ନିର୍ଣ୍ଣୟ କରିଥିବା ପରିଚ୍ଛେଦରେ ଲେଖିଛନ୍ତି, ଜଗନ୍ନାଥ ମନ୍ଦିର ଗଙ୍ଗେଶ୍ୱର ଦେବଙ୍କ ଦ୍ୱାରା ନିର୍ମିତ ହୋଇଛି । ସେ ପୁଣି କହିଛନ୍ତି—"ସୁତରାଂ ଏଭଳି ବୈଜ୍ଞାନିକ ପ୍ରମାଣ ବର୍ତ୍ତମାନେ କେବଳ ମାଦଳା-ପାଞ୍ଜିର ଉକ୍ତି ଉପରେ ଆସ୍ଥା ସ୍ଥାପନ କରି କେଶରୀରାଜା ଯଯାତି କିମ୍ବା ଅନଙ୍ଗଭୀମଦେବଙ୍କୁ ମନ୍ଦିର ନିର୍ମାତା ବୋଲି ସ୍ୱୀକାର କରିବା ଯୁକ୍ତିଯୁକ୍ତ ବୋଧ ହୁଏନାହିଁ ।" ସରକାର ନିଜ ମତ ନିଜେ ଖଣ୍ଡନ କରିଛନ୍ତି । (୩୪)

---

(୩୨) J. B. & O. R. S. Vol. 5. Pt. 2. P. 297
(୩୩) "ମନ୍ଦିରେର କଥା" (ବଂ) ପୃ ୭୦-୭୧
(୩୪) ଏଜନ ପୃ: ୧୪୩ (ବଙ୍ଗଳାରୁ ଅନୁବାଦିତ)

# ନୀଳମାଧବ

ପୁରୁଷୋତ୍ତମ କ୍ଷେତ୍ରରେ ଜଗନ୍ନାଥଙ୍କ ଆବିର୍ଭାବ ପୂର୍ବରୁ ନୀଳମାଧବ ହିଁ ପୀଠ ଦେବତା ବା ପ୍ରଧାନ ଦେବତା ରୂପେ ପୂଜା ପାଉଥିଲେ । ମହାପ୍ରଳୟ କାଳରେ ନୀଳଗିରିର ଅକ୍ଷୟବଟ ପ୍ରଳୟ ଜଳରେ ନିମଗ୍ନ ହୋଇ ନ ଥିଲା ଏବଂ ଏହି ବୃକ୍ଷର ମୂଳରେ ମହର୍ଷି ମାର୍କଣ୍ଡେୟ ନାରାୟଣଙ୍କ ମୂର୍ତ୍ତିଙ୍କୁ ଦର୍ଶନ କରିଥିଲେ । ଏହି ବଟବୃକ୍ଷର ପଶ୍ଚିମକୁ ରୋହିଣୀକୁଣ୍ଡ ଏବଂ ଏହି କୁଣ୍ଡର ଉତ୍ତରକୁ ନୀଳମାଧବଙ୍କ ଆସ୍ଥାନ ଥିଲା ।

ବିଶ୍ୱାବସୁ ଶବରଙ୍କ ସେବା ସମୟରେ ନୀଳମାଧବଙ୍କ ସହିତ ନୀଳଗିରିରେ ନୃସିଂହ ମଧ୍ୟ ପୂଜା ପାଉଥିବା ବିଷୟ ସ୍କନ୍ଦ ପୁରାଣରେ ବର୍ଣ୍ଣିତ ଅଛି । ଏହି ନୃସିଂହ ଜଗନ୍ନାଥଙ୍କ ମନ୍ଦିରର ଦକ୍ଷିଣକୁ ଓ ମୁକ୍ତିମଣ୍ଡପକୁ ଲାଗି ତାହାର ପଶ୍ଚିମକୁ ଅଛନ୍ତି । ଶବରମାନଙ୍କ ଛଡ଼ା ଅନ୍ୟ କୌଣସି ଲୋକ ସେ ସମୟରେ ନୀଳଗିରିକୁ ଯାତାୟାତ କରୁ ନ ଥିବାରୁ ଏ ଦେବତାମାନେ ଶବର ବିଶ୍ୱାବସୁଙ୍କ ଦ୍ୱାରା ହିଁ ପୂଜା ପାଉଥିଲେ ବୋଲି କହିବାକୁ ହେବ ।

ବଳଭଦ୍ରାଦି ମୂର୍ତ୍ତିମାନଙ୍କର ଆବିର୍ଭାବ ପୂର୍ବରୁ ସ୍ୱୟଂ ନାରାୟଣ ନୀଳମାଧବ ରୂପରେ ପୂଜା ପାଉଥିଲେ ଏବଂ ପ୍ରଳୟ କାଳରେ ମଧ୍ୟ ତାଙ୍କର ଅସ୍ତିତ୍ୱ ଥିଲା । ଏଥିରୁ ଜଣାଯାଉଛି ଯେ ସୃଷ୍ଟିର ଆଦ୍ୟରୁ ନାରାୟଣଙ୍କ ଆରାଧନାର ଧାରା ଏହି ନୀଳଗିରିରେ ପ୍ରବାହିତ ହୋଇଚାଲିଛି । ନୀଳମାଧବଙ୍କ ଅନ୍ତର୍ଦ୍ଧାନ ଓ ଜଗନ୍ନାଥଙ୍କ ଆବିର୍ଭାବ ଭିତରେ ଅବଶ୍ୟ କିଛି ସମୟ ଏହି ଧାରା ଖଣ୍ଡିତ ହୋଇଯାଇଥିଲା ।

ବ୍ରହ୍ମ ପୁରାଣରେ "ନୀଳମାଧବ" ଓ "ନୀଳଗିରି" ଏହି ଦୁଇଟି ନାମ ନ ଥିବା ଜଣାଯାଏ । ତେବେ, "ଇନ୍ଦ୍ରନୀଳମୟୀ ପ୍ରତିମା" ଓ ଏହି କ୍ଷେତ୍ରରେ ଶୈଳ ଥିବା କଥା ଏହି ପୁରାଣରେ ଅଛି । ବିଶ୍ୱାବସୁ ଏହି ମୂର୍ତ୍ତିଙ୍କର ସେବା କରୁଥିବା ବିଷୟ ମଧ୍ୟ ଏହି ପୁରାଣରେ ନାହିଁ । ନାରଦ ପୁରାଣରେ ମଧ୍ୟ ଏହି ବିଷୟ ଲିଖିତ ହୋଇନାହିଁ ।

ନୀଳମାଧବ ମୂର୍ତ୍ତି ନୀଳକାନ୍ତ ମଣିରେ ନିର୍ମିତ ଥିବା ସ୍କନ୍ଦ ପୁରାଣର ଉତ୍କଳ ଖଣ୍ଡରେ ଲେଖାଅଛି । କାରଣବାରିପୂର୍ଣ୍ଣି, ମୁକ୍ତିପ୍ରଦ ରୋହିଣୀକୁଣ୍ଡର ପୂର୍ବତଟକୁ ନୀଳକାନ୍ତମଣି-ନିର୍ମିତ ଭଗବାନ୍ ବାସୁଦେବଙ୍କ ମୂର୍ତ୍ତି ଥିବା ସପ୍ତମ ଅଧ୍ୟାୟରେ କୁହା-ଯାଇଛି । ଏହି ବିଗ୍ରହର ଉଚ୍ଚତା ଏକାଶୀତି ଅଙ୍ଗୁଳି ଏବଂ ସେ ଏକ ସ୍ଫଟିକ ମଣିମୟ ବେଦୀ ଉପରେ ସ୍ୱର୍ଣ୍ଣପଦ୍ମ ଆସନରେ ଅବସ୍ଥାନ କରୁଛନ୍ତି । ସେ ପୁଣି ଚକ୍ର-ଗଦାଧାରୀ ।

୧ ତତ୍ପୂର୍ଣ୍ଣଂ କାରଣାମ୍ଭୋଭିଃ ସ୍ପର୍ଶନାଦେବ ମୁକ୍ତିଦମ୍
ତସ୍ୟପ୍ରାକ୍ତଟମାସ୍ଥାୟ ନୀଳେନ୍ଦ୍ରମଣି ନିର୍ମିତା ।

୨ ଇନ୍ଦ୍ରନୀଲମୟୋ ଦେବ ଆସ୍ତେ ଚକ୍ରଗଦାଧରଃ
ଏକାଶୀତ୍ୟାଙ୍ଗୁଳମିତଃ ସ୍ୱର୍ଣ୍ଣପଦ୍ମୋ-ପରିସ୍ଥିତଃ । (୩୫)

ନୀଳମାଧବଙ୍କ ରୂପ ଅତି ମନୋହର । ଯୁଗଳମକରମୁଖ-କର୍ଣ୍ଣଭୂଷଣରେ କର୍ଣ୍ଣ ଶୋଭିତ । କଣ୍ଠଦେଶରେ ମନୋହର ଭୂଷଣ । ଏକ ହସ୍ତରେ ଦକ୍ଷିଣାବର୍ତ୍ତୀ ଶଙ୍ଖ । ଚତୁର୍ବାହୁ । ବାହୁ ଆଜାନୁଲମ୍ବିତ । ସ୍କନ୍ଧଯୁଗଳ ପୀନ ଓ ଆୟତ । ବକ୍ଷସ୍ଥଳରେ ହାର । ଗଳାରେ କୌସ୍ତୁଭମଣି । କଣ୍ଠଲମ୍ବିତ ମାଳା ନାଭିଦେଶ ପର୍ଯ୍ୟନ୍ତ ସ୍ପର୍ଶ କରୁଛି । ପ୍ରଭୁ କେଶବ ସ୍ଥାଣୁ ଭଳି ଅଚଳ ଭାବରେ ଅବସ୍ଥାନ କରୁଛନ୍ତି । କଟିଦେଶ ଉତ୍ତମ ରତ୍ନମୟ କାଞ୍ଚିଦାମ ଓ ମୁକ୍ତାନିର୍ମିତ କଙ୍କିଣୀମାଳାରେ ଶୋଭା ପାଉଛି । ପରିଧାନ ପୀତବସନ । ମୁକ୍ତାମାଳା ଜଘନ ପର୍ଯ୍ୟନ୍ତ ଲମ୍ବିତ । ଚରଣଦ୍ୱୟ ରତ୍ନ ବଳୟଦ୍ୱାରେ ଶୋଭିତ । ହାର, କଙ୍କଣ, କେୟୂର, ମୁକୁଟ ପ୍ରଭୃତି ଅଳଙ୍କାରରେ ପ୍ରଭୁଙ୍କ ତନୁ ଶୋଭିତ । ଚତୁର୍ବାହୁରେ ଯଥାକ୍ରମେ ଶଙ୍ଖ, ଚକ୍ର, ଗଦା, ପଦ୍ମରୂପ ଜ୍ଞାନ, ଅହଙ୍କାର, ଐଶ୍ୱର୍ଯ୍ୟ ଓ ବେଦରାଶି ଧାରଣ କରିଛନ୍ତି ।

ଅଷ୍ଟମଚନ୍ଦ୍ରଶକଲଶୋଭାବଜସ୍ୱି ଭାଲଭୂଃ
ସ୍ମେରେନ୍ଦୀବରଯୁଗ୍ମଶ୍ରୀଧିକ୍କାରୋଦ୍ୟତଲୋଚନଃ । ଇତ୍ୟାଦି (୩୬ କ)

ଏହି ନୀଳମାଧବଙ୍କ ପାଖରେ ଲକ୍ଷ୍ମୀ ସର୍ବବିଧ ଅଳଙ୍କାରରେ ବିଭୂଷିତ ହୋଇ ଭଗବାନଙ୍କ ମୁଖମଣ୍ଡଳକୁ ନୟନନିକ୍ଷେପପୂର୍ବକ ବୀଣାବାଦନ କରୁଛନ୍ତି । ପଶ୍ଚାତ୍-ଭାଗରେ ଅନନ୍ତଦେବ ଫଣାସମୂହ ଛତ୍ରାକାର କରିରହିଛନ୍ତି । ଅଗ୍ରରେ ଦେହଧାରୀ ସୁଦର୍ଶନ ବିଦ୍ୟମାନ । ପଶ୍ଚାତ୍ ଭାଗରେ କୃତାଞ୍ଜଳିପୁଟରେ ଗରୁଡ଼ ଅବସ୍ଥାନ କରୁଛନ୍ତି ।

ବଲ୍ଲକୀବାଦନପରାଭଗବନ୍ମୁଖ-ଲୋଚନା
ସର୍ବଲକ୍ଷଣ୍ୟବସତିଃ ସର୍ବାଳଙ୍କାରଭୂଷିତା । ଇତ୍ୟାଦି । (୩୬ଖ)
ବିଦ୍ୟାପତି ଏହି ନୀଳମାଧବଙ୍କୁ ଦର୍ଶନ କରିଥିଲେ ।
ଭଗବାନ ନୀଳମାଧବ ଗୁହାବାସୀ ଥିବା ମଧ୍ୟ ବର୍ଣ୍ଣିତ ଅଛି ।

"ହେ ଭୂପ ! ସହସ୍ର ଜନ୍ମର ଅଭ୍ୟାସ ଦ୍ୱାରା ନୀଳାଚଳଗୁହାବାସୀ ଜଗତ୍‌ପତି ମାଧବଙ୍କ ପ୍ରତି ଭକ୍ତି ଜାତ ହୁଏ ।"

---

(୩୫) ୧ ଉ. ଖ. ୭ମ ଅ. ଶ୍ଳୋକ ୨୭
' ୨ ଉ. ଖ. ୧୦ମ ଅ. ଶ୍ଳୋକ ୧୮
(୩୬ କ) ଉ. ଖ. ୧୦ ଅ, ଶ୍ଳୋକ ୧୯ ଠାରୁ ୩୨ ।
(ଖ) ଉ. ଖ. ୧୦ମ ଅ । ୩୦-୩୬

ସହସ୍ର ଜନ୍ମସ୍ତଭ୍ୟାସ୍ୟାଭକ୍ତିର୍ଭବତି ଭୂପତେ
ନୀଳାଚଳ ଗୁହ୍ୱାବାସେ ମାଧବେ ଜଗତାଂ ଧରୋ । (୩୭)

ବର୍ତ୍ତମାନ ଜଗନ୍ନାଥ ଯେଉଁଠାରେ ଅଛନ୍ତି, ଠିକ୍ ସେହି ସ୍ଥାନରେ ନୀଳମାଧବଙ୍କ ଆସ୍ଥାନ ଥିଲା ବୋଲି ମନେ ହୁଏ । ସ୍କନ୍ଦପୁରାଣ ଅନୁସାରେ କ୍ଷେତ୍ରର ମଧ୍ୟସ୍ଥଳରେ ନୀଳଗିରି ଅବସ୍ଥିତ ଏବଂ ନୀଳମାଧବ ନୀଳପର୍ବତର ମଧ୍ୟ ସ୍ଥଳରେ ଅକ୍ଷୟ ବଟର ମୂଳଠାରୁ ବାୟୁକୋଣରେ ଯେଉଁ ରୋହିଣୀ ନାମକ କୁଣ୍ଡ ଅଛି ତାର ତୀରରେ ବିରାଜମାନ କରୁଥିଲେ । ଏହି ପୁରାଣର ଅନ୍ୟ ସ୍ଥାନରେ ରୋହିଣକୁଣ୍ଡର ପୂର୍ବ ତଟରେ ନୀଳମାଧବ ବିରାଜମାନ ଥିବାର ଉଲ୍ଲେଖ କରାଯାଇଛି ।

ଇତ୍ଥଂ ତନ୍ନଗତନ୍ତେବ ଦ୍ରକ୍ଷସେ ମାଂ ପିତାମହଃ
ନୀଳାଦ୍ରେରନ୍ତରଭୂବ କଳ୍ପନ୍ୟଗ୍ରୋଧ ମୂଳତଃ ।
ବାୟବ୍ୟାଂ ଦିଶି ଯଂ କୁଣ୍ଡଂ ରୋହିଣଃ ନାମ ବିଶ୍ରୁତମ୍ ,,
ତତ୍ତୀରେ ନିବସନ୍ତଂ ମାଂ ପଶ୍ୟନ୍ତ୍ୱର୍ମଚକ୍ଷୁଷା । (୩୮)
ତତ୍ପୂର୍ତ୍ତିଂ କାରଣାମ୍ଭୋଭିଃ ସ୍ପର୍ଶନାଦେବ ମୁକ୍ତିଦମ୍
ତତ୍ର ପ୍ରାକ୍ତଟମାସ୍ଥାୟ ନୀଳନ୍ଦ୍ରେମଣିନିର୍ମିତା । ୭ମ ଅ । ୨୭

ଏହି ପୁରାଣରେ ଆଉ ଏକ ସ୍ଥାନରେ, ବିଦ୍ୟାପତିଙ୍କୁ ବିଶ୍ୱାବସୁ ଭଗବାନଙ୍କ ସ୍ଥାନ ନିର୍ଣ୍ଣୟ କରି କହିବା ପ୍ରସଙ୍ଗରେ, ନୀଳମାଧବ ରୋହିଣକୁଣ୍ଡ ଓ ଅକ୍ଷୟବଟ ମଧ୍ୟରେ ନିକୁଞ୍ଜ ଭିତରେ ଅବସ୍ଥାନ କରୁଛନ୍ତି ବୋଲି କୁହାଯାଇଛି । "ଏହି ମହାତୀର୍ଥର ନାମ ରୋହିଣ । ଏଥିରେ ସ୍ନାନ କଲେ ନରମାନେ ବୈକୁଣ୍ଠଧାମକୁ ଗମନ କରନ୍ତି । ଏହାର ପୂର୍ବକୁ କଳ୍ପସ୍ଥାୟୀ ବଟବୃକ୍ଷ ଅଛି । ଏହି ବୃକ୍ଷର ଛାୟା ପ୍ରାପ୍ତ ହେଲେ ବ୍ରହ୍ମହତ୍ୟା-ପାପ କ୍ଷୟ ହୁଏ । ଏହି ଦୁଇଟି ମଧ୍ୟରେ ନିକୁଞ୍ଜ ଭିତରେ ବେଦାନ୍ତପ୍ରତିପାଦିତ ସାକ୍ଷାତ୍ ଜଗନ୍ନାଥ ଅଛନ୍ତି । ଦର୍ଶନ କର ।"

ରୋହିଣାଖ୍ୟଂ ମହାତୀର୍ଥଂ କାରଣଂ ସର୍ବପାଥସାମ୍
ଅତ୍ରସ୍ନାତ୍ୱା ନରାଯାନ୍ତି ବୈକୁଣ୍ଠ ଭବନଂ ଦ୍ୱିଜ । ୧୬
ଏତସ୍ୟ ପୂର୍ବଭାଗେଽସୌ କଳ୍ପସ୍ଥାୟୀ ବଟୋ ମହାନ୍
ଛାୟାଂ ଯସ୍ୟ ସମାକ୍ରମ୍ୟ ବ୍ରହ୍ମହତ୍ୟାଂ ବ୍ୟପୋହତି । ୧୭
ଏତୟୋରନ୍ତରେ ବ୍ରହ୍ମନ୍ ନିକୁଞ୍ଜାଭ୍ୟନ୍ତରସ୍ଥିତମ୍
ପଶ୍ୟ ସାକ୍ଷାଜ୍ଜଗନ୍ନାଥଂ ବେଦାନ୍ତପ୍ରତିପାଦିତମ୍ । ୧୮ (୩୯)

(୩୭) ଉ. ଖ. ୧୦ମ ଅ. । ୬୩
(୩୮) ଏଜନ ୩୮-୩୯
(୩୯) ଉ. ଖ. ୮ମ ଅ. ।

ଅତି ଗୋପନରେ ଶବର ବିଶ୍ୱାବସୁ ଏହି ଗୁହାବାସୀ ଇନ୍ଦ୍ରନୀଳମଣିମୟୀ ଏକାଶୀତି ଅଙ୍ଗୁଳ ପରିମିତ ପଦ୍ମାସନାସୀନ ଚତୁର୍ଭୁଜ ନୀଳମାଧବଙ୍କ ମୂର୍ତ୍ତିଙ୍କୁ ପୂଜା କରୁଥିଲେ । ବିଦ୍ୟାପତି ବ୍ୟତୀତ ଅନ୍ୟ କୌଣସି ମାନବ ଏହି ମୂର୍ତ୍ତିଙ୍କୁ ଦର୍ଶନ କରି-ନାହାନ୍ତି । ଇନ୍ଦ୍ରଦ୍ୟୁମ୍ନ କ୍ଷେତ୍ରରେ ପ୍ରବେଶ ହେବା ପୂର୍ବରୁ ନୀଳମାଧବ ମୂର୍ତ୍ତି ଅନ୍ତର୍ଦ୍ଧାନ ହୋଇଯାଇଥିଲେ । ଜନଶ୍ରୁତି ଓ ସ୍କନ୍ଦ ପୁରାଣ ମତରେ ନୀଳମାଧବ ମୂର୍ତ୍ତି ବାଲୁକାରାଶି ଦ୍ୱାରା ଆବୃତ ହୋଇ ଅଦୃଶ୍ୟ ହୋଇଗଲେ । ବିଦ୍ୟାପତି ନୀଳମାଧବଙ୍କୁ ଦର୍ଶନ କରି ସାରିବା ପରେ ବିଶ୍ୱାବସୁ କହିଛନ୍ତି ଯେ ପୂର୍ବେ ଭଗବାନ ଅନ୍ତର୍ହିତ ହେବେ ବୋଲି ଯମରାଜାଙ୍କଠାରେ ପ୍ରତିଜ୍ଞା କରିଥିଲେ ଏବଂ ବିଦ୍ୟାପତି ମହା ଭାଗ୍ୟବନ୍ତ ଥିବାରୁ ନୀଳମାଧବଙ୍କୁ ଦର୍ଶନ କରିଥିଲେ ।

> ପ୍ରତିଜଜ୍ଞେ ଯମାୟୈତଦନ୍ତର୍ଦ୍ଧାନଂ ଗମିଷ୍ୟତି
> ମହାଭାଗ୍ୟ ପରିପାକାତ୍ ପ୍ରତ୍ୟକ୍ଷୋଽୟଂ ତ୍ୱୟା କୃତଃ । (୪୦)

ଜୀବମାନେ ମୁକ୍ତିଲାଭ କରିବାରୁ ଯମରାଜା ଭଗବାନଙ୍କୁ ପ୍ରାର୍ଥନା କଲେ ଯେ ନୀଳମାଧବଙ୍କ ଯୋଗୁଁ ଏ କ୍ଷେତ୍ରରେ ତାଙ୍କର କର୍ତ୍ତୃତ୍ୱ ରହିଲା ନାହିଁ; ତେଣୁ ସେ ନିଜ କର୍ତ୍ତବ୍ୟପାଳନରେ ଅକ୍ଷମ ହେଲେ ଏବଂ ସଂସାର କାର୍ଯ୍ୟ ମଧ୍ୟ କର୍ମଫଳଭୋଗ ବିନା ଅନାବଶ୍ୟକ ହୋଇପଡ଼ିଲା । ଭଗବାନ ସେତେବେଳେ ଯମରାଜାଙ୍କୁ କହିଥିଲେ ଯେ ସେ ନୀଳମାଧବ ମୂର୍ତ୍ତି ଅନ୍ତର୍ହିତ ହେବେ । ବିଦ୍ୟାପତି କ୍ଷେତ୍ର ତ୍ୟାଗ କରିବା ଅବ୍ୟବହିତ ପରେ ନୀଳମାଧବଙ୍କ ଅନ୍ତର୍ଦ୍ଧାନ ଘଟିଥିଲା । "ବିଦ୍ୟାପତି ସ୍ୱଦେଶକୁ ଫେରିବା ପରେ ସାୟଂକାଳୀନ ପୂଜା ପାଇଁ ଦେବତାମାନେ ଉପସ୍ଥିତ ହୋଇ-ଅଛନ୍ତି, ଏହି ସମୟରେ ବାୟୁ ଅତିଶୟ ବେଗବାନ୍ ହୋଇ ପ୍ରବାହିତ ହେଲା । ସମୁଦ୍ରର ବାଲୁକାରାଶି ଚତୁର୍ଦ୍ଦିଗରେ ବିକ୍ଷିପ୍ତ ହୋଇ ପଡ଼ିଲା । ଦେବତାମାନଙ୍କର ଦୃଷ୍ଟିରୋଧ ହେବାରୁ ସେମାନେ ଭଗବାନ ପୁରୁଷୋତ୍ତମଙ୍କୁ ଦର୍ଶନ କରି ନ ପାରି ଧ୍ୟାନ କଲେ ଏବଂ ଧ୍ୟାନ ପରେ ବାଲୁକାରାଶି ଦର୍ଶନ କଲେ । ମାଧବଙ୍କୁ ଓ ରୌହିଣୀକୁଣ୍ଡକୁ ଦେଖିପାରିଲେ ନାହିଁ ।" (୪୧)

ବ୍ରହ୍ମ ପୁରାଣ ଓ ନାରଦ ପୁରାଣରେ ବିଶ୍ୱାବସୁ ଶବରପ୍ରସଙ୍ଗ କିମ୍ବା ନୀଳ-ମାଧବ ମୂର୍ତ୍ତିର ନାମ ନ ଥିବାରୁ ନୀଳମାଧବଙ୍କ ଅନ୍ତର୍ଦ୍ଧାନ ପ୍ରସଙ୍ଗ ଅନ୍ୟପ୍ରକାର ଦିଆ-ଯାଇଛି । ପୂର୍ବେ ଯମରାଜାଙ୍କୁ ଭଗବାନ ଯେଉଁ ପ୍ରତିଶ୍ରୁତି ଦେଇଥିଲେ, ତାହା ପାଳନ କରିବା ପାଇଁ ନିଜେ ନିଜ ମୂର୍ତ୍ତିକୁ ଗୋପ୍ୟ କଲେ । ବ୍ରହ୍ମ ପୁରାଣରେ ଲେଖାଅଛି ଯେ ଥରେ ଯମ ଭଗବାନଙ୍କୁ ପ୍ରାର୍ଥନା କଲେ, "ଏହି ପୁଣ୍ୟ ବିଖ୍ୟାତ ପୁରୁଷୋତ୍ତମ

(୪୦) ସ୍କ. ଖ. ୮ମ ଅ ୭୧ ।
(୪୧) ,, ୯ମ ଅ ୧୬ ।

କ୍ଷେତ୍ରରେ ଯେଉଁ ସର୍ବକାମପ୍ରଦାୟିନୀ ଇନ୍ଦ୍ରନୀଳମୟୀ ଶ୍ରେଷ୍ଠ ପ୍ରତିମା ବିରାଜିତ ଅଛନ୍ତି, ତାଙ୍କୁ ଏକାଗ୍ର ହୋଇ ଶ୍ରଦ୍ଧାରେ ଦର୍ଶନ କଲେ ଲୋକମାନେ ନିଷ୍ପାପ ହୋଇ ବୈକୁଣ୍ଠ-ପୁରକୁ ଗମନ କରନ୍ତି । ଏହିହେତୁ ମୁଁ ମୋର ପଦୋଚିତ କାର୍ଯ୍ୟ କରିପାରୁନାହିଁ । ଆପଣ ପ୍ରସନ୍ନ ହୋଇ ଏହି ସ୍ଥାନରୁ ଏହି ପ୍ରତିମାଙ୍କୁ ଅନ୍ତର କରନ୍ତୁ ।" ଭଗବାନ ଯମଙ୍କ ନିର୍ଭୟ ବାଣୀ ଶୁଣାଇ କହିଲେ, "ମୁଁ ଏ ପ୍ରତିମାଙ୍କୁ ବାଲୁକାରାଶି ଦ୍ୱାରା ଘୋଡ଼ାଇ ରଖିବି ।" ଭଗବାନ ସ୍ୱ ବାକ୍ୟ ରକ୍ଷାକରି ପ୍ରତିମାଙ୍କୁ ସୁବର୍ଣ୍ଣ ବାଲିରେ ଘୋଡ଼ାଇ ଦେଲେ ।

ଅତଃ କର୍ତ୍ତୁଂ ନ ଶକ୍ନୋମି ବ୍ୟାପାର ମରିସୂଦନ
ପ୍ରସୀଦ ସୁମହାଦେବ ସଂହର ପ୍ରତିମା ବିଭୋ । ୭୩
ଶ୍ରୁତ୍ୱା ବୈବସ୍ୱତ ସ୍ୟୈତଦ୍‌ବାକ୍ୟ ମେତଦୁବାଚ ହ
ଯମ ତାଂ ଗୋପୟିଷ୍ୟାମି ସିକତାଭି ସମନ୍ତତଃ । ୭୪ (୪୨)

ନୀଳମାଧବ ଅନ୍ତର୍ଦ୍ଧାନ ହେବେ, ଏହା ବିଶ୍ୱାବସୁ ପୂର୍ବରୁ ଜାଣିଥିଲେ ଏବଂ ବିଦ୍ୟାପତିଙ୍କୁ ଏକଥା କହିଥିଲେ । ଇନ୍ଦ୍ରଦ୍ୟୁମ୍ନ ପୁରୀରେ ପହଞ୍ଚିବା ପୂର୍ବରୁ ନୀଳମାଧବ ବାଲୁକାରାଶିରେ ଆଚ୍ଛାଦିତ ହୋଇଯାଇଥିବା ଶୁଣିଲେ ଏବଂ ବହୁ ଦୁଃଖ କଲେ । ଇନ୍ଦ୍ରଦ୍ୟୁମ୍ନଙ୍କୁ ସାନ୍ତ୍ୱନା ଦେବାପାଇଁ ଆକାଶବାଣୀ ଶୁଣାଗଲା—"ନୀଳମାଧବ ଅନ୍ତର୍ଦ୍ଧାନ ହୋଇଯାଇଥିଲେ ମଧ୍ୟ ତୁମ୍ଭଙ୍କୁ ଭଗବାନ ଦାରୁ ରୂପରେ ଦର୍ଶନ ଦେବେ ।" ଦାରୁ ରୂପୀ ଭଗବାନ ଚତୁର୍ଦ୍ଧାମୂର୍ତ୍ତି ହୋଇ ଉଦୟ ହେଲେ ।

ମନ୍ଦିର ନିର୍ମାଣ କରିସାରି ଇନ୍ଦ୍ରଦ୍ୟୁମ୍ନ ସ୍ୱର୍ଗପୁରକୁ ଗଲେ ଏବଂ ବ୍ରହ୍ମାଙ୍କୁ ନିମନ୍ତ୍ରଣ କରି ଆଣୁ ଆଣୁ ବହୁ ସମୟ ଗତ ହୋଇଗଲା । ଏ ସମୟ ଭିତରେ ଇନ୍ଦ୍ରଦ୍ୟୁମ୍ନଙ୍କ ମନ୍ଦିର ବାଲିରେ ପୋତି ହୋଇଗଲା । ଉତ୍କଳରାଜ ଗାଲ ସେ ମନ୍ଦିରକୁ ବାଲିରୁ ଉଦ୍ଧାର କରି ସେଠାରେ ମାଧବ ମୂର୍ତ୍ତି ସ୍ଥାପନା କରି ପୂଜା କଲେ । କିନ୍ତୁ ଇନ୍ଦ୍ରଦ୍ୟୁମ୍ନ ସ୍ୱର୍ଗରୁ ଫେରିଆସିବା ପରେ ମନ୍ଦିରଟିକୁ ପୁନର୍ବାର ପ୍ରତିଷ୍ଠା କଲେ ଏବଂ ଚତୁର୍ଦ୍ଧାମୂର୍ତ୍ତିଙ୍କୁ ସ୍ଥାପନ କଲେ । ଗାଲଙ୍କ ମାଧବ ମୂର୍ତ୍ତି ଇନ୍ଦ୍ରଦ୍ୟୁମ୍ନ ପୁଷ୍କରିଣୀ କୂଳରେ ପୂଜା ପାଉଛନ୍ତି । ଜଗନ୍ନାଥ ମନ୍ଦିରର ଭିତର ବେଢ଼ାରେ ଲକ୍ଷ୍ମୀ ମନ୍ଦିରର ଦକ୍ଷିଣ ଦିଗକୁ ଯେଉଁ ନୀଳମାଧବ ସ୍ୱତନ୍ତ୍ର ଦେଉଳରେ ପୂଜା ପାଉଛନ୍ତି, ସେ ଜଗନ୍ନାଥଙ୍କ ପୂର୍ବର ନୀଳମାଧବ ବୋଲି କେହି କେହି ଭ୍ରମରେ କହୁଛନ୍ତି । ନୀଳମାଧବ ବାଲିରେ ପୋତି ହୋଇ ଗୋପ୍ୟ ହୋଇଯିବା ପରେ ପୁଣି ଉଦ୍ଧାର ହୋଇଥିବା କଥା ସମ୍ପୃକ୍ତ ପୁରାଣ, ଜନଶ୍ରୁତି, କି "ଖିଲା" ଗ୍ରନ୍ଥମାନଙ୍କରେ ମିଳୁନାହିଁ । ଭ୍ରମବଶତଃ କେହି କେହି ଏହି ମୂର୍ତ୍ତିଙ୍କୁ ଗାଲରାଜଙ୍କ ମାଧବ ମୂର୍ତ୍ତି ବୋଲି ମଧ୍ୟ କହନ୍ତି ।

---

(୪୨) ବ୍ରହ୍ମପୁରାଣ । ୪୫ ଅ ।

# ଚତୁର୍ଥ ପରିଚ୍ଛେଦ

## ଜଗନ୍ନାଥ ଚରିତ

ଚତୁର୍ଦ୍ଧା ମୂର୍ତ୍ତି—ବଳଭଦ୍ର, ସୁଭଦ୍ରା, ଜଗନ୍ନାଥ ଓ ସୁଦର୍ଶନଙ୍କ ଚରିତ ବହୁ ପୁରାଣରେ ଲେଖାଅଛି । ସଂସ୍କୃତ ପୁରାଣମାନଙ୍କ ଭିତରେ ସ୍କନ୍ଦପୁରାଣାନ୍ତର୍ଗତ ଉତ୍କଳ ଖଣ୍ଡରେ ବିସ୍ତୃତ ବର୍ଣ୍ଣନା ଦେଖାଯାଉଛି । ବ୍ରହ୍ମ ପୁରାଣ, ବୃହତ୍ ନାରଦୀୟ ପୁରାଣ, ପଦ୍ମ ପୁରାଣ ପ୍ରଭୃତି ଗ୍ରନ୍ଥରେ ସ୍କନ୍ଦ ପୁରାଣର ବର୍ଣ୍ଣନା-ବାହୁଲ୍ୟ ନାହିଁ, କି ବହୁ ପ୍ରସଙ୍ଗର ଅବତାରଣା ମଧ୍ୟ ନାହିଁ । କପିଳ ସଂହିତା, ନୀଳାଦ୍ରିମହୋଦୟ ପ୍ରଭୃତି ଗ୍ରନ୍ଥରେ ଉପରୋକ୍ତ ପୁରାଣମାନଙ୍କର, ବିଶେଷତଃ ସ୍କନ୍ଦ ପୁରାଣର, ବିଷୟ ବର୍ଣ୍ଣନାର ଆଭାଷ ବହୁ ପରିମାଣରେ ରହିଛି । ପ୍ରାଚୀନ ଓଡ଼ିଆ ଗ୍ରନ୍ଥମାନଙ୍କ ଭିତରେ ସାରଳାଦାସଙ୍କ ମହାଭାରତର ବନପର୍ବ ଓ ମୂଷଳୀପର୍ବରେ ଜଗନ୍ନାଥଙ୍କ ଚରିତ ବର୍ଣ୍ଣିତ ହୋଇଛି । ସାରଳାଦାସଙ୍କ ପୂର୍ବରୁ ଆଉ କେହି ଓଡ଼ିଆ କବି ଜଗନ୍ନାଥଚରିତ ଲେଖିଥିବା ଜଣାଯାଇନାହିଁ । ସାରଳା ଦାସଙ୍କ ପରେ ବଳରାମ ଦାସ "ଦେଉଳ ତୋଳାରେ"ରେ ଜଗନ୍ନାଥ ଚରିତ ବର୍ଣ୍ଣନା କରିଛନ୍ତି । ସାରଳାଦାସଙ୍କ ବର୍ଣ୍ଣିତ ଚରିତକୁ ମୁଖ୍ୟ ଉପାଦାନ ରୂପେ ବଳରାମ ଦାସ ଗ୍ରହଣ କରିଛନ୍ତି । ସଂସ୍କୃତ ପୁରାଣବର୍ଣ୍ଣିତ ବିଷୟଠାରୁ ଓଡ଼ିଆ କବିମାନଙ୍କର ବିଷୟ କେତେକ ଅଂଶରେ ଭିନ୍ନ ଦେଖାଯାଉଛି । ନୀଳଗିରି, ଇନ୍ଦ୍ରଦ୍ୟୁମ୍ନ, ବିଶ୍ୱାବସୁ, ନୀଳମାଧବ, ଚତୁର୍ଦ୍ଧାମୂର୍ତ୍ତି ପ୍ରଭୃତି କେତେକ ବିଷୟରେ ମୋଟାମୋଟି ଭାବରେ ସାମ୍ୟ ପରିଲକ୍ଷିତ ହେଉଛି । ଓଡ଼ିଆ କବିମାନଙ୍କର କୃଷ୍ଣଙ୍କ ଶରୀର ତ୍ୟାଗ ପରେ ଜଗନ୍ନାଥଙ୍କ ଆବିର୍ଭାବ ପ୍ରସଙ୍ଗ ସମ୍ପୂର୍ଣ୍ଣ ନୂତନ ।

ଓଡ଼ିଆ କବିମାନଙ୍କ ଲେଖା ଦେଶର ଜନଶ୍ରୁତି ଉପରେ ବହୁତ ନିର୍ଭର କରିଥିବା ହିଁ ସମ୍ଭବ । ଗ୍ରନ୍ଥଲେଖା ସମୟରେ ସାରଳାଦାସ ମୁଖ୍ୟ ବିଷୟବସ୍ତୁକୁ, ହୁଏତ, ଜନଶ୍ରୁତିରୁ ସଂଗ୍ରହ କରିଥିବେ । କିନ୍ତୁ ସାରଳାଦାସ "ମହାଭାରତ"ରେ ଅନ୍ୟାନ୍ୟ ବିଷୟ ବିନ୍ୟାସରେ ମୌଳିକତା ଦେଖାଇଥିବାରୁ ସେ ଜଗନ୍ନାଥଙ୍କ ସମ୍ବନ୍ଧରେ ଯାହା ଲେଖିଯାଇଛନ୍ତି ସେଥିରେ ଠିକ୍‌ଭାବରେ ଜନଶ୍ରୁତିକୁ ଲିପିବଦ୍ଧ କରିଛନ୍ତି ବୋଲି କୁହାଯାଇପାରିବ ନାହିଁ ।

ମନ୍ଦିରରେ ଠାକୁରମାନଙ୍କର ସ୍ୱଭନୀତି ବିଷୟରେ ସଂସ୍କୃତ ଗ୍ରନ୍ଥମାନଙ୍କର ପ୍ରମାଣ ହିଁ ଚୂଡ଼ାନ୍ତ ହୋଇଥାଏ । ୭

# ସ୍କନ୍ଦ ପୁରାଣର ଚରିତ (୪୩)

ପ୍ରଳୟପୟୋଧିଜଳରୁ ବରାହ ରୂପୀ ବିଷ୍ଣୁ ବସୁମତୀଙ୍କୁ ଉଦ୍ଧାର କରିବା ପରେ ବ୍ରହ୍ମା ସମଗ୍ର ଚରାଚର ସୃଷ୍ଟି କଲେ । ସଚରାଚର ଜୀବକୂଳଙ୍କ ମୋକ୍ଷର ଉପାୟ ବ୍ରହ୍ମା ବିଷ୍ଣୁଙ୍କୁ ପ୍ରଶ୍ନ କରିବାରୁ ବିଷ୍ଣୁ କହିଲେ ଯେ ପୁରୁଷୋତ୍ତମ କ୍ଷେତ୍ରର ନୀଳଗିରିରେ ସେ ସ୍ୱୟଂ ନୀଳମାଧବ ରୂପରେ ବାସ କରୁଛନ୍ତି ଏବଂ ତାଙ୍କୁ ସେଠାରେ ଯେ ଦର୍ଶନ କରିବ ସେ ସାଯୁଜ୍ୟମୁକ୍ତି ପ୍ରାପ୍ତ ହେବ । ଏହି କ୍ଷେତ୍ରର ମହିମା ଯୋଗୁଁ ଯମଙ୍କର କର୍ତ୍ତବ୍ୟ-ପାଳନରେ ବ୍ୟାଘାତ ଘଟିଲା । ବିଷ୍ଣୁଙ୍କଠାରେ ଯମ ଏହାର ପ୍ରତିକାର ଲୋଡ଼ିଲେ । ବିଷ୍ଣୁ କହିଲେ ଯେ କିଛି କାଳ ପରେ ସେ ନିଜେ (ନୀଳମାଧବ) ଅନ୍ତର୍ଦ୍ଧାନ ହୋଇଯିବେ, କିନ୍ତୁ ଏ କ୍ଷେତ୍ରରେ ଯମଙ୍କ କର୍ତ୍ତୃତ୍ୱ ରହିବ ନାହିଁ ।

ନୀଳଗିରି ଉପରେ ଏକକ୍ରୋଶବ୍ୟାପୀ କଳ୍ପବୃକ୍ଷ ଅଛି । ସେହି ବୃକ୍ଷର ପଶ୍ଚିମ ଭାଗରେ ରୋହିଣ କୁଣ୍ଡ । ଏହି କୁଣ୍ଡର ଉତ୍ତର ଭାଗରେ ନୀଳମାଧବ ମୂର୍ତ୍ତିଙ୍କୁ ବିଶ୍ୱାବସୁ ଶବର ପୂଜା କରୁଥିଲେ । ସେତେବେଳକୁ ସଂସାରରେ କ୍ଷେତ୍ରର ମହିମା ଗୁପ୍ତ ଭାବରେ ଥିଲା । ଦେବତାମାନେ ପ୍ରତିଦିନ ଆସି ନୀଳମାଧବଙ୍କୁ ପୂଜା କରୁଥିଲେ ।

ସତ୍ୟ ଯୁଗରେ ବ୍ରହ୍ମାଙ୍କ ପଞ୍ଚମ ପୁରୁଷ ସୂର୍ଯ୍ୟବଂଶୀୟ ଇନ୍ଦ୍ରଦ୍ୟୁମ୍ନ ଅବନ୍ତୀ ନଗରୀରେ ରାଜତ୍ୱ କରୁଥିଲେ । ସେ ପରମ ବୈଷ୍ଣବ, ଶାସ୍ତ୍ରକୋବିଦ । ସେ ଦିନେ ବିଜ୍ଞ ବ୍ୟକ୍ତିମାନଙ୍କ ଏକ ସଭା ଆହ୍ୱାନ କରି, "କେଉଁଠାରେ ସାକ୍ଷାତ ବିଷ୍ଣୁଙ୍କୁ ସ୍ୱଚକ୍ଷୁରେ ଦେଖିପାରିବି" ବୋଲି ପ୍ରଶ୍ନ କରିବାରୁ ଜଣେ ତୀର୍ଥପର୍ଯ୍ୟଟକ ତପସ୍ୱୀ କହିଲେ, "ପୁରୁଷୋତ୍ତମ କ୍ଷେତ୍ରରେ ସ୍ୱୟଂ ଭଗବାନ ପୁରୁଷୋତ୍ତମ ବିରାଜମାନ । ଏହାଙ୍କୁ ଦର୍ଶନ କରି ଉପାସନା କରନ୍ତୁ ।"

ପୁରୁଷୋତ୍ତମଙ୍କ ସନ୍ଧାନ ନେବା ପାଇଁ ଇନ୍ଦ୍ରଦ୍ୟୁମ୍ନ ସ୍ୱ ପୁରୋହିତଙ୍କ ଭ୍ରାତା ବିଦ୍ୟାପତିଙ୍କୁ ଉତ୍କଳ ଦେଶକୁ ପଠାଇଲେ । ବିଦ୍ୟାପତି ପୁରୁଷୋତ୍ତମ କ୍ଷେତ୍ରରେ ପହଞ୍ଚି ନୀଳାଚଳର ପଶ୍ଚିମରେ ଥିବା ଏକ ଶବରପଲ୍ଲୀରେ ଆଶ୍ରୟ ନେଲେ । ସେଠାରେ ବିଶ୍ୱାବସୁଙ୍କ ସହିତ ତାଙ୍କର ପରିଚୟ ହେଲା ଏବଂ ଶବରଙ୍କୁ ସ୍ୱଆଗମନର କାରଣ ଜଣାଇ ସେ କହିଲେ, "ମୁଁ ଫେରିବା ପର୍ଯ୍ୟନ୍ତ ଇନ୍ଦ୍ରଦ୍ୟୁମ୍ନ ଉପବାସରେ ଥିବେ । ମୁଁ ଯେପରି ନୀଳମାଧବଙ୍କୁ ଦର୍ଶନ କରିବି ତାହାର ବ୍ୟବସ୍ଥା କର ।" ବିଦ୍ୟାପତିଙ୍କ ପ୍ରତି ସହାନୁଭୂତିଶୀଳ ହୋଇ ବିଶ୍ୱାବସୁ ତାଙ୍କର ହାତ ଧରି ସଙ୍କୀର୍ଣ୍ଣ ଏକପଦୀ ମାର୍ଗରେ ନୀଳଗିରି ଉପରକୁ ନେଇଗଲେ ଏବଂ ନୀଳମାଧବଙ୍କୁ ଦର୍ଶନ କରାଇଲେ ।

---

(୪୩) ସ୍କନ୍ଦପୁରାଣ । ଉତ୍କଳଖଣ୍ଡ ।

ଏହା ପରେ ବିଦ୍ୟାପତି ସ୍ୱଦେଶକୁ ଫେରିଲେ । ପୂର୍ବେ ଯମରାଜଙ୍କୁ ଭଗବାନ ଯେଉଁ ପ୍ରତିଶ୍ରୁତି ଦେଇଥିଲେ ସେ ସ୍ୱୟଂ ସ୍ୱବାକ୍ୟ ରକ୍ଷା ନିମନ୍ତେ ନୀଳମାଧବ ମୂର୍ତ୍ତିଙ୍କୁ ବାଲୁକାରାଶି ଦ୍ୱାରା ଲୁକ୍କାଇତ କରିଦେଲେ ।

ଇନ୍ଦ୍ରଦ୍ୟୁମ୍ନ ନାରଦଙ୍କୁ ପଥ ପ୍ରଦର୍ଶକ ରୂପେ ଗ୍ରହଣ କରି ଜ୍ୟେଷ୍ଠ ମାସ ଶୁକ୍ଳ ପଞ୍ଚମୀ ଶୁକ୍ରବାର ପୁଷ୍ୟାନକ୍ଷତ୍ରରେ ଯାତ୍ରା ଆରମ୍ଭ କଲେ । ଉତ୍କଳ ଦେଶ ସୀମାରେ ଓଡ୍ରଶା ରାଜା ତାଙ୍କୁ ଭେଟିଲେ । ମହାନଦୀ ପାର ହୋଇ ସେ ଭୁବନେଶ୍ୱର ବାଟେ ଆସି କପୋତେଶ୍ୱରଙ୍କୁ ଦର୍ଶନ କଲେ । ପରେ ସେ ପୁରୁଷୋତ୍ତମ କ୍ଷେତ୍ରର ପୂର୍ବ ସୀମାରେ ଥିବା ନୀଳକଣ୍ଠେଶ୍ୱରଙ୍କଠାରେ ପହଞ୍ଚିଲେ । ସେଠାରେ ନାରଦଙ୍କଠାରୁ ନୀଳମାଧବଙ୍କ ଅନ୍ତର୍ଦ୍ଧାନ ହୋଇଯାଇଥିବା ଶୁଣି ଇନ୍ଦ୍ରଦ୍ୟୁମ୍ନ ଦୁଃଖିତ ହେଲେ । ନାରଦ ସାନ୍ତ୍ୱନା ଦେଇ କହିଲେ ଯେ ସ୍ୱୟଂ ଭଗବାନ ତାଙ୍କୁ ଚତୁର୍ଦ୍ଧାମୂର୍ତ୍ତି ହୋଇ ଦାରୁ ରୂପରେ ଦର୍ଶନ ଦେବେ । ଏହାପରେ ରାଜା ନୀଳଗିରି ଦର୍ଶନ କଲେ । ନାରଦଙ୍କ ପରାମର୍ଶ ଅନୁସାରେ ରାଜା ନୀଳକଣ୍ଠେଶ୍ୱରଙ୍କ ନିକଟରେ ନୃସିଂହ ମନ୍ଦିର ନିର୍ମାଣ କରାଇଲେ । ନିଜେ ନାରଦ ପଞ୍ଚମ ଦିନ ପ୍ରାଣ ପ୍ରତିଷ୍ଠା କରି ମୂର୍ତ୍ତିଙ୍କୁ ଆଣି ମନ୍ଦିରରେ ରଖିଲେ । ବୈଶାଖ ମାସ ଶୁକ୍ଳ ଚତୁର୍ଦ୍ଦଶୀ ଶନିବାର ସ୍ୱାତୀ ନକ୍ଷତ୍ର ସନ୍ଧ୍ୟାବେଳେ ଏହି ନୃସିଂହଙ୍କର ପ୍ରତିଷ୍ଠା ହୋଇଥିଲା । (୧୬ଶ ଅଧ୍ୟାୟ )

ଇନ୍ଦ୍ରଦ୍ୟୁମ୍ନ ସହସ୍ର ଅଶ୍ୱମେଧ ଯଜ୍ଞ କରିବା ପାଇଁ ଆୟୋଜନ କଲେ । ବହୁ ନୃପତି, ବ୍ରାହ୍ମଣ, ଦେବତା ପ୍ରଭୃତିଙ୍କୁ ନିମନ୍ତ୍ରଣ କଲେ । ଏକ ବିରାଟ ସଭା ମଣ୍ଡପ ନିର୍ମିତ ହେଲା । ଯଜ୍ଞ ବେଦୀ ମଧ୍ୟ ନିର୍ମିତ ହେଲା । ଏକ ଊଣା ହଜାରେ ଅଶ୍ୱମେଧ ଯଜ୍ଞ ଶେଷ କରି ସହସ୍ର ଯଜ୍ଞର ଆରମ୍ଭର ସାତଦିନରେ ଇନ୍ଦ୍ରଦ୍ୟୁମ୍ନ କ୍ଷୀରସାଗର ମଧ୍ୟରେ ଶ୍ୱେତ ପ୍ରସ୍ତରମୟ ଦ୍ୱୀପରେ ଅବସ୍ଥାନ କରୁଥିବା ମାଧବଙ୍କୁ ସ୍ୱପ୍ନରେ ଦର୍ଶନ କଲେ । (୧୭ଶ ଅ.)

ସହସ୍ର ଅଶ୍ୱମେଧ ଯଜ୍ଞ ସମାପନ ପରେ ଅବଭୃଥସ୍ନାନ ପାଇଁ ବେଳେଶ୍ୱରଙ୍କ ନିକଟରେ ସମୁଦ୍ର କୂଳରେ ସ୍ନାନାଗାର ନିର୍ମିତ ହେଲା । ଏକ ଗୁଣଶୋଭିତ ମହା-ତରୁ ବେଳାଭୂମିରେ ଦେଖାଯାଉଥିବା କଥା ସେବକମାନେ ରାଜାଙ୍କୁ ଜଣାଇଲେ । ଏ ବୃକ୍ଷର ଉପରିଭାଗ ସାଗର ମଧ୍ୟରେ ଓ ନିମ୍ନଭାଗ ଜଳସ୍ରୋତରେ ଇତସ୍ତତଃ ଭାସମାନ ହୋଇ ସ୍ନାନାଗାର ଆଡ଼କୁ ଆସୁଥିଲା । ଏହାର ଦୀପ୍ତି ବାଳାର୍କ ସଦୃଶ । ସର୍ବାଙ୍ଗ ଲୋହିତ ବର୍ଣ୍ଣ, ଶଙ୍ଖଚକ୍ର ଚିହ୍ନରେ ଅଙ୍କିତ । ନାରଦଙ୍କୁ ରାଜା ଏହାର ରହସ୍ୟ ପ୍ରଶ୍ନ କରିବାରୁ ସେ କହିଲେ, "ତୁମ୍ଭେ ନିଦ୍ରିତ ଅବସ୍ଥାରେ ତୁମେ ଯେଉଁ ଶ୍ୱେତଦ୍ୱୀପବାସୀ ଭଗବାନଙ୍କୁ ଦେଖିଥିଲ, ତାଙ୍କର ଦେହରୁ ଉତ୍ପନ୍ନ ରୋମ ବିଚ୍ୟୁତ ହୋଇ ବୃକ୍ଷରୂପ ଧାରଣ କରିଛି । ଏହି ବିଷ୍ଣୁରୂପୀ ବୃକ୍ଷକୁ ଆଣି ଏକ ମଣ୍ଡପ ନିର୍ମାଣ କରି ମୂର୍ତ୍ତି ଗଠନ କର ।" ଇନ୍ଦ୍ରଦ୍ୟୁମ୍ନ ମହାସମାରୋହରେ ଏହି ବୃକ୍ଷକୁ ଆଣି ମହାବେଦୀ

ଉପରେ ରଖିଲେ । ଏହି ଦାରୁରୁ ମୂର୍ତ୍ତି ଗଠନ କରିବା ସମ୍ବନ୍ଧରେ ଦେବର୍ଷିଙ୍କ ସହିତ ରାଜା ଆଲୋଚନା କରୁଥିବା ସମୟରେ ଦୈବବାଣୀ ଶୁଣାଗଲା, "ଜଗନ୍ନାଥ ସ୍ୱୟଂ ନିଜ ପ୍ରତିମା ଗଠନ ସମ୍ବନ୍ଧରେ ବିବେଚନା କରି ମହାବେଦୀକୁ ଆସିବେ । ମହାବେଦୀ ଆଚ୍ଛାଦିତ ହୋଇ ଗୁପ୍ତ ରହିବ । ପଞ୍ଚଦଶ ଦିବସ ପର୍ଯ୍ୟନ୍ତ ମଣ୍ଡପ ଆବରଣବେଷ୍ଟିତ ହୋଇ ରହିବ । ଏହି ଯେ ଶସ୍ତ୍ରହସ୍ତ ବୃଦ୍ଧ ବାର୍ଦ୍ଧକ୍ୟଙ୍କୁ ଦେଖୁଛ, ତାଙ୍କୁ ସେ ମଣ୍ଡପ ଭିତରେ ପୂରାଇ ଦ୍ୱାର ବନ୍ଦ କରିବ । ଗଠନ କାର୍ଯ୍ୟ ଶେଷ ହେବା ପର୍ଯ୍ୟନ୍ତ ବାହାରରେ ନାନାରୂପ ବାଦ୍ୟର ବ୍ୟବସ୍ଥା କରିବ । କାରଣ ଏହି ଗଠନ ଧ୍ୱନି କାନରେ ବାଜିଲେ ବଧିରତା, ଅନ୍ଧତ୍ୱ, ନରକବାସ ଓ ପୁତ୍ରନାଶ ହେବ । ଏହି ହେତୁ କେବେ ଘଟଣା କାର୍ଯ୍ୟ ଦେଖିବ ନାହିଁ କି କାର୍ଯ୍ୟ କ୍ଷେତ୍ରରେ ପ୍ରବେଶ କରିବ ନାହିଁ । ଯଦି ଏହି କାର୍ଯ୍ୟରେ ନିଯୁକ୍ତ ବ୍ୟକ୍ତି ଛଡ଼ା ଅନ୍ୟ କେହି ଏହା ଦେଖେ, ତାହାହେଲେ କି ଭୂପତି କି ସାମ୍ରାଜ୍ୟ ସମସ୍ତଙ୍କର ମହାଭୀତି ଉପସ୍ଥିତ ହେବ ।" ଏହି ବାଣୀ ଅନୁଯାୟୀ ଏକ ବୃଦ୍ଧ ବ୍ୟକ୍ତି ସେଠାରେ ଉପସ୍ଥିତ ହେଲେ । ସେ ସ୍ୱୟଂ ବିଷ୍ଣୁ । ( ୧୮ ଶ. ଅ. )

ରାଜା ଆକାଶବାଣୀ ଅନୁସାରେ ମଣ୍ଡପ ଭିତରେ ବୃଦ୍ଧଙ୍କୁ ପ୍ରବେଶ କରାଇ ଦ୍ୱାର ରୁଦ୍ଧ କଲେ । ପଞ୍ଚଦଶ ଦିବସ ପରେ ସେହି ମଣ୍ଡପରେ ବଳରାମ, ସୁଭଦ୍ରା, ଜଗନ୍ନାଥ ଓ ସୁଦର୍ଶନ ଉପବେଶନ କରିଥିବାର ଦେଖାଗଲା । ପୁନର୍ବାର ଦୈବବାଣୀ ଶୁଣାଗଲା, "ହେ ରାଜନ, ଏହି ଚାରି ମୂର୍ତ୍ତିଙ୍କୁ ପଟ୍ଟବସ୍ତ୍ରଦ୍ୱାରା ସୁନ୍ଦର ଭାବରେ ଆବୃତ କରି ଚିତ୍ରକର ଦ୍ୱାରା ନିଜ ନିଜ ବର୍ଣ୍ଣରେ ଚିତ୍ରିତ କର । ନୀଳାଚଳର ଉପରିଭାଗରେ କଳ୍ପତରୁର ବାୟୁକୋଣରେ ଶତହସ୍ତ ଦୂରରେ ଯେଉଁ ନୃସିଂହ ଅଛନ୍ତି ତାଙ୍କର ଉତ୍ତର ଭାଗରେ ଥିବା ପ୍ରଶସ୍ତ ଭୂମିରେ ସହସ୍ର ହସ୍ତ ଉଚ୍ଚ ଓ ତଦନୁରୂପ ଆୟତବିଶିଷ୍ଟ ଏକ ସୁଦୃଢ଼ ପ୍ରାସାଦ ନିର୍ମାଣ କର । ସେହି ମନ୍ଦିରରେ ମୂର୍ତ୍ତିଚତୁଷ୍ଟୟଙ୍କୁ ପ୍ରତିଷ୍ଠା କର ।" ରାଜା ଏ ମୂର୍ତ୍ତି ଚତୁଷ୍ଟୟଙ୍କୁ ପୂଜା କଲେ । ଜଗନ୍ନାଥଙ୍କୁ ପୁରୁଷସୂକ୍ତ ମନ୍ତ୍ରରେ, ବଳଭଦ୍ରଙ୍କୁ ଦ୍ୱାଦଶାକ୍ଷର ମନ୍ତ୍ରରେ, ସୁଭଦ୍ରାଙ୍କୁ ଦେବୀସୂକ୍ତ ମନ୍ତ୍ରରେ ପୂଜା କଲେ । ତୁଳାପୁରୁଷ, ଧେନୁ ପ୍ରଭୃତି ବହୁ ଦାନ ବ୍ରାହ୍ମଣମାନଙ୍କୁ ଦେଲେ । ଏହି ଅଶ୍ୱମେଧ ଯଜ୍ଞ ସମୟରେ ଯେଉଁ ସବୁ ଧେନୁ ଦାନ ଦିଆଗଲା, ସେମାନଙ୍କର ଖୁରା ବାଜି ଯେଉଁ ଗାତ ହେଲା, ତାହା ସମ୍ପ୍ରଦାନ କାଳରେ କରଚ୍ୟୁତ ଜଳରେ ପୂର୍ଣ୍ଣହୋଇ ମହାଫଳପ୍ରଦ ଏକ ପୁଷ୍କରିଣୀ ତୀର୍ଥ ରୂପରେ ପରିଣତ ହେଲା । ( ଏହାର ନାମ ଇନ୍ଦ୍ରଦ୍ୟୁମ୍ନ ସରୋବର ) । ଇନ୍ଦ୍ରଦ୍ୟୁମ୍ନ ମନ୍ଦିରନିର୍ମାଣ କାର୍ଯ୍ୟରେ ଅଗ୍ରସର ହେଲେ । ସେ ପୁରୁଷକାର ବଳରେ ଅଷ୍ଟାଦଶ ଦ୍ୱୀପରୁ ଯେଉଁ ସବୁ ଦ୍ରବ୍ୟ ଉପାର୍ଜ୍ଜନ କରିଥିଲେ, ସେ ସବୁ ଏ ମନ୍ଦିର ନିର୍ମାଣରେ ବ୍ୟୟ କଲେ । (୨୦ ଅ) ସେହି ସମୟରେ ଭାରତବର୍ଷରେ ଯେଉଁସବୁ ନରପତି ଥିଲେ, ସମସ୍ତେ ଏ ମନ୍ଦିର ନିର୍ମାଣରେ ନିୟୋଜିତ ହେଲେ । ମନ୍ଦିର-ଗଠନ

କାର୍ଯ୍ୟ ଶେଷ ହେବା ପୂର୍ବରୁ ନାରଦଙ୍କ ପରାମର୍ଶରେ ମନ୍ଦିର ପ୍ରତିଷ୍ଠା ପାଇଁ ବ୍ରହ୍ମାଙ୍କୁ ଆଣିବା ଉଦ୍ଦେଶ୍ୟରେ ରାଜା ନାରଦଙ୍କ ସାଙ୍ଗରେ ବ୍ରହ୍ମଲୋକକୁ ଗଲେ । (୨୧ଶ, ୨୨ଶ ଅ.) । ବ୍ରହ୍ମା ସେତେବେଳେ ସଙ୍ଗୀତ ଶୁଣୁଥିଲେ, ମନ ସେଥିରେ ଏକାଗ୍ର ଥିଲା । ଇନ୍ଦ୍ରଦ୍ୟୁମ୍ନଙ୍କ ସହିତ ପରେ କଥାବାର୍ତ୍ତା କଲାବେଳକୁ ବହୁଦିନ ଗତ ହୋଇଯାଇଥିଲା । ବ୍ରହ୍ମା ରାଜାଙ୍କୁ କହିଲେ, "ଏହି ସଙ୍ଗୀତ ମହୋତ୍ସବ ଅତୀତ ହୋଇଛି, କିନ୍ତୁ ତୁମ ପକ୍ଷରେ ତାହା ଦୀର୍ଘ କାଳ । ତୁମେ ବ୍ରହ୍ମଲୋକରେ ଅବସ୍ଥାନ କରିବା କାଳ ଭିତରେ ଦ୍ୱିତୀୟ ମନୁ ସ୍ୱାରୋଚିଷଙ୍କର ଆଦିଯୁଗ ଅତୀତ ହୋଇଛି । ତୁମର ସନ୍ତାନସନ୍ତତି ପରମ୍ପରା ମଧ୍ୟ ନାହିଁ । ଶୀଘ୍ର ତୁମେ ଭୂତଳକୁ ଯାଇ ଦେବ ଓ ଦେବମନ୍ଦିରଟିକୁ ସ୍ୱୀୟ ଆୟତ୍ତରେ ଆଣ, ମୁଁ ତୁମ ପଛେ ପଛେ ଯାଉଛି ।" ଦେବର୍ଷି ନାରଦ, ବୃହସ୍ପତି ଓ ଅନ୍ୟାନ୍ୟ ଦେବତାମାନଙ୍କ ସଙ୍ଗେ ଇନ୍ଦ୍ରଦ୍ୟୁମ୍ନ ଭୂତଳକୁ ଆସିଲେ ।,( ୨୪ଶ ଅ: ) ସେ ଆସିଲା ବେଳକୁ ମନ୍ଦିର ସମ୍ପୂର୍ଣ୍ଣ ହୋଇଥିବା ଦେଖି ଆନନ୍ଦଲାଭ କଲେ । ପ୍ରଥମେ ତିନୋଟି ରଥ ନିର୍ମାଣ କରି ପ୍ରତିଷ୍ଠା କଲେ । ସେହି ରଥରେ ମୂର୍ତ୍ତିମାନଙ୍କୁ ବସାଇ ମହାବେଦୀରୁ ଆଣିଲେ । ( ୨୫ଶ. ଅ: )

ପୂର୍ବେ ଇନ୍ଦ୍ରଦ୍ୟୁମ୍ନ ବ୍ରହ୍ମଲୋକରେ ଥିବା ସମୟରେ ଗାଲ ନାମକ ରାଜା ମନ୍ଦିରକୁ କରାୟତ୍ତ କରି ମାଧବ ନାମକ ମୂର୍ତ୍ତି ସେଠାରେ ପ୍ରତିଷ୍ଠା କରି ପୂଜା କରୁଥିଲେ । ଇନ୍ଦ୍ରଦ୍ୟୁମ୍ନ ମାଧବ ମୂର୍ତ୍ତିଙ୍କୁ ସେହି ମନ୍ଦିରରୁ ଉଠାଇ ଅନ୍ୟ ଏକ ଶ୍ରେଷ୍ଠ ମନ୍ଦିର ନିର୍ମାଣ କରି ସେଠାରେ ତାଙ୍କୁ ରଖିଲେ । ଗାଲ ରାଜା ଇନ୍ଦ୍ରଦ୍ୟୁମ୍ନଙ୍କ ଏ କାର୍ଯ୍ୟର ସନ୍ଦେଶ ପାଇ କ୍ରୋଧରେ ସୈନ୍ୟ ଧରି ପୁରୁଷୋତ୍ତମରେ ପ୍ରବେଶ ହେଲେ । କିନ୍ତୁ ଇନ୍ଦ୍ରଦ୍ୟୁମ୍ନଙ୍କ ଆୟୋଜନ, ଦେବତାମାନଙ୍କ ଉପସ୍ଥିତି ଓ ଇନ୍ଦ୍ରଦ୍ୟୁମ୍ନଙ୍କ ବ୍ରହ୍ମଲୋକ-ଯାତ୍ରା ପ୍ରସଙ୍ଗ ଶୁଣି ଅଉ ବିବାଦ ସୃଷ୍ଟି ନ କରି ଇନ୍ଦ୍ରଦ୍ୟୁମ୍ନଙ୍କୁ ସାହାଯ୍ୟ କଲେ । ଏ ପର୍ଯ୍ୟନ୍ତ ସେ ନିଜେ ଦାରୁମୂର୍ତ୍ତିଙ୍କୁ ଅର୍ଚ୍ଚନା ନ କରିଥିବାରୁ ଦୁଃଖପ୍ରକାଶ କଲେ । ବ୍ରହ୍ମା ମନ୍ଦିର ପ୍ରତିଷ୍ଠା କରିବାପାଇଁ ବ୍ରହ୍ମଲୋକରୁ ଆସିଲେ । ( ୨୬ଶ ଅ: ) । ବ୍ରହ୍ମା ମନ୍ଦିର ପ୍ରତିଷ୍ଠା କରି, ମୂର୍ତ୍ତିଚତୁଷ୍ଟୟଙ୍କ ପ୍ରାଣପ୍ରତିଷ୍ଠା କରି ବୈଶାଖମାସ ଶୁକ୍ଳଅଷ୍ଟମୀ ପୁଷ୍ୟା ନକ୍ଷତ୍ର ଗୁରୁବାରରେ ପ୍ରତିଷ୍ଠା କାର୍ଯ୍ୟ ସମାପନ କଲେ । ପରମେଷ୍ଠି ମନ୍ତ୍ରରେ ଜଗନ୍ନାଥଙ୍କୁ ବ୍ରହ୍ମା ଅଭିମନ୍ତ୍ରିତ କରିଥିଲେ । ( ୨୭ଶ ଅ: "ଭାରତଦର୍ଶନ" ) ।

ଇନ୍ଦ୍ରଦ୍ୟୁମ୍ନ ଶ୍ୱେତବଂଶୀୟ ଗାଲ ରାଜାଙ୍କୁ ମନ୍ଦିର ସମର୍ପଣ କରି ବ୍ରହ୍ମଲୋକକୁ ପ୍ରସ୍ଥାନ କଲେ ।

ବ୍ରହ୍ମପୁରାଣ ଚରିତ (୪୪) :—ସତ୍ୟଯୁଗର ମାଳବ ରାଜା ଇନ୍ଦ୍ରଦ୍ୟୁମ୍ନ ବାସୁଦେବାଖ୍ୟ ପରମ ଅବ୍ୟୟ ତତ୍ତ୍ୱ ପ୍ରାପ୍ତହୋଇ ଦିବ୍ୟ ଜ୍ଞାନୀ ଜିତେନ୍ଦ୍ରିୟ ଓ ମୁମୁକ୍ଷୁ ହୋଇଥିଲେ । ପୀତବାସ, ଚତୁର୍ବାହୁ, ଶଙ୍ଖଚକ୍ର ଗଦାଧାରୀ ବିଷ୍ଣୁଙ୍କୁ ଆରାଧନା କରିବା

(୪୪) ବ୍ରହ୍ମ ପୁରାଣ ।

ପାଇଁ ଇଚ୍ଛା ହେବାରୁ ଅବନ୍ତୀନଗରୁ ତ୍ୟାଗକରି ପୁରୁଷୋତ୍ତମ କ୍ଷେତ୍ରକୁ ଆସିଥିଲେ । ପୂର୍ବେ ଏ କ୍ଷେତ୍ରରେ କୌଣସି ବୈଷ୍ଣବୀ ପ୍ରତିମା ଥିଲା କି ନାହିଁ—ଏହି ପ୍ରଶ୍ନର ଉତ୍ତରରେ ସ୍ୱୟଂ ଭଗବାନ କହୁଛନ୍ତି ଯେ, କଳ୍ପବଟ ନିକଟରେ ନୀଳମାଧବଙ୍କ ମୂର୍ତ୍ତି ପୂଜା ପାଉଥିଲା । ଏ କ୍ଷେତ୍ରରେ ଯେତେ ଲୋକଙ୍କ ମୃତ୍ୟୁ ହୁଏ, ସମସ୍ତେ ବିଷ୍ଣୁଲୋକ ପ୍ରାପ୍ତ ହେବାରୁ ଯମରାଜ ବିଷ୍ଣୁଙ୍କଠାରେ ପ୍ରାର୍ଥନା କଲେ, "ଏହି ନୀଳକାନ୍ତମଣିମୟ ବିଗ୍ରହ ଦର୍ଶନ କରି ଲୋକେ ଶ୍ୱେତାଖ୍ୟ ଭବନକୁ ଗମନ କରୁଛନ୍ତି । ଅତଏବ ମୁଁ ମୋର ପଦୋଚିତ କାର୍ଯ୍ୟ କରିପାରୁ ନାହିଁ । ହରେ ! ଆପଣ ପ୍ରସନ୍ନ ହୋଇ ଏହି ପ୍ରତିମାଟିକୁ ଏଠାରୁ ଅପସାରିତ କରନ୍ତୁ ।" ଭଗବାନ କହିଲେ, "ହେ ଯମ, ଏ ପ୍ରତିମାକୁ ବାଲୁକାରାଶି ଦ୍ୱାରା ଆଚ୍ଛାଦିତ କରି ରଖିବି ।" ସ୍ୱର୍ଗାକାଙ୍କ୍ଷୀ ଲୋକମାନେ ଯେପରି ଏ ପ୍ରତିମାକୁ ଦେଖି ନ ପାରନ୍ତି, ସେହି ଉଦ୍ଦେଶ୍ୟରେ ଭଗବାନ ବାଲୁକାରାଶି-ଦ୍ୱାରା ତାକୁ ଘୋଡ଼ାଇ ରଖିଲେ । ଏହି ଇନ୍ଦ୍ରନୀଳମୟୀ ପ୍ରତିମା ଲୋପ ହୋଇ ଥିବାରୁ ଏବଂ ଅନ୍ୟ କୌଣସି ଶୁଭ ବୈଷ୍ଣବୀ ପ୍ରତିମା ପରିଦୃଷ୍ଟ ହେଉ ନ ଥିବାରୁ ଇନ୍ଦ୍ରଦ୍ୟୁମ୍ନ ସ୍ୱୟଂ ବିଷ୍ଣୁ ତାଙ୍କର ପ୍ରତ୍ୟକ୍ଷ ହେବେ ବୋଲି ଏହି କ୍ଷେତ୍ରରେ ଏକ ହରିପ୍ରାସାଦ ନିର୍ମାଣ କରିବା ସ୍ଥିର କଲେ । କଳିଙ୍ଗ, ଉତ୍କଳ ଓ କୋଶଳାଧିପତିଙ୍କ ସାହାଯ୍ୟରେ ବିନ୍ଧ୍ୟପର୍ବତରୁ ଉତ୍ତମ ଉତ୍ତମ ଶିଳା ଛେଦନ କରାଇ ଶକଟ ଓ ନୌକା ଯୋଗେ ଅଣାଇ ମନ୍ଦିର ନିର୍ମାଣ କରାଇଲେ । ଅନ୍ୟାନ୍ୟ ଦେଶର ବହୁରାଜା ଏଥିରେ ସାହାଯ୍ୟ କଲେ । ଇନ୍ଦ୍ରଦ୍ୟୁମ୍ନ ଏକ ଅଶ୍ୱମେଧ ଯଜ୍ଞ ସମାପନ କଲେ । ବହୁ ରାଜା ଓ ପ୍ରଜା ଏଥିରେ ଯୋଗ ଦେଇଥିଲେ । ଏହି ମନ୍ଦିରରେ କି ଭଳି ମୂର୍ତ୍ତି ଗଠନ କରି ପ୍ରତିଷ୍ଠା କରିବେ, ଏହି ଚିନ୍ତା ରାଜାଙ୍କ ମନକୁ ଅସ୍ଥିର କଲା । ସେ ଭାବିଲେ, "ଶୈଳ ମୃତ୍ତିକା ଓ ଦାରୁମୟ ପ୍ରତିମା ମଧ୍ୟରେ କେଉଁଟି ବା ପ୍ରଶସ୍ତ ଓ କେଉଁଟି ବା ବିଷ୍ଣୁଙ୍କର ଯୋଗ୍ୟ ?" ଏହିପରି ଚିନ୍ତାକରି ପାଞ୍ଚରାତ୍ର ବିଧାନାନୁସାରେ ବିଷ୍ଣୁଙ୍କୁ ଅର୍ଚ୍ଚନା କରି ଭୂତଳରେ କୁଶ ଓ ବସନ ଆସ୍ତରଣ କରି ଧ୍ୟାନସ୍ଥ ହେଲେ । ସ୍ୱପ୍ନରେ ବିଷ୍ଣୁ ରାଜାଙ୍କୁ କହିଲେ, "ହେ ରାଜନ୍, ଆଜି ରାତି ଶେଷ ସମୟରେ ନିର୍ମଳ ସୂର୍ଯ୍ୟମଣ୍ଡଳ ଉଦିତ ହେବାକ୍ଷଣି ସାଗର ତଟରେ ନାନାତରୁବିଭୂଷିତ ଜଳପ୍ରାନ୍ତରେ ଏକ ତରଙ୍ଗ ପରିପୂର୍ଣ୍ଣ ଜଳରାଶି ଦେଖାଯିବ । ସେହିଠାରେ କିଛି ଅଂଶ ଜଳରେ ଓ କିଛି ଅଂଶ ସ୍ଥଳରେ ଏକ ମହାପାଦପ ଅଛି । ସାଗର ତରଙ୍ଗ ଦ୍ୱାରା ଆହତ ହେଲେ ମଧ୍ୟ ଏହି ବୃକ୍ଷ କମ୍ପିତ ହେଉନାହିଁ । ତୁମେ କୁଠାର ଧରି ଏକାକୀ ଯଦି ସେହି ତରଙ୍ଗ ଭିତରକୁ ଯାଅ, ତେବେ ତୁମେ ସେ ଗଛକୁ ଦେଖିପାରିବ । ପୂର୍ବୋକ୍ତ ଲକ୍ଷଣ ଦ୍ୱାରା ସେହି ବୃକ୍ଷକୁ ତୁମେ ଚିହ୍ନି ତାକୁ ନିଃଶଙ୍କ ଚିତ୍ତରେ ହାଣିବ । ଦେଖିବ, ପ୍ରଭାତ ହେବାକ୍ଷଣି ସେହି ଛିନ୍ନବୃକ୍ଷ ଏକ ଅଦ୍‌ଭୁତ ଆକାରରେ ପରିଣତ ହେବ । ସେହି ବୃକ୍ଷରୁ ତୁମେ ପ୍ରତିମା ନିର୍ମାଣ କର ।" ସ୍ୱପ୍ନରେ ରାଜା ଯେଉଁ ବାଣୀ ଶୁଣିଥିଲେ, ସେ ଅନୁସାରେ ସାଗରକୂଳକୁ ଯାଇ ବୃକ୍ଷ ଦେଖିଲେ । କୁଠାର ଦ୍ୱାରା କାଟିଲେ । ପରେ ଗଛର

ଗଣ୍ଡିକୁ ଖଣ୍ଡଖଣ୍ଡ କରିବାକୁ ଯାଉଥିବା ସମୟରେ ସହସା ବିଶ୍ୱକର୍ମା ଓ ବିଷ୍ଣୁ ବିପ୍ରରୂପ ଧାରଣ କରି ସେଠାରେ ଉପସ୍ଥିତ ହେଲେ । ରାଜାଙ୍କଠାରୁ ତାଙ୍କର ଉଦ୍ଦେଶ୍ୟ ବୁଝିପାରି ବିଷ୍ଣୁ କହିଲେ, ତୁମେ ନିଶ୍ଚିନ୍ତ ରହ । ଏହି ବ୍ରାହ୍ମଣ (ବିଶ୍ୱକର୍ମା) ଏହି ବୃକ୍ଷରୁ ପ୍ରତିମା ନିର୍ମାଣ କରିଦେବେ । ବିଷ୍ଣୁଙ୍କ ନିର୍ଦ୍ଦେଶମତେ ବିଶ୍ୱକର୍ମା ବଳଭଦ୍ର, ସୁଭଦ୍ରା, ଜଗନ୍ନାଥ ଓ ସୁଦର୍ଶନଙ୍କୁ ଗଠନ କଲେ ଏବଂ ଦିବ୍ୟସୁନ୍ଦର ବସ୍ତ୍ରଦ୍ୱାରା ଆବୃତ କରି ନାନା ଅଳଙ୍କାରରେ ଭୂଷିତ କଲେ । ବିପ୍ରରୂପୀ ବିଷ୍ଣୁ ଇନ୍ଦ୍ରଦ୍ୟୁମ୍ନଙ୍କ ସ୍ତବରେ ସନ୍ତୁଷ୍ଟ ହୋଇ ଆତ୍ମପ୍ରକାଶ କଲେ ଓ ରାଜାଙ୍କୁ ବରଦେଇ ବିଷ୍ଣୁ ଅନ୍ତର୍ଦ୍ଧାନ ହେଲେ । ଇନ୍ଦ୍ରଦ୍ୟୁମ୍ନ ମହାସମାରୋହରେ ପ୍ରତିମାମାନଙ୍କୁ ଆଣି ପବିତ୍ର ସ୍ଥଳରେ ସ୍ଥାପନ କରି ପ୍ରତିଷ୍ଠା ଉତ୍ସବ ସମାପନ କଲେ । ପରେ ଉତ୍ତମ ପ୍ରାସାଦ ନିର୍ମାଣ କରି ଠାକୁରମାନଙ୍କୁ ସେଠାରେ ରଖିଲେ । ବହୁ ଯାଗ ଯଜ୍ଞ କରି ରାଜତ୍ୱ କଲେ । ଅନ୍ତେ ବିଷ୍ଣୁଙ୍କର ପରମପଦ ଲାଭକଲେ ।

ବ୍ରହ୍ମପୁରାଣରେ ଏ ଉପାଖ୍ୟାନ ସହିତ ସ୍କନ୍ଦପୁରାଣର ଉପାଖ୍ୟାନର ଠିକଣାଖି ବିବରଣମାନଙ୍କର ବେଶି ମେଳ ନାହିଁ । ସ୍କନ୍ଦପୁରାଣର ବିଷୟ ବର୍ଣ୍ଣନାବାହୁଲ୍ୟ ବ୍ରହ୍ମପୁରାଣର ଉପାଖ୍ୟାନରେ ନାହିଁ । ନୀଳଗିରି, ନୀଳମାଧବ, ବିଦ୍ୟାପତି, ବିଶ୍ୱାବସୁ, ମହାବେଦୀ ପ୍ରଭୃତି ନାମୋଲ୍ଲେଖ ସୁଦ୍ଧା ବ୍ରହ୍ମପୁରାଣରେ ନାହିଁ । ନୀଳମାଧବଙ୍କ ନାମ ନ ଥାଇ ଇନ୍ଦ୍ରମଣିମୟ, ଇନ୍ଦ୍ରନୀଳମଣିମୟ ମୂର୍ତ୍ତିର ବର୍ଣ୍ଣନା ବ୍ରହ୍ମପୁରାଣରେ ଅଛି । ଶବର ଉପାସନା ପ୍ରସଙ୍ଗ ଆଦୌ ନାହିଁ । ମହାବେଦୀ ନାମ ପରିବର୍ତ୍ତରେ ଏକ ଶୁଭସ୍ଥାନ ବୋଲି ଲେଖାଅଛି ।

ଅନ୍ୟାନ୍ୟ ପୁରାଣର ଚରିତ:

ନାରଦ ପୁରାଣରେ ବ୍ରହ୍ମପୁରାଣର ଅନୁରୂପ ପ୍ରସଙ୍ଗର ବର୍ଣ୍ଣନା ଅଛି । ବ୍ରହ୍ମପୁରାଣରେ ଇନ୍ଦ୍ରଦ୍ୟୁମ୍ନଙ୍କୁ ମନ୍ଦିର ନିର୍ମାଣ କାର୍ଯ୍ୟରେ ଉତ୍କଳରାଜ, କଳିଙ୍ଗରାଜ ଓ କୋଶଳରାଜ ସାହାଯ୍ୟ କରିଥିଲେ ବୋଲି ଲେଖାଅଛି । କିନ୍ତୁ ନାରଦ ପୁରାଣରେ ଏମାନଙ୍କର ଉଲ୍ଲେଖ ନାହିଁ । ଇନ୍ଦ୍ରଦ୍ୟୁମ୍ନ ବ୍ରହ୍ମଲୋକରେ ଥିବା ସମୟରେ ଉତ୍କଳରାଜ ଗାଲ (ଅପରନାମ ଶ୍ୱେତ) ମନ୍ଦିର ଅଧିକାର କରିଥିବା କଥା ସ୍କନ୍ଦପୁରାଣରେ ବର୍ଣ୍ଣିତ ଅଛି । କିନ୍ତୁ ବ୍ରହ୍ମ କି ନାରଦ ପୁରାଣରେ ଏ ବିଷୟ ନାହିଁ ।

ପଦ୍ମପୁରାଣରେ (୪୫) :—ପୁରୁଷୋତ୍ତମ ମାହାତ୍ମ୍ୟ ଓ ନୀଳଗିରି କଥା ବର୍ଣ୍ଣିତ ଅଛି । କିନ୍ତୁ ଚତୁର୍ଦ୍ଧାମୂର୍ତ୍ତିଙ୍କର ନାମ ନାହିଁ । ଜଗନ୍ନାଥଙ୍କର ମଧ୍ୟ ନାମ ନାହିଁ । କେବଳ

(୪୫) ପଦ୍ମ ପୁରାଣ : ପାତାଳ ଖଣ୍ଡ ।

ପୁରୁଷୋତ୍ତମ ହରି ନୀଳଗିରିରେ ପୂଜା ପାଉଛନ୍ତି ବୋଲି ଲେଖାଅଛି । କଳ୍ପବଟ, ରୋହିଣୀକୁଣ୍ଡ, ମହାବେଦୀ କି ଅନ୍ୟ କୌଣସି ତୀର୍ଥସ୍ଥାନର ନାମ ନାହିଁ । ଇନ୍ଦ୍ରଦ୍ୟୁମ୍ନ ପ୍ରସଙ୍ଗ ମଧ୍ୟ ନାହିଁ । ଗଙ୍ଗାସାଗର ସଙ୍ଗମଠାରେ ପୁରୁଷୋତ୍ତମ କ୍ଷେତ୍ର ଅନ୍ତର୍ଗତ ନୀଳଗିରି ଅବସ୍ଥିତ ବୋଲି ଲେଖାଅଛି । ଗଣ୍ଡକୀ ନଦୀ ପାର ହେଲେ ପୁରୁଷୋତ୍ତମକ୍ଷେତ୍ର ଭୂମି ପଡ଼ୁଥିବା ବିଷୟ ଏ ପୁରାଣରେ ଅଛି । ଶ୍ରୀରାମଚନ୍ଦ୍ରଙ୍କ ଯଜ୍ଞାଶ୍ୱରକ୍ଷା କରିବା ପାଇଁ ଶତ୍ରୁଘ୍ନ ବହୁ ସ୍ଥାନ ଭ୍ରମଣ କରି ପ୍ରଥମେ ଚ୍ୟବନାଶ୍ରମ, ତା ପରେ ରତ୍ନାତଟ ନଗର ଅତିକ୍ରମ କରି ନୀଳଗିରି ଦର୍ଶନ କଲେ । ଶ୍ରୀମାନ୍ ପୁରୁଷୋତ୍ତମ ଏହି ପର୍ବତରେ ବାସ କରୁଛନ୍ତି । ଏହି ନୀଳଗିରି ନିବାସୀ ଭିଲମାନେ ସମସ୍ତେ ଚତୁର୍ଭୁଜ । ଭଗବାନ ପୁରୁଷୋତ୍ତମଙ୍କୁ ଦର୍ଶନ କରିବାରୁ ସେ ମହିମା ବଳରେ ସେମାନେ ଚତୁର୍ଭୁଜ ହୋଇଛନ୍ତି । ପୂର୍ବେ ପୃଥୁକ ନାମକ ଏକ ଭିଲ ବାଳକ ଇତସ୍ତତଃ ଭ୍ରମଣ କରୁ କରୁ ଏହି ଗିରିପୁଞ୍ଜ ଭିତରୁ ଏକ ଗିରିଶୃଙ୍ଗ ଆରୋହଣ କରି ଏକ ଅଦ୍ଭୁତ ଦେବାଳୟ ଦେଖିଲା । ଏହି ମନ୍ଦିରଟିର ସମଗ୍ର ଅବୟବ ସୁବର୍ଣ୍ଣ-ମଣିମୁକ୍ତାଦି ଦ୍ୱାରା ଆବୃତ । ପୃଥୁକ ସେ ଦେବାଳୟ ଭିତରେ ପଶି ଦେଖିଲା ଯେ ଶଙ୍ଖଚକ୍ରଗଦାଶାର୍ଙ୍ଗପଦ୍ମଧାରୀ ଦେବାଧିଦେବ ଶ୍ରୀହରି ପୂଜା ପାଉଛନ୍ତି ; ଦେବତା-ମାନେ ଧୂପଦୀପନୈବେଦ୍ୟ ଦ୍ୱାରା ଆରାଧନା କରୁଛନ୍ତି । ସେଠାରେ ଯେଉଁ ପ୍ରସାଦ ପଡ଼ିଥିଲା, ପୃଥୁକ ତାକୁ ଭକ୍ଷଣ କରି ଶ୍ରୀମୂର୍ତ୍ତି ଦର୍ଶନ କରିବାକ୍ଷଣି ଚତୁର୍ଭୁଜତ୍ୱ ପ୍ରାପ୍ତ ହେଲା । ପୃଥୁକଙ୍କଠାରୁ ତାର ଜାତଭାଇ ଭିଲମାନେ ଏହି ସମ୍ବାଦ ଶୁଣି ଭଗବାନ ପୁରୁଷୋତ୍ତମଙ୍କ ଆରାଧନା କଲେ । କାଞ୍ଚନଗରର ରାଜା ରତ୍ନଗ୍ରୀବ ପୁରୁଷୋତ୍ତମ ଧାମରେ ଶ୍ରୀହରିମୂର୍ତ୍ତି ଦର୍ଶନ କରି ଚତୁର୍ଭୁଜତ୍ୱ ପ୍ରାପ୍ତ ହୋଇଥିଲେ । ଦକ୍ଷିଣ ମହୋଦଧିତଟରେ ପୁରୁଷୋତ୍ତମକ୍ଷେତ୍ର ବୋଲି ମଧ୍ୟ ଏହି ପୁରାଣରେ ଲେଖା ନାହିଁ । ଏହି କ୍ଷେତ୍ରରେ ବିଜେ କରିଥିବା ପୁରୁଷୋତ୍ତମ ହିଁ ଶ୍ରୀରାମ, ଏହା ଏ ପୁରାଣରେ କୁହାଯାଇଛି ।

ଓଡ଼ିଆ ମହାଭାରତରେ ଜଗନ୍ନାଥଚରିତ—( ୪୬ )

ଶ୍ରୀକୃଷ୍ଣ ଦେହତ୍ୟାଗ କରିବା ପରେ ଅର୍ଜୁନ ଜରା ଶବରର ସାହାଯ୍ୟରେ କୃଷ୍ଣଙ୍କ ପିଣ୍ଡକୁ ଦହନ କରିବା ଆୟୋଜନ କଲେ । ଅଗରବୃକ୍ଷ ଖୋଜି ଆଣିବା ନିମନ୍ତେ ଜରା କାଳିନ୍ଦୀନଦୀ ତଟରେ କାଳେବର ବନକୁ ଗଲେ । ସେଠାରେ ପୂର୍ବେ ବହୁ ଅଗରୁବୃକ୍ଷ ଥିଲେ ମଧ୍ୟ ସେଦିନ ଗୋଟିଏ ହେଲେ ଦଶିଲା ନାହିଁ । କୃଷ୍ଣଙ୍କ ଦେହ ଅପୋଡ଼ା ରହିବା ଆଶଙ୍କାରେ ଅର୍ଜୁନ ଚିନ୍ତିତ ହୋଇପଡ଼ିଲେ ଏବଂ ଦୁଃଖରେ କ୍ରନ୍ଦନ କଲେ । ଭଗବାନଙ୍କ ଦୟାରୁ ଏକ ଅଗରୁ ବୃକ୍ଷ ଦେଖାଗଲା । ସେ ଗଛକୁ ଆଣି ସେଥିରୁ ଜୁଇ ତିଆରି କଲେ ଏବଂ କୃଷ୍ଣଙ୍କ ପିଣ୍ଡକୁ ଦହନ କରିବା ପାଇଁ ଅଗ୍ନି ଦେଲେ ।

(୪୬) ଶାରଳାଦାସ ମହାଭାରତ : ବନପର୍ବ, ମୂଷଳୀପର୍ବ ।

ଅଗରୁବୃକ୍ଷ ଶେଷ ହୋଇଗଲା କିନ୍ତୁ ପିଣ୍ଡ ପୋଡ଼ିଲା ନାହିଁ । ଅର୍ଜୁନ ବହୁତ ବିକଳ ହେବାରୁ ଆକାଶରୁ ବାଣୀ ହେଲା, "ଏ ପିଣ୍ଡକୁ ଅନଳ ଭକ୍ଷି ପାରିବ ନାହିଁ, ସେ ନୀଳସୁନ୍ଦର ପର୍ବତରେ ରହି ବହୁଦିନ ପୂଜା ପାଇବ । ତୁମ୍ଭେ ଅଗ୍ନି ଲିଭାଇ ପିଣ୍ଡକୁ କାଢ଼ିଆଣି ସମୁଦ୍ରରେ ମେଲିଦିଅ ।" ଏକ ରାତି, ଏକ ଦିବସ ନିଆଁ ଲାଗିଥିଲେ ସୁଦ୍ଧା ପିଣ୍ଡ ନ ପୋଡ଼ି ରହିଲା । କେବଳ ଦୁଇ ହାତ, ଦୁଇ ଗୋଡ଼, କର୍ଣ୍ଣ, ନାସିକା, ମୁଣ୍ଡ ପୋଡ଼ିଗଲା । ଅର୍ଜୁନ କୃଷ୍ଣଙ୍କ ପିଣ୍ଡକୁ ସମୁଦ୍ରରେ ମେଲିଦେଲେ । ଏହି ପିଣ୍ଡ ସମୁଦ୍ର କୂଳରେ କେଉଁଠାରେ ଲାଗି ବିଖ୍ୟାତ ହେବ, ସେଥିପ୍ରତି ଲକ୍ଷ୍ୟ ରଖିବାକୁ ଜାରା ଶବରକୁ ଆଦେଶ ଦେଇ ଅର୍ଜୁନ ମହୋଦଧି କୂଳେ କୂଳେ ଦ୍ୱାରକାକୁ ଗଲେ ।

ଦିନେ ଜାରାଶବରକୁ କୃଷ୍ଣ ସ୍ୱପ୍ନରେ ଦେଖାଦେଇ ତାଙ୍କର ପିଣ୍ଡକୁ ପୂଜା କରିବାପାଇଁ ଆଦେଶ ଦେଲେ । ସ୍ୱପ୍ନ ପରେ ଏକ ବିଷ୍ଣୁପ୍ରତିମା ତା'ହା ପାଖରେ ଥିବାର ଜାରା ଦେଖିଲା । ସେ ପ୍ରତିମାକୁ ନେଇ ଧଉଳୀ ପର୍ବତ ଉପରେ ଏକ ଅଗରୁବୃକ୍ଷ ମୂଳରେ ସ୍ଥାପନା କରି ଭକ୍ତିରେ ବନର ପକ୍ୱଫଳ, ପାଣିପତ୍ର ଦେଇ ପୂଜା କଲା ; କିନ୍ତୁ ତାର ପୁତ୍ର ଭାର୍ଯ୍ୟା କେହି ଏହା ଜାଣି ପାରିଲେ ନାହିଁ । ଏପରି କେତେ ବର୍ଷ ଗତ ହୋଇଗଲା ।

କାଞ୍ଚିନଗରର ବିଷ୍ଣୁଭକ୍ତ ରାଜା ଗାଲମାଧବ ପ୍ରତିଦିନ ଚକ୍ଷୁରେ ବିଷ୍ଣୁଙ୍କ ଛବି ଦର୍ଶନ କରନ୍ତି ଏବଂ ତା ପରେ ପ୍ରସାଦ ସେବା କରନ୍ତି । କୃଷ୍ଣଙ୍କ ଅବତାର ଶେଷ ହେବାରୁ ଚକ୍ଷୁରେ ଆଉ ବିଷ୍ଣୁପ୍ରତିମା ଦେଖାଗଲେ ନାହିଁ । ରାଜା ଅନ୍ନ ନ ଭୁଞ୍ଜି ନିରାହାର ରହିଲେ । କୃଷ୍ଣଙ୍କ ଅପୋଡ଼ା ପିଣ୍ଡ ସମୁଦ୍ରରେ ଅର୍ଜୁନ ମେଲି ଦେଇଥିବା ପ୍ରସଙ୍ଗ ସେ ଶୁଣି ଚତୁର୍ଦ୍ଦିଗକୁ ତାର ଅନ୍ୱେଷଣରେ ଲୋକ ପଠାଇଲେ । ଦକ୍ଷିଣ ଦିଗକୁ ବାସୁଦେବ ବ୍ରାହ୍ମଣ ଗଲେ । ବହୁ ଅନୁସନ୍ଧାନ ପରେ ଜାରାଶବରର ପଲ୍ଲୀରେ ବାସୁଦେବ ଦାସ ଉପସ୍ଥିତ ହେଲେ । ଜାରାଶବରର ପୁତ୍ରୀ ସହିତ ବାସୁଦେବ ମୈତ୍ର ବସି ସେଠାରେ କିଛି ଦିନ ଅବସ୍ଥାନ କରି ମୈତ୍ରଙ୍କ ସାହାଯ୍ୟରେ ବିଷ୍ଣୁ ପ୍ରତିମାଙ୍କ ଅବସ୍ଥିତି ଜାଣି ପାରିଲେ । ଜାରାଶବର ବାସୁଦେବଙ୍କୁ ପ୍ରତିମା ଦେଖାଇବାକୁ ରାଜି ହେଲେ । ଆଖିରେ ଅନ୍ଧପୁଟୁଳି ବାନ୍ଧି ଅଗରୁଗଛ ମୂଳକୁ ନେଲେ । ବ୍ରାହ୍ମଣ ବାଟରେ ଯବଧାନ ପକାଇ ପକାଇ ଯାଇଥିଲେ । ବିଷ୍ଣୁମୂର୍ତ୍ତିଙ୍କୁ ଦର୍ଶନ କରିସାରି ବାସୁଦେବ ଛଅ ସାତ ମାସ ପରେ କାଞ୍ଚିନଗରକୁ ଫେରି ଯାଇ ଗାଲମାଧବଙ୍କୁ ଏ ବୃତ୍ତାନ୍ତ କହିଲେ ।

ଗାଲମାଧବ ଧଉଳୀ ପର୍ବତକୁ ଆସି ଯବଧାନ ଗଛର ସଙ୍କେତକୁ ଅନୁସରଣ କରି ବିଷ୍ଣୁ ପ୍ରତିମାଙ୍କ ଆସ୍ଥାନ ପର୍ଯ୍ୟନ୍ତ ଗଲେ । ସେଠାରେ ଛିଡ଼ାଫୁଲ ପଡ଼ିଥିବାର ଦେଖିଲେ ; କିନ୍ତୁ ପ୍ରତିମା ଦେଖାଗଲା ନାହିଁ । ଶବରମାନେ ଲୁଚାଇ ରଖିଥିବେ ବୋଲି ଭାବି ଶବରବଂଶକୁ ଧରି ଆଣି ମାରିଦେଲେ । କେବଳ ଜାରାଶବର ସେ

ସମସ୍ତରେ ନ ଥିବାରୁ ରକ୍ଷା ପାଇଲେ । ଗାଲମାଧବଙ୍କ ଏ କାର୍ଯ୍ୟରେ ଅସନ୍ତୁଷ୍ଟ ହୋଇ ଭଗବାନ ରାଜାଙ୍କୁ ଅଭିଶାପ ଦେଲେ—"ଜାରାଶବରର ବଂଶ ବର୍ଦ୍ଧିତ ହେଉ । ତୋ ବଂଶରେ କେହି ନ ରହୁ ।" ଏହା ପରେ ଧଉଳୀ ପାହାଡ଼ରେ ଶବରପଲ୍ଲୀରେ ଭଗବାନ ରହିବାକୁ ଆଉ ଇଚ୍ଛା କଲେ ନାହିଁ ଏବଂ ତାଙ୍କର ଆଦେଶ ଅନୁସାରେ ଗାଲମାଧବ ବିଷ୍ଣୁ ପ୍ରତିମାଙ୍କୁ ଅଣି ନୀଳଗିରିରେ ସ୍ଥାପନ କରି ପୂଜା କଲେ । ପୂର୍ବେ ଶବରମାନେ ଏହି ପ୍ରତିମାଙ୍କୁ ଶବରୀ-ନାରାୟଣ ରୂପରେ ପୂଜା କରୁଥିଲେ ।

ଜାରାଶବର କୃଷ୍ଣଙ୍କ ପିଣ୍ଡ ସନ୍ଧାନ କରିବା ଉଦ୍ଦେଶ୍ୟରେ ସମୁଦ୍ର କୂଳରେ କୋଣାର୍କ ପାଖରେ ଅବସ୍ଥାନ କରୁଥିଲେ । ବରାଟବଂଶର ରାଜା ମଧୁକେଶରୀଙ୍କ ପୁତ୍ର ଇନ୍ଦ୍ରଦ୍ୟୁମ୍ନ ନୀଳଗିରିରେ ଭଗବାନ ଅବସ୍ଥାନ କରିବେ ବୋଲି ଶୁଣିଥିଲେ । ସେ ସେଠାକୁ ଆସି ବିଶ୍ୱାବସୁ ନାମକ ଏକ ବ୍ରାହ୍ମଣଙ୍କ ଦ୍ୱାରା ଭଗବାନଙ୍କ ପାଇଁ ଏକ ମନ୍ଦିର ନିର୍ମାଣ କଲେ । କିନ୍ତୁ ସେ ପର୍ଯ୍ୟନ୍ତ କୃଷ୍ଣଙ୍କ ପିଣ୍ଡର ସନ୍ଧାନ ମିଳି ନ ଥିବାରୁ ଜାରାଶବରଙ୍କୁ ଖୋଜି ତାଙ୍କୁ ପିଣ୍ଡ କଥା ପଚାରିଲେ । ଜାରା ଭଗବାନଙ୍କୁ ଧ୍ୟାନ କରିବାରୁ ସେ ଆଦେଶ ଦେଲେ ଯେ "କଳିଯୁଗରେ ବୌଦ୍ଧ ରୂପରେ ଅମେ କଳିଛଦନ ବହିରବା ଇଚ୍ଛା କରିଛୁ । ପୂର୍ବ ପ୍ରତିଶ୍ରୁତି ଅନୁସାରେ ମୁଁ ନିଶ୍ଚୟ ନୀଳଗିରିରେ ଅବସ୍ଥାନ କରିବି । ରୋହିଣୀକୁଣ୍ଡରେ କାୟା ବଦଳାଇ ବୌଦ୍ଧ ଅବତାର କାୟା ଦେଖାଇବି । ଅପୋଡ଼ା ପିଣ୍ଡ ଦାରୁ ପାଲଟିବ ।" ଇନ୍ଦ୍ରଦ୍ୟୁମ୍ନ ରାଜାଙ୍କ ଠାରୁ ଏ ସମ୍ବାଦ ପାଇ ତାଙ୍କ ସହିତ ନୀଳଗିରିକି ଆସିଲେ । ରୋହିଣୀକୁଣ୍ଡରେ ଭଗବାନ ଦାରୁ ରୂପରେ ଅବତୀର୍ଣ୍ଣ ହେଲେ । ଇନ୍ଦ୍ରଦ୍ୟୁମ୍ନ କୁଣ୍ଡ ଭିତରକୁ ଗୃହିଁଦେବାରୁ କୃଷ୍ଣଙ୍କ ରୂପ ଦାରୁରେ ଦେଖିଲେ । ବାସୁଦେବ ଓ ରାଜାଙ୍କ ସାହାଯ୍ୟରେ କୁଣ୍ଡରୁ ଦାରୁ ବାହାର କରି ଆଣିଲେ । ଜାରାଶବର ମୂର୍ତ୍ତିଗଠନ ଭାର ନେଲେ । ସ୍ୱୟଂ ବିଶ୍ୱକର୍ମା ବ୍ରାହ୍ମଣ ବେଶରେ ଜାରାଶବର ସହିତ ମୂର୍ତ୍ତି ଗଠନରେ ଯୋଗଦେଲେ । ଦାରୁକୁ ତିନି ଗଡ଼ କଲେ । ମିଥୁନ ମାସ ପଞ୍ଚମୀ ଶ୍ରବଣା-ନକ୍ଷତ୍ର ଗୁରୁବାର ଦିନ ମୂର୍ତ୍ତିଗଠନ ପାଇଁ ଜାରା ମନ୍ଦିର ଭିତରେ ପଶିଲେ । ତାଙ୍କ ନିର୍ଦ୍ଦେଶରେ ମନ୍ଦିରର ସବୁ ଦ୍ୱାର ବନ୍ଦ ରହିଲା ଓ ମୂର୍ତ୍ତିଗଠନ ଶେଷ ନ ହେବା ପର୍ଯ୍ୟନ୍ତ ଦ୍ୱାର ନ ଖୋଲିବା ପାଇଁ ଆଦେଶ ହେଲା । ପନ୍ଦରଦିନ ପରେ ମନ୍ଦିର ଭିତରୁ କିଛି ଶବ୍ଦ ଶୁଣା ନ ଯିବାରୁ ଜାରା ଗୋପନରେ ପଳାଇ ଯାଇଥିବାର ସନ୍ଦେହ କରି ରାଜା ମନ୍ଦିର ଦ୍ୱାର ଖୋଲିଦେଲେ । ସିଂହାସନ ଉପରେ ତିନିମୂର୍ତ୍ତି ବସିଥିବା ଲୋକେ ଦେଖିଲେ । ବିଶ୍ୱକର୍ମା ଓ ଜାରାଶବର ତିନିଗଡ଼ କାଠରୁ ମୂର୍ତ୍ତି ଗଠନ କରିସାରିବା ପରେ କୃଷ୍ଣ ରାଜାଙ୍କୁ ଆଦେଶ ଦେଲେ, "କଳିଯୁଗରେ ମୋର ବର୍ଣ୍ଣକୁ ନରମାନେ ନ ଦେଖନ୍ତୁ । ଶାଳବୃକ୍ଷରୁ ଝୁଣା ଆଣି ପିଣ୍ଡରେ ଲେପନ କରାଅ ।" ଜାରା ରାତିରେ ପିଣ୍ଡରେ ଝୁଣା ଲେପ ଦେଇ ଦାରୁ ଭିତରେ ଗୁପ୍ତ କରିଦେଲେ । କେହି ଜାଣି ପାରିଲେ ନାହିଁ । ବଳଭଦ୍ର, ସୁଭଦ୍ରା ଓ ଜଗନ୍ନାଥଙ୍କ ମୂର୍ତ୍ତି ପ୍ରକାଶ ପାଇଲା ।

ସାରଳାଦାସଙ୍କ ଲେଖାରୁ ଜଣାଯାଉଛି ଯେ ଶବରମାନେ ପୂର୍ବେ ବିଷ୍ଣୁଙ୍କୁ ଶବରୀନାରାୟଣ ରୂପରେ ଧଉଳୀ ପର୍ବତରେ ପୂଜା କରୁଥିଲେ । ସେ ଶବରୀନାରାୟଣଙ୍କୁ ପୁଣି ପରେ ଧଉଳୀରୁ ନୀଳଗିରିକୁ କାଞ୍ଚିରାଜା ଗାଲମାଧବ ନେଇ ପୂଜା କଲେ । କିନ୍ତୁ ନୀଳମାଧବ ନାମ ଲେଖା ନାହିଁ କି ଏହି ପ୍ରତିମା ଅନ୍ତର୍ଦ୍ଧାନ ହେବା କଥା ବର୍ଣ୍ଣନା ନାହିଁ । କିନ୍ତୁ ଏହି ଶବରୀନାରାୟଣ ଯୋଗୁଁ ଜଗତର ଲୋକେ ମୁକ୍ତ ହୋଇ ଯାଉଥିବାରୁ ହରଙ୍କ ଆଦେଶରେ ଯମ ତାଙ୍କୁ ଶବରପଲ୍ଲୀରୁ ନିଜ ପୁର ଯମନିକ ତୀର୍ଥ (ପୁରୀ)କୁ ନେଇ ଯାଇ ରଖିଲେ । ସେଠାରେ ମଧ୍ୟ ଲୋକେ ଏହି ପ୍ରତିମାଙ୍କ ଦର୍ଶନରେ ମୁକ୍ତିଲାଭ କରିବାରୁ ପୁନର୍ବାର ତାଙ୍କୁ ଶବରପଲ୍ଲୀରେ ଯମ ରଖିଦେଇ ଆସିଲେ । ସେହି ମୂର୍ତ୍ତି ପୁଣି ଶବରପଲ୍ଲୀରେ ରହିବାକୁ ଅନିଚ୍ଛା ପ୍ରକାଶ କରିବାରୁ ଏବଂ ନୀଳଗିରିରେ ରହିବେ ବୋଲି କହିବାରୁ ଗାଲମାଧବ ତାଙ୍କୁ ନୀଳଗିରିକୁ ନେଇଗଲେ । କୃଷ୍ଣଙ୍କ ଅପୋଡ଼ା ପିଣ୍ଡ ଦାରୁ ରୂପରେ ରୋହିଣୀ କୁଣ୍ଡରେ ଦେଖାଦେବା ଓ କୃଷ୍ଣ ବୌଦ୍ଧ ଅବତାର ଧାରଣ କରି ଜଗନ୍ନାଥ ରୂପରେ ପ୍ରକାଶ ପାଇବା ପ୍ରସଙ୍ଗ ସଂସ୍କୃତ ପୁରାଣମାନଙ୍କରେ ନାହିଁ । ଗାଲମାଧବଙ୍କୁ କାଞ୍ଚିର ରାଜା ଓ ଇନ୍ଦ୍ରଦ୍ୟୁମ୍ନଙ୍କୁ ବିରାଟ ବଂଶର ରାଜା ବୋଲି ସାରଳାଦାସ ଲେଖିଛନ୍ତି ଏବଂ ପୁରୀର ଉତ୍ତରରେ କାଞ୍ଚି ଥିବାର ତାଙ୍କ ଲେଖାରୁ ଅନୁମାନ ହୁଏ ।

ବନ ପର୍ବରେ ଓ ମୂଷଳୀ ପର୍ବରେ ଜଗନ୍ନାଥ ଚରିତ ବିଶଦ ଭାବରେ ବର୍ଣ୍ଣିତ ଅଛି; କିନ୍ତୁ ମୂଷଳୀ ପର୍ବରେ ଦିଆଯାଇଥିବା ବିଷୟଠାରୁ ବନପର୍ବରେ ଦିଆ ଯାଇଥିବା ବିଷୟ କିଛିଏ ଭିନ୍ନ ପ୍ରକାର । ନିଜେ ସାରଳାଦାସ ଏକ ବିଷୟକୁ ଏକ ଗ୍ରନ୍ଥର ଦୁଇ ସ୍ଥାନରେ ବିଭିନ୍ନ ପ୍ରକାରରେ ଲେଖିଛନ୍ତି । ସାରଳାଦାସଙ୍କ ଗ୍ରନ୍ଥରେ ବହୁସ୍ଥଳରେ ଏପରି ଭ୍ରମ ଥିବାର ଦେଖାଯାଏ । ବନପର୍ବରେ ଗାଲମାଧବଙ୍କୁ ସୋମବଂଶର ରାଜା ଓ ସାକଳ୍ପ ଦ୍ୱୀପରେ ସେ ରାଜତ୍ୱ କରୁଥିଲେ ବୋଲି ସାରଳାଦାସ ଲେଖିଛନ୍ତି । ଇନ୍ଦ୍ରଦ୍ୟୁମ୍ନ ଗାଲମାଧବଙ୍କ ପୁତ୍ର । ଗୁଣ୍ଡିଚେଶ୍ୱରୀ ଇନ୍ଦ୍ରଦ୍ୟୁମ୍ନଙ୍କ ରାଣୀ । ଇନ୍ଦ୍ରଦ୍ୟୁମ୍ନ ରାଜା କୃଷ୍ଣଙ୍କ ପିଣ୍ଡ ଅନୁସନ୍ଧାନ ପାଇଁ ଯଦୁଦାସ ବିପ୍ରଙ୍କୁ ଦକ୍ଷିଣକୁ ପଠାଇ ଥିଲେ । ଏହି ଯଦୁଦାସ ଜାରାଶବରର ସହିତ ମୈତ୍ର ହୋଇ ନୀଳମାଧବଙ୍କୁ ଠାବ କରିଥିଲେ । ଇନ୍ଦ୍ରଦ୍ୟୁମ୍ନ ଜାରାଶବରର ବଂଶଧ୍ୱଂସ କରିଥିଲେ ବୋଲି ମୂଷଳୀ ପର୍ବରେ ଲେଖାଅଛି; କିନ୍ତୁ ଦଣ୍ଡଦେବା ପୂର୍ବରୁ କୃଷ୍ଣ ସ୍ୱପ୍ନରେ ସ୍ୱପ୍ରକାଶର ବାର୍ତ୍ତା ଶୁଣାଇବାରୁ ଜାରାର କୌଣସି କ୍ଷତି ହୋଇନାହିଁ । ଯଦୁଦାସ ସାତ ମାସ ଜରାର ଘରେ ରହିଥିଲେ ବୋଲି ବନପର୍ବରେ ଲେଖାଅଛି । ବିଶ୍ୱକର୍ମା ମୂର୍ତ୍ତି ଗଠନ କରିବା ପାଇଁ ମନ୍ଦିର ଭିତରେ ପଶିବା କଥା ଲେଖାଅଛି, କିନ୍ତୁ ମନ୍ଦିର କିଏ ନିର୍ମାଣ କରିଥିଲା, ତାହା ଲେଖା ନାହିଁ । ବୌଦ୍ଧରୂପେ ଭଗବାନ ଅବତୀର୍ଣ୍ଣ ହୋଇଥିବା କଥା ସାରଳାଦାସ ଲେଖିଛନ୍ତି—

ପୀତ କୁଙ୍କୁମ ବରନ ସେହି ବ୍ରହ୍ମା ମୂର୍ତ୍ତି
ଡାହାଣେ ଶୁକଳବର୍ଣ୍ଣ ମହାଦେବ ଜ୍ୟୋତି ।
ରୂପରେ ତ ନାରାୟଣ ବର୍ଣ୍ଣ ଅଟେ କଳା
ବ୍ରହ୍ମା ବିଷ୍ଣୁ ମହେଶ୍ୱର ତିନିଦେବ ମେଳା ।
ବଳଭଦ୍ର ସୁଭଦ୍ରା ଏ କୃଷ୍ଣ ତିନି ରୂପ
ବଉଦ୍ଧ ରୂପରେ ହେଲେ ଏମନ୍ତ ସ୍ୱରୂପ ।

ନୀଳସୁନ୍ଦର ପର୍ବତର ପୂର୍ବ ଚରିତ—ନୀଳାଚଳ ନୀଳସୁନ୍ଦର ପର୍ବତ ନାମରେ ମଧ୍ୟ ପରିଚିତ । ଏହି ପର୍ବତର ଚରିତ ଶାରଳାଦାସ "ମହାଭାରତ"ରେ ଏପରି ଲେଖିଛନ୍ତି—

ରାମଚନ୍ଦ୍ର ଲଙ୍କା ଯିବାକୁ ଯେଉଁ ସେତୁ ନିର୍ମାଣ କରିଥିଲେ, ସେଥିରେ ବହୁତ ପର୍ବତ ଥିଲା । ସେ ପର୍ବତମାନଙ୍କ ଭିତରେ ନୀଳସୁନ୍ଦରପର୍ବତ ଓ ନୀଳଗିରି ବୋଲି ଦୁଇଟି ପର୍ବତ ଥିଲା । ହନୁମନ୍ତଙ୍କ କାନ୍ଧ ଉପରେ ବସି ରାମଚନ୍ଦ୍ର ଯୁଦ୍ଧ କରୁଥିଲେ । ହନୁମନ୍ତ ପ୍ରଥମେ ନୀଳସୁନ୍ଦର ପର୍ବତ ଉପରେ ବସିଥିଲେ । ପରେ ନୀଳଗିରି ଉପରକୁ ଡେଇଁ ପଡ଼ିବାରୁ ତାଙ୍କର ଭାର ସହି ନ ପାରି ନୀଳଗିରି ପାତାଳ ଭିତରେ ପଶି "ଗୋପନ" ହୋଇଗଲା । ସେହି ନୀଳଗିରିହିଁ ଦ୍ୱାରକା ହେଲା ।

ନୀଳସୁନ୍ଦର ଗିରି ଦିନକୁ ଦିନ ବୃଦ୍ଧିପ୍ରାପ୍ତ ହୋଇ ସ୍ୱର୍ଗ ପର୍ଯ୍ୟନ୍ତ ଯିବାରୁ ସୂର୍ଯ୍ୟଦେବଙ୍କ ରଥର ଗତି ଅବରୋଧ ହୋଇଗଲା ଏବଂ ଟାପୁ ବାଜିବାରୁ ଘୋଡ଼ା ଲେଉଟି ପଡ଼ିଲା । ସୂର୍ଯ୍ୟଦେବ ନୀଳସୁନ୍ଦରକୁ ଶାପ ଦେଲେ—

ସତ୍ୟଯୁଗରେ ଲକ୍ଷେକ ଯୋଜନ ବଢ଼ିବୁ
ତ୍ରେତାଯୁଗରେ ଅୟୁତ ଯୋଜନ ହୋଇବୁ ।
ଦ୍ୱାପରରେ ଅଷ୍ଟୋତ୍ତର ଶତେକ ଯୋଜନ × ×

ଏହି ଶାପ ଯୋଗୁଁ ପର୍ବତର ବପୁ କ୍ଷୀଣ ହେଲା । ଏହି ପର୍ବତରେ ଦ୍ୱାପର ଯୁଗରେ ଶାମ୍ବ ଲୁହାମୂଷଳ ଘଷିଥିଲେ । ସେ ମୂଷଳର ଅବଶେଷକୁ ଜଳରେ ଫିଙ୍ଗି ଦେଲେ । ଗୋଟିଏ ମୀନ ସେହି ଲୁହାଖଣ୍ଡକୁ ଗିଳି ଦେଲା । କେଉଟର ଜାଲରେ ସେ ମାଛଟି ପଡ଼ିଲା । ଜରାଶବର ସେ ମାଛକୁ ନେଇ କାଟିବା ବେଳେ ଲୁହାକୁ ପାଇଲା । ସେ ଲୁହାରୁ ଫନ୍ଦି ତିଆରି କରି ଶରରେ ଲଗାଇଲା । ସେହି ଶରରେ ଶ୍ରୀକୃଷ୍ଣଙ୍କ ପାଦକୁ ବିନ୍ଧିଥିଲା । କୃଷ୍ଣଙ୍କର ପିଣ୍ଡକୁ ଅର୍ଜ୍ଜୁନ ସମୁଦ୍ରରେ ମେଲି ଦେଇ-

ଥିଲେ । ସେହି ପିଣ୍ଡ ପୁଣି ଦାରୁ ରୂପରେ ଆବିର୍ଭୂତ ହୋଇ ସେହି ନୀଳସୁନ୍ଦର ପର୍ବତରେ ପୂଜା ପାଇଲେ । (୪୭)

ନୀଳସୁନ୍ଦରକୁ ସୂର୍ଯ୍ୟଦେବ ତ୍ରେତା ଯୁଗରେ ରାମଙ୍କ ଲଙ୍କା ବିଜୟ ପରେ ଶାପ ଦେଲେ ବୋଲି ଶାରଳାଦାସ ପ୍ରଥମେ ଲେଖିଥିଲେ, କିନ୍ତୁ ଶାପ ଦେଲେ ସତ୍ୟ ଯୁଗର କଥା ଉଲ୍ଲେଖ କରିଛନ୍ତି । ଏ ଭଳି ବିଭ୍ରାଟ ଶାରଳା ମହାଭାରତରେ ନୂତନ ନୁହେଁ ।

ବଙ୍ଗଦେଶର ପ୍ରାଚୀନ କବି ମୁକୁନ୍ଦରାମ ବଙ୍ଗଳାରେ ଲିଖିତ "ଜଗନ୍ନାଥ ମଙ୍ଗଳ" କାବ୍ୟରେ ଲେଖିଛନ୍ତି ଯେ ଇନ୍ଦ୍ରଦ୍ୟୁମ୍ନ ଦେଉଳଟିଏ ନିର୍ମାଣ କରିସାରି ଦେବତା ସ୍ଥାପନ ସମ୍ପର୍କରେ ଉପଦେଶ ନେବାପାଇଁ ବ୍ରହ୍ମାଙ୍କଠାକୁ ଗଲେ । ବ୍ରହ୍ମା ସନ୍ଧ୍ୟା କରୁଥିଲେ ; ମୁହୂର୍ତ୍ତେ ଅପେକ୍ଷା କରିବା ପାଇଁ କହିଲେ । ସେ ମୁହୂର୍ତ୍ତିକ ଷାଠିଏ ହଜାର ବର୍ଷ ହେଲା । ଇନ୍ଦ୍ରଦ୍ୟୁମ୍ନ ଜଗି ରହିଲେ । ବ୍ରହ୍ମା ସନ୍ଧ୍ୟା ସାରିଲେ, ଏତେକାଳ ବିତି ଯାଇଥିବାରୁ ଇନ୍ଦ୍ରଦ୍ୟୁମ୍ନଙ୍କୁ ମର୍ତ୍ତ୍ୟଧାମକୁ ଯାଇ ନିଜ ଦେଉଳ ଠାବ କରିବା ପାଇଁ କହିଲେ । ଇନ୍ଦ୍ରଦ୍ୟୁମ୍ନ ମର୍ତ୍ତ୍ୟକୁ ଆସି ନିଜ ରାଜ୍ୟକୁ ସୁଦ୍ଧା ଚିହ୍ନି ପାରିଲେ ନାହିଁ । ଶେଷରେ ଗୋଟିଏ ପେଚା ଓ ଗୋଟିଏ କୂର୍ମ ତାଙ୍କୁ ଚିହ୍ନିଲେ । ସେ ପୁଣି ରାଜା ହେଲେ । ନୂତନ ମନ୍ଦିର ନିର୍ମାଣ କଲେ । କୃଷ୍ଣ ନିମ୍ବଗଛରେ ଦେହତ୍ୟାଗ କରିବା ପରେ ସେ କାଠ ସମୁଦ୍ରରେ ଭାସି ଆସି ଶ୍ରୀକ୍ଷେତ୍ର ନିକଟରେ ଲାଗିଲା । ବ୍ରହ୍ମା ଏଭଳି ହେବ ବୋଲି ପୂର୍ବେ ଇନ୍ଦ୍ରଦ୍ୟୁମ୍ନଙ୍କୁ କହିଥିଲେ । ରାଜା ସେ କାଠକୁ ଆଣି ବିଶ୍ୱକର୍ମାଙ୍କ ସାହାଯ୍ୟରେ ମୂର୍ତ୍ତି ଗଠନ କରି ପୂଜା କଲେ ଏବଂ ଇନ୍ଦ୍ରଦ୍ୟୁମ୍ନ କୌମାଦ୍ୟ ରାଜାଙ୍କ କନ୍ୟା ମାଳାବତୀଙ୍କ ସଙ୍ଗେ ବିବାହ କରିଥିଲେ ଏବଂ ସ୍ୱୟଂ ଜଗନ୍ନାଥଙ୍କୁ ନିଜ ଦୁହିତା ସତ୍ୟବତୀକୁ ଅର୍ପଣ କରିଥିଲେ । (୪୮)

ଏହି ପ୍ରସଙ୍ଗର ଇନ୍ଦ୍ରଦ୍ୟୁମ୍ନଙ୍କ ପାରିବାରିକ ଜୀବନ ବିଷୟ ଅଂଶଟିକ ଛାଡ଼ିଦେଲେ ଅନ୍ୟ ସବୁ ଅଂଶ "ଦେଉଳ ତୋଳା" କଥା ଅନୁରୂପ । (୪୯)

---

୪୭ । ଶାରଳାଦାସଙ୍କ ମହାଭାରତ । ମୂଷଳୀ ପର୍ବ ।
୪୮ । ମୁକୁନ୍ଦରାମଙ୍କ ଜଗନ୍ନାଥମଙ୍ଗଳ । (ବଙ୍ଗଳା) ।
୪୯ । ବଳରାମ ଦାସଙ୍କ ଦେଉଳ ତୋଳା

# ପଞ୍ଚମ ପରିଚ୍ଛେଦ

## ଜଗନ୍ନାଥତତ୍ତ୍ୱ

(୧) ଦାରୁବ୍ରହ୍ମମୂର୍ତ୍ତି : ଗୁହ୍ୟ ଅବସ୍ଥିତ ଓ ତତ୍ତ୍ୱ :—ଶ୍ରୀକ୍ଷେତ୍ରରେ ପୁରୁଷୋତ୍ତମଙ୍କ ଅବସ୍ଥିତ ପରମ ଗୁହ୍ୟ ପ୍ରସଙ୍ଗ ବୋଲି ସ୍କନ୍ଦପୁରାଣରେ ଲେଖାଅଛି । ଦାରୁରୂପୀ ଜଗନ୍ନାଥଙ୍କ ତତ୍ତ୍ୱ ଗୁହ୍ୟ ଓ ତାଙ୍କର ଅବସ୍ଥିତ ମଧ୍ୟ ଗୁହ୍ୟ ।

> ପଦାତ୍ ପଦାତ୍ ଶ୍ରେଷ୍ଠତମଃ କ୍ରମେଣ ପରିକୀର୍ତ୍ତିତଃ
> ସିନ୍ଧୁତୀରେ ଚ ଯା ବ୍ରହ୍ମନ୍ ରାଜତେ ନୀଳପର୍ବତଃ । ୩୪
> ପୃଥିବ୍ୟାଂ ଗୋପିତଂ ସ୍ଥାନଂ ତବାପ୍ୟପି ସୁଦୁର୍ଲଭମ୍
> ସୁରାସୁରାଣାଂ ଦୁର୍ଜ୍ଞେୟଂ ମାୟୟାଚ୍ଛାଦିତଂ ମମ ।୩୫। (୫୦)

"( ଭୁବନେଶ୍ୱରଠାରୁ ଦକ୍ଷିଣ ସିନ୍ଧୁତୀର ପର୍ଯ୍ୟନ୍ତ ) ପ୍ରତ୍ୟେକ ପଦ-ବିକ୍ଷେପର ସ୍ଥାନ କ୍ରମରେ ଶ୍ରେଷ୍ଠତମ । ହେ ବ୍ରହ୍ମନ୍ ! ସିନ୍ଧୁତୀରରେ ଯେଉଁ ସ୍ଥାନରେ ନୀଳଗିରି ପର୍ବତ ବିରାଜୁଛି, ସେ ସ୍ଥାନଟି ପୃଥିବୀରେ ଗୋପନୀୟ ଏବଂ ତୁମକୁ ମଧ୍ୟ ସୁଦୁର୍ଲଭ । ସୁର ଓ ଅସୁରମାନଙ୍କର ମଧ୍ୟ ଏ ଦୁର୍ଜ୍ଞେୟ । ମୋର ମାୟାରେ ଏ ଆବୃତ ।"

ପୁଣି—
> ଶ୍ରୁତି ସ୍ମୃତିହାସ ପୁରାଣ ଗୋପିତଂ
> ସନ୍ମାୟୟା ତନ୍ନହି କସ୍ୟ ଗୋଚରମ୍ । ୪୨ ।
>
> ଉ. ଖ. ୧ମ ଅ ।

"ଏହି ସ୍ଥାନ ଶ୍ରୁତି, ସ୍ମୃତି, ଇତିହାସ, ପୁରାଣରେ ମୋର ମାୟାଦ୍ୱାରା ଆବୃତ ଓ ଗୋପନୀୟ ହୋଇ ସମସ୍ତଙ୍କର ଅଗୋଚର ହୋଇଛି ।......"

ବ୍ରହ୍ମପୁରାଣରେ ମଧ୍ୟ ଏ କ୍ଷେତ୍ରକୁ ପରମ ଗୁହ୍ୟକ୍ଷେତ୍ର ବୋଲି ଲେଖାଯାଇଛି—

> ସମୁଦ୍ରସ୍ୟୋତ୍ତରେ ତୀରେ ତସ୍ମିନ୍ ଦେଶେ ଦ୍ୱିଜୋତ୍ତମାଃ
> ଆସ୍ତେ ଗୁହ୍ୟଂ ପରଂ କ୍ଷେତ୍ରଂ ମୁକ୍ତିଦଂ ପାପ ନାଶନଂ । ୧୩ ।
>
> ବ୍ରହ୍ମପୁରାଣ । ୪୨ ଅ

ପୁଣି—ନ ଯଜ୍ଞାତୋଽମରୈଃ ସର୍ବେଦବୈ୍ୟର୍ନ ଚ ଦାନବୈଃ
ମହର୍ଷ୍ୟାଦ୍ୟୈ ମୁର୍ନିବରୈଃ ଗୋପିତଂ ମେ ବରାନନେ । ୨୫. ୪୫ । (୫୧)

---

୫୦ । ସ୍କନ୍ଦ ପୁରାଣ. ଉ. ଖ. ୧ମ ଅଧ୍ୟାୟ ।

୫୧ । ବ୍ରହ୍ମ ପୁରାଣ :

"ସବୁ ଦେବ, ଦୈତ୍ୟ, ଦାନବ ଓ ମରୀଚ ପ୍ରଭୃତି ମହର୍ଷିମାନେ ମଧ୍ୟ ଏହି ତୀର୍ଥର ବିଷୟ ଜାଣନ୍ତି ନାହିଁ । ହେ ବରାନନେ (ଲକ୍ଷ୍ମୀ), ଏହା ମୋର ଏକ ଗୋପନୀୟ ତୀର୍ଥ ।"

ଏହି କାରଣରୁ ଏହି କ୍ଷେତ୍ରକୁ ପରମ ଗୁହ୍ୟ କ୍ଷେତ୍ର ବୋଲି କୁହାଯାଇଛି । ଭଗବାନଙ୍କର ଏ ଦାରୁରୂପ ଶରୀର ତାଙ୍କର କପଟରୂପ ମାତ୍ର । ଦୀନଜନମାନଙ୍କୁ ଅନୁଗ୍ରହ କରିବା ପାଇଁ ଭଗବାନ ଏହି ବ୍ୟାଜ ଶରୀର ଧାରଣ କରି ନୀଳାଚଳରେ ନିବାସ କରିଥିବା ଉତ୍କଳ ଖଣ୍ଡରୁ ଜଣାଯାଏ । (୫୬)

ଏବଂ ଦସ୍ୟାମ୍ବୁଧରସୌ ତସ୍ମିନ୍ ନୀଳାଚଳେବସନ୍
ଦୀନାନାଥାନୁଗ୍ରହାୟ ଦାରୁବ୍ୟାଜ ଶରୀରବାନ୍ । ୧୬ । ୪୫ ଅ. ଉ. ଖ.

'ଏହି ବ୍ୟାଜମୂର୍ତ୍ତି ହିଁ ଅବ୍ୟୟାନନ୍ଦଦାୟୀ—ଗୋପନୀୟଭାବେ ଅବସ୍ଥାନ କରୁଥିବା ଏହି ଦାରୁମୂର୍ତ୍ତି ହିଁ ଅବ୍ୟୟ ଆନନ୍ଦ ପ୍ରଦାନ କରୁଥିବା ସେହି ପୁରାଣ କହେ ।

ବ୍ୟେତ ସଂସାରଦୁଃଖାନି ଦଦାତି ସୁଖମବ୍ୟୟଂ
ତସ୍ମାତ୍‌ଦାରୁମୟଂ ବ୍ରହ୍ମଂ ବେଦାନ୍ତେ ପରଗୀୟତେ ।୮୧।
ନ ହି କାଷ୍ଠମୟୀ ମୋକ୍ଷ ଦଦାତି ପ୍ରତିମା କ୍ୱଚତ୍
ଆକୃତେର୍ହ୍ୟପବର୍ଗସ୍ତୁ କୃତାତ୍ଦ୍ୱା ଦାରୁଣଃ କଥମ୍ ।
୮୧ । ୪ର୍ଥ ଅ. ଉ. ଖ. ।

"ସଂସାରର ସବୁ ଦୁଃଖ ଏହି ପ୍ରତିମା ବିନାଶ କରେ ଏବଂ ଅବ୍ୟୟ ସୁଖ-ପ୍ରଦାନ କରେ, ଏହି ନିମିତ୍ତ ବେଦାନ୍ତରେ ଦାରୁମୟବ୍ରହ୍ମ ବୋଲି କଥିତ ହୋଇ ଅଛନ୍ତି । କେବଳ କାଷ୍ଠମୟୀ ପ୍ରତିମା କେବେ ମୁକ୍ତିଦାନ କରି ନପାରେ । ଯେଉଁ ମୋକ୍ଷ ସ୍ୱାଭାବିକ ଅକୃତ୍ରିମଠାରୁ ଲବ୍‌ଧ ତାହା କୃତ୍ରିମ ପ୍ରତିମାଠାରୁ କି ପ୍ରକାର ସମ୍ଭବ ?"

ଶ୍ରୀକ୍ଷେତ୍ର ସ୍ୱୟଂ ବିଷ୍ଣୁଙ୍କ ଆଳୟ :— ଏହି ଅବ୍ୟୟ ସୁଖଦାତା ଦାରୁ ବ୍ରହ୍ମ ନୀଳମାଧବଙ୍କ ପ୍ରତି ପାପିଷ୍ଠମାନେ ଅବିଶ୍ୱାସ କରନ୍ତି । ଏ କ୍ଷେତ୍ରଟି ସ୍ୱୟଂ ବିଷ୍ଣୁଙ୍କ ଆଳୟ ଓ ଏହି ବିଗ୍ରହ ସାକ୍ଷାତ୍ ସ୍ୱୟମ୍ଭୂକର୍ତ୍ତୃକ ସଂସ୍ଥାପିତ ।

ଅନୁଗୃହ୍ଣାତୁଂ ତ୍ୱମେବ ପୁନରତ୍ର ଉବିଷ୍ୟତି
ଶ୍ୱେତଦ୍ୱୀପେ ଯଥାବିଷ୍ଣୋର୍ଭୋଗଭୂମୌ ନିଜାଳୟଃ । ୧୫
ଜମ୍ବୁଦ୍ୱୀପେ କର୍ମଭୂମୌ ନିଜସ୍ଥାନମିଦଂ ସ୍ମୃତମ୍
ଅସ୍ୟୈବ୍ୟତିରହସ୍ୟତ୍ୱାନ୍ନ ପ୍ରକାଶୋଽସ୍ୟ ସମ୍ମତଃ । ୧୬

---

୫୬ । ସ୍କନ୍ଦ ପୁରାଣ : ୪୫ ଅ. ଓ ୪ ଅ. ।

ମୋକ୍ଷାଧିକାରି ଜାନାତି ସ୍ଥାନମେତନ୍ ମହାମତେ
ଅବଶ୍ୱାସପଦଂ ନୃଣାଂ ଦୁଷ୍କୃତାଂ ହି ବିଶେଷତଃ । ୧୭
ଅତ୍ର ଯାନ୍ୟା ପ୍ରତିକୃତଃ କ୍ଷେତ୍ରେ ବିଷ୍ଣୋଃ ପ୍ରତିଷ୍ଠିତ
ସାପି ମୁକ୍ତିପ୍ରଦା ଭୂପ କିଂ ପୁନଃ ସା ସ୍ୱୟମ୍ଭୂବା । ୧୮ । ୧୪ ଅ. (୫୩)

"ସେହି ବିଷ୍ଣୁଙ୍କର ଭୋଗଭୂମି ଶ୍ୱେତଦ୍ୱୀପ ଯେପରି ଗୋଟିଏ ପ୍ରିୟ ଆଳୟ, ଏହି କର୍ମଭୂମି-ଜମ୍ବୁଦ୍ୱୀପ ଭିତରେ ଏହି ସ୍ଥାନ ମଧ୍ୟ ତାଙ୍କର ଏକ ପ୍ରିୟ ଆଳୟ । ତାଙ୍କର ଏହି ଆଳୟଟି ବଡ଼ ଗୋପନୀୟ ହେବା ହେତୁ ତାହାର ପ୍ରକାଶ ସମ୍ମତ ନୁହେଁ । ହେ ମହାମତି, ମୋକ୍ଷାଧିକାରୀମାନେ କେବଳ ଏହି ସ୍ଥାନକୁ ଜାଣନ୍ତି । ପାପିଷ୍ଠମାନଙ୍କର ଏହି ସ୍ଥାନ ପ୍ରତି ଅବିଶ୍ୱାସ ହୁଏ । ଏହିଠାରେ (ଏହି କ୍ଷେତ୍ରରେ) ଯେଉଁସବୁ ବିଷ୍ଣୁ ପ୍ରତିମା ଅଛନ୍ତି, ସେମାନେ ଯେତେବେଳେ ମୁକ୍ତି ପ୍ରଦାନ କରୁଛନ୍ତି, ସେତେବେଳେ ଅତ୍ର ସାକ୍ଷାତ୍ ସ୍ୱୟମ୍ଭୂଙ୍କଦ୍ୱାରା ସ୍ଥାପିତ ସେହି ପ୍ରତିମାଙ୍କ କଥା ବା କଣ କହିବ ?"

ଏହି ଗୋପନୀୟ ମୂର୍ତ୍ତିଙ୍କୁ ନଗ୍ନ ଭାବରେ ଦେଖିବା ପାପ :—ଉତ୍କଳଖଣ୍ଡରେ ଏହି ଗୋପନୀୟ ଦାରୁମୂର୍ତ୍ତିଙ୍କୁ ନଗ୍ନଭାବରେ ଦାରୁ ରୂପରେ ଦର୍ଶନ କରିବା ପାପ ବୋଲି କୁହାଯାଇଛି ।

ନାନାଲଙ୍କାର ରୁଚିରାଂ ନାନା ଭଙ୍ଗି ବିଭାଗଶଃ
ଅମୂର୍ଦ୍ଧାରୁ ସ୍ୱରୂପେଣ ଦୃଷ୍ଟାଃସ୍ୟୁଃ ପାପହେତବଃ । ୨୨
ଗୋପନୀୟାଃ ପ୍ରଯତ୍ନେନ ପଟ୍ଟନେର୍ଯ୍ୟାସବନ୍ଧନୈଃ
ତସ୍ମାତ୍ ପ୍ରଥମମେବୈ ତାଂ ସ୍ତ୍ରଗ୍ୱୋରେବାସ୍ୟ ବଲ୍କଲୈଃ । ୨୩ ।
ଋତେ ବନ୍ଧନଲେପଂ ତୁ ସ ତୁ ଦ୍ୱବ୍ୟୈର୍ନ୍ଦିରଲ୍ପନଃ
ପ୍ରାମାଦାତ୍ ଯଦି ତଂ ଲେପମପମାସ୍ୟେତ କଶ୍ଚନ । ୨୫
ବୀକ୍ଷତେ ତସ୍ୟ ନରକେ ଚିରଂ ବାସଃ ପ୍ରକାୟତେ
ଦୁର୍ଭିକ୍ଷଂ ମରକଂ ରାଜ୍ୟେ ସନ୍ତତଷ୍ଟାସ୍ୟ ସ୍ତ୍ରାୟତେ । ୨୬
ନେକ୍ଷିତବ୍ୟା ତ୍ୱୟା ରାଜନ୍ କଦାଚଦପବାରଣା
ମନୁଷ୍ୟୈଶ୍ଚାପି ରାଜେନ୍ଦ୍ର ଦୃଷ୍ଟ୍ୱାଧଃ ସ୍ୟୁର୍ଭସ୍ମ ହେତବଃ । ୨୭
୧୯ ଅ. (୫୪)

"(ଠାକୁରମାନଙ୍କୁ) ନାନାପ୍ରକାର ଭଙ୍ଗି ବିଭାଗରେ ବିବିଧ ଅଳଙ୍କାର ଦ୍ୱାରା ବିଭୂଷିତ କରି ଦାରୁ ରୂପରେ ଏହି ପ୍ରତିମାମାନଙ୍କୁ ଦର୍ଶନ କଲେ ପାପର

୫୩ । ସ୍କନ୍ଦ ପୁରାଣ: ଉତ୍କଳଖଣ୍ଡ ।, ୧୫ ଅଧ୍ୟାୟ ।
୫୪ । ସ୍କନ୍ଦପୁରାଣ : ଉତ୍କଳଖଣ୍ଡ ।

କାରଣ ହୁଏ । ସେହିହେତୁ ଅତି ଯତ୍ନରେ ପଟ୍ଟବସ୍ତ୍ର ଓ ନିର୍ଯ୍ୟାସ ଦ୍ୱାରା ସବୁ ଅବୟବ ବନ୍ଧନ କରିବା ବିଧେୟ । ......"

"ବନ୍ଧନ ଓ ଗାତ୍ରଲେପ ବ୍ୟତିରେକେ ସେହି ଦିବ୍ୟମୂର୍ତ୍ତି ଚିରନ୍ତନ । ଯଦି କେହି ପ୍ରମାଦ ବଶରେ ସେହି ପ୍ରଥମାର ଗାତ୍ରଲେପ ଅପସାରଣ କରେ କିମ୍ବା ଆବରଣହୀନ ଅବସ୍ଥାରେ ଦର୍ଶନ କରେ, ତାହାହେଲେ ତାର ଚିରକାଳ ନରକବାସ ହୁଏ । ରାଜ୍ୟ ମଧ୍ୟରେ ମଡ଼କ ଓ ଦୁର୍ଭିକ୍ଷ ହୁଏ ଏବଂ ଦର୍ଶନ କରିବା ଲୋକର ସନ୍ତାନ-ସନ୍ତତି ନଷ୍ଟ ହୋଇଯାଆନ୍ତି ! ହେ ରାଜନ୍ ! ଆବରଣଶୂନ୍ୟ କରି ଏହି ମୂର୍ତ୍ତିମାନଙ୍କୁ କେବେ ଦର୍ଶନ କରନାହିଁ । ଯେ କୌଣସି ମନୁଷ୍ୟ ଏ ଅବସ୍ଥାରେ ଦର୍ଶନ କଲେ ମହାଭୟଗ୍ରସ୍ତ ହେବ ।"

ଗୁହ୍ୟ ଦାରୁମୂର୍ତ୍ତି ସମ୍ବନ୍ଧରେ ତର୍କ କରିବା ନିଷେଧ :—ଏହି ଗୋପନୀୟ ଦାରୁମୂର୍ତ୍ତି ସମ୍ବନ୍ଧରେ ତର୍କ କରିବା ନିଷେଧ କରାଯାଇଛି । ଉତ୍କଳ ଖଣ୍ଡରେ ଲେଖାଅଛି (୫୫)—

ପ୍ରଚ୍ଛନ୍ନବପୁରେତସ୍ୟ ତନ୍ନନ୍ନାସ୍ୟ ବିଗ୍ରହସ୍ୟତେ
ଧର୍ମିଗ୍ରାହ୍ୟପ୍ରମାଣେନ ଯାଦୃଗ୍‌ଦୃଷ୍ଟଃ ସ ଏବ ସଃ ।
ଚତୁର୍ବର୍ଗପ୍ରଦୋଦେବୋ ଯୋ ଯଥା ତତ୍ର ବିଭାବୟେତ୍ । ୫୦, ୧୩ ଅ.

"ତାଙ୍କର ଏହି ଗୋପନୀୟ ଦାରୁମୂର୍ତ୍ତି ବିଷୟରେ ବିଚାର କରିବା ଅନୁଚିତ । ତାଙ୍କୁ ଯେ ଯେଉଁ ଭାବରେ ଦର୍ଶନ କରେ, ତାକୁ ସେ ସେହି ଭାବରେ ଦେଖା ଦେଇ ଚତୁର୍ବର୍ଗ ଫଳ ଦାନ କରନ୍ତି ।" (୫୫)

(୨) ଜଗନ୍ନାଥହିଁ କୃଷ୍ଣ :—ଲୋକପ୍ରବାଦ ଓ ପୁରାଣମାନଙ୍କ ଅନୁସାରେ ଜଗନ୍ନାଥ ହିଁ ବିଷ୍ଣୁ । ବିଷ୍ଣୁ କୃଷ୍ଣାବତାରରେ ଏହିଠାରେ ଅବସ୍ଥାନ କରୁଛନ୍ତି । କୃଷ୍ଣଙ୍କ ଲୀଳାସ୍ଥଳ ବୃନ୍ଦାବନ, ମଥୁରା, ଦ୍ୱାରକା । ଗୋପକୃଷ୍ଣ କିମ୍ବା ଦ୍ୱାରକାକୃଷ୍ଣଙ୍କର ଲୀଳା ସହିତ ଜଗନ୍ନାଥ କ୍ଷେତ୍ରର କୌଣସି ସମ୍ପର୍କ ଥିବା ସଂସ୍କୃତ ପୁରାଣମାନଙ୍କରୁ ଜଣା ଯାଉନାହିଁ; ଜଗନ୍ନାଥ ଧାମରେ କୃଷ୍ଣ ଜ୍ୟେଷ୍ଠ ଭ୍ରାତା ବଳରାମ ଓ ଭଗିନୀ ସୁଭଦ୍ରାଙ୍କ ସହ ଅବସ୍ଥାନ କରୁଥିବା ସଂସ୍କୃତ ପୁରାଣମାନଙ୍କରୁ ଜଣାଯାଉଛି । ଏହିଠାରେ କୃଷ୍ଣଙ୍କର ସ୍ୱତନ୍ତ୍ର ଲୀଳା ପ୍ରସଙ୍ଗର ମଧ୍ୟ ଉଲ୍ଲେଖ ନାହିଁ ।

ଭଗବାନ ଶ୍ରୀକୃଷ୍ଣଙ୍କ ଦ୍ୱାରକା ସମୁଦ୍ରରେ ନିମଗ୍ନ ହୋଇଯିବା ପରେ ମହୋଦଧି କୂଳରେ ସେହି ଦ୍ୱାରକାପୁରୀର ମାହାତ୍ମ୍ୟ ପ୍ରକାଶ ପାଇଲା, ଏହି କଳ୍ପନାର ବଶବର୍ତ୍ତୀ ହୋଇ କେହି କେହି ପୁରୀକୁ ଦ୍ୱିତୀୟ ଦ୍ୱାରକା ବା କଳିଯୁଗ ଦ୍ୱାରକା

---

୫୫ । ସ୍କନ୍ଦ ପୁରାଣ : ଉତ୍କଳଖଣ୍ଡ । ୧୩ ଅ. ।

ବୋଲି ପ୍ରତିପାଦନ କରନ୍ତି । ଏଥିରୁ ଏଠାରେ ଶ୍ରୀକୃଷ୍ଣଙ୍କ କଳ୍ପନା ବିଷୟ ସହଜରେ ଅନୁମେୟ । କେତେକ ଓଡ଼ିଆ ପଦ୍ୟଗ୍ରନ୍ଥରେ ଓ ପୁରାଣରେ ଏହି କ୍ଷେତ୍ରରେ ଶ୍ରୀକୃଷ୍ଣର ଅପୋଡ଼ା ଶରୀରର ଅଂଶ ପୂଜା ପାଉଛି ବୋଲି ଲେଖାଥିବା କଥା ମଧ୍ୟ ଅନୁମାନ ଉପରେ ନିର୍ଭର କରି ହୋଇଛି ।

ପ୍ରଥମେ ଏହି କ୍ଷେତ୍ରରେ ନୀଳମାଧବ ଶବରମାନଙ୍କଦ୍ୱାରା ପୂଜା ପାଉଥିଲେ । ଏହି ନୀଳମାଧବଙ୍କର ବିଷ୍ଣୁ ଏବଂ ଅନ୍ତର୍ଦ୍ଧାନ ପରେ ପୁଣି ସେ କୃଷ୍ଣ ରୂପରେ ଏହି କ୍ଷେତ୍ରରେ ପ୍ରକାଶ ପାଇଥିବା ସ୍କନ୍ଦ ପୁରାଣରେ ଲେଖା ଅଛି । ଯଥା—ବଳରାମ, ସୁଭଦ୍ରା ଓ ସୁଦର୍ଶନଙ୍କ ସହିତ ଶ୍ରୀକୃଷ୍ଣ ଆବିର୍ଭୂତ ହୋଇଛନ୍ତି । (୫୬)

ତାଦୃଗାବିର୍ବଭୂବାସୌ ଯଥ୍ନାକଂବର୍ଣ୍ଣିତଃ ପୁରା
ଦିବ୍ୟସିଂହାସନଗତୋ ଭଦ୍ରା ବଳ ସୁଦର୍ଶନୈଃ ।

ପୁଣି— ବେଷ୍ଟନଂ ମୋଚୟାମାସ ମହାବେଦ୍ୟା ନୃପୋତ୍ତମଃ
ଦଦୃଶୁସ୍ତେ ତଦା ସର୍ବେ ରତ୍ନସିଂହାସନସ୍ଥିତମ୍
ରାମଂ କୃଷ୍ଣଂ ସୁଭଦ୍ରାଞ୍ଚ ବାସୁଦେବଂ ସୁଦର୍ଶନମ୍
ଯଥୋପଦିଷ୍ଟ ଲେପାଦି ସଂସ୍କାରୈଃ ରୁଚିରାକୃତିମ୍ ।

"ପୂର୍ବେ ବର୍ଣ୍ଣନା ପ୍ରକାରେ ବଳରାମ, ସୁଭଦ୍ରା ଓ ସୁଦର୍ଶନ ସହିତ ଦିବ୍ୟ-ସିଂହାସନରେ ଆବିର୍ଭୂତ ହେଲେ ।"

"ସେତେବେଳେ ସମସ୍ତେ ଦେଖିଲେ ରତ୍ନସିଂହାସନ ଉପରେ ବଳରାମ, କୃଷ୍ଣ, ଓ କୃଷ୍ଣଙ୍କ ଚକ୍ର ସୁଦର୍ଶନ ବିରାଜମାନ କରିଛନ୍ତି । ( ପୂର୍ବେ ଆକାଶବାଣୀ ଯେଉଁ ଉପଦେଶ ଦେଇଥିଲେ ) ସେହିପରି ଲେପ ସଂସ୍କାରାଦି ଦ୍ୱାରା ଏମାନଙ୍କର ଆକୃତି ବଡ଼ ସୁନ୍ଦର ହୋଇଛି ।" ରଥଯାତ୍ରା ସମୟରେ କୃଷ୍ଣ, ଜଗନ୍ନାଥ, ବଳଭଦ୍ର ଓ ସୁଭଦ୍ରାଙ୍କ ରଥ ମଧ୍ୟ କୃଷ୍ଣ, ବଳରାମ ଓ ସୁଭଦ୍ରା ରଥ ବୋଲି ନିର୍ଦ୍ଦେଶ ଦିଆଯାଇଛି ।

ବ୍ରହ୍ମ ପୁରାଣରେ ଜଗନ୍ନାଥଙ୍କୁ କୃଷ୍ଣ ରୂପରେ କଳ୍ପନା କରାଯାଇଛି । ଦର୍ଶନ-ବିଧି ପ୍ରସଙ୍ଗରେ ଲେଖାଅଛି :—(୫୭)

ବଟସ୍ୟ ଦର୍ଶନଂ ଚୈବ ବୃ୍ୟଷ୍ଟିଂ ତସ୍ୟ ଚ ଭୋ ଦ୍ୱିଜାଃ
ଦର୍ଶନଂ ବଳଦେବସ୍ୟ କୃଷ୍ଣସ୍ୟ ଚ ବିଶେଷତଃ ।

---

୫୬ । ସ୍କନ୍ଦପୁରାଣ : ଉତ୍କଳଖଣ୍ଡ । ୧୨ ଶ ଅ.
୫୭ । ବ୍ରହ୍ମ ପୁରାଣ । ୪୭ ଅ.

ସୁଭଦ୍ରାୟାଶ୍ଚ ତତ୍ରୈବ ମାହାତ୍ମ୍ୟଂ ଚୈବ ସର୍ବଶଃ
ଦର୍ଶନଂ ନରସିଂହସ୍ୟ ବ୍ରୂୟସ୍ତି ସଙ୍କୀର୍ତ୍ତନ ତଥା । ୪୬ ଅଃ

ପୁଣି— ଅନ୍ୟ ସ୍ଥାନରେ ଏହି ପୁରାଣରେ ଲେଖାଅଛି—(୫୮)

ସୁନାସଂ ସୁକପୋଲଞ୍ଚ ସୁଲଲାଟ ସୁଲକ୍ଷଣମ୍
ତ୍ରୈଲୋକ୍ୟାନନ୍ଦଜନକଂ କୃଷ୍ଣସ୍ୟ ମୁଖପଙ୍କଜମ୍ । ୪୨ ଅ: ୪୯

"......ଯାହାର ସୁନାସ, ସୁକପୋଳ, ଓ ସୁଲଲାଟ, ସେହି ଶ୍ରୀକୃଷ୍ଣଙ୍କ ସୁଲକ୍ଷଣାନ୍ୱିତ ତ୍ରୈଲୋକ୍ୟାନନ୍ଦଜନକ ମୁଖପଙ୍କଜ ଯେଉଁମାନେ ଅବଲୋକନ କରନ୍ତି, ଜଗତରେ ସେହିମାନେହିଁ ଧନ୍ୟ ପୁରୁଷ ।" ମୂର୍ତ୍ତିଗଠନ ପ୍ରସଙ୍ଗରେ ମଧ୍ୟ କୁହାଯାଇଛି—

ପ୍ରଥମଂ ଶୁକ୍ଳାବର୍ଣ୍ଣାଭଂ ଶାରଦେନ୍ଦୁ ସମପ୍ରଭମ୍ X । ୪୯
ନୀଳାମ୍ବର-ଧରଂ ଗୌରଂ ବଳଂ ବଳମଦୋଦ୍ଧତମ୍ । X ୫୦
ଦ୍ୱିତୀୟଂ ପୁଣ୍ଡରୀକାକ୍ଷଂ ନୀଳଜୀମୂତ ସନ୍ନିଭମ୍ X । ୫୧
ତୃତୀୟା ସ୍ୱର୍ଣ୍ଣବର୍ଣ୍ଣାଭଂ ପଦ୍ମପତ୍ରାୟତେକ୍ଷଣମ୍ ।X । ୫୩

ପ୍ରଥମେ ବଳଦେବ, ଦ୍ୱିତୀୟରେ କୃଷ୍ଣ, ତୃତୀୟରେ ସୁଭଦ୍ରା—ଏହି ତିନମୂର୍ତ୍ତିଙ୍କ କଥା ଏଠାରେ କୁହାଯାଇଛି ।

(୩) ଚତୁର୍ଦ୍ଧାମୂର୍ତ୍ତି : ବିଷ୍ଣୁଙ୍କ ରୂପ—ବଳଭଦ୍ର, ସୁଭଦ୍ରା, ଜଗନ୍ନାଥ ଓ ସୁଦର୍ଶନ ଏହି ମୂର୍ତ୍ତି ଚତୁଷ୍ଟୟ ଭଗବାନ ବିଷ୍ଣୁଙ୍କ ରୂପ ଥିବା ସ୍କନ୍ଦପୁରାଣ ପ୍ରକାଶ କରୁଛନ୍ତି । ବଳରାମ ଓ କୃଷ୍ଣଙ୍କ ଭିତରେ କିଛି ପ୍ରଭେଦ ନାହିଁ । ସୁଭଦ୍ରା ଲକ୍ଷ୍ମୀସ୍ୱରୂପା, ଅତଏବ କୃଷ୍ଣଙ୍କ ଶକ୍ତିସ୍ୱରୂପା, ଭଗବାନ ପୁଂ ନାମରେ ବିଷ୍ଣୁ ଓ ସ୍ତ୍ରୀ ନାମରେ ଲକ୍ଷ୍ମୀ ରୂପେ ପରିଚିତ । (୫୯)

ସୁଭଦ୍ରାଂ ଚାରୁବଦନା ବରାବ୍ଜା-ଭୟଧାରିଣୀ । ୧୦
ଲକ୍ଷ୍ମୀଃ ପ୍ରାଦୁର୍ବଭୂବେସ୍ଥଂ ସର୍ବଚୈତନ୍ୟରୂପିଣୀ
ଇୟଂ କୃଷ୍ଣବତାରେ ହି ରୋହିଣୀଗର୍ଭସମ୍ଭବା । ୧୧
ବଳଭଦ୍ରାନୁଜର୍ଜାତା ବଳରୂପସ୍ୟ ଚକ୍ରିଣାତ୍
କ୍ଷଣଂ ନ ସହ୍ୟତେ ସା ହି ମୋକ୍ତୁଂ ନୀଳାବତାରଣମ୍ । ୧୨

---

୫୮ । ଏଜନ । ୪୨ ଅ.
୫୯ । ସ୍କନ୍ଦପୁରାଣ . ୧୯ଶ ଅ.

ନ ଭେଦସ୍ତ୍ୱସ୍ତିକୋ ବିପ୍ରାଃ କୃଷ୍ଣସ୍ୟ ଚ ବଳସ୍ୟ ଚ
ଏକଗର୍ଭପ୍ରସୂତତ୍ୱାଦ୍ୟବହାରୋଽଥ ଲୌକିକଃ । ୧୩
ଭଗିନୀ ବଳଦେବସ୍ୟ ହ୍ୟେଷା ପୌରାଣିକଙ୍କୀ କଥା
ପୁଂ ରୂପେଣ ସ୍ତ୍ରୀ ରୂପେଣ ଲକ୍ଷ୍ମୀଃ ସର୍ବତ୍ର ତିଷ୍ଠତି । ୧୪
ପୁଂ ନାମ୍ନା ଭଗବାନ୍ ବିଷ୍ଣୁଃ ସ୍ତ୍ରୀ ନାମ୍ନା କମଳାଳୟା
ଦେବତିର୍ଯ୍ୟଙ୍ମନୁଷ୍ୟାଦୌ ବିଦ୍ୟତେ ନୈତୟୋ ପରମ୍ । ୧୫
କୋ ହ୍ୟନ୍ୟଃ ପୁଣ୍ଡରୀକାକ୍ଷାଦ୍ଭୁବନାନି ଚତୁର୍ଦ୍ଦଶ
ଧାରୟେତ୍ତୁ ଫଣାଗ୍ରେଣ ସୋଽନନ୍ତୋ ବଳକୀର୍ତ୍ତିତଃ । ୧୬
ତସ୍ୟ ଶକ୍ତି ସ୍ୱରୂପେୟଂ ଭଗିନୀ ସ୍ତ୍ରୀ ପ୍ରବର୍ତ୍ତିକା
ସୁଦର୍ଶନନ୍ତୁ ଯଚ୍ଚକ୍ରଂ ସଦା ବିଷ୍ଣୁକରେ ସ୍ଥିତମ୍ । ୧୭

"ଆଉ, ଗୌରବଦନା ସୁଭଦ୍ରା ଦେବୀ ଏକ ହସ୍ତରେ ବରପଦ୍ମ ଓ ଅନ୍ୟ ହସ୍ତରେ ଅଭୟ ଧାରଣ କରିଅଛନ୍ତି । ଏ ସେହି ଚୈତନ୍ୟରୂପିଣୀ ଲକ୍ଷ୍ମୀ, ମୂର୍ତ୍ତିମନ୍ତରେ ପ୍ରାଦୁର୍ଭୂତ ହୋଇଅଛନ୍ତି । ଏ କୃଷ୍ଣାବତାରରେ ରୋହିଣୀଗର୍ଭରେ ବଳରାମଙ୍କ ରୂପ ଚିନ୍ତା କରିବା ଯୋଗୁଁ ବଳଭଦ୍ରା ଆକାରରେ ଜନ୍ମଗ୍ରହଣ କରିଥିଲେ । ଏ ଏହି ଲୀଳାବତାରୀ ବିଷ୍ଣୁଙ୍କୁ କ୍ଷଣକାଳ ପରିତ୍ୟାଗ କରିବାକୁ ସମର୍ଥ ହୁଅନ୍ତି ନାହିଁ । ହେ ବିପ୍ରମାନେ ! ଏହି କୃଷ୍ଣ ଓ ବଳଦେବଙ୍କ ଭିତରେ କିଛି ପ୍ରଭେଦ ନାହିଁ । ଏକ ଗର୍ଭରେ ଜନ୍ମ ବୋଲି ଲୌକିକ ବ୍ୟବହାରରେ ସୁଭଦ୍ରା ବଳଦେବଙ୍କ ଭଗିନୀ । ଫଳରେ ପୁରାଣମାନଙ୍କରେ ଏଭଳି ବର୍ଣ୍ଣନା ଦିଆଯାଇଛି । ଲକ୍ଷ୍ମୀ ପୁରୁଷ ଓ ସ୍ତ୍ରୀ ରୂପରେ ସର୍ବତ୍ର ବିଦ୍ୟମାନ । ପୁରୁଷ ନାମରେ ବିଷ୍ଣୁଙ୍କୁ ଓ ସ୍ତ୍ରୀ ନାମରେ ଲକ୍ଷ୍ମୀଙ୍କୁ ବୁଝିବାକୁ ହେବ । କି ଦେବ, କି ତିର୍ଯ୍ୟକ୍, କି ମନୁଷ୍ୟ—ସବୁ ପ୍ରାଣୀ ଭିତରେ ଏହି ଦେବଦେବୀ ଛଡ଼ା ଅନ୍ୟ କିଛି ବିଦ୍ୟମାନ ନାହିଁ । ଏହି ପୁଣ୍ଡରୀକାକ୍ଷ ଛଡ଼ା କେଉଁ ବ୍ୟକ୍ତି ଚତୁର୍ଦ୍ଦଶଭୁବନପରମ୍ପରା ଫଣାର ଅଗ୍ରଭାଗରେ ଧାରଣ କରିବାକୁ ସମର୍ଥ ହେବ ? ସେହି ଭୁବନଶ୍ରେଣୀର ଭାରଧାରୀ ଅନନ୍ତଦେବ ହିଁ ବଳଦେବ ନାମରେ ଅଭିହିତ ହେଉଛନ୍ତି । ଏହି ସୁଭଦ୍ରାଭଗିନୀ ତାଙ୍କର ଶକ୍ତିରୂପିଣୀ । ସେ ଶ୍ରୀପ୍ରଦାୟିନୀ । ଆଉ ସୁଦର୍ଶନ ନାମେ ଚକ୍ର (ଉଲ୍ଲିଖିତ) ଶାଖାର ଅଗ୍ରସ୍ତମ୍ଭ ମଧ୍ୟସ୍ଥିତ ହୋଇ ବିଷ୍ଣୁଙ୍କ ହସ୍ତରେ ବିରାଜ କରୁଛନ୍ତି । ଏହି ସୁଦର୍ଶନ ବିଷ୍ଣୁଙ୍କର ଚତୁର୍ଥ ରୂପ ।"

ପୁରାଣରେ ଚତୁର୍ଦ୍ଧା ମୂର୍ତ୍ତିଙ୍କ ରୂପ:—ବର୍ତ୍ତମାନ ମୂର୍ତ୍ତିମାନଙ୍କର ଯେଉଁ ରୂପ ଦେଖାଯାଉଛି, ତାହାଠାରୁ ପୁରାଣମାନଙ୍କରେ ବର୍ଣ୍ଣିତ ହୋଇଥିବା ରୂପରେ ବହୁତ ପ୍ରଭେଦ ଅଛି । ବର୍ତ୍ତମାନର ରୂପ ଅସମ୍ପୂର୍ଣ୍ଣ ଥିବାରୁ ରୂପ ଦୃଷ୍ଟିରୁ ସୁନ୍ଦର ଦିଶୁନାହିଁ, କିନ୍ତୁ ପୁରାଣବର୍ଣ୍ଣିତ ରୂପ ଅତି ସୁନ୍ଦର ଦେଖାଯାଉଛି । ବ୍ରହ୍ମପୁରାଣରେ ମୂର୍ତ୍ତି ଗଠନ ପ୍ରସଙ୍ଗରେ କୁହାଯାଇଛି—

ପ୍ରଥମଂ ଶୁକ୍ଳବର୍ଣ୍ଣାଭଂ ଶାରଦେନ୍ଦୁ ସମ ପ୍ରଭମ୍
ଅ.ରକ୍ତାକ୍ଷଂ ମହାକାୟଂ ସ୍ଫଟା ବିକଟମସ୍ତକମ୍ । ୪୯
ନୀଳାମ୍ବରଧରଂ ଗୋଗ୍ରଂ ବଳଂ ବଳମଦୋଦ୍ଧତମ୍
କୁଣ୍ଡଳୈକଧରଂ ଦିବ୍ୟଂ ଗଦାମୂଷଳଧାରଣମ୍ । ୫୦
ଦ୍ୱିତୀୟଂ ପୁଣ୍ଡରୀକାକ୍ଷଂ ନୀଳଜୀମୂତ ସନ୍ନିଭମ୍
ଅତସୀପୁଷ୍ପସଂକାଶଂ ପଦ୍ମପତ୍ରାୟତେକ୍ଷଣମ୍ । ୫୧
ପିତବାସ ସମଯୁତଂ ଶୁଭ୍ରଂ ଶ୍ରୀବତ୍ସଲକ୍ଷଣମ୍
ଚକ୍ରପୂର୍ଣ୍ଣକରଂ ଦିବ୍ୟଂ ସର୍ବପାପ ହରଂ ହରି । ୫୨
ତୃତୀୟା ସ୍ୱର୍ଣ୍ଣବର୍ଣ୍ଣାଭଂ ପଦ୍ମପତ୍ରାୟତେକ୍ଷଣମ୍
ବିଚିତ୍ରବସ୍ତ୍ର ସଞ୍ଛାନାଂ ହାରକେୟୂରଭୂଷିତାମ୍ । ୫୩
ବିଚିତ୍ରାଭରଣୋପେତାଂ ରତ୍ନହାରବିଲମ୍ବିତାମ୍
ପୀନୋନ୍ନତକୁଚଂ ରମ୍ୟାଂ ବିଶ୍ୱକର୍ମା ବିନର୍ମମେ । ୫୪ (୭୦)

ପ୍ରଥମ ପ୍ରତିମା କୃଷ୍ଣ ମୂର୍ତ୍ତି, ଏହା ପରମ ଶାନ୍ତ, ପଦ୍ମପତ୍ରାୟତ ଓ ଶ୍ରୀବତ୍ସ-କୌସ୍ତୁଭ-ଶଙ୍ଖ-ଚକ୍ର-ଗଦାଧର ହେବ । ଦ୍ୱିତୀୟ ପ୍ରତିମା—ଅନନ୍ତମୂର୍ତ୍ତି, ଏହା ଗୌରାଙ୍ଗ, କ୍ଷୀରବର୍ଣ୍ଣାଭ, ସ୍ୱସ୍ତିକାଦିଚହ୍ନିତ ଓ ଲଙ୍ଗଳଧର ହେବ । ଦେବ, ଦାନବ, ଗନ୍ଧର୍ବ, ଯକ୍ଷ, ବିଦ୍ୟାଧର ଓ ଉରଗମାନେ ଏହାର ଅନ୍ତ ଜାଣିପାରିବେ ନାହିଁ ବୋଲି ଏ ଅନନ୍ତ ନାମରେ ଖ୍ୟାତ । ତୃତୀୟ ପ୍ରତିମା—ସୁଭଦ୍ରା ମୂର୍ତ୍ତି, ଏହା ରୁକ୍ମବର୍ଣ୍ଣ, ସୁଶୋଭନ ଓ ସର୍ବ ଲକ୍ଷଣରେ ଲକ୍ଷିତ ହେବ । ଏହି ସୁଭଦ୍ରା ବାସୁଦେବଙ୍କର ଭଗିନୀ ।

'ଉତ୍କଳ ଖଣ୍ଡ'ର ବର୍ଣ୍ଣନାରୁ ଜଣାଯାଉଛି ଯେ ଜଗନ୍ନାଥଙ୍କର ହସ୍ତରେ ଶଙ୍ଖଚକ୍ରଗଦାପଦ୍ମର ଚିହ୍ନ ରହିଛି । ଏଥିରୁ ଅନୁମିତ ହେଉଛି ଯେ ତାଙ୍କର ଚାରୋଟି ହାତ ଅଛି । ଅନନ୍ତଦେବ (ବଳରାମ) ଗଦା, ମୂଷଳ, ଚକ୍ର ଓ ବଜ୍ରଚିହ୍ନ ଧାରଣ କରିଛନ୍ତି । ତାଙ୍କର ଚାରୋଟି ହାତ ଥିବା ମଧ୍ୟ ଅନୁମେୟ । ସୁଭଦ୍ରା ଏକ ହସ୍ତରେ ବରପଦ୍ମ ଓ ଅପର ହସ୍ତରେ ଅଭୟ ଧାରଣ କରିଛନ୍ତି । ଏଥିରୁ ଜଣାଯାଉଛି ଯେ ତାଙ୍କର ଦୁଇଟି ହାତ ଅଛି ।

ବ୍ରହ୍ମପୁରାଣରୁ ଜଣାଯାଉଛି ଯେ ଜଗନ୍ନାଥଙ୍କର ଅୟତଲୋଚନ, ଚାରୁଭ୍ରୂ, କେଶ, ଚାରୁଦନ୍ତ, ଚାରୁକୁଣ୍ଡଳ, ସୁନାଶା, ସୁକପୋଳ ଓ ସୁଲଲାଟ ଅଛି ।

ବର୍ତ୍ତମାନ ମୂର୍ତ୍ତିମାନଙ୍କର ସେହି ରୂପ ନାହିଁ । ଜଗନ୍ନାଥ ବା (କୃଷ୍ଣ) ଓ ବଳରାମଙ୍କର ଦୁଇ ଦୁଇ ହାତ ଅଛି । ସୁଭଦ୍ରାଙ୍କର ଆଦୌ ହାତ ନାହିଁ, ଏ ହାତମାନଙ୍କରେ ମୁଷ୍ଟି ଆଙ୍ଗୁଳି ଓ ପାପୁଲି ନାହିଁ ।

୭୦ । ବ୍ରହ୍ମପୁରାଣ. ୫୦ ଅଧ୍ୟାୟ ।

ଏକ ନୀଳମାଧବ ମୂର୍ତ୍ତି-ପରେ ତିନ-ପରେ ଚାରି ମୂର୍ତ୍ତି ହେଲେ:—

ପ୍ରଥମେ ନୀଳମାଧବ ହିଁ କ୍ଷେତ୍ରର ଅଧିଷ୍ଠାତା ଦେବତା ରୂପେ ଥିଲେ । ଏହାଙ୍କର ରୂପ ବର୍ଣ୍ଣନା କୌଣସି କୌଣସି ପୁରାଣରେ କରାଯାଇଥିଲେ ମଧ୍ୟ ଏ ପ୍ରତିମାକୁ ବିଶ୍ୱାବସୁ, ବିଦ୍ୟାପତି ଓ ଦେବତାମାନଙ୍କ ଛଡ଼ା ଅନ୍ୟ କେହି ଦେଖି-ନାହାନ୍ତି ; କେବଳ ଜନଶ୍ରୁତି ଓ କଳ୍ପନା ବଳରେ ଏ ମୂର୍ତ୍ତିର ରୂପର ବର୍ଣ୍ଣନା ହୋଇଛି । ନୀଳମାଧବ ମୂର୍ତ୍ତି ଏକ ବୋଲି କେତେକ ସ୍ଥାନରେ ଲେଖାଥିଲେ ମଧ୍ୟ ସ୍କନ୍ଦପୁରାଣରେ ମୂର୍ତ୍ତିଚତୁଷ୍ଟୟ ବୋଲି ଲେଖାଅଛି । ଜନଶ୍ରୁତିରୁ ନୀଳମାଧବ ଏକ ବୋଲି ପ୍ରକାଶ ପାଏ । ଏହି ଏକମୂର୍ତ୍ତି ପରେ ତ୍ରିମୂର୍ତ୍ତି—ବଳରାମ, ସୁଭଦ୍ରା, ଜଗନ୍ନାଥ ହୋଇ ପ୍ରକାଶ ପାଇଲେ, ଏହିକଥା ବ୍ରହ୍ମପୁରାଣରେ ଲେଖାଅଛି । ସ୍କନ୍ଦପୁରାଣ ଓ ଅନ୍ୟ ପୁରାଣମାନଙ୍କରେ ଚାରିମୂର୍ତ୍ତିର ବିବରଣ ଅଛି । ବ୍ରହ୍ମପୁରାଣ ସ୍କନ୍ଦପୁରାଣ ଅପେକ୍ଷା ପ୍ରାଚୀନ ବୋଲି ପଣ୍ଡିତମାନଙ୍କର ମତ । ଏ ଅନୁସାରେ ଦେଖିଲେ , ପ୍ରଥମର ଏକମୂର୍ତ୍ତି ନୀଳମାଧବ ପରେ ରାମ, କୃଷ୍ଣ ଓ ସୁଭଦ୍ରାଙ୍କ ରୂପରେ ପ୍ରକାଶ ପାଇଲେ ଏବଂ ପରେ ସୁଦର୍ଶନଙ୍କ ସହିତ ମୂର୍ତ୍ତିଚତୁଷ୍ଟୟ ହୋଇ ପୂଜିତ ହେଲେ ।

### (୪) ଜଗନ୍ନାଥ ଓ ଚତୁର୍ବ୍ୟୂହ

ଚତୁର୍ବ୍ୟୂହ ଓ ଚତୁର୍ଦ୍ଧା ମୂର୍ତ୍ତି—ମୂର୍ତ୍ତିଚତୁଷ୍ଟୟର ଆବିର୍ଭାବ ପୂର୍ବରୁ ପୁରୁଷୋତ୍ତମ ବିଷ୍ଣୁଙ୍କୁ ଇନ୍ଦ୍ରଦ୍ୟୁମ୍ନ ଅର୍ଚ୍ଚନା କରି ସ୍ତୁତି କରିଥିଲେ । (୬୧)

ପାଞ୍ଚରାତ୍ର ବିଧାନେନ ସଂପୂଜ୍ୟ ପୁରୁଷୋତ୍ତମମ୍
ଚନ୍ଦ୍ରାବିଷ୍ଟୋ ମହାପାଲଃ ସନ୍ତୋତୁମୁପଚକ୍ରମେ । ୧୨ ।
ପୁଣି— (୬୨)
ବାସୁଦେବ ନମସ୍ତେସ୍ତୁ ନମସ୍ତେ ମୋକ୍ଷକାରଣ ।……
ସଙ୍କର୍ଷଣ ନମସ୍ତେସ୍ତୁ ତ୍ରାହି ମାଂ ଧରଣୀଧର ।……
ନମସ୍ତେ ହେମଗର୍ଭାଭ ନମସ୍ତେ ମକରଧ୍ୱଜ ।……
ଅନିରୁଦ୍ଧ ନମସ୍ତେସ୍ତୁ ତ୍ରାହି ମାଂ ବରଦୋଭବ ।…୧-୪

ପଞ୍ଚରାତ୍ର ବିଧାନରେ ପୁରୁଷୋତ୍ତମଙ୍କୁ ବାସୁଦେବ, ସଙ୍କର୍ଷଣ, ପ୍ରଦ୍ୟୁମ୍ନ ଓ ଅନିରୁଦ୍ଧ ସ୍ୱରୂପ ସ୍ତୁତି କରାଯାଇଛି । ବିଷ୍ଣୁଙ୍କର ଏ ଚତୁର୍ବ୍ୟୂହର ପୂଜା ବହୁ ପ୍ରାଚୀନ । ଏ ଚତୁର୍ବ୍ୟୂହ ବଳଦେବ, ଜଗନ୍ନାଥ, ସୁଭଦ୍ରା ଓ ସୁଦର୍ଶନରେ ପରିଣତ ହେବାର ନିର୍ମିକ ଧାରା ଜଣାଯାଉନାହିଁ । କେବଳ ଦୈବବାଣୀ ଓ ସ୍ୱୟଂ ଭଗବାନଙ୍କ ଇଚ୍ଛାନୁସାରେ ଏକ ଦାରୁ ବ୍ରହ୍ମରୁ ଚାରିମୂର୍ତ୍ତି ଗଠିତ ହୋଇଛନ୍ତି । ଚତୁର୍ବ୍ୟୂହ ଭିତରୁ

୬୧ । ବ୍ରହ୍ମପୁରାଣ: ୪୮ ଅ. ।
୬୨ । ଏତନ ୪୯ ଅ. ।

ନୂତନ ଗୃହମୂର୍ତ୍ତିରେ ସଙ୍କର୍ଷଣ (ବଳଦେବ) ଜଗନ୍ନାଥ (ବାସୁଦେବ) ଅଛନ୍ତି । ସୁଭଦ୍ରା ଓ ସୁଦର୍ଶନ ପ୍ରଦ୍ୟୁମ୍ନ ଓ ଅନିରୁଦ୍ଧଙ୍କ ବଦଳରେ ସ୍ଥାନ ପାଇଛନ୍ତି ।

ବଳଦେବ, ଜଗନ୍ନାଥ, ସୁଭଦ୍ରା ଓ ସୁଦର୍ଶନଙ୍କୁ ପୁରୁଷୋତ୍ତମଙ୍କ ଚତୁର୍ବ୍ୟୂହ ବୋଲି ଅଭିହିତ କଲେ ଭୁଲ ହେବନାହିଁ । ବ୍ରହ୍ମପୁରାଣ ମତରେ ପାଞ୍ଚରାତ୍ର ମତର ଚତୁର୍ବ୍ୟୂହ ଅର୍ଚ୍ଚନା ଅପେକ୍ଷା ପୁରୁଷୋତ୍ତମଙ୍କ ଚତୁର୍ବ୍ୟୂହ ଅର୍ବାଚୀନ । କାରଣ ଜଗନ୍ନାଥଙ୍କ ଆବିର୍ଭାବ ପୂର୍ବରୁ ଇନ୍ଦ୍ରଦ୍ୟୁମ୍ନ ପୁରୁଷୋତ୍ତମ ବିଷ୍ଣୁଙ୍କୁ ଚତୁର୍ବ୍ୟୂହ କଳ୍ପନାରେ ସ୍ତୁତି କରିଥିଲେ ।

(୫) ଶୈବ, ଶାକ୍ତ, ବୈଷ୍ଣବ ଆରାଧନା

ବଳଭଦ୍ର, ସୁଭଦ୍ରା ଓ ଜଗନ୍ନାଥ—ଏହି ତ୍ରିମୂର୍ତ୍ତିଙ୍କୁ ମହେଶ୍ୱର, ବ୍ରହ୍ମା ଓ ବିଷ୍ଣୁ, ଏହି ଆଦି ତ୍ରିମୂର୍ତ୍ତି ବୋଲି କେହି କେହି ବୁଝାଇଛନ୍ତି । ବଳଭଦ୍ର (ବଳଦେବ) ଶିବ, ସୁଭଦ୍ରା ବ୍ରହ୍ମା ଓ ଜଗନ୍ନାଥ ବିଷ୍ଣୁ ଥିବା ଏମାନେ କହନ୍ତି । ଓଡ଼ିଶାରେ ଏହି କଳ୍ପନାର ଯଥେଷ୍ଟ ପ୍ରଚଳନ ଥିବା ଜଣାଯାଏ ।

ପୂର୍ବେ ବ୍ରହ୍ମା ଶାପବଶରୁ ଦ୍ୱାପର ଯୁଗରେ ସୁଭଦ୍ରା ରୂପେ ଜନ୍ମଗ୍ରହଣ କରିଥିଲେ, ଏହା ଯଶୋବନ୍ତ ଦାସ ଲେଖିଛନ୍ତି । ସୃଷ୍ଟିର ଆରମ୍ଭ ପୂର୍ବରୁ ଯୋଗ-ମାୟାଙ୍କଠାରୁ ବ୍ରହ୍ମା ବିଷ୍ଣୁ, ଶିବ (ରୁଦ୍ର) ଜନ୍ମଗ୍ରହଣ କଲେ । ବ୍ରହ୍ମା ପୃଥ୍ୱୀ ସ୍ଥାପନା କଲେ, ବିଷ୍ଣୁ ସର୍ବତ୍ର ବ୍ୟାପିଲେ, ରୁଦ୍ର ଯୋଗମତରେ ବହୁକାଳ ରହିଲେ । ଏପରି କିଛି ସମୟ ଗତ ହେବା ପରେ ବାଳସ୍ୱରୂପ ରୁଦ୍ରଙ୍କ ସହିତ ଯୋଗମାୟା ରତିକ୍ରୀଡ଼ା ରଚନା କଲେ । ଏହି କୁତ୍ସିତ କାର୍ଯ୍ୟ ନିମନ୍ତେ ବ୍ରହ୍ମା ଓ ବିଷ୍ଣୁ ମାତାଙ୍କୁ ନିନ୍ଦା କରିବାରୁ ମାତା (ଯୋଗମାୟା) କ୍ରୋଧରେ ଏ ଦୁହିଁଙ୍କୁ ଅଭିଶାପ ଦେଲେ । ଯେଉଁ ଯୋନିରୁ ଜନ୍ମଲଭ କରିଛନ୍ତି ସେହି ଯୋନିକୁ ନିନ୍ଦା କରିଥିବା ହେତୁ ଯୋଗମାୟା ଏହି ଶାପ ଦେଲେ ଯେ ଯେଉଁ ଯୋନିକୁ ବିଷ୍ଣୁ ନିନ୍ଦା କଲେ ସେହି ଯୋନିରେ ସେ ଯୁଗକୁ ଯୁଗ ଜନ୍ମଗ୍ରହଣ କରିବେ, ବ୍ରହ୍ମା ସ୍ତ୍ରୀ ଯୋନି ହେବେ ଏବଂ ଅପୂଜା ହୋଇ ଦିନ କାଟିବେ । ଏହାପରେ ଏହି ତିନି ଭ୍ରାତା-ମହେଶ୍ୱର, ବ୍ରହ୍ମା, ବିଷ୍ଣୁ, ଏକାନ୍ତରେ ଗୁପ୍ତରେ ଚିନ୍ତା କରି ଅନୁପମ ନିତ୍ୟବିହାର ସ୍ଥଳ ପୁରୁଷୋତ୍ତମ କ୍ଷେତ୍ରରେ ରହିଲେ; ରୁଦ୍ର ବଳଭଦ୍ର ରୂପେ, ବ୍ରହ୍ମା ସୁଭଦ୍ରା ରୂପେ ଓ ବିଷ୍ଣୁ ଜଗନ୍ନାଥ ରୂପେ ଅବସ୍ଥାନ କଲେ । (୬୩)

ଯଶୋବନ୍ତ ପୁଣି କହିଛନ୍ତି, ବ୍ରହ୍ମା ରାଧାଙ୍କ ଗୁପ୍ତ ଅଙ୍ଗସ୍ୱରୂପ ଜଗନ୍ନାଥଙ୍କ ସଙ୍ଗେ ପୂଜା ପାଇଥିଲେ ।

---

୬୩ । ପ୍ରେମ ଭକ୍ତି ବ୍ରହ୍ମଗୀତା: ଯଶୋବନ୍ତ ଦାସ । ୫ମ ଅଧ୍ୟାୟ ।

ତହୁଁ ସେ ଆମ୍ଭେ ତିନି ଭ୍ରାତ । ସ୍ୱେକାଳେ ଖଳାଲୁ ଗୁପତ ॥
ରହିଲୁ ସେ ପୁରୁଷୋତ୍ତମ । ନିତ୍ୟ ଗ୍ରହାସ ଅନୁପାମ ॥
ସ୍ୱେ ରୁଦ୍ର ବଳଭଦ୍ର ରୂପ । ଅଟନ୍ତି ଅନନ୍ତ ସ୍ୱରୂପ ॥
ଆମ୍ଭେ ଶ୍ରୀ ଜଗନ୍ନାଥ ଦେହି । ବ୍ରହ୍ମା ସୁଭଦ୍ରା ହୋଇ ତହିଁ ॥
ରାଧା ଗୁପତ ଅଙ୍ଗ ହେଉ । ଆମ୍ଭ ସଙ୍ଗତେ ପୂଜା ପାଉ ॥
ଗୁପତ ସ୍ତ୍ରିଶ୍ରୀ ରୂପ ହେଉ । ବ୍ରହ୍ମା ବୋଲନ୍ତି ନ ବୋଲଉ ॥
ନଥିବ ହସ୍ତପଦ ଗ୍ରହ । ସ୍ତ୍ରିଶ୍ରୀ ସ୍ୱରୂପ ମାତ୍ର ଧର ॥ ୫ମ ଅ:

କନ୍ତୁ ଶିଖର ଦାସ ଲେଖିଛନ୍ତି ଯେ କୃଷ୍ଣଙ୍କର ଗୋପଲୀଳା କାଳରେ ଥରେ ବ୍ରହ୍ମା ତାଙ୍କର ଗୋବତ୍ସା ହରଣ କରିନେବାରୁ କୃଷ୍ଣ ବ୍ରହ୍ମାଙ୍କୁ ଶାପ ଦେଲେ, "ତୁମେ ଅପୂଜା ହୋଇ ରହିବ ।" ପରେ ବ୍ରହ୍ମାଙ୍କ ସ୍ତୁତିରେ ପ୍ରୀତ ହୋଇ କୃଷ୍ଣ ବର ଦେଲେ, "ନୀଳାଚଳରେ ତୁମେ ଆମର ଭଗିନୀ ସୁଭଦ୍ରା ରୂପରେ ପୂଜା ପାଇବ । କନ୍ତୁ ଏହିକଥା ସମସ୍ତେ ଜାଣିବେ ନାହିଁ ।" (୬୪)

ଅର୍ଜୁନ ବୋଇଲେ ଶୁଣ କହିବା କଥା ଏ,
ଗୋଚର ନ ଗଲା ମୋତେ ଏହା ନ ଯୋଗାସ୍ୱେ ।
ତୁ ଯେବେ ସ୍ୱରୂପ କାଛବୁ ନଟବର,
ଭଏଣୀ ସୋଭଦ୍ରା କିମ୍ପା ଥିବେ ସଙ୍ଗତର ।
ଲଜ୍ୟା ନ ମଣିଲ କିମ୍ପା ବଡ଼ମୃଣ କଥା,
ମୋହର ବଗୁରେ ମୋତେ ଲଗିଲାକ ବଥା ।
ଜଗତେ କି ଧୂନ ତୋତେ ଲଗିବ ଗୋସାଇଁ
ଭଏଣୀର ସଙ୍ଗତେ ଛନ୍ତି ବେନି ଭାଇ ।
ମୁଖେ ବସ୍ତ୍ର ଘେନି ନରନାରୀ ହସୁଥିବେ,
ଲକ୍ଷ୍ମୀ ସରସ୍ୱତୀ ତୋତେ କି ବୋଲି ବୋଲିବେ ।
ତୋହର ବଗୁରେ ବା ବଗୁରନ୍ତି ଭଲ,
ମୋ ମନକୁ ଅସୁନ୍ଦର ଲଗିଲା ଚକ୍ରଧର ।

ଅର୍ଜୁନଙ୍କର ଏହି ସନ୍ଦେହପୂର୍ଣ୍ଣ ବାକ୍ୟ ଶୁଣି କୃଷ୍ଣ ବୁଝାଇଲେ—

ବାଳୁତ ସମସ୍ୱେ ମୁଁ ଗୋପରେ ବଢ଼ିଲି,
କୃଷ୍ଣବନେ ପଶି ମୁଁ ବାଛୁରୀ ରଖିଲି ।
ସ୍ୱେକ ସ୍ୱେକ ଥରେ ବନଭୋଜି କଲି ମୁହିଁ,
ଗୋପାଳ ପୁଅକୁ ସଙ୍ଗେ ଘେନି ଏକଠେଇ ।

୬୪ । ନୀଳସୁନ୍ଦରଗୀତା : ଶିଖର ଦାସ । ୬ଷ୍ଠ ଅଧ୍ୟାସ୍ୱ ।

ବେଦପଢ ଦେଖି ବିସ୍ମିତ କଲି ମନେ,
ଗୋବଚ୍ଛାମାନଙ୍କୁ ମୋର ହରିନେଲି କେଣେ ।
କଦମ୍ବ ବୃକ୍ଷର ମୂଳେ ଶୋଇଥିଲି ମୁହିଁ,
ବତ୍ସା ନପାଇ ନନ୍ଦ ମିଳିଲି ମୋଠାଇଁ ।
ଚଲ ଘର ନନ୍ଦ ଗୁଣ୍ଡ ମାଇଲୁକ ମୋତେ,
ବଚ୍ଛାମାନ ଖୋଜିଆଣ ମୋ ତୁରିତେ ।
ନେଉଟିଣ ନନ୍ଦରାଏ ନିଜ ପୁର ଗଲି,
ଶୁଣ ଧନଞ୍ଜୟେ ମୋର ଛଳ ଯେ ବସିଲି ।
ଗୋବଚ୍ଛା ଗୋପାଳପୁଅ ଦେହୁଁ ଜାତ କଲି,
ଅପୂଜକ ହୋଅ ବୋଲି ବ୍ରହ୍ମାଙ୍କୁ କହିଲି ।

ବ୍ରହ୍ମା ଏ ଶାପ ଶୁଣି ବହୁ ପ୍ରାର୍ଥନା କରିବାରୁ କୃଷ୍ଣ ପ୍ରସନ୍ନ ହୋଇ କହିଲେ,

ବୋଇଲେ କଳିରେ ଦାରୁବ୍ରହ୍ମ ହେବ ମୁହିଁ,
ଏ ମୋର ଶାପ୍ୟ ତ ମେଣ୍ଟାଯିବ ନାହିଁ ।
ଗୁପତେ ପୂଜା ପାଇବୁ ଭାଇ ସଙ୍ଗତେ,
ନ ଚହ୍ନିବେ ବୋଲି ବୋଲିବେ ସୁଭଦ୍ରେ ।
ଅଠାଇଶୀସହ୍ର ଗୋପ୍ୟ ହୋଇଥିବୁ,
ମୋହର ଉଦିତ କାଳେ ଉଦିତ ହୋଇବୁ ।
ଶୁଣ ଫାଲଗୁନି ମୋ ଶାପ୍ୟର ମହିମା
ସୁଭଦ୍ରା ରୂପେ ପୂଜା ପାଇବେଟି ବ୍ରହ୍ମା ।

ଏହି ସୁଭଦ୍ରା (ବ୍ରହ୍ମା)ଙ୍କୁ ମୁନିଋଷିମାନେ ବ୍ରହ୍ମା ବୋଲି ପୂଜା କରିବେ ଏବଂ ମଞ୍ଚର ନାରୀମାନେ ସୁଭଦ୍ରା ବୋଲି ପୂଜା କରିବେ । ଏହିଭଳି ସେ ଦୁଇ ପ୍ରକାର ପୂଜା ପାଇବେ ।

ମାର୍କଣ୍ଡ ଋଷିମାନେ ସେହି ବେଦପଢ
ପାପ ତ ଛଡ଼ାଇବେ ବୋଲି ତପ କରୁଛନ୍ତି ।
ଦୁଇପୂଜା ଗୁପତେ ଘେନିବେ ବେଦଗର୍ଭ
ସୁଭଦ୍ରା ବୋଲି ବୋଲିବେ ମଞ୍ଚନାରୀ । ୬ଷ୍ଠ ଅଧ୍ୟାୟ

ସାରଳା ଦାସ ମଧ୍ୟ ବଳଭଦ୍ର, ସୁଭଦ୍ରା ଓ ଜଗନ୍ନାଥଙ୍କୁ ହର, ବ୍ରହ୍ମା ଓ ହରି ରୂପରେ କଳ୍ପନା କରିବନ୍ତି ।

ରାମ କୃଷ୍ଣ ସୁଭଦ୍ରା ଯେ ଏଁ ତିନି ପ୍ରତିମା
ଶ୍ରୀପୁରୁଷୋତ୍ତମେ ବିଜେ ହରି ହର ବ୍ରହ୍ମା ।

ବ୍ରହ୍ମା ଶାପରେ ସୁଭଦ୍ରା ରୂପ ଧାରଣ କରିଛନ୍ତି ବୋଲି ମଧ୍ୟ ସାରଳାଦାସ ଲେଖିଛନ୍ତି ।

ହରିହର ଉପାସନା :— ପୂର୍ବେ ଶୈବ ଓ ବୈଷ୍ଣବମାନଙ୍କ ମଧ୍ୟରେ ଯେ ବିବାଦ ଥିଲି ତାହା ବ୍ରହ୍ମପୁରାଣର ଏକ ଉକ୍ତିରୁ ପ୍ରମାଣିତ ହେଉଛି । ପୁରୁଷୋତ୍ତମ କ୍ଷେତ୍ର ବୈଷ୍ଣବ କ୍ଷେତ୍ର ବୋଲି ପରିଚିତ ହେଉଥିବାରୁ ଶୈବମାନଙ୍କ ମନରେ ଅନ୍ୟ ଭାବ ଜାତ ହୋଇପାରେ, ସେହିହେତୁ ମାର୍କଣ୍ଡେୟ ମୁନି ପ୍ରଳୟ ସମୟରେ ବଟପୁଟ-ଶାୟୀ ବିଷ୍ଣୁଙ୍କୁ ପ୍ରାର୍ଥନା କରିଛନ୍ତି ଯେ ଏହି କ୍ଷେତ୍ରରେ ଶୈବ ଓ ବୈଷ୍ଣବ ଭେଦଭାବ ଦୂର କରିବା ପାଇଁ ସେ ଶିବ ଉପାସନା ନିମନ୍ତେ ଏକ ଶିବାଳୟ ପ୍ରତିଷ୍ଠା କରିବେ । ପୁରୁଷୋତ୍ତମ ଏଥିରେ ଆନନ୍ଦରେ ସମ୍ମତ ହେଲେ ଏବଂ ହରିହର ଉପାସନାର ପ୍ରଶଂସା କଲେ । (୬୫)

ଏବମେବମହଂ ନାଥ ଇଚ୍ଛେୟଂ ତତ୍ର ପ୍ରସାଦତଃ
ଲୋକାନାଞ୍ଚ ହିତାର୍ଥାୟ ନାନାଭାବ ପ୍ରଶାନ୍ତୟେ । ୧୩
ଶୈବ ଭାଗବତାନାଞ୍ଚ ବାଦାର୍ଥ ପ୍ରତିଷେଧକମ୍ ।
ଅସ୍ମିନ୍ କ୍ଷେତ୍ରବରେ ପୁଣ୍ୟେ ନିର୍ମଳେ ପୁରୁଷୋତ୍ତମେ । ୧୪
ଶିବସ୍ୟାୟତନଂ ଦେବ କରୋମି ପରମଂ ମହତ୍
ପ୍ରତିଷ୍ଠେୟ ତଥା ତତ୍ର ତବସ୍ଥାନେ ଚ ଶଙ୍କରମ୍ । ୧୫
ତତୋ ଜ୍ଞାସ୍ୟନ୍ତି ଲୋକେଽସ୍ମିନ୍ନେକମୂର୍ତ୍ତି ହରୀଶ୍ୱରୌ
ପ୍ରତ୍ୟୁବାଚ ଜଗନ୍ନାଥଃ ସ ପୁନସ୍ତଂ ମହାମୁନି । ୧୬

"ହେ ନାଥ, ତୁମ୍ଭର ପ୍ରସାଦରେ ଲୋକଙ୍କ ହିତ ଓ ନାନାଭାବ ପ୍ରଶମନ ପାଇଁ ଏହି ପୁଣ୍ୟ ନିର୍ମଳ କ୍ଷେତ୍ରରେ ଶୈବ ଓ ଭାଗବତମାନଙ୍କର ବିବାଦ ପ୍ରତିଷେଧକ ଗୋଟିଏ ଶିବାଳୟ ନିର୍ମାଣ କରିବାକୁ ଇଚ୍ଛା କରିଅଛି । ଏହି ତୁମର କ୍ଷେତ୍ରରେ ଶିବ ମୂର୍ତ୍ତି ପ୍ରତିଷ୍ଠା କଲେ, ଲୋକମାନେ ଜାଣି ପାରିବେ ଯେ ହରି ଓ ହର ଭିନ୍ନ ନୁହଁନ୍ତି— ଉଭୟେ ଏକ ମୂର୍ତ୍ତି ।"

ଏକ ଶିବଲିଙ୍ଗ ପ୍ରତିଷ୍ଠା କରି ମୁନିଙ୍କର ନାମାଙ୍କିତ ଏକ ଶିବାଳୟ ନିର୍ମାଣ କରିବାକୁ ସେ କହିଲେ । ମାର୍କଣ୍ଡେଶ୍ୱରଙ୍କ ଉତ୍ତର ଦିଗରେ ମାର୍କଣ୍ଡେୟ ହ୍ରଦ ନାମରେ ଏକ ତୀର୍ଥ ସ୍ଥାପନ କରିବାକୁ ମଧ୍ୟ ବିଷ୍ଣୁ ମାର୍କଣ୍ଡଙ୍କ କହିଲେ । ହରିହର ଯେ ଅଭିନ୍ନ ସେ ସ୍ୱୟଂ ସେକଥା ବ୍ୟାଖ୍ୟାନ କଲେ । (୬୬)

---

୬୫ । ବ୍ରହ୍ମ ପୁରାଣ । ୫୬ ଅ.
୬୬ । ଏକକ

ଶିବେ ସଂସ୍ଥାପିତେ ବିପ୍ର ମମ ସଂସ୍ଥାପନଂ ଭବେତ୍
ନାବୟୋରନ୍ତରଂ କଶ୍ଚିଦେକଶ୍ମବୌ ଦ୍ୱିଧା କୃତୌ । ୬୯
ଯୋ ରୁଦ୍ରଃ ସ ସ୍ୱୟଂ ବିଷ୍ଣୁର୍ଯୋ ବିଷ୍ଣୁଃ ସ ମହେଶ୍ୱରଃ
ଉଭୟୋରନ୍ତରଂ ନାସ୍ତି ପବନାକାଶୟୋରିବଃ । ୭୦ ।

'ହେ ପ୍ରଭୁ, ଶିବଙ୍କୁ ସଂସ୍ଥାପନ କଲେ ମୋତେ ସଂସ୍ଥାପନ କରାଗଲା । ଆମ ( ହରି ହର ) ମଧ୍ୟରେ କିଛି ପ୍ରଭେଦ ନାହିଁ । ଆମେ ଏକମୂର୍ତ୍ତି ଦୁଇଭାଗ ହୋଇଛୁ । ଯେ ରୁଦ୍ର ସେ ବିଷ୍ଣୁ, ଯେ ବିଷ୍ଣୁ ସେ ରୁଦ୍ର । ପବନ ଓ ଆକାଶ ମଧ୍ୟରେ ଯେପରି ପ୍ରଭେଦ ନାହିଁ, ସେପରି ଆମ ଦୁହିଁଙ୍କ ଭିତରେ ପ୍ରଭେଦ ନାହିଁ ।"

ଶାକ୍ତ ପ୍ରଭାବ :— ଏ କ୍ଷେତ୍ରର ଅଧିଷ୍ଠାତ୍ରୀ ବିମଳା ଥିବାରୁ ଶାକ୍ତ ଉପାସନାର ପ୍ରାଧାନ୍ୟ ଏ କ୍ଷେତ୍ରରେ ଥିବାର ଶାକ୍ତମାନେ ପ୍ରତିପାଦନ କରନ୍ତି । ଦେବୀଙ୍କ ପ୍ରଧାନ ପୀଠମାନଙ୍କ ଭିତରେ ଶ୍ରୀକ୍ଷେତ୍ରସ୍ଥ ବିମଳାଙ୍କ ପୀଠ ଏକ । (୬୭)

× × ×

ଗଙ୍ଗାୟାଂ ମଙ୍ଗଳା ନାମ ବିମଳା ପୁରୁଷୋତ୍ତମେ
ବିପାଶାୟ ମମୋଘାକ୍ଷୀ ପାଟଳା ପୁଣ୍ଡ୍ର ବର୍ଦ୍ଧନେ । ଇତ୍ୟାଦି

"ଗୟାରେ ମଙ୍ଗଳା, ପୁରୁଷୋତ୍ତମରେ ବିମଳା, ଅମୋଘାକ୍ଷୀ, ପୁଣ୍ଡ୍ରବର୍ଦ୍ଧନରେ ପାଟଳା ।"

ସତୀଙ୍କ ନାଭି ଏହି ସ୍ଥାନରେ ପଡ଼ି ଥିବାରୁ, ଏହି କ୍ଷେତ୍ରର ନାମ ନାଭି-କ୍ଷେତ୍ର ମଧ୍ୟ ।

ବିମଳା ଶିବରୂପୀ ବଳରାମଙ୍କ ଶକ୍ତି । ସୁଭଦ୍ରା ଓ ବିମଳା ଭିତରେ କିଛି ପ୍ରଭେଦ ନାହିଁ । ଭବିଷ୍ୟ ପୁରାଣ କହନ୍ତି । (୬୮)

ଯଦାଦନ୍ନପତିର୍ଦ୍ଦେବୋ ଜଗନ୍ନାଥେ ଜନାର୍ଦ୍ଦନଃ
ଅନ୍ନପୂର୍ଣ୍ଣା ସୁଭଦ୍ରାସ୍ୟାତ୍ ବୈର୍ବିନାନାନ୍ନମୁଦ୍ଭବେତ୍ ।

ସ୍କନ୍ଦ ପୁରାଣରେ ମଧ୍ୟ ବଳଦେବଙ୍କ ଶକ୍ତିରୂପେ ସୁଭଦ୍ରା ପରିଚିତ ହୋଇଛନ୍ତି । (୬୯)

ତସ୍ୟଶକ୍ତି ସ୍ୱରୁପେୟଂ ଭଗିନୀ ସ୍ତ୍ରୀ ପ୍ରବର୍ତ୍ତିକା
ସୁଦର୍ଶନନ୍ତୁ ଯଚ୍ଚକ୍ରଂ ସଦା ବିଷ୍ଣୁକରେ ସ୍ଥିତମ୍ । ୧୭

---

୬୭ । ମତ୍ସ୍ୟ ପୁରାଣ । ୧୩ଶ ଅଧ୍ୟାୟ ।
୬୮ । ଭବିଷ୍ୟ ପୁରାଣ ।
୬୯ । ସ୍କନ୍ଦପୁରାଣ, ଉତ୍କଳ ଖଣ୍ଡ ୧୯ଶ ଅଃ ।

"ଏହି ସୁଭଦ୍ରା ଭଗିନୀ ତାଙ୍କର (ବଳରାମଙ୍କର) ଶକ୍ତିରୂପିଣୀ । ଇତ୍ୟାଦି ।"

ମହାପ୍ରସାଦମାହାତ୍ମ୍ୟ, ପୂଜାପଦ୍ଧତି ଓ ବେଶଭୂଷାରୁ ମଧ୍ୟ କ୍ଷେତ୍ରରେ ଶାକ୍ତ ଉପାସନାର ପ୍ରାଧାନ୍ୟ ବା ପ୍ରଭାବ ଦେଖାଯାଏ । ଶାକ୍ତ ମତରେ ଭୈରବଚକ୍ରରେ କେବଳ ମହାପ୍ରସାଦ ହୋଇପାରିବ । ଏହି ଚକ୍ର ଭିତରେ ଜାତି ନିର୍ବିଶେଷରେ ଭୈରବୀଙ୍କ ପ୍ରସାଦ ଏକପତ୍ରରୁ ଉଚ୍ଛିଷ୍ଟାନୁଚ୍ଛିଷ୍ଟ ବିଚାରରେ ସେବା କରାଯାଇ ପାରିବ । କୌଣସି କୌଣସି ପୁରାଣରେ ଜଗନ୍ନାଥଙ୍କୁ ଭୈରବ ବୋଲି ମଧ୍ୟ କୁହାଯାଇଛି । ଶ୍ରୀ ମନ୍ଦିରରେ ଯେଉଁ ଅନ୍ନଭୋଗ ହୁଏ, ସେ ଭୋଗକୁ ପୁନର୍ବାର ବିମଳାଙ୍କ ସମର୍ପଣ କରିବାକୁ ହୁଏ, ଏହା ପରେ କେବଳ ମହାପ୍ରସାଦ ହେବ । ଅତଏବ ଶାକ୍ତ ମତରେ ମହାପ୍ରସାଦ ପାଇଁ ଯେଉଁ କାରଣ ଆବଶ୍ୟକ ତାହା ଏଠାରେ ରହିଛି । ପୂର୍ବେ ପୁରୁଷୋତ୍ତମ କ୍ଷେତ୍ରର ପଞ୍ଚକୋଶୀ ଅଞ୍ଚଳ ଭିତରେ କେବଳ ମହାପ୍ରସାଦ ଚଳୁଥିଲା ବୋଲି କେହି କେହି କହନ୍ତି । ବର୍ତ୍ତମାନ ଅବଶ୍ୟ ସେଭଳି ସୀମା ଆଉ ନାହିଁ । ଭାରତର ବହୁ ଅଞ୍ଚଳକୁ ଅନ୍ନ ମହାପ୍ରସାଦ ଯାଉଛି ଏବଂ ଏକପତ୍ରୀ ଭୋଜନରେ ବ୍ୟବହୃତ ହେଉଛି । ଦୂର ଅଞ୍ଚଳକୁ ମହାପ୍ରସାଦ ନେବାର ବ୍ୟବସ୍ଥା ମଧ୍ୟ ବାୟୁ ପୁରାଣରେ ମିଳେ । (୭୦)

ଶୁଷ୍କଂ ପର୍ଯ୍ୟୁଷିତଂ ବାପି ନୀତଂ ବା ଦୂରଦେଶତଃ
ଦୁର୍ଲଭେନାପି ସଂପୃକ୍ତଂ ସର୍ବସେବ୍ୟାଘନାଶନଂ ।

ଶାକ୍ତ ମତରେ ପ୍ରତିମା ଅପେକ୍ଷା ଯନ୍ତ୍ର ପ୍ରଧାନ । ରତ୍ନସିଂହାସନ ଉପରେ ଯନ୍ତ୍ର କଟା ହୋଇ ଠାକୁରମାନେ ବସେ ହୋଇଛନ୍ତି ଏବଂ ଏହି ଯନ୍ତ୍ରମାନଙ୍କ ଉପରେ ଠାକୁରମାନେ ବସିଲେ କେବଳ ମହାପ୍ରସାଦ ହେବ, ଅନ୍ୟଥା ନୁହେଁ । ଏହି କାରଣରୁ ଗୁଣ୍ଡିଚା ଘରେ ଓ ଅଣସରବେଳେ ଠାକୁରମାନେ ଯନ୍ତ୍ର ଉପରେ ବସି ନ ଥାଆନ୍ତି ବୋଲି ପୂର୍ବେ ଶାକ୍ତ ବ୍ରାହ୍ମଣମାନେ ସେ ସମୟର ଅନ୍ନ ଭୋଗକୁ ମହାପ୍ରସାଦ ବୋଲି ଗ୍ରହଣ କରୁ ନ ଥିଲେ । ଏହା ବେଶୀ କାଳର ଘଟଣା ନୁହେଁ, ପଚିଶ ତିରିଶ ବର୍ଷ ପୂର୍ବେ ଏ ଧାରଣା ଶାକ୍ତ ବ୍ରାହ୍ମଣମାନଙ୍କ ଭିତରେ ବଳବତ୍ତର ଥିଲା । ଏବେ ଅବଶ୍ୟ ଏହା କୋହଳ ହେଲଣି । ପୂଜାରେ ମଧ୍ୟ ତନ୍ତ୍ରମତର ପ୍ରାଧାନ୍ୟ ରହିଛି । ଭୈରବ ମନ୍ତ୍ରରେ ପୂଜା ହେବାର କେହି କେହି କହନ୍ତି । ଭୋଗର ଉପକରଣରେ ମଦ୍ୟ ବା କାରଣ ବଦଳରେ କାଂଶ ପାତ୍ରରେ ପଇଡ଼ ପାଣି ଦିଆଯାଉଛି ଏବଂ ଆମିଷ ପର୍ଯ୍ୟାୟଭୁକ୍ତ ବରି ଓ ଅଦାର ପିଠା ଓ ଅନ୍ୟାନ୍ୟ ଉପକରଣ ଦିଆଯାଉଛି । ବେଶଭୂଷାରେ ମଧ୍ୟ କିଛିଏ ବୈଶିଷ୍ଟ୍ୟ ଦେଖାଯାଏ, ଠାକୁରମାନଙ୍କର ଫୁଲରେ ନାକର ବସୁଣୀ ପିନ୍ଧାଯାଏ । ନାକରେ ବସୁଣୀ ଥିବା ଚିତ୍ରରୁ ମଧ୍ୟ ଦିଶୁଛି ।

---

୭୦ । ବାୟୁ ପୁରାଣ ।

ଏ କ୍ଷେତ୍ରଟି ବୈଷ୍ଣବ-ପ୍ରଧାନ ଥିବାରୁ ଜଗନ୍ନାଥଙ୍କ ଭୋଗ ମହାପ୍ରସାଦ ରୂପେ ପ୍ରଚଳିତ ବୋଲି କେତେକ ପୁରାଣରେ ଲେଖାଅଛି । କିନ୍ତୁ ସବୁ ବୈଷ୍ଣବ କ୍ଷେତ୍ରରେ ଅନ୍ନପ୍ରସାଦର ମାହାତ୍ମ୍ୟ ଶ୍ରୀକ୍ଷେତ୍ର ପରି ନୁହେଁ । ଏଥିରୁ ଜଣାଯାଏ ଯେ କେବଳ ଏହି କ୍ଷେତ୍ରରେ ଏ ବ୍ୟବସ୍ଥା ଅଛି । ଅନ୍ୟ କୌଣସି ବୈଷ୍ଣବ କ୍ଷେତ୍ରରେ ନୁହେଁ । ଏଥିରେ କେବଳ ବୈଷ୍ଣବ ପ୍ରଭାବର ସୂଚନା ମିଳୁନାହିଁ । ଶୈବ କ୍ଷେତ୍ରମାନଙ୍କରେ ମଧ୍ୟ ଏଭଳି ମହାପ୍ରସାଦର ମାହାତ୍ମ୍ୟ ନାହିଁ । ପୁରୀରେ ମଧ୍ୟ ଅନେକ ଶିବ ପୀଠ ଅଛି, କିନ୍ତୁ ସେଠାରେ ଅନ୍ନମହାପ୍ରସାଦ ହୁଏନାହିଁ । ଶକ୍ତି-ପୀଠମାନଙ୍କରେ ତନ୍ତ୍ରସମୟ ଛଡ଼ା ଅନ୍ୟ ସବୁ ସମୟରେ ଅନ୍ନ ଭୋଗର ଉଚ୍ଛିଷ୍ଟାଚ୍ଛିଷ୍ଟ ବିଚାର ଚଳେ । ପୁରୀରେ ବିମଳାଙ୍କ ପ୍ରସାଦ ମହାପ୍ରସାଦ ନୁହେଁ । ଅନ୍ୟାନ୍ୟ ଦେବୀ-ପୀଠରେ ମଧ୍ୟ ମହାପ୍ରସାଦ ନାହିଁ, ଏଥିରୁ ଜଣାଯାଉଛି ଯେ କେବଳ ବିଷ୍ଣୁଙ୍କ ବା ଶିବଙ୍କ ବା ଶକ୍ତିଙ୍କ ପୂଜା କଲେ ପ୍ରସାଦ ମହାପ୍ରସାଦ ହେବ ନାହିଁ । ବଡ଼ ଦେଉଳରେ ମଧ୍ୟ ତିନି ମୂର୍ତ୍ତିଙ୍କ ଭିତରୁ ଯେ କୌଣସି ଠାକୁରଙ୍କୁ ଭୋଗ ଲଗାଇଲେ ଭୋଗ ମହାପ୍ରସାଦ ହେବ ନାହିଁ । ତିନି ଠାକୁରଙ୍କୁ ଏକ ପୂଜାବେଳରେ ଭୋଗ ଲଗାଇ ବିମଳାଙ୍କୁ ସମର୍ପଣ କରିବା ପ୍ରଥାର ତାତ୍ପର୍ଯ୍ୟ ଏହିଠାରେ ନିହିତ ।

ଜଗନ୍ନାଥ ମନ୍ଦିରର ଭୋଗ ମଣ୍ଡପରେ ଉତ୍ତର ବାଡ଼ରେ ଦ୍ୱାରର ପୂର୍ବପଟକୁ ଏକ କୌତୂହଳ-ଉଦ୍ଦୀପକ ମୂର୍ତ୍ତି ଅଛି । ଏକ ପୀଠ ବା ସିଂହାସନ ଉପରେ ଶିବ, ମହିଷାସୁରମର୍ଦ୍ଦିନୀ ଓ ଜଗନ୍ନାଥ ମୂର୍ତ୍ତି ଅବସ୍ଥାନ କରୁଛନ୍ତି । କୋଣାର୍କ ମନ୍ଦିରରେ ମଧ୍ୟ ଏପରି ଏକ ମୂର୍ତ୍ତି ଅଛି । ଏଥିରୁ କେହି କେହି ଅନୁମାନ କରୁଛନ୍ତି ଯେ ଆରମ୍ଭରୁ ଜଗନ୍ନାଥ ମନ୍ଦିରର ବିଷ୍ଣୁ ଉପାସନା ସହିତ ସମ୍ପର୍କ ନଥିଲା, ଶୈବ ଉପାସନାହିଁ ଆଗରୁ ଥିଲା । ଡାକ୍ତର ବ୍ଲକ୍ ସାହେବ ଏ ସମ୍ବନ୍ଧରେ ଲେଖିଛନ୍ତି ଯେ ଜଗନ୍ନାଥ ଉପାସନା ଶୈବ ଉପାସନା ସହିତ ହିଁ ସଂଶ୍ଳିଷ୍ଟ, ଲୋକେ ଏତେକାଳ ଯାହା ବିଶ୍ୱାସ କରି ଆସି-ଅଛନ୍ତି ସେହି ବୈଷ୍ଣବ ଉପାସନା ସହିତ ଏହାର ସମ୍ପର୍କ ନାହିଁ । (୭୧) ଡାକ୍ତର ବ୍ଲକ ପ୍ରମାଣସ୍ୱରୂପ କୋଣାର୍କ ମନ୍ଦିରର ଗାତ୍ରରେ ଥିବା ମୂର୍ତ୍ତିର ଉଲ୍ଲେଖ କରିଛନ୍ତି । କୋଣାର୍କ ମୂର୍ତ୍ତିରେ କେବଳ ଯେ ଜଗନ୍ନାଥ ଓ ଶିବଲିଙ୍ଗ ଅଛନ୍ତି ତାହା ନୁହେଁ, ମହିଷାମର୍ଦ୍ଦିନୀ ମୂର୍ତ୍ତି ମଧ୍ୟ ସେହି ପୀଠ ଉପରେ ବିଦ୍ୟମାନ ଅଛନ୍ତି । ଏହି ମୂର୍ତ୍ତିଟିରୁ ଶୈବ, ଶାକ୍ତ ଓ ବୈଷ୍ଣବ ଉପାସନାର ସମନ୍ୱୟ ପ୍ରକାଶ ପାଉଛି ମାତ୍ର । ଭୋଗମଣ୍ଡପର ମୂର୍ତ୍ତିଟିରୁ ମଧ୍ୟ ଏହା ହିଁ ପ୍ରକାଶ ପାଉଛି ।

ପୂର୍ବକାଳରେ ମୂର୍ତ୍ତି ଚତୁଷ୍ଟୟର ଆବିର୍ଭାବ ପୂର୍ବରୁ କୃଷ୍ଣରୂପୀ ଜଗନ୍ନାଥ ଓ ଶିବରୂପୀ ବଳରାମ ଏହି ମନ୍ଦିରରେ ପୂଜା ପାଉଥିଲେ । ଏହା ମଧ୍ୟ ଏହି ମୂର୍ତ୍ତିରୁ

---

(୭୧) Z. D. M. G. Vol. 64 P.736 (German) "ମନ୍ଦିରରେ କଥା" ବହିରୁ ଉଦ୍ଧୃତ । ପୃ. ୧୦୧ (ଗୁରୁଦାସ ସରକାର)

ସୂଚନା ମିଳୁଛି । ଏହି ଦୁଇ ମୂର୍ତ୍ତି (ବିଷ୍ଣୁ ଓ ଶିବ)ଙ୍କ ସହିତ ଶକ୍ତିରୂପୀ ସୁଭଦ୍ରାଙ୍କ ମୂର୍ତ୍ତି ଯୋଗକରି ଶୈବ ଶାକ୍ତ ବୈଷ୍ଣବ ଉପାସନାର ସମନ୍ୱୟ ଘୋଷଣା କରାଗଲା । ପରେ ସୂର୍ଯ୍ୟରୂପୀ ସୁଦର୍ଶନଙ୍କୁ ଯୋଗ କରି, ମୂର୍ତ୍ତି ଚତୁଷ୍ଟୟ କରି, ଶୈବ ଶାକ୍ତ ବୈଷ୍ଣବ ଓ ସୌର ଉପାସନାର ସମନ୍ୱୟ ଘୋଷଣା କରାଗଲା ।

ପରବର୍ତ୍ତୀ ଯୁଗରେ ଅପେକ୍ଷାକୃତ ଅର୍ବାଚୀନ ଗାଣପାତ୍ୟ ଉପାସନା ସହିତ ଏହି ଚାରି ଉପାସନାର ସମନ୍ୱୟ ଜ୍ଞାପନ କରିବା ପାଇଁ ଜ୍ୟେଷ୍ଠ ପୌର୍ଣ୍ଣମୀ (ସ୍ନାନ ପୌର୍ଣ୍ଣମୀ) ରେ ଜଗନ୍ନାଥ ଗଣେଶ-ରୂପ ଧାରଣ କରି ଭକ୍ତମାନଙ୍କୁ ଆପ୍ୟାୟିତ କରିବା ବ୍ୟବସ୍ଥା ହୋଇଥିଲା ।

ପଞ୍ଚ ଦେବତା ଉପାସନାର ସମନ୍ୱୟ ଏହି ମନ୍ଦିରରେ ପ୍ରକାଶ ପାଉଥିବା ସର୍ବତ୍ର ବିଦିତ । ନାରାୟଣ ରୂପେ ଜଗନ୍ନାଥ, ଗଣେଶ ରୂପେ ଜଗନ୍ନାଥ ( ସ୍ନାନ ପୌର୍ଣ୍ଣମୀ ଦିନ ଜଗନ୍ନାଥଙ୍କ ଗଣେଶ ବେଶ ) ଶିବରୂପେ ବଳଭଦ୍ର, ଅମ୍ବିକା ରୂପେ ସୁଭଦ୍ରା, ଭାସ୍କର ରୂପେ ସୁଦର୍ଶନ ଏପରି ପଞ୍ଚଦେବତା ଜଗନ୍ନାଥ ମନ୍ଦିରର ସିଂହାସନ ଉପରେ ବିରାଜିତ ଅଛନ୍ତି । ପରବର୍ତ୍ତି ସମୟରେ ଏସବୁ ଉପାସନା କାଳକ୍ରମେ ସ୍ତର ବିଶେଷରେ ସଂଘାତ ହୋଇଛି, ଏଥିରେ ସନ୍ଦେହ ନାହିଁ ।

## (୭) ଚତୁର୍ଦ୍ଧା ମୂର୍ତ୍ତିର ଅନ୍ୟାନ୍ୟ ବ୍ୟାଖ୍ୟା

(୧) ନୟନରେ ତ୍ରିମୂର୍ତ୍ତି—ବଳରାମ ଦାସ ତିନି ମୂର୍ତ୍ତିଙ୍କର ଚକ୍ଷୁ ଶରୀର ଭିତରେ ଭେଦାଇଛନ୍ତି । (୭୨)

ଡୋଳା ଭିତରେ ଧଳା ଯେହି । ଶ୍ରୀ ବଳଭଦ୍ର ଅଟେ ସେହି ॥
ତହିଁ ଉପରେ କଳା ଯେହୁ । ସୁଭଦ୍ରା ଠାକୁରାଣୀ ସେହି ॥
ତହିଁରେ ପିତୁଲା ଯେ ଜାଣ । ଶ୍ରୀ ଜଗନ୍ନାଥ ଠାକୁ ଚିହ୍ନ । ୮ମ ଅ:

ଶରୀରର ନୟନ ଭିତରେ ଏହି ତିନି ମୂର୍ତ୍ତିଙ୍କର ଅବସ୍ଥିତି ଏହିଠାରେ ପ୍ରକାଶ କରାଯାଇଛି ।

(୨) ଚତୁର୍ଦ୍ଧାମୂର୍ତ୍ତି ଚାରିବେଦ—ବଳଭଦ୍ର, ସୁଭଦ୍ରା, ଜଗନ୍ନାଥ ଓ ସୁଦର୍ଶନ—ଏହି ଚାରିମୂର୍ତ୍ତିଙ୍କୁ ଚାରିବେଦ ବୋଲି ମଧ୍ୟ ବଳରାମ ଦାସ କହିଛନ୍ତି । ବଳଭଦ୍ର—ସାମ, ଋକ—ସୁଭଦ୍ରା, ଯଜୁର୍ବେଦ—ଜଗନ୍ନାଥ, ଅଥର୍ବ—ସୁଦର୍ଶନ (୭୩) ।

---

୭୨ । ଗୁପ୍ତଗୀତା, ବଳରାମ ଦାସ : ୮ମ ଅ. ।
୭୩ । ଏଜନ : ୭ମ ଅ: ।

ବଳଭଦ୍ର ଯେ ସାମ ହୋଇ । ଋକ ଯେ ସୁଭଦ୍ରା ଅଟଇ ॥
ଯଜୁର୍ବେଦ ଶ୍ରୀ ଜଗନ୍ନାଥ । ଅଥର୍ବ ସୁଦର୍ଶନ ପାର୍ଥ ॥ ୭ମ ଗୁ: ଗ:

ଏହି ଚାରିବେଦ ହିଁ ଚତୁର୍ଦ୍ଧାମୂର୍ତ୍ତି ।

(୩) ଚତୁର୍ଦ୍ଧାମୂର୍ତ୍ତି ସିଦ୍ଧିରସ୍ତୁ—ବଳରାମ ଦାସ ଚତୁର୍ଦ୍ଧାମୂର୍ତ୍ତିଙ୍କୁ "ସିଦ୍ଧିରସ୍ତୁ" ଏହି ଚାରି ଅକ୍ଷର ସହିତ ଅଭିନ୍ନ ବୋଲି କହିଛନ୍ତି । ଏହି ଚାରି ଅକ୍ଷର ସର୍ବ ଲେଖା ଓ ସର୍ବ କାର୍ଯ୍ୟ ଓ ସର୍ବପାଠର ଆରମ୍ଭରେ ସ୍ଥାନ ପାଏ । ସର୍ବାରମ୍ଭହିଁ ଚତୁର୍ଦ୍ଧାମୂର୍ତ୍ତି । ସୃଷ୍ଟିର ଆରମ୍ଭ ଏହି ଚାରି ମୂର୍ତ୍ତିଠାରୁ ଆରମ୍ଭ ହୋଇଥିବାର ସୂଚନା ହିଁ ଏଥିରୁ ପ୍ରତିପାଦିତ ହେଉଛି । (୭୪)

ସି—ଶିଶୁବେଦ ବଳଭଦ୍ର । ଦ୍ଧି—ଯଜୁର୍ବେଦ—ଜଗନ୍ନାଥ ॥
ର—ଋକବେଦ—ସୁଭଦ୍ରା । ସ୍ତୁ ଅଥର୍ବ—ସୁଦର୍ଶନ । ଗୁ: ଗୀ:

(୪) ଚତୁର୍ଦ୍ଧାମୂର୍ତ୍ତି—ଶ୍ରବଣ, ନୟନ, ଅଧରନାସିକା—ଚତୁର୍ଦ୍ଧାମୂର୍ତ୍ତି ଶରୀରର ଶ୍ରବଣ, ନୟନ, ଅଧର ଓ ନାସିକା । (୭୫)

ଶ୍ରବଣ—ବଳଭଦ୍ର । ନୟନ—ଜଗନ୍ନାଥ ।
ଅଧର—ସୁଭଦ୍ରା । ନାସିକା ସୁଦର୍ଶନ । ଗୁ: ଗୀ:

(୫) ଚତୁର୍ଦ୍ଧାମୂର୍ତ୍ତି ଚାରିବର୍ଣ୍ଣ—ଚତୁର୍ଦ୍ଧାମୂର୍ତ୍ତି ଶୁକ୍ଳ, ପୀତ, ହରିତ, ଲୋହିତ—ଏହି ଚାରିବର୍ଣ୍ଣଠାରୁ ଅଭିନ୍ନ । (୭୬)

ଶୁକ୍ଳ—ବଳଭଦ୍ର । ପୀତ—ଜଗନ୍ନାଥ ।
ହରିତ—ସୁଭଦ୍ରା । ଲୋହିତ-ସୁଦର୍ଶନ । ଗୁପ୍ତ ଗୀତା

(୬) ତ୍ରିମୂର୍ତ୍ତି ତ୍ରିବୀଜ—ଦିବାକର ଦାସ ଚତୁର୍ଦ୍ଧାମୂର୍ତ୍ତିର ତତ୍ତ୍ୱ ବିଶେଷ ଭାବରେ ଆଲୋଚନା କରିଛନ୍ତି । ସାର୍ବଭୌମ ଓ ଚୈତନ୍ୟ ଦେବଙ୍କ ପ୍ରଶ୍ନ ଉତ୍ତର ଛଳରେ ଦିବାକର ପ୍ରକାଶ କରିଛନ୍ତି ଯେ ଶ୍ରୀକ୍ଷେତ୍ର ଚାରୋଟି ବିଷୟ ପାଇଁ ପ୍ରଧାନ । ଯଥା—ଅମଣୋହି, ମହାପ୍ରସାଦ, କ୍ଷେତ୍ର ଓ ଚତୁର୍ଦ୍ଧାମୂର୍ତ୍ତି । (୭୭)

ଶ୍ରୀଁ ବୀଜ—ବଳଭଦ୍ର, ହ୍ରୀଁ ବୀଜ—ସୁଭଦ୍ରା ଓ କ୍ଲୀଁ ବୀଜ—ଜଗନ୍ନାଥ । ଅମଣୋହିକୁ ନୈବେଦ୍ୟ କଲେ ମହାପ୍ରସାଦ ହେବ । ମହାପ୍ରସାଦ ହେବା ରୀତି ଏହି ପ୍ରକାର—

---

୭୪ । ଗୁପ୍ତଗୀତା ।
୭୫ । ଏଜନ
୭୬ । ଏଜନ
୭୭ । ଶ୍ରୀ ଜଗନ୍ନାଥ ଚରିତାମୃତ : ଦିବାକର ଦାସ । ପୃ ୯୨ ·

ଶ୍ରୀଁ ବୀଜ ବଳଭଦ୍ର ହୋନ୍ତି । ହ୍ରୀଁବୀଜ ସୁଭଦ୍ରା ମୂରତ ॥
କ୍ଲୀଁବୀଜ ଜଗନ୍ନାଥ ଭାବ । ଏରୂପେ ନୈବେଦ୍ୟ ଦେବ ॥
ଯେ ଦ୍ରବ୍ୟ ଅମଣୋହା ହେବ । ତା ବଳଦେବେ ସମର୍ପିବ ॥
ସେ ଦେବେ ସୁଭଦ୍ରାଙ୍କ ପାଟେ । ସେ ଦେବେ ଜଗନ୍ନାଥ ମୁଖେ ॥
ଏ ଭାବେ ପ୍ରଭୁଙ୍କ ଆସ୍ୱାଦ । ଶେଷେ ହୁଏ ମହାପ୍ରସାଦ ॥
(୨. ୬୬).

(୭) ଜଗନ୍ନାଥ ଓ ରାଧା ଏକ ଅଙ୍ଗ—

ଜଗନ୍ନାଥ ଯେ ରାଧା ସେ । "ରାଧା ସ୍ୱୟଂ ଜଗନ୍ନାଥ ରାଧିକା ସ୍ଥୂଳରୂପିଣୀ ।" ପୁଣି ରାଧା ଜଗନ୍ନାଥଙ୍କ ଶରୀରରେ ସର୍ବଦା ବିରାଜମାନ । (୭୮)

ଏହି ଜଗନ୍ନାଥ ଅଙ୍ଗରେ । ରାଧା ଅଛନ୍ତି ପ୍ରେମଭରେ ॥
ବଇଠି ଶ୍ୱେତଲତା ଯାଏ । ରାଧାକୃଷ୍ଣଙ୍କ ଅଙ୍ଗ ଶୋହେ ॥ (୭୯)

ଜଗନ୍ନାଥ (ବା ରାଧାକୃଷ୍ଣ ମିଳିତ ତନୁ) ଅନନ୍ତଦେବଙ୍କ ଉପରେ ଶୟନ କରିଛନ୍ତି । ସୁଭଦ୍ରା ସୁଖଶଯ୍ୟାରୂପେ ବିଦ୍ୟମାନ ।

(୮) ତ୍ରିମୂର୍ତ୍ତି—ତ୍ରିବୀଜ, ହରେରାମକୃଷ୍ଣ, ରକ୍ତ ଶୁକ୍ଳ ଶ୍ୟାମ, ରତି ପ୍ରୀତି ସ୍ମୃତି—

| | | | | | |
|---|---|---|---|---|---|
| ପରାବୀଜ | ଶ୍ରୀଁ | ରତି | ହରେ | ବଳଭଦ୍ର | ରକ୍ତ |
| ରମାବୀଜ | ହ୍ରୀଁ | ପ୍ରୀତି | ରାମ | ସୁଭଦ୍ରା | ଶୁକ୍ଳ |
| କାମବୀଜ | କ୍ଲୀଁ | ସ୍ମୃତି | କୃଷ୍ଣ | ସୁଦର୍ଶନ | ଶ୍ୟାମ |

ଶ୍ରୀଁକାର ପରାବୀଜ ହୋଇ । ହ୍ରୀଁକାର ରମାବୀଜ କହି ॥
କ୍ଲୀଁକାର କାମ ବୀଜସାର । ବାଳକ ପୌଗଣ୍ଡ କିଶୋର ×
ଶ୍ରୀ ଯେ ପରାବୀଜ ହୋଇ । ହରିନାମ ଅଛଇ ତହିଁ ॥
ହ୍ରୀଁ ଯେ ରମାବୀଜ ତହିଁ । ରାମ ନାମ ତହିଁ ବଖାଣି ॥
କ୍ଲୀଁ ଯେ କାମବୀଜ ହୋଇ । କୃଷ୍ଣ ବୋଲିଣ ଜାଣ ସେହି ॥
ରକ୍ତ ଶୁକ୍ଳ ଶ୍ୟାମ ବର୍ଣ୍ଣ । ତିନିନାମ କରି ପ୍ରଚ୍ଛିନ୍ନ ॥ (୮୦)

ପୁଣି ସୁଦର୍ଶନ ଓଁକାର ବୋଲି କୁହାଯାଇଛି ।

ଶ୍ରୀଁ ଟି ସିଦ୍ଧ କଳେବର । ସୁଦରଶନଟି ଓଁକାର ॥ (୮୧)
ରତି ବଳଭଦ୍ର ମୂରତି । ସୁଭଦ୍ରା ପ୍ରେମରସେ ପ୍ରୀତି ॥

---

୭୮ । ଶ୍ରୀ ଜଗନାଥ । ୪ର୍ଥ ଅ.
୭୯ । ଏଜନ ୪ର୍ଥ ଅ.
୮୦ । ଏଜନ
୮୧ । ଏଜନ ୧୪ଶ ଅ.

ସ୍ମୃତି ଅଟନ୍ତି ଜଗନ୍ନାଥ । ରତିପ୍ରୀତିଟି ସଙ୍ଖ୍ୟାତତ୍ତ୍ୱ ।। × ×
ରତି ଯେ ପ୍ରେମଅଙ୍ଗ ହୋଇ । ପ୍ରୀତି ଅଟଇ ଭୂଜ ଦୁଇ ।।
ସ୍ମୃତି ଚମ୍ବନ ଦାନ ହୋଇ । ସ୍ମୃତିର ପ୍ରେମଭାବ ଏହି ।।
ସ୍ମୃତି ଯେ ରାଧାକୃଷ୍ଣ ଅଙ୍ଗ । ଏରୂପେ ପ୍ରେମ ତିନିଅଙ୍ଗ ।।
ହରିନାମ ଅଟଇ ରତି । ରାମ ନାମ ହୋଏ ପୀରତି ।।
କୃଷ୍ଣ ନାମ ସ୍ମୃତି ଅଟଇ । ନାମରେ ତିନିପ୍ରେମ କହି ।। (୮୨)

ହରେ ବଲଭଦ୍ରସ୍ୟ ସୁଭଦ୍ରା ରାମ କଥ୍ୟତେ
କୃଷ୍ଣ ନାମ ଜଗନ୍ନାଥ ହରେ ସୁଦର୍ଶନ ଅପି ।

ହରେ ଅଟନ୍ତି ବଲଭଦ୍ର । ସୁଭଦ୍ରା ରାମ ରୂପେ ଭାବ ।।
କୃଷ୍ଣ ନାମଟି ଜଗନ୍ନାଥ । ଆଉ ହରେ ସୁଦର୍ଶନାନ୍ତ ।। (୮୩)

(୯) ମୂର୍ତ୍ତି ଚତୁଷ୍ଟୟ ହରେ ରାମ କୃଷ୍ଣ ହରେ--

ଏହି ଚାରି ଶବ୍ଦରେ ଭେଦାଇ ଦିଆଯାଇଛି । ହରେ ରାମ କୃଷ୍ଣ ହରେ— ଏହା ମହାମନ୍ତ୍ରର ପ୍ରଧାନ ଅଂଶ ।

ହରେ ରାମ ହରେ ରାମ ରାମ ରାମ ହରେ ହରେ
ହରେ କୃଷ୍ଣ ହରେ କୃଷ୍ଣ କୃଷ୍ଣ କୃଷ୍ଣ ହରେ ହରେ

(୧୦) ତ୍ରିମୂର୍ତ୍ତି—ଶିଷ୍ୟ ଗୁରୁ ଦେବତା– ଶିଷ୍ୟ, ଗୁରୁ ଦେବତା ଏ ଭାବରେ ତିନିତତ୍ତ୍ୱ ମଧ୍ୟ ତ୍ରିମୂର୍ତ୍ତିରେ ଦିବାକର ଦାସ ପ୍ରକାଶ କରିଛନ୍ତି । ଏମାନଙ୍କ ଭିତରେ କିଛି ପ୍ରଭେଦ ନାହିଁ ।

ଶିଷ୍ୟ ଅଙ୍ଗରେ ବଳଦେବ । ଗୁରୁ ଅଙ୍ଗେ ସୁଭଦ୍ରା ଭାବ ।।
ଦେବତା ଅଙ୍ଗେ ଜଗନ୍ନାଥ । ଏକତ୍ୱ ଭାବ ତିନିତତ୍ତ୍ୱ ।।

ହରେ ଶିଷ୍ୟ ବଲଭଦ୍ର ରାମ ଗୁରୁ ସୁଭଦ୍ରକା
କୃଷ୍ଣ ଏବଂ ଜଗନ୍ନାଥ ନ ଭିନ୍ନୋ ଜାୟତେ ତ୍ରିଭିଃ । (୮୪) P. 134.

(୧୧) ଚତୁର୍ଦ୍ଧାମୂର୍ତ୍ତିରେ ମନ୍ତ୍ରରାଜ ଭେଦାଣ—

ଷୋଡ଼ଶାକ୍ଷର ମନ୍ତ୍ରରାଜ ଚତୁର୍ଦ୍ଧାମୂର୍ତ୍ତିରେ ଭେଦାଇ ତାର ବିବରଣ ଦିବାକର ଦାସ ପ୍ରତାପରୁଦ୍ର ଓ ଜଗନ୍ନାଥ ଦାସଙ୍କ କଥୋପକଥନ ରୂପରେ "ଜଗନ୍ନାଥ ଚରିତାମୃତ"ରେ ପ୍ରକାଶ କରିଛନ୍ତି । ଓଁ ଶ୍ରୀଁ ହ୍ରୀଁ କ୍ଲୀଁ

---

୮୨ । ଜଗନ୍ନାଥଚରିତାମୃତ । ୮ମ ଅ:
୮୩ । ଏଜନ । ୯ମ ଅ:
୮୪ । ଜଗନ୍ନାଥଚରିତାମୃତରେ ଉଦ୍ଧୃତ ଶ୍ଲୋକ । ୯ମ ଅ.

ଓଁ କାର ସୁଦର୍ଶନ ଦେବ । ଶ୍ରୀବୀଜ ବଳଭଦ୍ର ଭାବ ॥
ହ୍ରୀଁ ବୀଜ ସୁଭଦ୍ରା ସ୍ୱମନ୍ତ୍ର । କ୍ଲୀଁ ବୀଜ ଜଗନ୍ନାଥ ମୂର୍ତ୍ତି ॥ X X
ଶ୍ରୀଁ ବୀଜ ବଇଠି ଅଛଇ । ହ୍ରୀଁ ବୀଜ ଚରଣରେ ବସଇ ॥
କ୍ଲୀଁ ବୀଜ ଅଟେ ହୃଦସାର । ଗୋପି ବେନଭୁଜ ସୁନ୍ଦର ॥
ଜ ନ ଅଛଇ ବେନି କର୍ଣ୍ଣ । ବ-ଲ୍ଲଭ କଟିରେ ଶୋଭନ ॥
ଲ ଟି ବକ୍ଷଦେଶେ ତହିଁ । ଭ ବେନି ଚକ୍ଷୁ ଅଛଇ ॥
ସ୍ୱାହାଟି ଅଛଇ ଅଧର । ଏ ମନ୍ତ୍ରରାଜ ଶ୍ରୀମୂର୍ତ୍ତିର ॥ (୮୫)

(୧୨) ଚତୁର୍ଦ୍ଧାମୂର୍ତ୍ତିରେ ଯନ୍ତ୍ରରାଜ ଭେଦାଣ—

ଏହି ଚତୁର୍ଦ୍ଧାମୂର୍ତ୍ତିର ଯନ୍ତ୍ରରାଜର ଭେଦାଣ ଏହିପରି ଭାବରେ ଦିଆଯାଇଛି ।

(ପ୍ରତାପରୁଦ୍ର ପଚାରୁଛନ୍ତି, ଜଗନ୍ନାଥ ଦାସ ଉତ୍ତର ଦେଉଛନ୍ତି) —

ଆଦ୍ୟେଣ ମଣିବ ତ୍ରିକୋଣ । ଷଟ୍‌କୋଣ ପଦ୍ମ ମଣିଣ ॥
ତହିଁରୁ ଅଷ୍ଟଦଳ କହି । ଷୋଳଦଳ ପରେଣ ରହି ॥
ଦ୍ୱାତ୍ରିଂଶ ଚତୁଷଷ୍ଠ ଦଳ । ଶତଦଳ ସହସ୍ର ଦଳ ॥
ପୁରୁଷୋତ୍ତମେ ଏହୁ ସାର । ଏରୂପେ ପ୍ରଭୁଙ୍କ ବିହାର ॥
ବଡ଼ଦେଉଳ ଯେ ବୋଲଇ । ସହସ୍ରଦଳ ପଦ୍ମ ସେହି ॥
ଶତଦଳ ବେଢ଼ ବୋଲଇ । ସପ୍ତାବରଣ ଏକ ହୋଇ ॥
ଷୋଳଦଳ ଯାହାର ନାମ । ସେହି ଅଟେ ଜଗମୋହନ ॥
କଳାହାଟ ନାମ ଯାର । ବତିଶଦଳ ପଦ୍ମସାର ॥
ମଧ୍ୟ ବେଢ଼ା ଯେହୁ ଅଛଇ । ଚୌଷଠି ଦଳ ସେ ବୋଲଇ ॥ (୮୬)

ଏହି ସପ୍ତାବରଣ ମଧ୍ୟରେ ସିଂହାସନର ଯନ୍ତ୍ର ହେଉଛି ଷଟ୍‌କୋଣ ଏବଂ ଏହି ସିଂହାସନ ସୁଭଦ୍ରାଙ୍କ ହୃଦୟ ମଧ୍ୟରେ ଅବସ୍ଥିତ । ରାଧା ଓ କୃଷ୍ଣ ମିଳିତତନୁ ହୋଇ (ଜଗନ୍ନାଥ ନାମରେ) ବିହାର କରୁଛନ୍ତି ।

ସିଂହାସନ ଯେ ଷଟ୍‌କୋଣ । ସୁଭଦ୍ରାଙ୍କ ହୃଦ ମଧ୍ୟେଣ ॥
ନୀଳକନ୍ଦର କୁଞ୍ଜରେଣ । ଯହିଁ ବିହରେ ରାଧା କୃଷ୍ଣ ॥
ପର୍ବତ ଶିଖେ ଯେଉଁ ସ୍ଥାନ । ତାହାକୁ ବୋଲି କୁଞ୍ଜବନ ॥ (୮୭)

(୧୩) ଶ୍ରୀକ୍ଷେତ୍ର ଗୋଲକ—

ଜଗନ୍ନାଥ ପରଂବ୍ରହ୍ମ ଓ ବଳଦେବ ମାୟାବ୍ରହ୍ମ । ଭୂଶକ୍ତି ଓ ସୁଶକ୍ତିରୁ ନୀଳାଚଳ ହୋଇଛି । ଭୂଶକ୍ତି ବଳଦେବ ଓ ସୁଶକ୍ତି ଜଗନ୍ନାଥ ।

---

୮୫ । ଏଜନ ୧୪ଶ ଅ. ।
୮୬ । ଶ୍ରୀ ଜଗନ୍ନାଥ ଚରିତାମୃତ, ୧୨ଶ ଅ.
୮୭ । ଏଜନ

ମାୟାବ୍ରହ୍ମ ପରଂବ୍ରହ୍ମରେ । ଅଛନ୍ତି ଶ୍ରୀନୀଳକନ୍ଦରେ ॥
ମାୟାବ୍ରହ୍ମ ଶେଷ ଦେବନ୍ତି । ପରମବ୍ରହ୍ମ ଜଗନ୍ନାଥ ॥
ଶେଷଦେବଙ୍କ କରଣ । ପଞ୍ଚକୋଶେ ବିରାଜେ ପୁଣ ॥
ଭୂଶକ୍ତି ସୁଶକ୍ତି ଏ ଦୁଇ । ଏଥିରୁ ନୀଳାଚଳ ହୋଇ ॥

ଶେଷଦେବଙ୍କ ମସ୍ତକ ଉପରେ, ଅଷ୍ଟଦଳ ପଦ୍ମ ଉପରେ, ଚିନ୍ତାମଣି ପୀଠରେ ଜଗନ୍ନାଥ ବିଜେ କରିଛନ୍ତି ।

ଶେଷଦେବଙ୍କ ନିଜ ମାଥ । ଯହିଁ ବିଜୟେ ଜଗନ୍ନାଥ । X X
ଏ ରଙ୍ଗ ଭୂମିର ମଧ୍ୟରେ । ଶ୍ରୀ ଶେଷଦେବଙ୍କ ଶିରରେ ॥
ଅଷ୍ଟଦଳ ପଦ୍ମକେଶରେ । ଚିନ୍ତାମଣି ପୀଠ ଉପରେ । ଇତ୍ୟାଦି (୮୮)

ଜଗନ୍ନାଥ ଓ ରାଧା ଏହି ପୀଠ ଉପରେକୁ ପରସ୍ପର ଆଲିଙ୍ଗନ କରି ମିଳିତଭାବୁ ହୋଇ ବିରାଜିଛନ୍ତି ।

ଶ୍ରୀଜଗନ୍ନାଥ ମୂର୍ତ୍ତିରେ । ରାଧାକୃଷ୍ଣ ଛନ୍ତି ତହିଁରେ ॥
ବଇଠି ପ୍ରାୟ ଯେ ଦିଶଇ । ଶ୍ରୀକୃଷ୍ଣ ବେନି ପାଦ ସେହି ॥
ତହିଁରେ ଶଙ୍ଖଚକ୍ର ଶୋହି । ଶ୍ରୀରାଧାଙ୍କ ପାଦ ସେହି ॥
ନିବିଡ଼ ହୃଦୟ ବନ୍ଧନେ । ଅଛନ୍ତି ଏକଚିତ୍ତ ମନେ ॥
ସ୍ୱଭାବେ ବେନି ଆଲିଙ୍ଗନ । ଅଛନ୍ତି ନିବିଡ଼ ବନ୍ଧନ ॥
ପ୍ରେମରେ ହୋଇ ଜରଜର । ନଜାଣନ୍ତି ଆପଣା ପର ॥(୮୯)

ଶ୍ରୀକ୍ଷେତ୍ରହିଁ ନିତ୍ୟ ଗୋଲକ । ଏହି ଗୋଲକରେ ନିତ୍ୟ ରାସ ହେଉଛି । ନିତ୍ୟ ରାଧା ଓ ନିତ୍ୟ କୃଷ୍ଣ ଏଠାରେ ରାସଲୀଳା କରୁଛନ୍ତି । ମାନବୀ କୃଷ୍ଣ ଓ ମାନବୀ ରାଧା ଏମାନଙ୍କର କଳାର ଅଂଶରୁ ଜନ୍ମ ।

(୧୨) "ଜଗନ୍ନାଥ" ଚ୍ଛରିଅକ୍ଷର ଚତୁର୍ଦ୍ଧାମୂର୍ତ୍ତି—ଚତୁର୍ଦ୍ଧାମୂର୍ତ୍ତିଙ୍କୁ ଜଗନ୍ନାଥଙ୍କଠାରେ ଅନ୍ୟ ରୂପରେ ମଧ୍ୟ ଭେଦାଇ ବର୍ଣ୍ଣନା କରାଯାଇଛି ।

ଜକାରଶ୍ଚ ଜଗନ୍ନାଥ ଗକାର ବଳଦେବକଂ
ଭଦ୍ରା ନକାର ଭବେନ ଥକାରଶ୍ଚ ସୁଦର୍ଶନଂ

ଜଅ ଅକ୍ଷର ଜଗନ୍ନାଥ । ଗଅ ବଳଦେବ ସମ୍ଭୂତ ॥
ନଅଟି ସୁଭଦ୍ରା ମୂରତ । ଥଅ ସୁଦର୍ଶନ ଅଟନ୍ତି । ॥

ପୁଣି— ଜକାର କାମବୀଜସ୍ୟ ଗକାର ଲକ୍ଷ୍ମୀ ଉଚ୍ୟତେ
ନକାରଶ୍ଚ ପରବୀଜ ଦଣ୍ଡାର୍ଣ୍ଣିତ ଥକାରସ୍ତୁଃ ।

---

୮୮ । ଶ୍ରୀ ଜଗନ୍ନାଥ ଚରିତାମୃତ । ୧୨ଶ ଅ.
୮୯ । ଶ୍ରୀ ଜଗନ୍ନାଥ ଚରିତାମୃତ, ୧୨ଶ ଅ.

ଜଅ କାମବୀଜ ଅକ୍ଷର । ଲକ୍ଷ୍ମୀବୀଜ ଗଅଟି ସାର ॥
ନଅ ଅକ୍ଷର ପରବୀଜ । ଦଶାର୍ଣ୍ଣ ଯକାରେଣ ହେଜ ॥ (୯୦)

ଯଶୋବନ୍ତ ଦାସଙ୍କ "ପ୍ରେମଭକ୍ତି-ବ୍ରହ୍ମଗୀତା"ରେ ଜଗନ୍ନାଥ ଚଣ୍ଡାମୃତ"ର ଅନୁରୂପ ବିଶ୍ଳେଷଣ ଦେଖାଯାଏ । କିନ୍ତୁ ଦିବାକର ଦାଶଙ୍କର ଶ୍ଳୀଁ ହ୍ରୀଁ କ୍ଳୀଁ ସ୍ଥାନରେ ହ୍ଳୀଁ ଖ୍ଳୀଁ କ୍ଳୀଁ ଯଶୋବନ୍ତ ଦାସ ଲେଖିଛନ୍ତି ।

ବଳଭଦ୍ର—ଡାହାଣେ ବଳଭଦ୍ର ରୂପ । ଏହି ସେ ବିରାଟ ସ୍ୱରୂପ ॥
ଅନନ୍ତ ଅଙ୍ଗ ଏ ପ୍ରଚ୍ଛିନ୍ନ । ଓଁ ହ୍ଳୀଁ ଅଙ୍ଗ ଜନମ ॥

ଜଗନ୍ନାଥ—ବାମେ ଶ୍ରୀ ଜଗନ୍ନାଥ ଯେହି । କ୍ଳୀଁ ଅଙ୍ଗରେ ବିଜେ ସେହି ॥
ମକାରୁ ଯାହାର ଶରୀର । ଯାର ମାୟାରେ ଏ ସଂସାର ॥ ×

ସୁଭଦ୍ରା— ମଧ୍ୟେ ସୁଭଦ୍ରା ବ୍ରହ୍ମା ରୂପ । ରାଧାଙ୍କ ଅଙ୍ଗେ ତହିଁ ଗୋପ୍ୟ ॥
ଅକାରୁ ବ୍ରହ୍ମାରୂପ ହୋଇ । ସକାରୁ ରାଧାଅଙ୍ଗ ହୋଇ ॥

ସୁଦର୍ଶନ— ପାରୁଶେ ସୁଦର୍ଶନ ଯନ୍ତ । ସେ ମହାଶୂନ୍ୟ ବ୍ରହ୍ମ ଜ୍ୟୋତି ॥
ନାହିଁ ଯାହାର ପାଦ ପାଣି । ଶିର ନାସିକା କର୍ଣ୍ଣ ପୁଣି ॥
ଅମନ ମନ ଭିନ୍ନ ନାହିଁ । ସେ ସଦାନନ୍ଦ ରୂପ ଏହି ॥ (୯୧)

ଯଶୋବନ୍ତ ଦାସ "ହରେକୃଷ୍ଣ" ମନ୍ତ୍ରକୁ ମଧ୍ୟ ଚତୁର୍ଦ୍ଧାମୂର୍ତ୍ତିରେ ଭେଦାଇ ଅଛନ୍ତି । କିନ୍ତୁ ଭେଦାଣ ଦିବାକର ଦାସଙ୍କଠାରୁ ଭିନ୍ନ । "ହରେରାମ କୃଷ୍ଣ" ମନ୍ତ୍ରରୁ "ରାମ"ର ଭେଦାଣ ଯଶୋବନ୍ତ ଦାସ ଦେଇ ନାହାନ୍ତି ।

ହ—ହ ଅକ୍ଷର ଭଦ୍ର ଶାଖା । ରୂପତ ରୂପ ଏ ରାଧିକା ॥
ରେ—ରେ ଅକ୍ଷର ଯେ ବଳଦେବ । ରେବତୀପତି ଅନୁଭାବ ॥
କୃ—କୃରୁ ଅକ୍ଷର କୃଷ୍ଣଦେହୀ । ଶ୍ରୀ ଜଗନ୍ନାଥ ଯାହା କହି ॥
ଷ୍ଣ—ଷ୍ଣଅ ଯେ ସୁଦର୍ଶନ ପୁଣ । ସ୍ୱେମନ୍ତେ ଚତୁର୍ଥ ପ୍ରମାଣ । (୯୨) ॥

ଚତୁର୍ଦ୍ଧାମୂର୍ତ୍ତି ମହାଯୋଗୀର ସମାଧିସ୍ଥ ଅବସ୍ଥା :—ମୂର୍ତ୍ତିଚତୁଷ୍ଟୟଙ୍କର ଆକାରର ତତ୍ତ୍ୱ ଯୋଗମତରେ ଦ୍ୱାରକା ଦାସ "ତ୍ରୟୋଦଶସ୍କନ୍ଧ ଭାଗବତ"ର (ଅପ୍ରକାଶିତ) ଜଗନ୍ନାଥ ବନ୍ଦନାରେ ବୁଝାଇଛନ୍ତି ।

---

୯୦. ଏଜନ । ୧୭ଶ ଅ ।
୯୧. ଯଶୋବନ୍ତ ଦାସଙ୍କ ପ୍ରେମଭକ୍ତି ବ୍ରହ୍ମଗୀତା । ୫ମ ଅ ।
୯୨ ଏଜନ

ନମଇଁ ପରମ ପୁରୁଷ । ନୀଳକନ୍ଦରେ ତୋର ବାସ ॥
ଯୋଗୀଜନ ରକ୍ଷିବା ପାଇଁ । ନିଷ୍କଳେ ବସିଛ ଗୋସାଇଁ ॥
ବ୍ରହ୍ମଜ୍ଞାନୀଙ୍କ ଗର୍ବ ଚୂର । ତେଣୁ ବୋଲାଉ ବ୍ରହ୍ମକୃଷ୍ଣ ॥
ଅଷ୍ଟାଙ୍ଗଯୋଗ ସାଧିବାରେ । ନିଷ୍କଳ ଆତ୍ମା ଲୟ ଦ୍ୱାରେ ॥
ପଞ୍ଚିଶ ପ୍ରକୃତିକ ସାଧି । ପଞ୍ଚମନକୁ ଜ୍ଞାନେ ସନ୍ଧି ॥
ପଞ୍ଚାଶ ପବନ ରୁନ୍ଧନେ । ଇନ୍ଦ୍ର ନିରୋଧି ଶମାସନେ ॥
ଷଡ଼ଅରି ଜୟ କରି । ନିଷ୍କଳେ ଅନାହତେ ଭରି ॥
ନିଷ୍କଳ ଯୋଗରେ ନିଷ୍କଳ । ନୟନ ଥାଉଁ ଅଚଞ୍ଚଳ ॥
ନାସିକା ଥାଉଁ ନାହିଁ ବାସ । ଶ୍ରବଣେ ନାହିଁ ଶ୍ରୋତାବସ ॥
ବ ( ରୁ ) ତା ନାହିଁ ଅଧରରେ । ପଲ୍ଲବ ହଜିଲା କରରେ ॥
କଟିରେ ହଜିଲା ଚରଣ । ଇନ୍ଦ୍ର ହଜିଲା ଓଦରେଣ ॥
ଗୁହ୍ୟ ହଜିଲା ପାତାଳରେ । ନଖ—ଯେ ହୃଦରେ ॥
ଜ୍ଞାନ ଅନଳେ······ । ପ ଦାହିଁ ॥
ଏଣୁ ସେ ବ୍ରହ୍ମ ଅବତାର । ଅଣଗୃଣ ବାୟୁ ସାଧର ॥ (୯୩)

ଓଁକାର ବ୍ରହ୍ମ ଓ ତ୍ରିମୂର୍ତ୍ତି :—ବେଦରେ ଓଁ କାର ବ୍ରହ୍ମ ବୋଲି ପ୍ରତିପାଦିତ ହୋଇଛି । ଏହି ଓଁ କାର ଅକାର, ଉକାର, ମକାରର ସମଷ୍ଟି । ଅକାର ବ୍ରହ୍ମାତ୍ମକ, ଉକାର ବିଷ୍ଣ୍ୱାତ୍ମକ, ମକାର ଶିବାତ୍ମକ । ଏହି ତିନିଙ୍କ—ବ୍ରହ୍ମା, ବିଷ୍ଣୁ, ମହେଶ୍ୱରଙ୍କ-ସମଷ୍ଟି ହିଁ 'ଓଁ' । ପୁଣି ଏହି ତିନିଅକ୍ଷରରେ ସତ୍ତ୍ୱ, ରଜ, ତମ; ସତ୍ୟ, ତ୍ରେତା, ଦ୍ୱାପର; ଭୂଃ, ଭୁବଃ, ସ୍ୱଃ; ପ୍ରଭୃତି ମଧ୍ୟ ବୁଝାଯାଏ । ଅନ୍ୟ ପ୍ରକାରେ ଦେଖିଲେ ଅ ବର୍ଣ୍ଣମାଳାର ଆଦ୍ୟ ଅକ୍ଷର । ବିଶ୍ୱ ହିଁ ଆଦି, ଅ ହିଁ ବିଶ୍ୱ । ଉ, ତେଜସ । ମ, ପ୍ରାଜ୍ଞ । ମ ବର୍ଣ୍ଣର ଶେଷ ଅକ୍ଷର । ଏଥିରେ ବର୍ଗର ପରିସମାପ୍ତି ହୋଇଛି । ପ୍ରାଜ୍ଞ ହିଁ ପରିସମାପ୍ତି ବା ଲୟ । ବିଶ୍ୱ ଓ ବିରାଟ, ତେଜ ଓ ହିରଣ୍ୟଗର୍ଭ, ପ୍ରାଜ୍ଞ ଓ ଈଶ୍ୱର ଭିତରେ ଅଭିନ୍ନତା ବିଦ୍ୟମାନ ଥିବା ଉପଲବ୍ଧି କରିବା ହିଁ ପରମ ପୁରୁଷାର୍ଥ । ଏହି ଓଁ ଅକ୍ଷରରେ ଏହା ପ୍ରକାଶିତ ହୋଇଛି ।

ସ୍କନ୍ଦପୁରାଣରେ ଜଗନ୍ନାଥ ପ୍ରଣବରୂପୀ, ବୋଲି କୁହାଯାଇଛି —
ଇତିସ୍ତୁତ୍ୱା ସୁରେଶାନଂ ଦେବଂ ପ୍ରଣବରୂପିଣମ୍ ।
ପ୍ରଣତଃ ପ୍ରଣବଂ ମନ୍ତ୍ରଂ ଜଜାପ ପୁରତୋ ହରେଃ । (୯୪)

୯୩. ତ୍ରୟୋଦଶସ୍କନ୍ଧ ଭାଗବତ ( ଅପ୍ରକାଶିତ ) । ଦ୍ୱାରକା ଦାସ । ୧ମ ଅ ।
୯୪. ସ୍କନ୍ଦପୁରାଣ । ଉତ୍କଳଖଣ୍ଡ । ୮ମ ଅ । ୩୨ ଶ୍ଳୋ ।

ଜୈମିନ କହିଲେ—"(ସେହି ବ୍ରାହ୍ମଣ) ଏହି ରୂପରେ ସୁରେଶ୍ୱର ପ୍ରଣବରୂପୀ ଦେବ ଜଗନ୍ନାଥଙ୍କୁ ସ୍ତବ କରି ତାଙ୍କର ପୁରୋଭାଗରେ ପ୍ରଣତଭାବରେ ଉପବେଶନ କରି ପ୍ରଣବ ମନ୍ତ୍ର ଜପ କଲେ ।"

"ଏହି ଓଁକାରକୁ ଯନ୍ତ୍ର ରୂପରେ ନିର୍ମାଣ କରି ହିନ୍ଦୁମାନେ ପୂଜା କରନ୍ତି । ଜଗନ୍ନାଥାଦି ମୂର୍ତ୍ତି ଏହି ଯନ୍ତ୍ର ଆକାରରେ ଗଠିତ ହୋଇଥିବା ମଧ୍ୟ ଅନୁମାନ କରାଯାଇ ପାରେ । ସାକାର ଓ ନିରାକାର ଉପାସନାର ସମନ୍ୱୟ ଏଥିରେ ହୋଇଛି ବୋଲି ମନେହୁଏ । ଯନ୍ତ୍ରର ବିଶିଷ୍ଟ ମୂର୍ତ୍ତି-ଆକାର ନ ଥିବାରୁ ନିରାକାର ଉପାସନାର ସୂଚନା ମିଳୁଛି, କିନ୍ତୁ ଲୋକ-ସଂଗ୍ରାହାର୍ଥକ ସାକାର ଉପାସନାର ଆବଶ୍ୟକତା ଉପଲବ୍ଧି ହେବା ଅନୁସାରେ ଜଗନ୍ନାଥାଦି ମୂର୍ତ୍ତି ଗଠିତ ହୋଇଛି । ଓଁକାର ତ୍ରିଗୁଣାତ୍ମକ ଥିବା ଯୋଗୁଁ ତିନମୂର୍ତ୍ତିର କଳ୍ପନା କରାଯାଇଛି । ଭାସ୍କର୍ଯ୍ୟ ବିଦ୍ୟାର ଶୈଶବାବସ୍ଥାରେ ଯନ୍ତ୍ରର ଆକାର ଅନୁସାରେ କଳ୍ପିତମୂର୍ତ୍ତିକୁ ପୂର୍ଣ୍ଣାବୟବ କରିବା ପାଇଁ ପରବର୍ତ୍ତି କାଳରେ ଚେଷ୍ଟା ହୋଇଛି । ସେହି ଚେଷ୍ଟାର ଫଳସ୍ୱରୂପ ବର୍ତ୍ତମାନର ଆକାର ଦେଖାଯାଉଛି ।

"ଏହି ମୂର୍ତ୍ତିମାନଙ୍କର ବାହ୍ୟରେ ଯେଉଁ ସୁନ୍ଦରମୂର୍ତ୍ତି ଦେଖାଯାଏ ତାହା ପଶ୍ଚାତ୍ କଳ୍ପିତ । ତନ୍ମଧ୍ୟରେ ଯେଉଁ ଦାରୁମୟ ମୂର୍ତ୍ତି ଅଛନ୍ତି, ସେ ଏ ପ୍ରକାର ନୁହନ୍ତି । କେବଳ କରଚରଣବିହୀନ ଦାରୁ ମାତ୍ର ଏବଂ ଶିଳ୍ପବିଦ୍ୟାର ପ୍ରଥମାବସ୍ଥା ନ ହେଲେ ଏହିଭଳି ଅସମ୍ପୂର୍ଣ୍ଣ ଯନ୍ତ୍ରନ୍ଧାକାରୀ ପ୍ରତିମା ହେବା କଦାପି ସମ୍ଭବପର ନୁହେଁ । ଭାରତର ପ୍ରାଚୀନ ପୀଠମାନଙ୍କରେ ମଣିମୟ ମୂର୍ତ୍ତିମାନଙ୍କର ଏହିଭଳି ଆକାର । ଏହିହେତୁ ରାଜର୍ଷି ଇନ୍ଦ୍ରଦ୍ୟୁମ୍ନ କର୍ମକାଣ୍ଡ ଜ୍ଞାନକାଣ୍ଡାତ୍ମକ ନବ ଭିତ୍ତିରେ ଏହି ମୂର୍ତ୍ତିଙ୍କୁ ସ୍ଥାପନ କରିଅଛନ୍ତି । ନଚେତ୍ ଉକ୍ତ ମୂର୍ତ୍ତି ଆଗମଯୁଗର ବ୍ୟକ୍ତ, ଅନନ୍ତର ପୌରାଣିକ ଯୁଗର ଅଧିବାସୀ, ତତ୍ପରେ ଶଙ୍କର ପ୍ରଭୃତି ବିଭିନ୍ନ ସମ୍ପ୍ରଦାୟର ଆଦର ନିର୍ବିବାଦରେ ପ୍ରାପ୍ତ ହୋଇ ନ ଥା'ନ୍ତା ।" (୯୫)

ତ୍ରିମୂର୍ତ୍ତିପ୍ରଣବର ଅ, ଉ, ମ—ଏହି ତିନୋଟି ଅକ୍ଷରଜ୍ଞାପକ ଚିହ୍ନରୂପେ ଏହି ମୂର୍ତ୍ତିତ୍ରୟ ଗଠିତ ହୋଇଥିଲେ ବୋଲି ଧରିନେଲେ ଏହି ମୂର୍ତ୍ତିମାନଙ୍କର ଆକୃତି ଯନ୍ତ୍ର ରେଖାଙ୍କିତ ଅକ୍ଷରର ଆକାର ହେବା ସମ୍ଭବ । ତେବେ ବର୍ତ୍ତମାନର ମୂର୍ତ୍ତିର ବାହ୍ୟ ଆକାର ଭିତରେ ଅନ୍ୟ ଏକ ରୂପ ଥିବାର ସୂଚନା ମଧ୍ୟ ସଦାଶିବ କାବ୍ୟକଣ୍ଠଙ୍କ

୯୫. ଶ୍ରୀ ଜଗନ୍ନାଥ ମନ୍ଦିର । ବଙ୍ଗଳା । ମହାମହୋପାଧ୍ୟାୟ ସଦାଶିବ କାବ୍ୟକଣ୍ଠ । ପୃ ୧୨୨-୨୪ । (ଅନୁବାଦିତ)

ଲେଖାରୁ ମିଳୁଛି । ଏପରି ଅନେକେ ବିଶ୍ୱାସ କରନ୍ତି । ପୁରୀର କେତେ କେତେ ବିଶିଷ୍ଟ ଜଗନ୍ନାଥ-ସେବକ ଏଭଳି ମତ ପ୍ରକାଶ କରିଥାଆନ୍ତି । ବର୍ତ୍ତମାନର ରୂପ ଯନ୍ତ୍ର-ଆକାର କିମ୍ବା ପୁରାଣବର୍ଣ୍ଣିତ ରୂପ ସହିତ ମେଳ ହେଉ ନ ଥିବା ସ୍ପଷ୍ଟ ଜଣାଯାଉଛି । "କରଚରଣବିହୀନ" ମୂର୍ତ୍ତି କେବଳ ସୁଭଦ୍ରାଙ୍କର । ତିନିମୂର୍ତ୍ତିଙ୍କର ଚରଣ ନାହିଁ । ଆଖି ଚିତ୍ରରେ ଅଛି, ପ୍ରତିମାରେ ନାହିଁ । ନାସା ବୁଝାଇବା ପାଇଁ ନାସାର ଇଞ୍ଚେ ଉଚ୍ଚ ସ୍ଥାନଟି ଦେଖାଯାଉଛି । ନାସାର ଗହ୍ୱର ନାହିଁ । କର୍ଣ୍ଣ ଚିତ୍ରରେ ନାହିଁ କି ପ୍ରତିମାରେ ନାହିଁ । ହାତର ଆକାର ମଧ୍ୟ ଖଣ୍ଡିତ ।

## (୮) ଆଦିବାସୀ ଦେବତା

### (କ) ଶବରୀ ନାରାୟଣ

ଓଡ଼ିଶାର ବିଭିନ୍ନ ପାର୍ବତ୍ୟ ଅଞ୍ଚଳରେ ଓ ମଧ୍ୟପ୍ରଦେଶରେ ବହୁ ଶବର (ସଉରା) ଦେଖାଯାଆନ୍ତି । ସେମାନଙ୍କର ଉତ୍ପତ୍ତି ସମ୍ବନ୍ଧରେ ବହୁ କିମ୍ବଦନ୍ତୀ ଶୁଣାଯାଏ । କୃଷ୍ଣଙ୍କୁ ଯେଉଁ ଶବର ଶରରେ ମାରିଥିଲା, ସେ ହେଉଛନ୍ତି ଶବର ଜାତିର ଆଦିପୁରୁଷ ବୋଲି ଗୋଟିଏ କିମ୍ବଦନ୍ତୀରୁ ଜଣାଯାଏ । ଆଉ ଗୋଟିଏ କିମ୍ବଦନ୍ତୀ ଅନୁସାରେ ପୁରୀର ସର୍ବ-ପ୍ରଥମ ବଡ଼ଦେଉଳ ତିଆରି କରିବା ସମୟରେ ପୁରୀକୁ ପଥର ବୋହିବା ନେବା ପାଇଁ ଏବଂ ରଥକୁ ଟାଣିବା ପାଇଁ ସେମାନଙ୍କର ଉତ୍ପତ୍ତି ହୋଇଛି । ଆଉ ଏକ କିମ୍ବଦନ୍ତୀରୁ ଜଣାଯାଏ ଯେ ସେମାନଙ୍କର ଜଣେ ଭିଲ ପୂର୍ବପୁରୁଷଙ୍କ ନାମ ଶବର । ସେ ମଧ୍ୟ-ପ୍ରଦେଶର ସେଓରିନାରାୟଣ ନିକଟସ୍ଥ କରୋଡ଼ରେ ନିବାସ କରିଥିଲେ । କରୋଡ଼ରେ ଜଗନ୍ନାଥଙ୍କର ଆବିର୍ଭାବ ହୋଇଥିଲା ଏବଂ ଶବର ତାଙ୍କୁ ପୂଜା କରୁଥିଲା । ଓଡ଼ିଶାର ରାଜା ଏକ ମନ୍ଦିର ନିର୍ମାଣ କରି ସେଠାରେ ଜଗନ୍ନାଥଙ୍କୁ ପୂଜା କରିବା ଇଚ୍ଛା କଲେ । ସେଓରିନାରାୟଣରୁ ଜଗନ୍ନାଥଙ୍କୁ ନେବା ପାଇଁ ଜଣେ ବ୍ରାହ୍ମଣଙ୍କୁ ପଠାଇଲେ । ବ୍ରାହ୍ମଣ ଶବର ପାଖରେ ଉପସ୍ଥିତ ହେଲେ । କିନ୍ତୁ ଶବର ଛଡ଼ା ଆଉ କେହି ଜଗନ୍ନାଥଙ୍କ ଅବସ୍ଥାନ ଜାଣି ନ ଥିଲେ । ବ୍ରାହ୍ମଣ ବହୁ ଚେଷ୍ଟା କରି ଜଗନ୍ନାଥଙ୍କୁ ଦେଖି ପାରିଲେ ନାହିଁ । ସେ ଶବର ଝିଅକୁ ମଧ୍ୟ ବିଭାହେଲେ । ଶବର ବହୁ ଅନୁନୟ ବିନୟ ପରେ ରାଜି ହେଲେ । ବ୍ରାହ୍ମଣର ଆଖିକୁ ବାନ୍ଧି ଜଗନ୍ନାଥଙ୍କ ପାଖକୁ ନେବା ସ୍ଥିର ହେଲା । ବ୍ରାହ୍ମଣ କାନରେ ସୋରିଷ ବାନ୍ଧିଲେ । ଶବର ସଙ୍ଗେ ଗଲାବେଳେ କାନରୁ ସୋରିଷ ବିଞ୍ଚି ବିଞ୍ଚି ଗଲେ । ଜଗନ୍ନାଥଙ୍କୁ ଦେଖିଲେ । କିଛିଦିନ ପରେ ସୋରିଷ ଗଛ ହେଲା । ସେ ଦିନେ ଗଛଗୁଡ଼ିକୁ ଦେଖି ଦେଖି ନିଜେ ଏକୁଟିଆ ଜଗନ୍ନାଥଙ୍କଠାରେ ପହଞ୍ଚିଲେ ଏବଂ

ପୁରୀକୁ ଯିବାକୁ ଠାକୁରଙ୍କୁ ପ୍ରାର୍ଥନା କଲେ । ଠାକୁର ରାଜି ହେଲେ । ଠାକୁର ଦାରୁରୂପ ଧାରଣ କରି ମହାନଦୀ ପାଣିରେ ଭାସି ଭାସି ପୁରୀରେ ପହଞ୍ଚିଲେ । ସେହି ଦାରୁରୁ ମୂର୍ତ୍ତିଗଠନ କରି ଓଡ଼ିଶାରାଜା ଦେଉଳରେ ପୂଜା କଲେ । ବୃଦ୍ଧ ଶବରକୁ ସନ୍ତୁଷ୍ଟ କରିବା ପାଇଁ ଭଗବାନ କହିଲେ, "ତୁମର ନାମ ସହିତ ମୋର ନାମ ଯୋଡ଼ାଯାଇ ପୂର୍ବ ଆସ୍ଥାନର ନାମ ହେବ ।" ସେହିଦିନୁ ଶବର ରହିବା ସ୍ଥାନର ନାମ ଶବରୀ ନାରାୟଣ (ବା ସେଓରି ନାରାୟଣ) ହେଲା । (୧୭)

ସମ୍ବଲପୁରର ଶବରମାନଙ୍କ ମତରେ କଲାପିଠିଆମାନେ ଏମାନଙ୍କର ଏକ ଶାଖା । ଏହି କଲାପିଠିଆମାନେ ପୁରୀର ଆଖପାଖ ଅଞ୍ଚଳରେ ନିବାସ କରନ୍ତି ଏବଂ ରଥଟଣା ପାଇଁ ସେମାନଙ୍କୁ ନିଯୁକ୍ତ କରାଯାଏ । ସେମାନେ ମଧ୍ୟ ସେଥିପାଇଁ ଜାଗିରି ଭୋଗ କରୁଛନ୍ତି । କଲାପିଠିଆମାନେ ଶବରମାନଙ୍କ ଭିତରେ ସର୍ବୋଚ୍ଚ ଶ୍ରେଣୀର ବୋଲି ପରିଚିତ । ଏମାନେ କୁକୁଡ଼ା କିମ୍ବା ଅନ୍ୟ କୌଣସି "ଅଖାଦ୍ୟ" ଖାଆନ୍ତି ନାହିଁ ।

(ଖ) ପେନୁ—

ଓଡ଼ିଶାର ଆଦିବାସୀ ଜାତି କନ୍ଧମାନଙ୍କ ଭିତରେ ତାନା (ଧରଣୀ), ପେନୁ (ଦେବତା) ଓ ଧରଣୀଦେବୀଙ୍କ ସ୍ଥାନ ଅତି ଉଚ୍ଚ । ଧରଣୀଙ୍କୁ ସ୍ତ୍ରୀ ରୂପରେ କଳ୍ପନା କରାଯାଇଛି । ଗ୍ରାମରେ ଏକ ସୀମାରେ ଗଛ ମୂଳରେ ତିନୋଟି ପଥର ଏକଧାଡ଼ିରେ ପାଖ ପାଖ ହୋଇ ଥୁଆ ହୋଇଥାଏ । ଉପରେ ଆଉ ଏକ ପଥର ଘୃତ ଭଳି ପଡ଼ିଥାଏ । ଏହି ତିନୋଟି ପଥର ତିନି ଦେବତାଙ୍କୁ ବୁଝାଏ । ମଝି ପଥରଟି ତାନାପେନୁ (ଧରଣୀଦେବୀ) । ତାନାପେନୁଙ୍କ ଡାହାଣକୁ ଜାକେରିପେନୁ । ଏ ଧରଣୀଙ୍କ ସ୍ୱାମୀ । ବାମକୁ ମୁର୍ବିପେନୁ । ମୁର୍ବି ତାନାଙ୍କ ଭାଇ । ତାନା ସୃଷ୍ଟି ଆରମ୍ଭ ହେବାପରେ ଜନସମାଜ ଉପରେ ରାଗି ଯାଇ ବହୁ ଅତ୍ୟାଚାର କଲେ । ଲୋକେ ତାନାଙ୍କ ଭାଇ ମୁର୍ବିଙ୍କୁ ପ୍ରାର୍ଥନା କରିବାରୁ ତାନାଙ୍କ ଏହି ଅତ୍ୟାଚାରରୁ ଲୋକେ ରକ୍ଷା ପାଇଲେ ।

କାଳକ୍ରମେ ଏହି ଜାକେରିପେନୁ, ତାନାପେନୁ ଓ ମୁର୍ବିପେନୁ ହୁଏତ ବଳଭଦ୍ର, ସୁଭଦ୍ରା ଓ ଜଗନ୍ନାଥ ରୂପରେ ପୂଜା ପାଇଥିବେ ଏବଂ ଉପରର ପଥରଟି ସୁଦର୍ଶନ ରୂପରେ ପରିଚିତ ହୋଇଥିବେ । ସୁଭଦ୍ରାଙ୍କୁ ଭୈରବୀ ରୂପରେ ଲୋକେ ବରାବର କଳ୍ପନା କରି ଆସିଛନ୍ତି । ଜଗନ୍ନାଥ ସୁଭଦ୍ରାଙ୍କ ଭାଇ । ବଳଭଦ୍ର ଭୈରବ ଏହି

୧୭ Russel's Tribes and Castes in Central Provinces.

ଧାରଣା ମଧ୍ୟ ଅଛି । ଅତଏବ କନ୍ଧମାନଙ୍କ ଦେବତା ଜାକେଶ୍ୱପେନ୍, ତାନାପେନ୍, ମୁର୍ବପେନ୍—ବଳଭଦ୍ର, ସୁଭଦ୍ରା, ଜଗନ୍ନାଥ ଏହି ତ୍ରିମୂର୍ତ୍ତିରେ ରୂପାନ୍ତରିତ ହୋଇଛନ୍ତି ବୋଲି ଭାବିବା ମଧ୍ୟ ଅସଙ୍ଗତ ହେବ ନାହିଁ ।

ଜଗନ୍ନାଥଙ୍କୁ ପୂର୍ବେ ଶବରମାନେ ପୂଜା କରୁଥିଲେ । ଶାରଳାଦାସ ସ୍ୱକୃତ ମହାଭାରତରେ (୯୭) ଜଗନ୍ନାଥଙ୍କୁ ଶବରୀନାରାୟଣ ବୋଲି କହିଛନ୍ତି । ଏହି ଶବରୀନାରାୟଣ ଐଶ୍ୱର୍ଯ୍ୟ ଭୋଗ ଇଚ୍ଛା କରି ନିଜେ ଚତୁର୍ଦ୍ଧାମୂର୍ତ୍ତି ରୂପେ ପ୍ରକାଶ ପାଇଲେ । ଅଥର୍ବ ବେଦର "ଆଦୌ ଯଦ୍‌ଦାରୁ ପ୍ଲବତେ ସିନ୍ଧୋଃପାରେ ଅପୁରୁଷମ୍', ଇତ୍ୟାଦି ବାକ୍ୟରେ (୯୮) ଦାରୁ ଶବର ବ୍ୟାଖ୍ୟାରେ ପ୍ରାଚୀନ ଟୀକାକାରମାନେ ପୁରୁଷୋତ୍ତମର ଜଗନ୍ନାଥଙ୍କୁ ଲକ୍ଷ୍ୟ କରିଅଛନ୍ତି । ଅଥର୍ବବେଦ ସମୟକୁ ବା ଖ୍ରୀଷ୍ଟପୂର୍ବ ପ୍ରାୟ ଚାରି ପାଞ୍ଚହଜାର ବର୍ଷ ପୂର୍ବରୁ ପୁରୁଷୋତ୍ତମରେ କେବଳ ଜଗନ୍ନାଥ ଏକା ପୂଜା ପାଉଥିଲେ କି ତ୍ରିମୂର୍ତ୍ତି ପୂଜା ପାଉଥିଲେ ତାହା ଏହି ଶ୍ଳୋକରୁ ଜଣାଯାଉ ନାହିଁ । ଶବରମାନେ ବିଷ୍ଣୁ ପ୍ରତିମା ନୀଳମାଧବଙ୍କୁ ପୂଜା କରୁଥିବା ପୁରାଣମାନଙ୍କରେ ଲିଖିତ ଅଛି, କିନ୍ତୁ ଏହି ସମ୍ପର୍କୀୟ ପୁରାଣର ଅଂଶରେ ଶବରମାନେ ଅନାର୍ଯ୍ୟ ଥିବା କିମ୍ବା ସେମାନଙ୍କର ଦେବତା ଅନାର୍ଯ୍ୟ ଥିବା ଜଣାଯାଉ ନାହିଁ । ଆଦିମ ଅଧିବାସୀ ଶବରମାନେ ଯେଉଁ ଦେବତାଙ୍କୁ ନୀଳାଚଳରେ ପୂଜା କରୁଥିଲେ ସେ ଅନ୍ତର୍ଦ୍ଧାନ ହୋଇଗଲେ ଏବଂ ଚତୁର୍ଦ୍ଧାମୂର୍ତ୍ତି ରୂପରେ ପ୍ରକାଶ ପାଇଲେ । ଏଥିରୁ ଅନୁମାନ ହେଉଛି ଯେ ପୂର୍ବେ ଶବରମାନେ ଯେଉଁ ମୂର୍ତ୍ତିକୁ ପୂଜା କରୁଥିଲେ ସେ ପ୍ରକୃତରେ ବିଷ୍ଣୁମୂର୍ତ୍ତି ନୁହନ୍ତି, ଅନ୍ୟ କୌଣସି ମୂର୍ତ୍ତି ଏବଂ ପରବର୍ତ୍ତୀ ସମୟରେ ଏହି ମୂର୍ତ୍ତି ବିଷ୍ଣୁଭକ୍ତ ଇନ୍ଦ୍ରଦ୍ୟୁମ୍ନଙ୍କ ପ୍ରାର୍ଥନା ଯୋଗୁଁ ବିଷ୍ଣୁମୂର୍ତ୍ତି ରୂପରେ ପ୍ରକାଶ ପାଇଲେ । ଶିବ ଆରାଧନା ଭାରତବର୍ଷରେ ଅତି ପ୍ରାଚୀନ ଥିବାର ପ୍ରମାଣ ହରପା ମହେଞ୍ଜୋଦାରୋ ଶିବଲିଙ୍ଗର ଆବିଷ୍କାରରୁ ଜଣାଯାଏ । ଶବରମାନେ ଶିବଲିଙ୍ଗର ଉପାସକ ଥିବା ମଧ୍ୟ ଜଣାଯାଏ । ଏଥିରୁ ଅନୁମାନ କରାଯାଇପାରେ ଯେ ପୂର୍ବେ ଏଠାରେ ଶବରମାନେ ଶିବଙ୍କୁ ଆରାଧନା କରୁଥିଲେ କିନ୍ତୁ ପରେ ଇନ୍ଦ୍ରଦ୍ୟୁମ୍ନଙ୍କ ଦ୍ୱାରା ଏହି ଶିବକ୍ଷେତ୍ର ବୈଷ୍ଣବ କ୍ଷେତ୍ରରେ ପରିଣତ ହେଲା । ପ୍ରାୟ ଦୁଇହଜାର ବର୍ଷତଳେ ରଚିତ ବୃହତ୍ ନାରଦୀୟ ପୁରାଣ ଓ ବ୍ରହ୍ମ ପୁରାଣରେ ଜଗନ୍ନାଥଙ୍କୁ ବୈଷ୍ଣବମୂର୍ତ୍ତି ରୂପରେ ବର୍ଣ୍ଣନା କରାଯାଇ ଥିବାରୁ ମନେ ହୁଏ ଯେ ସେ ସମୟକୁ ଶବରମାନଙ୍କ ନୀଳାଚଳର ଦେବତା ବୈଷ୍ଣବ ଦେବତା ହୋଇ ଯାଇଲେଣି ।

---

୯୭ ଶାରଳାଦାସ-ମହାଭାରତ ।

୯୮ ଅଥର୍ବବେଦ ।

ପୁଣି ତନ୍ତ୍ରମାନଙ୍କରେ ଜଗନ୍ନାଥ ଓ ବିମଳାଙ୍କ ନାମ ଉଲ୍ଲେଖ ଅଛି । ଖ୍ରୀଷ୍ଟୀୟ ପ୍ରଥମରୁ ଦ୍ୱିତୀୟ ଶତାବ୍ଦୀ ପୂର୍ବରୁ ରଚିତ ତନ୍ତ୍ରଯାମଳରେ ଜଗନ୍ନାଥଙ୍କ ଉଲ୍ଲେଖ ଅଛି । ( ୯୯ )

ଭାରତେ ଚୋତ୍କଲେ ଦେଶେ ଭୂସ୍ୱର୍ଗେ ପୁରୁଷୋତ୍ତମେ
ଦାରୁରୂପୀ ଜଗନ୍ନାଥ ଭକ୍ତାନାମଭୟପ୍ରଦଂ । ( ୧୦୦ )

ଖ୍ରୀଷ୍ଟୀୟ ଦ୍ୱିତୀୟ ବା ତୃତୀୟ ଶତାବ୍ଦୀରେ ରଚିତ ମତ୍ସ୍ୟପୁରାଣରେ ମଧ୍ୟ ପୁରୁଷୋତ୍ତମ ଓ ବିମଳାଙ୍କ ନାମ ପୁରୁଷୋତ୍ତମ କ୍ଷେତ୍ର ସମ୍ପର୍କରେ ଅଛି ।

ଗୟାୟାଂ ମଙ୍ଗଳା ନାମ ବିମଳା ପୁରୁଷୋତ୍ତମେ
ମୋକର୍ଣ୍ଣେ ଭଦ୍ରକର୍ଣ୍ଣିକା ତଥାଚ ପୁରୁଷୋତ୍ତମଃ ।

ଏଥିରୁ ଜଣାଯାଉଛି ଯେ ପୁରୁଷୋତ୍ତମ ଏକ ପ୍ରଧାନ ପ୍ରାଚୀନ ତନ୍ତ୍ରପୀଠ; ବିମଳା ପୀଠ ଦେବୀ । ବର୍ତ୍ତମାନ ସୁଦ୍ଧା ବିମଳାଙ୍କ ଆଧିପତ୍ୟ ଦେଖାଯାଏ । ଜଗନ୍ନାଥଙ୍କ ଅନ୍ନଭୋଗ ପରେ ସର୍ବପ୍ରଥମେ ବିମଳାଙ୍କୁ ସମର୍ପଣ ହୁଏ । ଏବଂ ସମର୍ପଣ ନ ହେଲେ ଏହା ମହାପ୍ରସାଦ ହୋଇପାରିବ ନାହିଁ । ବିମଳାଙ୍କୁ ଭୈରବୀ ଓ ଜଗନ୍ନାଥଙ୍କୁ ଭୈରବ ରୂପରେ ଅନ୍ୟ ତନ୍ତ୍ରଶାସ୍ତ୍ରରେ ବର୍ଣ୍ଣନା କରାଯାଇଛି ।

ଉତ୍କଳେ ନାଭିଦେଶଶ୍ଚ ବିରଜାକ୍ଷେତ୍ର ମୁଚ୍ୟତେ
ବିମଳା ସ ମହାଦେବୀ ଜଗନ୍ନାଥସ୍ତୁ ଭୈରବ ।

ବଳରାମ ଶିବ ରୂପରେ ବହୁ ପ୍ରାଚୀନ କାଳରୁ ପୂଜା ପାଇ ଆସୁଅଛନ୍ତି । ସୁଭଦ୍ରାଙ୍କୁ ଭଦ୍ରକାଳି ବୋଲି ସ୍କନ୍ଦ ପୁରାଣରେ କୁହାଯାଇଛି ।

ଜୟ ଭଦ୍ରେ ସୁଭଦ୍ରେ ତ୍ୱଂ ସର୍ବେଷାଂ ଭଦ୍ରଦାୟିନୀ
ଭଦ୍ରା ଭଦ୍ରସ୍ୱରୂପାଂ ତ୍ୱଂ ଭଦ୍ରକାଳି ନମୋସ୍ତୁତେ । ( ୧୦୧ )
ତ୍ୱଂ ମାତା ଜଗତାଂ ଦେବୀ ! ପିତା ନାରାୟଣ ହ୍ୱ ସଃ
ସ୍ତ୍ରୀ ରୂପଂ ସର୍ବମେବ ତ୍ୱଂ ପୁଂରୂପେ ଜଗଦୀଶ୍ୱରଃ । ( ୧୦୨ )

---

୯୯ ତନ୍ତ୍ରଯାମଳ
୧୦୦ ମତ୍ସ୍ୟପୁରାଣ
୧୦୧ ସ୍କନ୍ଦପୁରାଣ : ଉତ୍କଳଖଣ୍ଡ : ୨୭ଅ, ୪୭ ଶ୍ଳୋକ, ୫୮ ଶ୍ଳୋକ,
୧୦୨ ଏକନ

ପୂର୍ବର ଶବର ଦେବତା ଶିବ ପୂଜା ପାଉଥିବା ବେଳେ ବିମଳା ନ ଥିଲେ । ପରେ ତନ୍ତ୍ର ପ୍ରଭାବରୁ ବିମଳା ସ୍ଥାନ ପାଇଲେ । ନୀଳାଚଳ ବୈଷ୍ଣବ କ୍ଷେତ୍ର ହେବା ପୂର୍ବରୁ ଶୈବ କ୍ଷେତ୍ର ରୂପରେ ବିଖ୍ୟାତ ଥିଲା, ଏପରି ଅନୁମାନ କରିବା ପାଇଁ କାରଣ ମଧ୍ୟ ଅଛି । ବ୍ରହ୍ମପୁରାଣର ଉତ୍କଳଖଣ୍ଡରେ ଲେଖାଅଛି, କାଳେ ଶୈବ ଓ ବୈଷ୍ଣବ-ମାନଙ୍କ ଭିତରେ ଏହି କ୍ଷେତ୍ର ସମ୍ବନ୍ଧରେ ବିବାଦ ଉପୁଜିବ, ଏହି ହେତୁ ଏହାକୁ ବୈଷ୍ଣବ କ୍ଷେତ୍ର ବୋଲି ଘୋଷଣା କରାଗଲା । ( ୧୦୩ )

ନୀଳାଚଳ ବୈଷ୍ଣବ କ୍ଷେତ୍ରରେ କେବେ ପରିଣତ ହେଲା ତାହା କହି ହେଉ ନାହିଁ । ତେବେ ଅଥର୍ବବେଦ ରଚନା ସମୟକୁ ବିଷ୍ଣୁ ମୂର୍ତ୍ତି ପୁରୁଷୋତ୍ତମ ସେଠାରେ ପୂଜା ପାଇ ସାରିଲେଣି । ପୂର୍ବ ଆରାଧନାର ସମନ୍ୱୟ ରକ୍ଷା କରିବା ନିମନ୍ତେ ଶିବ ଓ ଦୁର୍ଗାଙ୍କୁ ବିଷ୍ଣୁଙ୍କ ସହ ଏକପୀଠ ଉପରେ ଆରାଧନା କରାଗଲା । କିନ୍ତୁ ବିଷ୍ଣୁ-ଜଗନ୍ନାଥଙ୍କର ପ୍ରାଧାନ୍ୟ ହିଁ ଘୋଷିତ ହେଲା ।

ଏହି କ୍ଷେତ୍ର ବୈଷ୍ଣବ କ୍ଷେତ୍ରରେ ପରିଣତ ହେବା ସମୟରେ ଚତୁର୍ଦ୍ଧାମୂର୍ତ୍ତିଙ୍କର କଳ୍ପନା ହୋଇଥିଲା; ଏବଂ ଏକ ପୀଠରେ ବଳଭଦ୍ର, ସୁଭଦ୍ରା, ଜଗନ୍ନାଥ ଓ ସୁଦର୍ଶନ ପୂଜା ପାଇଲେ । କୃଷ୍ଣ ଉପାସନା ପ୍ରଭାବରେ ବଳଭଦ୍ରଙ୍କୁ ଜଗନ୍ନାଥଙ୍କ ବଡ଼ଭାଇ, ସୁଭଦ୍ରାଙ୍କୁ ଭଉଣୀ ଓ ସୁଦର୍ଶନଙ୍କୁ ଆୟୁଧ ରୂପରେ ଘୋଷଣା କରାଗଲା । କିନ୍ତୁ ଶୈବମାନେ ବଳଭଦ୍ରଙ୍କୁ ଶିବ ରୂପରେ, ଶାକ୍ତମାନେ ସୁଭଦ୍ରାଙ୍କୁ ଭଦ୍ରକାଳୀ ରୂପରେ ଓ ବୈଷ୍ଣବମାନେ ଜଗନ୍ନାଥଙ୍କୁ ବିଷ୍ଣୁ ରୂପରେ ଦେଖି ଆସୁଅଛନ୍ତି ।

---

୧୦୩ ବ୍ରହ୍ମପୁରାଣ: ୫୬ ଅଧ୍ୟାୟ ।

## ଷଷ୍ଠ ପରିଚ୍ଛେଦ

## ଗୀତାର ପୁରୁଷୋତ୍ତମ ହିଁ ଜଗନ୍ନାଥ

'ପୁରୁଷୋତ୍ତମ କ୍ଷେତ୍ର' ନାମଟି ପୁରୁଷୋତ୍ତମଙ୍କ ନାମାନୁସାରେ ହୋଇଛି । ପୁରୁଷୋତ୍ତମ ହିଁ ଜଗନ୍ନାଥ ।

ପୁରୁଷୋତ୍ତମଙ୍କ ପରିଚୟ ବେଦରେ ଓ ଭଗବତ୍ ଗୀତାରେ ଦିଆଯାଇଛି । (୧୦୪) ଗୀତାର 'ପୁରୁଷୋତ୍ତମ' ଯୋଗରେ କୁହାଯାଇଛି—

ଦ୍ୱାବିମୌ ପୁରୁଷୌ ଲୋକେ କ୍ଷରଶ୍ଚାକ୍ଷର ଏବଚ ।
କ୍ଷରଃ ସର୍ବାଣୀ ଭୂତାନି କୂଟସ୍ଥୋକ୍ଷର ଉଚ୍ୟତେ । ( ୧୬ )

ଉତ୍ତମ ପୁରୁଷସ୍ତ୍ୱନ୍ୟଃ ପରମାତ୍ମେତ୍ୟୁଦାହୃତଃ
ଯୋ ଲୋକତ୍ରୟମାବିଶ୍ୟ ବିଭର୍ତ୍ତ୍ୟବ୍ୟୟ ଈଶ୍ୱର । ( ୧୭ )

ଯସ୍ମାତ୍ କ୍ଷରମତୀତୋଽହମକ୍ଷରାଦପି ଚୋତ୍ତମଃ
ଅତୋଽସ୍ମି ଲୋକେ ବେଦେ ଚ ପ୍ରଥିତଃ ପୁରୁଷୋତ୍ତମଃ । (୧୮)

ଯୋ ମାମେବ ମସମ୍ମୂଢ଼ୋ ଜାନାତି ପୁରୁଷୋତ୍ତମମ୍
ସ ସର୍ବବିଦ୍ ଭଜତି ମାଂ ସର୍ବଭାବେନ ଭାରତ ।। ୧୯ ( ୧୦୫ )

"ଏହି ସଂସାରରେ କ୍ଷର ଓ ଅକ୍ଷର ଏହି ଦୁଇଟି ପୁରୁଷ ନାମ ଖ୍ୟାତ। ( ସର୍ବଭୂତ ବ୍ରହ୍ମାଦି ସକଳ ଶରୀର ) କୁ-କ୍ଷର (ବିନାଶଶୀଳ ) ଏବଂ କୂଟସ୍ଥ ଅର୍ଥାତ୍

---

୧୦୪ । ଶ୍ରୀମଦ୍ ଭଗବଦ୍‌ଗୀତା—ପୁରୁଷୋତ୍ତମ ଯୋଗ ( ୧୫ଶ ଅଧ୍ୟାୟ ୧ )
୧୦୫ । ଶ୍ରୀ ଭଗବଦ୍‌ଗୀତା । ୧୫ଶ ଅ ।

ଚେତନରୂପ ଭୋକ୍ତାଙ୍କୁ ଅକ୍ଷର ବୋଲଯାଇଥାଏ । ୧୬ । ଏହା ଦୁଇଟି ( କ୍ଷର ଓ ଅକ୍ଷର )ଠାରୁ ଅନ୍ୟ ଯେ ଉତ୍ତମ ପୁରୁଷ ସେ କେବଳ ପରମାତ୍ମା ଏବଂ ସେ ( ସ୍ୱୀୟ ମାୟାଶକ୍ତି ଦ୍ୱାରା ) ଈଶ୍ୱର ( ନିୟନ୍ତା ) ଏବଂ ଅବ୍ୟୟ ( ନିର୍ବିକାର ) ଥାଇ ତ୍ରିଲୋକରେ ଅଧିଷ୍ଠିତ ହୋଇ ତାହାକୁ ଧାରଣ କରିଅଛନ୍ତି । ୧୭ । ମୁଁ କ୍ଷର ( ଅର୍ଥାତ୍ ବିନାଶୀ ଜଡ଼ ବର୍ଗ )ର ଅତୀତାନ୍ତ ଏବଂ ଅକ୍ଷର ( ଅର୍ଥାତ୍ ଅବିନାଶୀ ଚୈତନ୍ୟ )ଠାରୁ ଉତ୍କୃଷ୍ଟ । ଏହି ହେତୁ ଲୋକସମୂହରେ ଏବଂ ବେଦରେ ମୁଁ ପୁରୁଷୋତ୍ତମ ବୋଲି ବିଖ୍ୟାତ । ୧୮ । ହେ ଭାରତ ! ଯେଉଁ ସାଧକମାନେ ଏହି-ରୂପେ ମୋହାଦି-ଶୂନ୍ୟ ହୋଇ ମୋତେ ପୁରୁଷୋତ୍ତମ ରୂପେ ( ମୋଠାରୁ ଉତ୍କୃଷ୍ଟ ପୁରୁଷ ଆଉ କେହି ନାହିଁ ) ଅବଗତ ହୁଅନ୍ତି, ସେହି ସର୍ବଜ୍ଞସାଧକ ମୋତେ ସବୁପ୍ରକାରେ ଭଜନ କରନ୍ତି । ୧୯ ।

ଏହି ଶ୍ଳୋକମାନଙ୍କର ବ୍ୟାଖ୍ୟାରେ ବଳଦେବ ବିଦ୍ୟାଭୂଷଣ ଶ୍ରୁତିରୁ ଓ ସ୍ମୃତିରୁ "ପୁରୁଷୋତ୍ତମ" ସମ୍ବନ୍ଧରେ ଏହି କେତୋଟି ଉକ୍ତି ଉଦ୍ଧାର କରିଛନ୍ତି —

ଶ୍ରୁତିରେ—

"ତାବଦେଷ ସଂପ୍ରସାଦୋଽସ୍ମାଚ୍ଛରୀରାତ୍ ସମୁତ୍ଥାୟ ପରଂ ଜ୍ୟୋତିରୂପଂ
ସଂପଦ୍ୟ ସ୍ୱେନ ରୂପେଣାଭିନିଷ୍ପଦ୍ୟତେ ସେ ଉତ୍ତମଃ ପୁରୁଷଃ ।"

ପୁଣି ସ୍ମୃତିରେ—

"ତୈର୍ବିଜ୍ଞାପିତ କାର୍ଯ୍ୟସ୍ତୁ ଭଗବାନ୍ ପୁରୁଷୋତ୍ତମଃ
ଅବତୀର୍ଣ୍ଣୋ ମହାଯୋଗୀ ସତ୍ୟାବତ୍ୟା ପରାଶରାଦ ।"

ରାମାନୁଜସ୍ୱାମୀ ( ଅନ୍ୟ ପ୍ରମାଣ ଭିତରେ ) ଉଦ୍ଧାର କରିଛନ୍ତି—

ଅଂଶାବତାରଂ ପୁରୁଷୋତ୍ତମସ୍ୟ
ହ୍ୟନାଦିମଧ୍ୟାନ୍ତମଜସ୍ୟ ବିଷ୍ଣୋ । (୧୦୬)

ମଧୁସୂଦନ ସରସ୍ୱତୀ ( ଅନ୍ୟ ପ୍ରମାଣ ଭିତରେ ) ଉଦ୍ଧାର କରିଛନ୍ତି—

ହରିରେକଃ ପୁରୁଷୋତ୍ତମଃ ସ୍ମୃତଃ ।

ବୈଷ୍ଣବମାନଙ୍କ ମତରେ ଶ୍ରୀକୃଷ୍ଣ ଅର୍ଜୁନଙ୍କୁ ନିଜେ ପୁରୁଷୋତ୍ତମ ବୋଲି କହିଥିବାରୁ କୃଷ୍ଣ ସ୍ୱୟଂ ପରଂବ୍ରହ୍ମ ଏବଂ ଅନ୍ୟ ଅବତାରାଦି ଏହାଙ୍କର ଅଂଶ ମାତ୍ର । ଭାଗବତର—

---

୧୦୬ । ବଳଦେବ ବିଦ୍ୟାଭୂଷଣଙ୍କ ଗୀତାଭାଷ୍ୟ ।

"ଏତେଚାଂଶ କଳାଃ ପୁଂସଃ କୃଷ୍ଣସ୍ତୁ ଭଗବାନ ସ୍ୱୟଂ ।"

( ଅର୍ଥାତ୍ ଏହିମାନେ ସମସ୍ତେ ପରମ ପୁରୁଷଙ୍କର ଅଂଶମାତ୍ର । କେବଳ କୃଷ୍ଣ ହିଁ ପୂର୍ଣ୍ଣରୂପୀ ସ୍ୱୟଂ ଭଗବାନ ) ଏହି ବାକ୍ୟ ପୂର୍ବୋକ୍ତ ମତକୁ ସମର୍ଥନ କରୁଛି । ଜଗନ୍ନାଥ କୃଷ୍ଣ ଥିବାର ବୈଷ୍ଣବମାନେ ଯେଉଁ ଅନୁମାନ କରନ୍ତି, ତାହା ଏହି ପୁରୁଷୋତ୍ତମତତ୍ତ୍ୱ ଧାରଣାରୁ ହୋଇଛି ବୋଲିବାକୁ ହେବ । ( ୧୦୭ )

କିନ୍ତୁ ଉତ୍କଳର ପଞ୍ଚସଖାଦି ବୈଷ୍ଣବମାନେ ଏହି ମତର ସମର୍ଥକ ନୁହନ୍ତି । ଏମାନଙ୍କ ମତରେ ଜଗନ୍ନାଥ ହିଁ ପୂର୍ଣ୍ଣ ଭଗବାନ ପୁରୁଷୋତ୍ତମ । ସେ ସବୁ ଅବତାରର ମୂଳ । ତାଙ୍କଠାରୁ ରାମକୃଷ୍ଣାଦି ଅବତାର ହୋଇ ପୁଣି ତାଙ୍କର ଦେହରେ ଲୀନ ହୋଇଛନ୍ତି ।

ଯେହ୍ନେ ଗୋଲକ ନିତ୍ୟସ୍ଥଳ । ସେହିଟି ଗିରି ନୀଳାଚଳ ॥
କୋଟିଏ ଯୁଗ ଯେବେ ଯାଇ । ଏଥିର ଲୀଳା ନ ସରଇ ॥
ଶ୍ରୀଜଗନ୍ନାଥେ ଷୋଳକଳା । ଏଥୁ କଳାଏ ନଇବଳା ॥
କଳାକେ ଷୋଳକଳା ହୋଇ । ଯେଣୁ ଜନ୍ମିଲେ ଗୋପେ ଯାଇ (୧୦୮)॥

ଶଙ୍କରାଚାର୍ଯ୍ୟଙ୍କ ମତରେ ଶୈବମାନଙ୍କ ପ୍ରଭୁ ଶିବ ହିଁ ପୁରୁଷୋତ୍ତମ ।

ରାମାନୁଜସ୍ୱାମୀଙ୍କ ମତରେ ପରମବ୍ରହ୍ମ ନାରାୟଣ ବିଷ୍ଣୁ ହିଁ ପୁରୁଷୋତ୍ତମ । ଶିବ ପ୍ରଭୃତି ପୁରୁଷୋତ୍ତମ ବା ପରମବ୍ରହ୍ମ ନୁହନ୍ତି । ଏହି ବ୍ରହ୍ମ "ଭୋକ୍ତୃ ଭୋଗ୍ୟରୂପେଣ ଅବସ୍ଥିତୟୋଃ ସର୍ବାବସ୍ଥିତୟୋଶ୍ଚିଦ ଅଚତୋ ପରମପୁରୁଷ-ଶରୀରୟୋ ତନ୍ନ୍ୟମତ୍ୱେନ ତଦପୃଥକସ୍ଥିତଂ ପରମ ପୁରୁଷସ୍ୟ ରୂପତମ୍ ।" ଏହି ପୁରୁଷୋତ୍ତମ ନିଜ ଇଚ୍ଛାନୁସାରେ ( କର୍ମ ପ୍ରୟୋଜନାନୁସାରେ ନୁହେଁ ) ମୁଖ୍ୟ, ଗୌଣ୍ୟ ପୂର୍ଣ୍ଣ ଓ ଅଂଶ ଭେଦରେ ଅବତାର ଗ୍ରହଣ କରନ୍ତି । ରାମାନୁଜଙ୍କ ମତରେ ଦଶ ଅବତାର ଯଥା—ମତ୍ସ୍ୟ, କୂର୍ମ, ନୃସିଂହ, ବରାହ, ବାମନ, ପରଶୁରାମ, ଶ୍ରୀରାମ, ବଳଭଦ୍ର, ଶ୍ରୀକୃଷ୍ଣ, କଲ୍କି । ଏହି ଅବତାରମାନଙ୍କ ଭିତରେ ବୌଦ୍ଧଅବତାରର ନାମ ନାହିଁ । ଭାଗବତର ୧ମ ସ୍କନ୍ଧ ୩ୟ ଅଧ୍ୟାୟରେ ବୌଦ୍ଧ ଅବତାର ବିଷ୍ଣୁଙ୍କର ୨୧ଶ ଅବତାର ବୋଲି ଲେଖାଅଛି । ମାତାଙ୍କ ନାମ ଅଞ୍ଜନା । କୀଟକ ବା ବର୍ତ୍ତମାନର ଗୟା ତାଙ୍କର ଜନ୍ମସ୍ଥାନ । ( ୧୦୯ )

---

୧୦୭ । ମଧୁସୂଦନ ସରସ୍ୱତୀଙ୍କ—ଗୀତାର ଟୀକା ।
୧୦୮ । ଶ୍ରୀଜଗନ୍ନାଥ ଚରିତାମୃତ ।
୧୦୯ । ଶ୍ରୀମଦ୍ ଭାଗବତ, ପ୍ରଥମ ସ୍କନ୍ଧ, ୩ୟ ଅଧ୍ୟାୟ ।

ପୁରୁଷୋତ୍ତମ କ୍ଷେତ୍ରରେ ଯେଉଁ ନ୍ୟଗ୍ରୋଧ ବୃକ୍ଷ ଅଛି, ତାହା ପ୍ରଳୟ କାଳରେ ସୁଦ୍ଧା ଅକ୍ଷୟ ଭାବରେ ବିଦ୍ୟମାନ ଥିଲା । ଏହି ବଟ ଯୋଜନବିସ୍ତୃତ ଓ ବିଷ୍ଣୁଙ୍କର କଳେବରସ୍ୱରୂପ । ଏହି ବୃକ୍ଷ ସହିତ ଗୀତାର ପୁରୁଷୋତ୍ତମ ଯୋଗ ଅଧ୍ୟାୟରେ ( ୧୧୦ ) ବର୍ଣ୍ଣିତ ଅଶ୍ୱତ୍ଥ ବୃକ୍ଷର ଅବସ୍ଥିତିଗତ ସାଦୃଶ୍ୟ ନ ଥିଲେ ମଧ୍ୟ ଏହି ବୃକ୍ଷ ଯେ ସଂସାରରୂପୀ ବୃକ୍ଷ, ଏଥିରୁ ଏହାର ଆଭାସ ମିଳେ ।

ଇନ୍ଦ୍ରଦ୍ୟୁମ୍ନ ଯେଉଁ ମହାତରୁକୁ ମହୋଦଧିକୂଳରେ ଲଟିଥିବାର ଦେଖିଲେ ତାର ବର୍ଣ୍ଣନା "ଉତ୍କଳଖଣ୍ଡ"ରେ ଏପରି ଦିଆଯାଇଛି । ( ୧୧୦ )

ଦେବୋଦ୍ଦୃଷ୍ଟୋ ମହାବୃକ୍ଷସ୍ତଟଭୂମୌ ମହୋଦଧେଃ
ପ୍ରବିଷ୍ଟାଗ୍ରସମୁଦ୍ରାନ୍ତଃ କଲ୍ଲୋଳପ୍ଲୁତମୂଳକଃ ।। ୭ ।

"ହେ ପ୍ରଭୁ ! ମହାସାଗର ତଟରେ ଗୋଟିଏ ମହାତରୁ ଦେଖାଯାଇଛି । ତାର ଉପରଭାଗ ସାଗର ଭିତରେ ଓ ନିମ୍ନଭାଗ ଜଳସ୍ରୋତରେ ଭାସୁଛି......" ଏହି ମହାତରୁକୁ ଛେଦନ କରି ବ୍ରହ୍ମଙ୍କ ବିଗ୍ରହ ଗଠିତ ହୋଇଛି ଏବଂ ଏହି ତରୁ ଯେ ସ୍ୱୟଂ ଭଗବାନ ତାହା ମଧ୍ୟ କୁହାଯାଇଛି ।

ଗୀତାର ପୁରୁଷୋତ୍ତମ ଯୋଗର ଅଶ୍ୱତ୍ଥ ବୃକ୍ଷର ବର୍ଣ୍ଣନା ସହିତ ଏହାର ଟିକିଏ ମେଳ ଦେଖାଯାଉଛି । ଗୀତାରେ ଅଛି ( ୧୧୧ )

ଊର୍ଦ୍ଧ୍ୱମୂଳମଧଃଶାଖା ମଶ୍ୱତ୍ଥଂ ପ୍ରାହୁରବ୍ୟୟମ୍
ଛନ୍ଦାଂସି ଯସ୍ୟ ପର୍ଣ୍ଣାନି ଯସ୍ତଂ ବେଦ ସ ବେଦବିତ୍ । ୧ ।

ଭଗବାନ କହୁଛନ୍ତି—( ଶ୍ରୁତି ) ଊର୍ଦ୍ଧ୍ୱମୂଳ ଓ ଅଧଃଶାଖା ଏହି ରୂପ ସଂସାରକୁ ଅବ୍ୟୟ ଅଶ୍ୱତ୍ଥ ବୃକ୍ଷ ବୋଲି କହିଅଛନ୍ତି । ବେଦସମୂହ ତାର ପତ୍ରାବଳୀ, ଏହି ଅଶ୍ୱତ୍ଥ ବୃକ୍ଷକୁ ଯେ ଜାଣେ, ସେ ବେଦବିତ୍ ।

ସଂସାରପ୍ରପଞ୍ଚ ବୃକ୍ଷ ହେଲା ଅଶ୍ୱତ୍ଥ ( ଯାହା କାଲି ପର୍ଯ୍ୟନ୍ତ ଥାଇପାରେ ନ ଥାଇ ପାରେ ) ବୃକ୍ଷ । ଏହାର ମୂଳ ସର୍ବୋତ୍ତମ ସୂକ୍ଷ୍ମ ପୁରୁଷୋତ୍ତମ । ବ୍ରହ୍ମାଦି ତାର ଅଂଶ ଶାଖାସ୍ଥାନୀୟ । ଏହି ସଂସାରବୃକ୍ଷ ପୁଣି ବିନଶ୍ୱରଃ, ପୁଣି ଅବ୍ୟୟ ( ଅବିଚ୍ଛେଦ ପ୍ରବାହ ) ।

---

୧୧୦ । ଶ୍ରୀମଦ୍ ଭାଗବଦ୍‌ଗୀତା । ପୁରୁଷୋତ୍ତମ ଯୋଗ । ୧୫ ଅ ।
୧୧୦ । ସ୍କନ୍ଦପୁରାଣ । ଉତ୍କଳଖଣ୍ଡ । ୧୮ଅ । ୭ମ ଶ୍ଳୋକ ।
୧୧୧ । ଶ୍ରୀମଦ୍ ଭାଗବଦ୍‌ଗୀତା । ୧୫ ଶଅ ।

ଇନ୍ଦ୍ରଦ୍ୟୁମ୍ନ ଯେଉଁ ମହାତରୁ ମହୋଦଧିରେ ଦର୍ଶନ କଲେ, ତାର ଅବସ୍ଥିତ ଏହି ସଂସାରପ୍ରପଞ୍ଚ ବୃକ୍ଷ ସ୍ୱରୂପ । ମହାତରୁର ମୂଳ ଜଳସ୍ରୋତରେ ଭାସମାନ ହୋଇଥିବାରୁ ଊର୍ଦ୍ଧ୍ୱମୂଳ ଏବଂ ଶାଖାସମୂହ ମହୋଦଧିରେ ନିମଗ୍ନ ହୋଇଥିବାରୁ ଅଧଃଶାଖ ହୋଇଛି । ପୁଣି ଏହି ବୃକ୍ଷର ଚାରୋଟି ଶାଖାଯୁକ୍ତ ହୋଇଛି ।

ତଥାଦ୍ଦର୍ଶ ତଂ ବୃକ୍ଷଂ ଚତୁଃଶାଖଂ ଚତୁର୍ଭୁଜମ୍
ସ୍ୱକଂ ଶ୍ରମଂ ମନ୍ୟମାନଃ ସୁଫଳଂ ନୃପସତ୍ତମଃ । ୨୧ । ( ୧୧୨ )

( ଇନ୍ଦ୍ରଦ୍ୟୁମ୍ନ ସ୍ୱପ୍ନାବସ୍ଥାରେ ପୁରୁଷୋତ୍ତମଙ୍କର ଚତୁର୍ହସ୍ତମୂର୍ତ୍ତି ଦର୍ଶନ କରି-ଥିଲେ ) ଏବେ ଚାରିଶାଖାଯୁକ୍ତ ତରୁବରକୁ ଦେଖିଲେ । ଶ୍ରମ ସାର୍ଥକ ବୋଧ କଲେ

ଏହି ବୃକ୍ଷର ଚାରିଶାଖା ଭଗବାନଙ୍କର ଚତୁର୍ବାହୁ, ଏ ଚାରିଶାଖା ମୂର୍ତ୍ତିଚତୁଷ୍ଟୟ ଓ ଚତୁର୍ବ୍ୟୂହ, ଏହି ଚାରିଶାଖା ଚାରି ବେଦ ମଧ୍ୟ ବୋଲାଯାଇପାରେ ।

କଠୋପନିଷଦରେ ଏହି ଶ୍ଳୋକର ଅନୁରୂପ ବାକ୍ୟ ଅଛି—
ଊର୍ଦ୍ଧ୍ୱମୂଳୋଽବାକ୍‌ଶାଖ ଏଷୋଽଶ୍ୱତ୍ଥ ସନାତନଃ
ତଦେବ ଶୁକ୍ରଂ ତଦ୍‌ବ୍ରହ୍ମ ତଦେବାମୃତମୁଚ୍ୟତେ । ( ୧୧୩ )

"ଏହି ସଂସାରପ୍ରପଞ୍ଚବୃକ୍ଷ ରୂପ ଅଶ୍ୱତ୍ଥ ବୃକ୍ଷ ଊର୍ଦ୍ଧ୍ୱମୂଳ । ଏହାର ଶାଖାସମୂହ ନିମ୍ନଗାମୀ । ଏହା ସନାତନ । ଯେ ଏହାର ମୂଳ ସେ ଉଜ୍ଜ୍ୱଳ, ବ୍ରହ୍ମ ଏବଂ ଅମୃତରୂପୀ ।"

ଅନ୍ୟାନ୍ୟ ଶାସ୍ତ୍ରମାନଙ୍କରେ ମଧ୍ୟ ସଂସାରବୃକ୍ଷର ବର୍ଣ୍ଣନା ଥିବା ବାକ୍ୟ ଗୀତା ବାକ୍ୟର ବ୍ୟାଖ୍ୟାରେ ଶ୍ରୀମତ୍‌ ଶଙ୍କରାଚାର୍ଯ୍ୟ ଉଦ୍ଧାର କରିଛନ୍ତି—

ଅବ୍ୟକ୍ତ ମୂଳପ୍ରଭବସ୍ତସ୍ୟୈବାନୁ ଗ୍ରହୋଥିତଃ
ବୁଦ୍ଧିସ୍କନ୍ଧମୟଶ୍ଚୈବ ଇନ୍ଦ୍ରିୟାନ୍ତର କୋଟରଃ ।
ମହାଭୂତ ପ୍ରଶାଖଶ୍ଚ ବିଷୟୈଃ ପତ୍ରବାଂସ୍ତଥା
ଧର୍ମାଧର୍ମ ସୁପୁଷ୍ପଶ୍ଚ ସୁଖଦୁଃଖ ଫଳୋଦୟଃ ।
ଆଜୀବ୍ୟଃ ସର୍ବଭୂତାନାଂ ବ୍ରହ୍ମବୃକ୍ଷଃ ସନାତନଃ

୧୧୨ । ସ୍କନ୍ଦପୁରାଣ । ଉତ୍କଳ ଖଣ୍ଡ । ୧୮ଶ ଅ ।
୧୧୩ । କଠୋପନିଷଦ । ୨ୟ ଅଧ୍ୟାୟ । ୩ୟ ବଲ୍ଲୀ ।

ଏତଦ୍‌ବ୍ରହ୍ମବନଞ୍ଚୈବ ବ୍ରହ୍ମାଚରତି ନିତ୍ୟଶଃ ।
ଏତତ୍ ଛିତ୍ୱାଚ ଭିତ୍ୱାଚ ଜ୍ଞାନେନ ପରମାସିନା
ତତଶ୍ଚାତ୍ମରତିଂ ପ୍ରାପ୍ୟ ଯସ୍ମାନ୍ନାବର୍ତ୍ତତେ ପୁନଃ । (୧୧୪)

ଭାବାର୍ଥ—"ମାୟୋପାଧିକ ବ୍ରହ୍ମରୂପ କାରଣଠାରୁ ଏହି ସଂସାରବୃକ୍ଷ ଉଦ୍ଭୂତ ଏବଂ ସେହି ମୂଳଭୂତ ଅବ୍ୟକ୍ତଙ୍କର ଅନୁଗ୍ରହରେ ସମ୍ବର୍ଦ୍ଧିତ । ବୃକ୍ଷର ସ୍କନ୍ଧଦେଶଠାରୁ ଯେଉଁଭଳି ଶାଖାସମୂହ ଜନ୍ମ ହୁଏ ସେହିପରି ଏହି ସଂସାରବୃକ୍ଷର ମଧ୍ୟ ବୁଦ୍ଧିରୂପ ସ୍କନ୍ଧଠାରୁ ବିବିଧ ପରିଣାମ ଦେଖାଯାଏ । ଇନ୍ଦ୍ରିୟସମୂହର ଛିଦ୍ର ଏହି ବୃକ୍ଷର କୋଟର । ଆକାଶାଦି ମହାଭୂତ ଏହାର ବିବିଧ ଶାଖା । ପରମାତ୍ମକର୍ତ୍ତୃକ ଅଧିଷ୍ଠିତ ଏହି ବୃକ୍ଷକୁ ଆତ୍ମଜ୍ଞାନ ବ୍ୟତିରେକେ ଛେଦନ କରାଯାଏ ନାହିଁ । ଏହା ହିଁ ଜୀବରୂପୀ ବ୍ରହ୍ମଙ୍କର ଭୋଗ୍ୟବସ୍ତୁ, ବ୍ରହ୍ମ ସ୍ୱୟଂ ଏଥିରେ ନିର୍ଲିପ୍ତ ସାକ୍ଷୀ ପରି ଅବସ୍ଥିତ । ଏହି ସଂସାର ଅରଣ୍ୟକୁ ଜ୍ଞାନରୂପ ଅସି ଦ୍ୱାରା ଛେଦନ କରି ଆତ୍ମଗତି ଲାଭ କରାଯାଏ । ଏହି ରୂପରେ ଜୀବ ପୁନରାବର୍ତ୍ତିତ ହୁଏ ନାହିଁ ।"

ଏହିଠାରେ ଯେଉଁ ବୃକ୍ଷର ବିଷୟ ଦିଆଯାଇଛି, ଇନ୍ଦ୍ରଦ୍ୟୁମ୍ନ ସେହିଭଳି ଏକ ବୃକ୍ଷ ଦେଖିଥିଲେ । ଗୀତୋକ୍ତ ବୃକ୍ଷ ସମ୍ବନ୍ଧୀୟ ଶ୍ଳୋକର ଟୀକାରେ ବଳଦେବ ବିଦ୍ୟାଭୂଷଣ ଲେଖିଛନ୍ତି—"ବୈରାଗ୍ୟରୂପ କୁଠାରାଘାତରେ ଛିନ୍ନ କରାଯାଏ ବୋଲି ସଂସାରକୁ ବୃକ୍ଷରୂପରେ ଉଲ୍ଲେଖ କରିବା ସୁସଙ୍ଗତ ଓ ସାର୍ଥକ ହୋଇଛି । ଏହି ସଂସାରରୂପ ବିଶାଳ ବିଟପୀ କେବଳ ବୈରାଗ୍ୟରୂପ ଶସ୍ତ୍ରାଘାତରେ ନଷ୍ଟ ହୋଇଥାଏ । ଏହି ବୃକ୍ଷର ମୂଳ ଊର୍ଦ୍ଧ୍ୱରେ ସତ୍ୟଲୋକରେ ପ୍ରତିଷ୍ଠିତ ଏବଂ ଏହାର ଇତ୍ୟାଦି ।" (୧୧୫)

ଇନ୍ଦ୍ରଦ୍ୟୁମ୍ନ ନିର୍ମଳ ଭକ୍ତ ସଂସାରରୂପୀ ବୃକ୍ଷକୁ ଛେଦନ କରି ଭଗବାନଙ୍କ ମୂର୍ତ୍ତି ଗଠନ କରିଥିଲେ ଅର୍ଥାତ୍ ଭଗବାନଙ୍କୁ ଲାଭ କରିଥିଲେ । ଏହି ମହାତରୁ ହିଁ ଭଗବାନ । ଅର୍ଥାତ୍ ଜଗତ ହିଁ ବ୍ରହ୍ମ ।

ଜଗନ୍ନାଥଙ୍କୁ ଓଡ଼ିଶାର ବହୁ ପ୍ରାଚୀନ କବି ଅଲେଖ, ଶୂନ୍ୟରୂପୀ, ନିର୍ଗୁଣବ୍ରହ୍ମ ପ୍ରଭୃତି ଆଖ୍ୟା ପ୍ରଦାନ କରିଛନ୍ତି । ନିର୍ଗୁଣ, ନିରାକାର, ନିର୍ବିଶେଷ ବ୍ରହ୍ମଙ୍କ ଉପାସନା କଲେ ମୁକ୍ତିଲାଭ ହେବ ବୋଲି ଏହି କବିମାନେ ବ୍ୟକ୍ତ କରି ଯାଇଛନ୍ତି । ପୁରୁଷୋତ୍ତମ ଜଗନ୍ନାଥଙ୍କୁ ସାକାର ଓ ନିରାକାର, ସଗୁଣ ଓ ନିର୍ଗୁଣ, ସବିଶେଷ ଓ ନିର୍ବିଶେଷ—

---

୧୧୪। ଶ୍ରୀମଦ୍ ଭଗବଦ୍‌ଗୀତା । ଶ୍ରୀ ଶଙ୍କରାଚାର୍ଯ୍ୟ ଭାଷ୍ୟ । ୧୫ଶ ଅ ।
୧୧୫। ଗୀତାଭାଷ୍ୟ । ବଳଦେବ ବିଦ୍ୟାଭୂଷଣ । ୧୫ ଅ । ୨ମ ଶ୍ଳୋକ ।

ଏ ସକଳ ପ୍ରକାର ଆରାଧନା କରାଯାଏ । ସଗୁଣ ସାକାର ଓ ନିର୍ଗୁଣ ନିରାକାର ଉପାସନା ଭିତରେ ସଗୁଣ ସାକାର ଉପାସନାର ଫଳ ଅତିଶୀଘ୍ର ଓ ଅନାୟାସଲଭ୍ୟ ଏବଂ ନିରାକାର ଉପାସନା କ୍ଳେଶଦାୟକ ଓ ଫଳପ୍ରାପ୍ତି ବିଳମ୍ବରେ ହୁଏ ବୋଲି ଭଗବଦ୍‌ଗୀତାରେ ( ୧୧୭ ) ଶ୍ରୀକୃଷ୍ଣ କହିଛନ୍ତି ।

କ୍ଳେଶୋଽଧିକତରସ୍ତେଷାମବ୍ୟକ୍ତାସକ୍ତଚେତସାମ୍
ଅବ୍ୟକ୍ତା ହି ଗତିର୍ଦୁଃଖଂ ଦେହବଦ୍ଭିରବାପ୍ୟତେ । ୧୫ । ୧୨ଅ.

"ସେହି ଅବ୍ୟକ୍ତ ( ନିର୍ଗୁଣବ୍ରହ୍ମ )ଙ୍କ ଠାରେ ଆସକ୍ତଚିତ୍ତ ଲୋକମାନଙ୍କର ଅଧିକତର ( ସାକାର ଉପାସକମାନଙ୍କ ତୁଳନାରେ ) କ୍ଳେଶ ହୁଏ, କାରଣ ଦେହୀମାନେ ଅବ୍ୟକ୍ତ ବିଷୟରେ ନିଷ୍ଠା ଦୁଃଖରେ ପ୍ରାପ୍ତ ହୁଅନ୍ତି ।"

କିନ୍ତୁ ନିରାକାର ଉପାସନା ଅଧିକତର କ୍ଳେଶଦାୟକ ହେଲେ ମଧ୍ୟ ଜ୍ଞାନୀ ତତ୍ତ୍ୱଦର୍ଶୀମାନଙ୍କ ପକ୍ଷରେ ଶ୍ରେୟସ୍କର । ଏହି ପନ୍ଥା ଉତ୍କଳର ବହୁ ସାଧକ ଅବଲମ୍ବନ କରିଛନ୍ତି ।

ଗୀତାରେ ନିର୍ଗୁଣ ବ୍ରହ୍ମଙ୍କୁ ପରିଚିତ କରାଇବା ପାଇଁ ସାତୋଟି ବିଶେଷଣର ପ୍ରୟୋଗ କରିଛନ୍ତି । ଯଥା—ଅକ୍ଷର, ଅନିର୍ଦ୍ଦେଶ୍ୟ, ଅବ୍ୟକ୍ତ, ସର୍ବବ୍ୟାପୀ, ଅଚିନ୍ତ୍ୟ, କୂଟସ୍ଥ, ଅଚଳ, ଧ୍ରୁବ ।

ଅକ୍ଷର—କ୍ଷରଣରହିତ । ଚ୍ୟୁତି, ବିକୃତି, ପରିଣାମ ପ୍ରଭୃତି ବିପର୍ଯ୍ୟୟ ରହିତ । ନିରୁପାଧିକ, ନିର୍ଗୁଣ ବ୍ରହ୍ମକୁ ବୁଝାଇବା ପାଇଁ ଶାସ୍ତ୍ରମାନଙ୍କରେ ଅକ୍ଷରବ୍ରହ୍ମ ବୋଲି କୁହାଯାଇଥାଏ ।

ଅନିର୍ଦ୍ଦେଶ୍ୟ—ଯାହାର ନିର୍ଦ୍ଦେଶକ ବା ନିରୂପକ କୌଣସି ସଂଜ୍ଞା ବା ଲକ୍ଷଣ ନାହିଁ ।
ଅବ୍ୟକ୍ତ—ମୂର୍ତ୍ତିପରେ ବ୍ୟକ୍ତ ନୁହନ୍ତି । ସ୍ୱରୂପ ବର୍ଣ୍ଣନା କରିବା ଅସମ୍ଭବ ।
ସର୍ବବ୍ୟାପୀ—"ସର୍ବତ୍ରଗ"ଅପରିଚ୍ଛିନ୍ନ ପରମାତ୍ମା । "ସବୁ ପାତ୍ରରେ ଆକାଶ ଯେପରି ସ୍ୱତଃ ପ୍ରବିଷ୍ଟ ହୋଇଥାଏ, ତଦ୍ରୂପ ସେହି ପରମାତ୍ମା ସର୍ବବ୍ୟାପୀ ।

ଅଚିନ୍ତ୍ୟ—ବାକ୍ୟ ଦ୍ୱାରା ମନଦ୍ୱାରା ଯାହାକୁ ଚିନ୍ତା କରାଯାଇପାରେ ନାହିଁ, ସର୍ବ ଇନ୍ଦ୍ରିୟର ଅଗୋଚର ଯୋଗୁଁ ଅଚିନ୍ତ୍ୟ । (ମନୁଷ୍ୟର ଚିନ୍ତାଶକ୍ତି ସସୀମ) "ଯତୋ ବାଚୋ ନିବର୍ତ୍ତନ୍ତେ ଅପ୍ରାପ୍ୟ ମନସା ସହ ।", (ତୈତ୍ତିରୀୟ

---

୧୧୭। ଶ୍ରୀମଦ୍ ଭଗବଦ୍ ଗୀତା । ୫ମ ଅଧ୍ୟାୟ । ୧୨ ଶ୍ଳୋକ ।

ଉପନିଷଦ ୬ଷ୍ଠ ବଲ୍ଲୀ ) ଅର୍ଥାତ୍ ଯାହାଙ୍କୁ ପ୍ରାପ୍ତ ନ ହୋଇ ମନ ସହିତ ବାକ୍ୟ ନିବୃତ୍ତ ହୋଇଥାଏ ।

କୂଟସ୍ଥ—"ଦୈବୀ ହ୍ୟେଷା ଗୁଣମୟୀ ମମ ମାୟା ଦୁରତ୍ୟୟା ।" ଭଗବାନଙ୍କର ଏହି ମାୟା ହିଁ କୂଟ । ଏହି କୂଟରେ ଯେ ଅଧ୍ୟକ୍ଷ ବା ସାକ୍ଷୀ ରୂପରେ ଅବସ୍ଥିତ ସେ କୂଟସ୍ଥ ।

ଅଚଳ—ସର୍ବପ୍ରକାର ବିକାର ରହିତ । ମାୟାତୀତ । ସମଭାବରେ ବିରାଜମାନ ।
ଧ୍ରୁବ—ସ୍ଥିର ।

ଏହି ନିରାକାର ନିର୍ଗୁଣ ଅକ୍ଷର ବ୍ରହ୍ମଙ୍କୁ ବୃହଦାରଣ୍ୟକୋପନିଷଦରେ ଏହିପରି ଅର୍ଥ କରାଯାଇଛି—"ଏତଦ୍ୱୈ ତଦକ୍ଷରଂ ଗାର୍ଗି ! ବ୍ରାହ୍ମଣା ଅଭିବଦନ୍ତ୍ୟସ୍ଥୂଲମନଣ୍ୱହ୍ରସ୍ୱମଦୀର୍ଘଂ ।" ଅର୍ଥାତ୍ ହେ ଗାର୍ଗି ! ତୁମର ଜିଜ୍ଞାସିତ ପଦାର୍ଥ ହିଁ ଅକ୍ଷର । ବ୍ରହ୍ମଜ୍ଞମାନେ କହନ୍ତି ଯେ ସେ ସ୍ଥୂଳ ବା ଅଣୁ ନୁହନ୍ତି । ହ୍ରସ୍ୱ ବା ଦୀର୍ଘ ନୁହନ୍ତି । ( ୧୧୭ ) ।

ଅନାତ୍ମ ବସ୍ତୁର ଅଦର୍ଶନ ହିଁ ବ୍ରହ୍ମୋପାସନା । "ଏହି ଜଗତରେ ଏକମାତ୍ର ବ୍ରହ୍ମ ହିଁ ସଦ୍‌ବସ୍ତୁ । ସେ ଆତ୍ମ ସ୍ୱରୂପ । ତଦ୍‌ବ୍ୟତୀତ ଆଉସବୁ ଅସତ୍ ଓ ଅନାତ୍ମା । ଜ୍ଞାନର ପରିପାକରେ ଆତ୍ମାନାତ୍ମ ବିବେକସହକାରେ ଅସତ୍ ଓ ଅନାତ୍ମା ବସ୍ତୁର ଅଦର୍ଶନ ଅର୍ଥାତ୍ ତତ୍‌ତତ୍ ଅସତ୍ୟ ବ୍ୟାପାରଠାରୁ ଦର୍ଶନାଦି ଇନ୍ଦ୍ରିୟାଦିର ନିରୋଧ ହେଲେ ବ୍ରହ୍ମୋପାସନା ହୁଏ ।" ଏହି ବ୍ରହ୍ମ ଅକ୍ଷର, ଅନିର୍ଦ୍ଦେଶ୍ୟ ଓ ଅବ୍ୟକ୍ତ । ଏହି ବ୍ରହ୍ମର ଆକାର ନିରୂପିତ ହୋଇପାରୁ ନ ଥିବାରୁ ଏବଂ ସେ ଅଚିନ୍ତ୍ୟ ଥିବାରୁ ସେ ଶୂନ୍ୟ ବା ଶୂନ୍ୟକଳ୍ପ ବସ୍ତୁ ସ୍ୱରୂପ ବିଦ୍ୟମାନ । ସେ ଶୂନ୍ୟ ହେଲେ ମଧ୍ୟ ସର୍ବଗତ । ସର୍ବବ୍ୟାପୀ । ଏହି ବ୍ରହ୍ମୋପାସନା କାର୍ଯ୍ୟରେ ସର୍ବେନ୍ଦ୍ରିୟର ନିରୋଧ ଏକାନ୍ତ ଆବଶ୍ୟକ । ଶ୍ରୁତିରେ ଅଛି—

ଯଦା ପଞ୍ଚାବତିଷ୍ଠନ୍ତେ ଜ୍ଞାନାନି ମନସା ସହ
ବୁଦ୍ଧିଶ୍ଚ ନ ବିଚେଷ୍ଟତେ ତମାହୁଃ ପରମାଂ ଗତିଂ । (୧୧୮) ।

ଅର୍ଥାତ୍ ମନୁଷ୍ୟର ପଞ୍ଚଭୂତାତ୍ମକ ଦେହ ଅଥବା ପଞ୍ଚେନ୍ଦ୍ରିୟ, ଜ୍ଞାନ, ମନ ଓ ଅବିଚଳିତ ବୁଦ୍ଧି ସହିତ ଅବସ୍ଥିତ ହେଲେ ପରମାଗତି ବୋଲାଯାଏ ।

---

୧୧୭ । ବୃହଦାରଣ୍ୟକୋପନିଷଦ । ୮ମ ବ୍ରାହ୍ମଣ ।
୧୧୮ । କଠୋପନିଷଦ । ୬ଷ୍ଠ ବଲ୍ଲୀ ।

ଏହି ନିର୍ଗୁଣ ଉପାସନାର ଅଦ୍ୱୈତବାଦୀମାନେ ପକ୍ଷପାତୀ । କିନ୍ତୁ ଦ୍ୱୈତବାଦ ସମର୍ଥକମାନଙ୍କ ମଧ୍ୟରୁ କେହି କେହି ଏହାର ବିରୋଧୀ । ଶିବବିଶିଷ୍ଟାଦ୍ୱୈତବାଦୀ ଶ୍ରୀକଣ୍ଠାଚାର୍ଯ୍ୟ ବ୍ରହ୍ମାବା ଶିବଙ୍କୁ ସଗୁଣ ଓ ସବିଶେଷ ବୋଲି ପ୍ରତିପାଦନ କରିଅଛନ୍ତି । ଭେଦାଭେଦବାଦୀ ଭାସ୍କରାଚାର୍ଯ୍ୟଙ୍କ ମତରେ ବ୍ରହ୍ମ ସଗୁଣ ଓ ନିରାକାର । ଦ୍ୱୈତାଦ୍ୱୈତବାଦୀ ନିମ୍ବାର୍କାଚାର୍ଯ୍ୟଙ୍କ ମତରେ ବ୍ରହ୍ମ ସଗୁଣ ଓ ନିର୍ଗୁଣ । ବିଶିଷ୍ଟାଦ୍ୱୈତବାଦୀ ରାମାନୁଜାଚାର୍ଯ୍ୟଙ୍କ ମତରେ ବ୍ରହ୍ମ ସଗୁଣ ଓ ସବିଶେଷ । ଶୁଦ୍ଧାଦ୍ୱୈତବାଦୀ ବଲ୍ଲଭାଚାର୍ଯ୍ୟଙ୍କ ମତରେ ବ୍ରହ୍ମ ସାକାର ଓ ନିର୍ଗୁଣ ( ଅର୍ଥାତ୍ ପ୍ରାକୃତିକ ଗୁଣର ଅତୀତ ) ।

# ସପ୍ତମ ପରିଚ୍ଛେଦ

## ଜଗନ୍ନାଥ ଓ ବୁଦ୍ଧ

ବୁଦ୍ଧଦେବଙ୍କୁ ବିଷ୍ଣୁଙ୍କ ନବମ ଅବତାର ରୂପେ ବହୁକାଳରୁ ହିନ୍ଦୁମାନେ ଗ୍ରହଣ କରି ଆସିଛନ୍ତି । କାଶ୍ମୀରର 'ନୀଳମତ ପୁରାଣ'ରେ ବୁଦ୍ଧଙ୍କୁ ବିଷ୍ଣୁଙ୍କ ଅବତାର ବୋଲି କୁହାଯାଇଛି । ଡାକ୍ତର ବୁଲର ( DR. BUHLER )ଙ୍କ ମତରେ ନୀଳମତ ପୁରାଣ ଖ୍ରୀଷ୍ଟୀୟ ଷଷ୍ଠ କିମ୍ବା ସପ୍ତମ ଶତାବ୍ଦୀ ପୂର୍ବର ଲେଖା ନୁହେଁ । ( ୧୧୯ )

କ୍ଷେମେନ୍ଦ୍ର ବୁଦ୍ଧଙ୍କୁ ବିଷ୍ଣୁଙ୍କ ଅବତାର ଥିବା ଲେଖାଅଛି, ଏହି ଗ୍ରନ୍ଥଟି ଖ୍ରୀଷ୍ଟୀୟ ଏକାଦଶ ଶତାବ୍ଦୀରେ ଲେଖାହୋଇଥିବା ଡାକ୍ତର ବୁଲରଙ୍କ ମତ । ( ୧୨୦ )

ଦ୍ୱାଦଶ ଶତାବ୍ଦୀରେ ଉତ୍କଳର ବିଖ୍ୟାତ ବୈଷ୍ଣବକବି ଜୟଦେବ 'ଗୀତ-ଗୋବିନ୍ଦ' ମହାକାବ୍ୟରେ ବୁଦ୍ଧଦେବଙ୍କୁ ବିଷ୍ଣୁଙ୍କ ନବମ ଅବତାର ରୂପରେ କଳ୍ପନା କରି ପ୍ରାର୍ଥନା କରିଛନ୍ତି । ( ୧୨୧ )

"ଗୟା ମାହାତ୍ମ୍ୟ"ରେ ବୁଦ୍ଧଙ୍କୁ ବିଷ୍ଣୁଙ୍କ ଅବତାର ବୋଲି କୁହାଯାଇଛି । (୧୨୨)

'ବିଷ୍ଣୁପୁରାଣ'ରେ ବୁଦ୍ଧଦେବଙ୍କୁ ବିଷ୍ଣୁଙ୍କ ଅବତାର ରୂପରେ ବର୍ଣ୍ଣନା କରାଯାଇଛି । ( ୧୨୩ )

---

୧୧୯ । ନୀଳମତ ପୁରାଣ

୧୨୦ । ଦଶାବତାର ଚରିତ । କ୍ଷେମେନ୍ଦ୍ର ।

୧୨୧ । ଗୀତଗୋବିନ୍ଦ ।

୧୨୨ । ଗୟା ମାହାତ୍ମ୍ୟ ।

୧୨୩ । ମହାଭାରତ-ସାରଳା ଦାସ, ବିରାଟ ପର୍ବ ।

ବୌଦ୍ଧ ମହାଯାନପନ୍ଥୀମାନେ ବୁଦ୍ଧ ମହାଶୂନ୍ୟ ଓ ନିରାକାର ଥିବା ପ୍ରତିପାଦନ କରିଅଛନ୍ତି । ପୁରୁଷୋତ୍ତମ ନିରାକାର ଥିବାରୁ କେତେକ ଓଡ଼ିଆ କବି ତାଙ୍କୁ ବୁଦ୍ଧଦେବ ବୋଲି ମଧ୍ୟ କହିଛନ୍ତି ! କିନ୍ତୁ ନିରାକାର ପୁରୁଷୋତ୍ତମ ଜଗନ୍ନାଥଙ୍କୁ ସର୍ବ ଅବତାରର ମୂଳ (ବା ମହାଶୂନ୍ୟ) ବୋଲି ମଧ୍ୟ ଏହି କବିମାନେ ଲେଖିଥିବା ଜଣାଯାଏ । ବୌଦ୍ଧ ବିଜ୍ଞାନାତ୍ମବାଦକୁ ହିନ୍ଦୁଦର୍ଶନର ଏକ ଅଂଶ ବୋଲି ପରବର୍ତ୍ତୀ ସମୟରେ ହିନ୍ଦୁ ଦାର୍ଶନିକମାନେ ଗ୍ରହଣ କରିଥିବାରୁ ବୁଦ୍ଧଦେବଙ୍କୁ ବିଷ୍ଣୁଙ୍କ ଅବତାର ଭିତରେ ଗ୍ରହଣ କରିବା ସହଜ ହୋଇଛି ।

ସାରଳାଦାସଙ୍କ ମହାଭାରତରେ ଜଗନ୍ନାଥଙ୍କୁ ବୌଦ୍ଧାବତାର ବୋଲି ବହୁସ୍ଥାନରେ ଲେଖାଅଛି ।

୧ । ମହୋଦଧି ତୀରେ ବଡ଼ଦେଉଳରେ ବସି
ଦରିଦ୍ରମାନଙ୍କ ଦୁଃଖ ଦେଉଅଛ ଧ୍ୱଂସି ।
ବଉଦ୍ଧ ରୂପରେ କଳିଯୁଗେ ଅବତାର
ହୋଇଣ ପାପୀଜନଙ୍କୁ କରୁଛ ଉଦ୍ଧାର । (୧୨୩)

୨ । ବନ୍ଦଇ ଶ୍ରୀ ଜଗନ୍ନାଥ ବଇକୁଣ୍ଠବାସୀ
ବୌଦ୍ଧରୂପେ ନୀଳଗିରି ଶିଖେ ଅଛ ବସି । (୧୨୪)

୩ । ପୁରୁଷୋତ୍ତମ ନଗର ମହୋଦଧି ତୀରେ
ନୀଳଗିରି ପରବତ ଅଛି ତା ସ୍ଥାନରେ । × ×
ଦେଉଳ ଭିତରେ ସିଂହାସନେ ବିଜେ ହୋଇ
ବଉଦ୍ଧ ରୂପରେ ପ୍ରଭୁ ଶଙ୍ଖଚକ୍ର ବହି । (୧୨୫)

ଅଚ୍ୟୁତାନନ୍ଦ, ଦିବାକର, ବଳରାମ, ଶିଖରଦାସ ପ୍ରଭୃତି କବିମାନେ ମଧ୍ୟ ଜଗନ୍ନାଥଙ୍କୁ ବୌଦ୍ଧାବତାର ରୂପେ ବର୍ଣ୍ଣନା କରିଛନ୍ତି ।

ଦ୍ୱାରକାଦାସ ୧୩ଶ ସ୍କନ୍ଧ ଭାଗବତରେ ବୌଦ୍ଧାବତାର ସ୍ଥାନରେ ଜଗନ୍ନାଥଙ୍କୁ ଲେଖିଛନ୍ତି । ମତ୍ସ୍ୟକୂର୍ମାଦି ଅଷ୍ଟ ଅବତାର ପରେ ଜଗନ୍ନାଥଙ୍କ ନାମ ଲେଖା ହୋଇଛି । ତା ପରେ କଳ୍କୀ ଅବତାର ଦିଆଯାଇଛି । (୧୨୬)

---

୧୨୪ । ମହାଭାରତ-ସାରଳାଦାସ । ମଧ୍ୟ ପର୍ବ

୧୨୫ । ଏଜନ । ସଭା ପର୍ବ

୧୨୬ । ତ୍ରୟୋଦଶ ସ୍କନ୍ଧ ଭାଗବତ । ଦ୍ୱାରକା ଦାସ ।

କେ କୃଷ୍ଣ ନାମ ହରି ମନ୍ତ୍ରେ । ଜପନ୍ତି ଏହି କର୍ମସୂତ୍ରେ ॥
ଯେ ଜଗନ୍ନାଥ ନାମ ଟାଣ । ଏମନ୍ତେ କରନ୍ତି ଭଜନ ॥
କେହୁ କଳଙ୍କୀ ମନ୍ତ୍ର ପାଇଁ । ଜପଇ ମନ୍ତ୍ରନ୍ୟାସ ଦେଇ ॥ ୭ମ ଅ:

"ବୁଦ୍ଧଗୟା" ( ଇଂ: ଗ୍ରନ୍ଥ )ରେ ଡକ୍ଟର ରାଜେନ୍ଦ୍ରଲାଲ ମିତ୍ର ଦର୍ଶାଇଛନ୍ତି ଯେ ( ୧୬୭ ) ଖ୍ରୀଷ୍ଟୀୟ ଚତୁର୍ଥ ଶତାବ୍ଦୀର ଆରମ୍ଭରୁ ହିନ୍ଦୁମାନେ ବୁଦ୍ଧଙ୍କୁ ଅବତାର-ରୂପେ ଗ୍ରହଣ କରିଛନ୍ତି । ମିତ୍ରଙ୍କ ମତରେ ଗୟାମାହାତ୍ମ୍ୟରେ ଓ ଉତ୍କଳ ମାହାତ୍ମ୍ୟର ଯେଉଁ ଗୟାସୁର ଚରିତ୍ର ବର୍ଣ୍ଣିତ ହୋଇଛି, ସେଥିରୁ ବୌଦ୍ଧଧର୍ମ ଉପରେ ହିନ୍ଦୁ-ଧର୍ମର ପ୍ରାଧାନ୍ୟର ସୂଚନା ମିଳୁଛି । ଗୟା ବୌଦ୍ଧଧର୍ମର ପ୍ରଧାନ କେନ୍ଦ୍ର ଥିଲାବେଳେ ପୁରୀ ମଧ୍ୟ ଏକ ପୀଠ ଥିଲା । ଗୟାସୁରର ହୃଦୟ ଯାଜପୁରରେ, ନାଭି ଶ୍ରୀପୁରୁଷୋତ୍ତମ କ୍ଷେତ୍ରରେ ପଡ଼ିଥିଲା । ଗୟାସୁରକୁ ଦମନ କରିସାରିବା ପରେ ବିଷ୍ଣୁ ବିଜୟର ସ୍ମାରକ ସ୍ୱରୂପ ଗୟାରେ ପାଦପଦ୍ମ, କୋଣାର୍କରେ ପଦ୍ମ, ଯାଜପୁରରେ ଗଦା, ଭୁବନେଶ୍ୱରରେ ଚକ୍ର ଓ ପୁରୀରେ ଶଙ୍ଖ ରଖି ଯାଇଥିଲେ ।

ବୈଷ୍ଣବଧର୍ମର ବୌଦ୍ଧଧର୍ମ ଉପରେ ଆଧିପତ୍ୟ ବିସ୍ତାର କରିବା ପୂର୍ବରୁ ଓଡ଼ିଶାରେ ବୌଦ୍ଧଧର୍ମର ପ୍ରଭାବ ହିଁ ଏଥିରୁ ସୂଚିତ ହେଉଛି । ଭାରତର ବହୁ ସ୍ଥାନରେ ବୌଦ୍ଧଧର୍ମର ବହୁ ତତ୍ତ୍ୱ, ବୌଦ୍ଧମନ୍ଦିର, ବୌଦ୍ଧ କ୍ଷେତ୍ର, ବୌଦ୍ଧ ଆଚାର ବ୍ୟବ-ହାର ହିନ୍ଦୁଧର୍ମ ଭିତରେ ଗୃହୀତ ହୋଇଯାଇଥିବାରୁ ପୁରୀରେ ମଧ୍ୟ ଏପରି ଘଟିଥିବା ଅସମ୍ଭବ ନୁହେଁ ବୋଲି ଡକ୍ଟର ମିତ୍ରଙ୍କର ମତ । କିନ୍ତୁ ବୌଦ୍ଧଧର୍ମକୁ ହିନ୍ଦୁମାନେ କେବେ ହିନ୍ଦୁଧର୍ମ ଭିତରୁ ଅଲଗା ବୋଲି ଭାବୁ ନ ଥିଲେ । ହିନ୍ଦୁଧର୍ମର ଏକ ଶାଖା ବୋଲି ବୌଦ୍ଧଧର୍ମକୁ ଗ୍ରହଣ କରାଯାଉଥିଲା । ଶୈବ, ଶାକ୍ତ, ବୈଷ୍ଣବ, ସୌର, ଗାଣପତ୍ୟଙ୍କ ଭିତରେ ପ୍ରଭେଦ ଦେଖାଯାଏ ଏବଂ ସମୟ ସମୟରେ ବିବାଦ ମଧ୍ୟ ଦେଖା ଦେଇ-ଥାଏ । ସେହିପରି ବୌଦ୍ଧ ଓ ଜୈନ ଭକ୍ତମାନଙ୍କର ଏହି ସମ୍ପ୍ରଦାୟମାନଙ୍କ ସହିତ ସାମୟିକ ଦ୍ୱନ୍ଦ୍ୱ ଦେଖାଯାଇଥାଏ । ସେହିହେତୁ କେତେକ ଲୋକଙ୍କୁ ଛାଡ଼ିଦେଲେ ସମସ୍ତେ ଯେ ବୌଦ୍ଧବାଦୀମାନଙ୍କୁ ଘୃଣା କରୁଥିଲେ ଏହା କୁହାଯାଇ ପାରିବ ନାହିଁ । ବୁଦ୍ଧଦେବ ହିନ୍ଦୁଘରେ ଜନ୍ମିଥିଲେ । ହିନ୍ଦୁଧର୍ମର ସଂସ୍କାର ପାଇଁ ସେ ଏକ ସମ୍ପ୍ରଦାୟ ଗଠନ କଲେ । ଏପରି ମଧ୍ୟ ହିନ୍ଦୁ ଜାତିର ବହୁ ମହାତ୍ମା ବହୁ ସମ୍ପ୍ରଦାୟ ଗଠନ କରି ଯାଇଛନ୍ତି । ଏ ଭିତରୁ କେତେକଙ୍କର ଚିହ୍ନ ସୁଦ୍ଧା ବର୍ତ୍ତମାନ ନାହିଁ ।

---

୧୬୭ । ରାଜେନ୍ଦ୍ରଲାଲ ମିତ୍ର । ବୁଦ୍ଧଗୟା ( ଇଂରେଜୀ )

ସାର୍ ମୋନିଅର ଉଇଲିୟମ୍ସ କହନ୍ତି ଯେ ବୈଷ୍ଣବଧର୍ମ ବୌଦ୍ଧଧର୍ମରୁ ବହୁ ଜିନିଷ ଗ୍ରହଣ କରିଛି । ଏପରି କି ଦଶ ଅବତାର ଭିତରେ ବୁଦ୍ଧଦେବଙ୍କୁ ମଧ୍ୟ ନେଇଛି। ଏହି କାରଣରୁ ପୁରୀର ବୌଦ୍ଧମନ୍ଦିର ବୈଷ୍ଣବ ମନ୍ଦିରରେ ପରିଣତ ହୋଇଛି ।

"ଓଡ଼ିଶାରେ ପୁରୀରେ କୃଷ୍ଣାବତାର ଜଗନ୍ନାଥଙ୍କ ପୂଜା ପାଇଁ ପୂର୍ବେ ଏହି ମନ୍ଦିରଟି ତିଆରି ହୋଇଥିଲି । ଏଠାରେ ଅସ୍ଥି ମନ୍ଦିର ଭିତରେ ରଖାଯାଇଥିଲି ଏବଂ ଉଚ୍ଚନୀଚ ଭେଦଭାବ ନ ଥାଇ ସବୁ ବର୍ଣ୍ଣର ଲୋକ ଏକ ସାଙ୍ଗରେ ପ୍ରସାଦ ସେବା କରୁଥିଲେ ।" ପରେ ବୌଦ୍ଧଧର୍ମକୁ କିପରି ବୈଷ୍ଣବଧର୍ମ ଗ୍ରାସ କରିଛି, ତାହାର ଉତ୍କୃଷ୍ଟ ପ୍ରମାଣ ମିଳୁଛି । (୧୨୮)

ହପକିନ୍ସଙ୍କ ମତରେ ପୂର୍ବେ ଜଗନ୍ନାଥ ମନ୍ଦିର ବୌଦ୍ଧମନ୍ଦିର ଥିଲି ଏବଂ ପରେ ବୈଷ୍ଣବ ହେଲି ।

"ପୂର୍ବେ ଜଗନ୍ନାଥ ମନ୍ଦିରରେ ବୁଦ୍ଧ ପୂଜା ପାଉଥିଲେ । କିନ୍ତୁ ବର୍ତ୍ତମାନ ନାମ, ଦେଉଳ ଓ ପ୍ରତିମା-ରଥ ସବୁ ବିଷ୍ଣୁଙ୍କର ହୋଇଛି ।" (୧୨୯)

ଫର୍ଗୁସନ୍ ଏହି ବୌଦ୍ଧ-ଉତ୍ପତ୍ତି ସମ୍ବନ୍ଧରେ ଆଲୋଚନା କରି କହିଛନ୍ତି ଯେ (୧୩୦)—ପୁରୀରେ ସବୁ ବିଷୟରେ ବୌଦ୍ଧଧର୍ମର ଗନ୍ଧ ରହିଛି । କିନ୍ତୁ ଏହି ବୌଦ୍ଧଧର୍ମ ଏଠାରେ ଏତେ ଖରାପ ଅବସ୍ଥାକୁ ଆସିଯାଇଛି ଯେ ଯେଉଁମାନଙ୍କର ପ୍ରାଚୀନ ଶୁଦ୍ଧ ବୌଦ୍ଧଧର୍ମ ସମ୍ବନ୍ଧରେ ଜ୍ଞାନ ଥିବ, ସେମାନେ ଏହାକୁ ଆଦୌ ଚିହ୍ନି ପାରିବେ ନାହିଁ ।

ଜଗନ୍ନାଥଙ୍କୁ ବୁଦ୍ଧ ବୋଲି କହିବା ସପକ୍ଷରେ ଏହିସବୁ ଯୁକ୍ତି ସାଧାରଣତଃ ଦିଆଯାଇଥାଏ ।

୧ । ପୁରୀ ପ୍ରାଚୀନ କାଳରେ ଦନ୍ତପୁର ନାମରେ ପରିଚିତ ଥିଲା । ଏହିଠାରେ ବୁଦ୍ଧଦେବଙ୍କ ଦନ୍ତ ପୂଜା ପାଉଥିଲା । ଏହି ବୌଦ୍ଧକ୍ଷେତ୍ରଟି ବୈଷ୍ଣବ କ୍ଷେତ୍ରରେ ପରିଣତ ହୋଇଗଲା; ବୁଦ୍ଧଦେବଙ୍କ ଦନ୍ତକୁ ପ୍ରକାଶ୍ୟଭାବରେ ପୂଜା ନ କରି ଗୁପ୍ତଭାବରେ ବର୍ତ୍ତମାନ ସୁଦ୍ଧା ପୂଜା କରାହେଉଛି । ଜଗନ୍ନାଥଙ୍କ ଭିତରେ ଯେଉଁ "ବ୍ରହ୍ମ" ଅଛି, ତାହା ବୁଦ୍ଧଦେବଙ୍କ ଦନ୍ତ ଛଡ଼ା ଅନ୍ୟ କିଛି ନୁହେଁ ।

---

୧୨୮ । Sir Monier Willims: Budhhism.

୧୨୯ । Dr. Hopkins: The Religions of the World.

୧୩୦ । Fergusson: Indian Architecture.

୨। ବୌଦ୍ଧମାନଙ୍କର ତ୍ରିରତ୍ନ—ବୁଦ୍ଧ, ଧର୍ମ ଓ ସଂଘ—ଜଗନ୍ନାଥ, ସୁଭଦ୍ରା ଓ ବଳଭଦ୍ର ରୂପରେ ପୂଜା ପାଉଛନ୍ତି।

୩। ଚତୁର୍ଦ୍ଧାମୂର୍ତ୍ତିଙ୍କ ଅସମ୍ପୂର୍ଣ୍ଣ ଅବସ୍ଥା ସମ୍ବନ୍ଧରେ ଯେଉଁ କିମ୍ବଦନ୍ତୀ ଶୁଣାଯାଏ, ତାହା ସହିତ ବୁଦ୍ଧଗୟାର ବୁଦ୍ଧମୂର୍ତ୍ତିର ଅସମ୍ପୂର୍ଣ୍ଣ ଅବସ୍ଥାର କିମ୍ବଦନ୍ତୀର ମେଳ ଅଛି। ସେହିହେତୁ ଜଗନ୍ନାଥଙ୍କୁ ବୁଦ୍ଧ ବୋଲି କୁହାଯିବା ପାଇଁ କାରଣ ରହିଛି।

୪। ଜଗନ୍ନାଥଙ୍କ ରଥଯାତ୍ରା ବୁଦ୍ଧଦେବଙ୍କ ଜନ୍ମୋତ୍ସବ ଉପଲକ୍ଷେ ହେଉଥିବା ରଥଯାତ୍ରା ଛଡ଼ା ଅନ୍ୟ କିଛି ନୁହେଁ।

୫। ପୁରୀରେ ମହାପ୍ରସାଦ ସେବାରେ ଯେଉଁ ଜାତିବର୍ଣ୍ଣର ବିଚାର ନାହିଁ, ତାହା ବୌଦ୍ଧ ପ୍ରଭାବରୁ ହୋଇଛି ଏବଂ ପୂର୍ବେ ଏହା ବୌଦ୍ଧପୀଠ ଥିବାରୁ ଏହା ସମ୍ଭବ ହୋଇଛି।

## ପୁରୀ ଦନ୍ତପୁର ନୁହେଁ

ଖ୍ରୀଷ୍ଟପୂର୍ବ ୫୪୩ରେ ବୁଦ୍ଧଦେବ ପରିନିର୍ବାଣ ଲାଭ କଲେ। ତାଙ୍କର ଶବକୁ ଦାହ କରାଗଲା। ପୂର୍ବେ ସେ ଦେଇଥିବା ଆଦେଶ ଅନୁସାରେ ତାଙ୍କର ଦେହାବଶେଷ ଚିତାରୁ ସଂଗ୍ରହ କରି ଶିଷ୍ୟମାନେ ବିଭିନ୍ନ ସ୍ଥାନକୁ ପ୍ରେରଣ କରିଥିଲେ। ବୁଦ୍ଧଦେବଙ୍କ ପରିନିର୍ବାଣର ପ୍ରାୟ ସାତ ଶହ ବର୍ଷ ପରେ କ୍ଷେମ ନାମକ ଜଣେ ଋଷି (କୁଶିନଗର ନଗରରୁ) ବୁଦ୍ଧଙ୍କ ଚିତାସ୍ଥାନରୁ ତାଙ୍କର ବାମ କଲର ଗୋଟିଏ ଦନ୍ତ ନେଇ କଳିଙ୍ଗ-ରାଜ ବ୍ରହ୍ମଦତ୍ତଙ୍କୁ ଦେଇଥିଲେ। (୧୩୧) ବ୍ରହ୍ମଦତ୍ତ ଏକ ସୁରମ୍ୟ ମନ୍ଦିର ନିର୍ମାଣ କରି ଏକ ପୀଠ ଉପରେ ଏକ ରତ୍ନପେଟିକାରେ ଦନ୍ତକୁ ରଖି ତାର ସେବାପୂଜାରେ ଲାଗି ରହିଲେ। ବ୍ରହ୍ମଦତ୍ତଙ୍କ ପରେ ତାଙ୍କ ପୁତ୍ର କାଶୀରାଜ, କାଶୀରାଜାଙ୍କ ପରେ ତାଙ୍କ ପୁତ୍ର ସୁନନ୍ଦ ଓ ସୁନନ୍ଦଙ୍କ ପରେ ତାଙ୍କ ପୁତ୍ର ଗୁହଶିବ କ୍ରମାନ୍ୱୟରେ କଳିଙ୍ଗରେ ରାଜତ୍ୱ କଲେ। ଗୁହଶିବଙ୍କ ସମୟରେ କଳିଙ୍ଗ ମଗଧ ଅଧୀନରେ ଥିଲା। ଗୁହଶିବ ବ୍ରାହ୍ମଣମାନଙ୍କ ଉପରେ ଅତ୍ୟାଚାର କରିବାରୁ ସେମାନେ ଯାଇ ମଗଧରାଜା ପଣ୍ଡୁଙ୍କ ପାଖରେ ଆପତ୍ତି କଲେ। ସେମାନେ କହିଲେ, "ଆପଣ ଶିବ, ବ୍ରହ୍ମ ଓ ଦେବତା-ମାନଙ୍କ ଉପାସନା କରୁଛନ୍ତି। କିନ୍ତୁ ଆପଣଙ୍କ ସାମନ୍ତରାଜା ଗୁହଶିବ ଏହି ଦେବତା-ମାନଙ୍କ ନିନ୍ଦା କରୁଛନ୍ତି ଏବଂ ମୃତବ୍ୟକ୍ତିର ଅସ୍ଥିକୁ ପୂଜା କରୁଛନ୍ତି।" ଏହି ଦନ୍ତକୁ ପାଟଳିପୁତ୍ରକୁ ଆଣିବାପାଇଁ ପଣ୍ଡୁ ଆଦେଶ ଦେଲେ। ଗୁହଶିବ ଗୋଟିଏ ସୁନ୍ଦର

୧୩୧। ଦାଠବଂଶ। (ପାଲି ଭାଷାରେ ଲିଖିତ)। ଡକ୍ଟର ବିମଳାଚରଣ ଲାହାଙ୍କ ଦ୍ୱାରା ଇଂରାଜୀରେ ଅନୁବାଦିତ ଓ ପ୍ରକାଶିତ।

ରଥ ନିର୍ମାଣ କରି ତାହା ଉପରେ ଦନ୍ତପେଟିକାକୁ ରଖିଲେ । ନିଜେ ରାଜା ଦନ୍ତ-ପେଟିକାକୁ ନିଜ ମସ୍ତକ ଉପରେ ଧଇଲେ । ରଥ ଚାଲିଲା । ଦେଶର ବହୁ ନରନାରୀ ଲୋତକପୂର୍ଣ୍ଣ ନୟନରେ ରଥକୁ ଅନୁସରଣ କଲେ । ପଥ ଦୁଇପାର୍ଶ୍ୱ ସୁସଜ୍ଜିତ ହୋଇଥିଲା । ରାଜା ପଥରେ ବନଦେବତାମାନଙ୍କୁ ଓ ଦନ୍ତକୁ ପ୍ରତିଦିନ ପୂଜା କରୁଥିଲେ । କେତେଦିନ ପରେ ପାଟଳିପୁତ୍ରରେ ରଥ ପହଞ୍ଚିଥିଲା । ପଣ୍ଡୁ ଦନ୍ତର ଅଦ୍ଭୁତ ମହିମା ଦେଖିବା ପରେ ସେ ଦନ୍ତର ଭକ୍ତ ହୋଇଗଲେ । ଦନ୍ତ ସେଠାରେ କିଛିଦିନ ରହିଲା । ପରେ କଳିଙ୍ଗକୁ ଗୁହଶିବ ଦନ୍ତକୁ ଫେରାଇ ଆଣିଲେ ।

କ୍ଷିରଧାର ବଂଶର ରାଜା ଗୁହଶିବଙ୍କ ରାଜଧାନୀ ଦନ୍ତପୁର ଆକ୍ରମଣ କଲେ । ସେ ଗୁହଶିବଙ୍କୁ କହିଲେ, "ବୁଦ୍ଧଙ୍କ ଦନ୍ତଟିକୁ ଆମକୁ ଦିଅ, ନ ଦେଲେ ଯୁଦ୍ଧ କର ।" ଗୁହଶିବ ଦନ୍ତ ଦେଲେ ନାହିଁ । ଯୁଦ୍ଧ ହେଲା । ଆକ୍ରମଣକାରୀର ଗତିକୁ ପ୍ରତିରୋଧ କରିବାର ଶକ୍ତି ଗୁହଶିବଙ୍କର ନ ଥିଲା । ଦନ୍ତକୁ ରକ୍ଷା କରିବାର କୌଣସି ଆଶା ନ ଦେଖି ଗୁହଶିବ ନିଜ ଜାମାତା ଉଜ୍ଜୟିନୀର ରାଜପୁତ୍ର ଦନ୍ତକୁମାରଙ୍କ ହାତରେ ଦନ୍ତକୁ ସିଂହଳ ପଠାଇବାର ବ୍ୟବସ୍ଥା କଲେ । ଦନ୍ତକୁମାର ଓ ତାଙ୍କ ସ୍ତ୍ରୀ ହେମମାଳା ଛଦ୍ମବେଶ ଧାରଣ କରି ଦକ୍ଷିଣ ଦିଗକୁ ଦନ୍ତ ଧରି ଚାଲିଗଲେ । ଦକ୍ଷିଣରେ ଏକ ଜଳପୂର୍ଣ୍ଣ ବୃହତ୍ ନଦୀ ପାରହେଲେ । ସେଠାରେ ରତ୍ନଗିରି ନାମକ ଏକ ପର୍ବତ ଅଛି । ସେହି ପର୍ବତର ତଳଭାଗରେ ବାଲିରେ ଦନ୍ତକୁ ଲୁଚାଇ ଦେଇ ପୁନର୍ବାର ଦନ୍ତପୁରକୁ ଫେରି ଆସିଲେ । ପୁଣି ନଗରରୁ ଫେରି ଦନ୍ତକୁ ପୂଜା କରି ଗୋଟିଏ ଲତା ଭିତରେ ଆଶ୍ରୟ ନେଲେ । ନାଗରାଜା ପଣ୍ଡୁଭୂରି ଅଦୃଶ୍ୟବେଶ ଧାରଣ କରି ଦନ୍ତଟିକୁ ଉଦରସ୍ଥ କରି ରତ୍ନଗିରି ଉପରେ ପଡ଼ି ରହିଲେ । ଦନ୍ତକୁମାର ଓ ହେମମାଳା ଦନ୍ତକୁ ନ ଦେଖି କାନ୍ଦିଲେ । ଜଣେ ମହାପୁରୁଷ ନାଗରାଜାଙ୍କଠାରୁ ଦନ୍ତଟିକୁ ଛଡ଼ାଇ ଆଣି ଦନ୍ତ- ବହୁତ କୁମାରଙ୍କୁ ଦେଲେ । ଦନ୍ତକୁ ଧରି ଦନ୍ତକୁମାର ଓ ହେମମାଳା ବହୁ ଅରଣ୍ୟ-ପଥ ଅତିକ୍ରମ କରି ତାମ୍ରଲିପ୍ତ ବନ୍ଦରରେ ପହଞ୍ଚିଲେ । ସେଠାରୁ ବୋଇତରେ ସିଂହଳ ଯାତ୍ରା କଲେ । ଶ୍ରୀ ମେଘବନଙ୍କ ରାଜତ୍ୱ ସମୟରେ ଖ୍ରୀ: ୩୧୦ରେ ଦନ୍ତ ସିଂହଳରେ ପହଞ୍ଚିଲା ଏବଂ ସିଂହଳ ରାଜା ତାକୁ ପୂଜା କଲେ ବୋଲି ସିଂହଳ ଇତିହାସରୁ ଜଣାଯାଏ ।

ଏହି ଉପାଖ୍ୟାନରୁ ଜଣାଯାଉଛି ଯେ (୧) ଦନ୍ତକୁମାର ଦନ୍ତପୁରର ଦକ୍ଷିଣ ଅଞ୍ଚଳକୁ ଯାଇ ସେଠାରୁ ତାମ୍ରଲିପ୍ତକୁ ଗଲେ । (୨) ଦନ୍ତପୁର ଓ ରତ୍ନଗିରି ମଧ୍ୟରେ ଏକ ନଦୀ ଥିଲା, (୩) ରତ୍ନଗିରି ସମୁଦ୍ର ଉପକୂଳବର୍ତ୍ତୀ, (୪) ଦନ୍ତପୁରର ନିକଟକୁ ଦକ୍ଷିଣରେ ରତ୍ନଗିରି, (୫) ରତ୍ନଗିରିଠାରୁ ତାମ୍ରଲିପ୍ତ ଭିତରେ ବହୁତ ନଦୀ, ପର୍ବତ, ବନ ଅଛି ।

ଏହି ଉପାଖ୍ୟାନର ଦନ୍ତପୁରକୁ ପୁରୀ ବୋଲି ଧରିନେଇ ତଳର କେତୋଟି ବିଷୟ ସ୍ୱୀକାର କରିବାକୁ ହେବ ।

(୧) ଉପାଖ୍ୟାନରେ ଯାହାକୁ ରତ୍ନଗିରି ବୋଲି କୁହାଯାଇଛି, ସେହି ପର୍ବତକୁ ନୀଳାଚଳ ଏବଂ ନୀଳାଚଳ ବା ନୀଳଗିରି ସ୍ଥାନରେ ଭୁଲ୍‌କ୍ରମେ ରତ୍ନଗିରି ବୋଲି ଉପାଖ୍ୟାନରେ ଲେଖା ହୋଇଛି । (୨) ଦନ୍ତପୁର ଓ ପର୍ବତ ମଧ୍ୟରେ ଯେଉଁ ନଦୀର ଉଲ୍ଲେଖ ଅଛି ତାହା ବାଙ୍କିମୁହାଣ ନଦୀ, (୩) ଦନ୍ତପୁର ବର୍ତ୍ତମାନ ଗୁଣ୍ଡିଚାବାଡ଼ି, ଇନ୍ଦ୍ରଦ୍ୟୁମ୍ନ ସର ପ୍ରଭୃତି ଯେଉଁଠାରେ ଅଛି, ସେ ଅଞ୍ଚଳରେ ଥିଲା, (୪) ନୀଳଗିରି ଉପରେ ଦନ୍ତ ପୂଜା ପାଉଥିଲା, ନୀଳଗିରି ଉପରେ ଦନ୍ତମନ୍ଦିର ଅବସ୍ଥିତ ଥିଲା, (୫) ଦନ୍ତକୁ ପାଟଳିପୁତ୍ର ନେବାବେଳେ ଯେଉଁ ରଥଯାତ୍ରାର ବର୍ଣ୍ଣନା ଅଛି, ତାହା ଜଗନ୍ନାଥଙ୍କ ରଥଯାତ୍ରା, ( କାରଣ ଜଗନ୍ନାଥଙ୍କ ରଥଯାତ୍ରା ନୀଳଗିରିଠାରୁ ଆରମ୍ଭ ହୁଏ ), (୬) ଜଗନ୍ନାଥଙ୍କ ପୂର୍ବ ଦେବତା ନୀଳମାଧବ ( ଯାହାକୁ କି ବୁଦ୍ଧଦେବଙ୍କ ଦନ୍ତ ବୋଲି କେହି କେହି ଯୁକ୍ତି କରୁଛନ୍ତି ) ଙ୍କ ଅବସ୍ଥାନ ସ୍ଥଳ ନୀଳଗିରି, ଅନ୍ୟ ସ୍ଥାନ ନୁହେଁ । ଦନ୍ତମନ୍ଦିର ନୀଳଗିରି ଉପରେ ନ ରହିଲେ ନୀଳମାଧବ ( ପରେ ଏ ଜଗନ୍ନାଥ ହେଲେ ) ବୁଦ୍ଧଦେବଙ୍କ ଦନ୍ତ ବୋଲି ସାବ୍ୟସ୍ତ ହୋଇପାରୁ ନାହିଁ ।

ଦନ୍ତକୁମାର ଦନ୍ତକୁ ଧରି ତାମ୍ରଲିପ୍ତ ବନ୍ଦରକୁ ଗଲେ ଓ ସେଠାରୁ ସିଂହଳକୁ ଯାତ୍ରା କଲେ ବୋଲି ଉପାଖ୍ୟାନରେ ଅଛି । କେହି କେହି ଯୁକ୍ତି କରନ୍ତି ଯେ ପୂର୍ବେ ପୁରୀ ମଧ୍ୟ ବନ୍ଦର ଥିଲା, ଦନ୍ତକୁମାର ଏଠାରୁ ବୋଇତରେ ଯାଇପାରି ଥାଆନ୍ତେ । ନିରାପତ୍ତା ଦୃଷ୍ଟିରୁ ଯଦି ଏ ବନ୍ଦରରୁ ନ ଯାଇ ଥାଆନ୍ତେ, ତାହାହେଲେ ଦକ୍ଷିଣର ତେଲିଙ୍ଗାନା ଉପକୂଳରୁ କୌଣସି ବନ୍ଦରରୁ ଯାଇପାରି ଥାଆନ୍ତେ । ପୁରୀଠାରୁ ତାମ୍ରଲିପ୍ତ ଯେତେ ଦୂର ହେବ ତେଲିଙ୍ଗାନା ଉପକୂଳର କୌଣସି ବନ୍ଦର ତା'ଠାରୁ ନିକଟ ହୁଅନ୍ତା ନାହିଁ । ଦକ୍ଷିଣକୁ ଯାଇଥିଲେ ସେହି ବନ ପର୍ବତ ନଦୀ ପାର ହୋଇ ଯିବାକୁ ହୋଇଥାଆନ୍ତା । ସୁତରାଂ ଏ ଯୁକ୍ତିକୁ ବଳବାନ ଯୁକ୍ତି ବୋଲି ଗ୍ରହଣ କରାଯାଇପାରିବ ନାହିଁ । ବିପଦବେଳେ ଯେଉଁ ବାଟଟି ବେଶି ନିରାପଦ ହେଲା ସେହି, ବାଟରେ ଦନ୍ତକୁମର ଯାଇଥିବା ସମ୍ଭବ ।

ରତ୍ନଗିରି ନାମ ଉପାଖ୍ୟାନରେ ଲେଖାଥିବାରୁ କଟକ ଜିଲ୍ଲାର ପ୍ରସିଦ୍ଧ ରତ୍ନଗିରିର ବିଷୟ ହିଁ ଏଠାରେ ସୂଚିତ ହୋଇଛି ବୋଲି ମନେହୁଏ । ରତ୍ନଗିରି ଏକ ପ୍ରଧାନ ବୌଦ୍ଧସ୍ଥଳ । ବର୍ତ୍ତମାନ ସୁଦ୍ଧା ଏ ପର୍ବତରେ ବହୁ ବୌଦ୍ଧାବଶେଷ ରହିଛି ଏବଂ ଏଠାରେ "ରତ୍ନଗିରି ବିହାର" ନାମକ ଏକ ପ୍ରସିଦ୍ଧ ବୌଦ୍ଧ ବିହାରର ଭଗ୍ନାବଶେଷ ଆବିଷ୍କୃତ ହୋଇଛି । ଏହାର ପାଦଦେଶରେ ବ୍ରାହ୍ମଣୀ ନଦୀ ପ୍ରବାହିତ

ହେଉଛି । ସମୁଦ୍ର ମଧ୍ୟ ବେଶି ଦୂର ନୁହେଁ । ଦକ୍ଷିଣ, ପୂର୍ବ, ଉତ୍ତର ଓ ପଶ୍ଚିମ— ଗୃଣଆଡ଼େ ପାହାଡ଼କୁ ବାଦେଶୀ ନଦୀ ବେଢ଼ି ରହିଛି ।

ରତ୍ନଗିରିର ଦକ୍ଷିଣକୁ ସିଧାସଳଖ ପ୍ରାୟ ୨୦ ମାଇଲ ଦୂରରେ ପ୍ରସିଦ୍ଧ ଚରିତ୍ରୋଲ ଭୁବନ୍ଦର । ଏହାକୁ ହୁଏନସାଂ 'ଚେଲିତାଲୋ' ବୋଲି କହିଛନ୍ତି । ଚରିତ୍ରୋଲର ବର୍ତ୍ତମାନ ନାମ ଛତ୍ରଡୋଲ । ଏହା ନିକଟରେ ପ୍ରସିଦ୍ଧ ସାରଳା ଠାକୁରଙ୍କ ପୀଠ ଅବସ୍ଥିତ । କେହି କେହି ଚିତ୍ରୋଲକୁ 'ଶ୍ରୀ କ୍ଷେତ୍ର, କୋଣାର୍କ ନିକଟସ୍ଥ ଚିତ୍ରୋତ୍ପଳା ନଦୀକୂଳସ୍ଥ ଚନ୍ଦ ଓ ଉତ୍ପଳ ନାମକ ଗ୍ରାମ ବିଶେଷ ବୋଲି ପ୍ରମାଣ କରନ୍ତି । କିନ୍ତୁ ଏହା ଦୁର୍ବଳ ଯୁକ୍ତି ଉପରେ ପ୍ରତିଷ୍ଠିତ ଏବଂ ଗ୍ରହଣୀୟ ନୁହେଁ । ଏହି ବନ୍ଦରକୁ ଲକ୍ଷ୍ୟ ରଖି ଦନ୍ତକୁମାର ଦକ୍ଷିଣ ଦିଗକୁ ବାହାରିଥିବା ସମ୍ଭବ । ଏଠାରୁ ସମୁଦ୍ର ମଧ୍ୟ ବେଶି ଦୂର ନୁହେଁ, ପୂର୍ବକୁ ପ୍ରାୟ ୨୦ ମାଇଲ ଦୂର ।

ରତ୍ନଗିରି ନିକଟରେ ଦନ୍ତପୁରର ଅବସ୍ଥିତି ନିର୍ଣ୍ଣୟ କରିବା ଯୁକ୍ତିଯୁକ୍ତ ହେବ । ପୁରୀ ଦନ୍ତପୁର ହୋଇ ନ ପାରେ ।

ଜଗନ୍ନାଥଙ୍କ ମୂର୍ତ୍ତି ଭିତରେ ଯେଉଁ ବ୍ରହ୍ମ ଅଛି, ତାହାକୁ ନବକଳେବର ବେଳେ ପୁରୁଣା ମୂର୍ତ୍ତି ଭିତରୁ ବାହାର କରି ଆଣି ନୂତନ ମୂର୍ତ୍ତି ଭିତରେ ରଖାଯାଏ । କିନ୍ତୁ ଏ ପର୍ଯ୍ୟନ୍ତ ସେ ବ୍ରହ୍ମପଦାର୍ଥକୁ କେହି ଦେଖି ନ ଥିବା ଜଣାଯାଏ । କାରଣ ଯେ ଏହି କାର୍ଯ୍ୟଟି କରେ, ତାର ଆଖି ବନ୍ଧା ହୋଇଥାଏ ଏବଂ ହାତରେ ମଧ୍ୟ ଲୁଗାଗୁଡ଼ିଆ ହୋଇଥାଏ ।

କ୍ରୁକ୍ ନବକଳେବର ସମୟର ଗୁପ୍ତରେ ବ୍ରହ୍ମ ସଂସ୍ଥାପନ ପ୍ରସଙ୍ଗ ଆଲୋଚନା କରି ସେ ସମ୍ପର୍କରେ ଲେଖିଛନ୍ତି ଯେ କୃଷ୍ଣଙ୍କ ଅସ୍ଥି ପୁରୁଣା ମୂର୍ତ୍ତିରୁ ବାହାର କରି ନୂତନ ମୂର୍ତ୍ତିରେ ରଖାଯାଏ ବୋଲି ଯେଉଁ ଗଳ୍ପ ଶୁଣାଯାଏ, ତାହା ବୈଷ୍ଣବମାନଙ୍କର ମୃତବ୍ୟକ୍ତିର ଦେହାବଶେଷର ପୂଜାର ବିରୋଧୀ, ସେହିହେତୁ ଏହା ବିଶ୍ୱାସଯୋଗ୍ୟ ନୁହେଁ ଏବଂ ଯେଉଁ ସମୟରେ ଦେଶର ସବୁ ଅଞ୍ଚଳରେ ବୁଦ୍ଧଦେବଙ୍କ ଦେହାବଶେଷ ସ୍ତୂପମାନଙ୍କରେ ପୂଜା ପାଉଥିଲା, ସେହି ବୌଦ୍ଧ ଯୁଗକୁ ଏହି ଗଳ୍ପ ପ୍ରକୃତରେ ଲକ୍ଷ୍ୟ କରୁଛି । ( ୧୩୨ )

ଇନ୍ଦ୍ରଦ୍ୟୁମ୍ନ ମନ୍ଦିରଟି ତିଆରି କରିବା ପରେ ବ୍ରହ୍ମାଙ୍କୁ ଅପେକ୍ଷା କରି ସ୍ୱର୍ଗରେ ବହୁ ସମୟ ରହିଲେ । ଏ ଭିତରେ ମନ୍ଦିରଟି ସମୁଦ୍ର ବାଲିରେ ପୋତି ହୋଇଗଲା ।

---

୧୩୨ । **Crooke: Things Indian.**

ଓଡ଼ିଶା ରାଜା ସେ ମନ୍ଦିରକୁ ଖୋଲାଇ ନୀଳମାଧବଙ୍କୁ ସେଠାରେ ପୂଜା କଲେ । ଇନ୍ଦ୍ରଦ୍ୟୁମ୍ନ ସ୍ୱର୍ଗରୁ ଫେରିଆସି ମନ୍ଦିର ଦଖଲ କରି ଗୃହମୂର୍ତ୍ତିଙ୍କୁ ମନ୍ଦିରରେ ପ୍ରତିଷ୍ଠା କଲେ । ଏହି ଚରିତକୁ ଲକ୍ଷ୍ୟ କରି ଏଥିରେ ବୌଦ୍ଧ ସମ୍ବନ୍ଧର ସୂଚନା ମଧ୍ୟ ଦିଆଯାଏ । ଏହି ମତାବଲମ୍ବୀମାନେ କହନ୍ତି, ପୁରୀରେ ଏକ କିମ୍ବଦନ୍ତୀ ପ୍ରଚଳିତ ଅଛି ଯେ ଏଠାରେ ଏକ ବୌଦ୍ଧସ୍ତୂପ ଏକ ବାଲିପାହାଡ଼ ଉପରେ ଥିଲା । ଏହି ସ୍ତୂପର ଉତ୍ତରକୁ ଏକ ନଦୀ ପ୍ରବାହିତ ହୋଇ ସମୁଦ୍ରରେ ପଡ଼ୁଥିଲା । ପରେ କାଳକ୍ରମେ ସମୁଦ୍ର ଦୂରକୁ ଚାଲିଗଲା ଏବଂ ଜମି ଉଚ୍ଚ ହୋଇଗଲା । ସ୍ତୂପଟି ମଧ୍ୟ ଭାଙ୍ଗିଗଲା । ଏହି ସ୍ତୂପ ଉପରେ ଇନ୍ଦ୍ରଦ୍ୟୁମ୍ନ ମନ୍ଦିର ନିର୍ମାଣ କରିଥିଲେ । ପୁରୀରେ ବାଲି ପାହାଡ଼ ଉପରେ ବୌଦ୍ଧସ୍ତୂପ ଥିବା କିମ୍ବଦନ୍ତୀ ଶୁଣାଯାଏ ନାହିଁ ।

(୨) କନିଙ୍ଗହାମଙ୍କ ଭ୍ରାନ୍ତମତ, ଜଗନ୍ନାଥ ବଳଭଦ୍ର ଓ ସୁଭଦ୍ରା ବୌଦ୍ଧଧର୍ମର ତ୍ରିରତ୍ନ—ବୁଦ୍ଧ, ଧର୍ମ ଓ ସଂଘର ନକଲ ମାତ୍ର । ସେ ଲେଖିଛନ୍ତି—"ଜଗନ୍ନାଥ, ତାଙ୍କର ଭାଇ ଓ ଭଉଣୀଙ୍କର ଆକାରଶୂନ୍ୟ ପ୍ରତିମା ବୌଦ୍ଧଧର୍ମର ତ୍ରିରତ୍ନ—ବୁଦ୍ଧ, ଧର୍ମ ଓ ସଂଘର ସରଳ ନକଲ ମାତ୍ର । ଏହି ତ୍ରିରତ୍ନ ଭିତରେ ଧର୍ମକୁ ସବୁବେଳେ ସ୍ତ୍ରୀ ରୂପରେ କଳ୍ପନା କରାଯାଇଛି । ମଥୁରା ଓ ବନାରସରେ ଜଗନ୍ନାଥ ଚିତ୍ରଗୁଡ଼ିକ ବୌଦ୍ଧାବତାରର ଚିତ୍ର ବୋଲି ପ୍ରକାଶ ପାଉଥିବାରୁ ଜଗନ୍ନାଥଙ୍କ ବୌଦ୍ଧ ଉତ୍ପତ୍ତିର କୌଣସି ସନ୍ଦେହ ନାହିଁ ।" (୧୩ଗ)

ଖ୍ରୀଷ୍ଟପୂର୍ବ ୨ୟ ଓ ୩ୟ ଶତାବ୍ଦୀର ଭୋପାଳ ରାଜ୍ୟ ଅନ୍ତର୍ଗତ ସାଞ୍ଚିର ବୌଦ୍ଧସ୍ତୂପର ଦ୍ୱାର ( ତୋରଣ )ରେ ଏହି ଚିତ୍ରଟି (୧ମ ଚିତ୍ର ) ଦେଖାଯାଏ । ଜେନେରଲ କାନିଙ୍ଗହାମଙ୍କ ମତରେ ଏହି ଚିତ୍ରରୁ କମକାର୍ଯ୍ୟତକ ବାହାର କରିଦେଲେ ମୋଟାମୋଟି ଚିତ୍ରଟିର ଆକାର (୨ୟ ଚିତ୍ର) ଏହିପରି ହେବ । ଏହି ଆକାରଟି କାନିଙ୍ଗହାମଙ୍କ ମତରେ ପ୍ରାଚୀନ ପାଲିଭାଷାର ଯ, ର, ଲ, ବ, ନ, ଏହି ପାଞ୍ଚୋଟି ବର୍ଣ୍ଣର ସମ୍ମିଶ୍ରଣରେ ହୋଇଛି ।

ଯ—ɹ, ର— |, ଲ—j, ବ—¡, ନ—⊥

ବୌଦ୍ଧତନ୍ତ୍ର ମତରେ ଏହି ଅକ୍ଷରମାନଙ୍କର ଅର୍ଥ ଏହିପରି ଦିଆଯାଇଛି । ଯ—ମରୁତର ବୀଜ, ର— ଅଗ୍ନିର ବୀଜ, ଲ—ଆପର ବୀଜ, ବ—କ୍ଷିତିର ବୀଜ, ନ—ଶୂନ୍ୟର ବୀଜ ।

---

୧୩ଗ । **General Cunningham: The Ancient Geography of India.**

ଏଥିରୁ ଜଣାଯାଉଛି ଯେ ପଞ୍ଚମହାଭୂତର ବୀଜର ଚହ୍ନରେ ସମଷ୍ଟିରେ ଏହି ଚହ୍ନ ଗଠିତ ହୋଇଛି । କିନ୍ତୁ ନେପାଳର ବୌଦ୍ଧମାନେ ଆଉ ଗୋଟିଏ ମହାଭୂତ ଏଥି ସହିତ ସଂଯୋଗ କରନ୍ତି । ପୃଥିବୀକୁ ଷଷ୍ଠମହାଭୂତ ବୋଲି ଧରିନେଇ ଏହାର ବୀଜ ସ( d ) ବୋଲି ସ୍ୱୀକାର କରାଯାଇଛି । ଏହି ମହାଭୂତର ବୀଜାକ୍ଷର-ମାନଙ୍କର ସମଷ୍ଟି ଉପରେ ୫ଟି ବୀଜାକ୍ଷରର ସମଷ୍ଟିର ଆକାର ଠାରୁ ଟିକିଏ ପ୍ରଭେଦ ହେବ । (୩୨ୟ ଚିତ୍ର)

କାନିଙ୍ଗହାମ୍‌ଙ୍କ ମତରେ ପଞ୍ଚମହାଭୂତର ବୀଜାକ୍ଷରମାନଙ୍କର ସମ୍ମିଶ୍ରଣରେ ଯେଉଁ ଆକାରଟି ହୋଇଛି, ତାହା ବୌଦ୍ଧମାନଙ୍କର "ଧର୍ମ"ର ଚହ୍ନ । ବୌଦ୍ଧଧର୍ମ ତ୍ରିରତ୍ନର ଦ୍ୱିତୀୟଟି । ଏହା ପଞ୍ଚମହାଭୂତରେ ଗଠିତ ପ୍ରକୃତି । ପ୍ରକୃତ (ଧର୍ମ) ସହିତ ବୁଦ୍ଧଙ୍କ ସଂଯୋଗରେ ସଂଘର ଉଦ୍ଭବ । ବୁଦ୍ଧ ଚକ୍ରଦ୍ୱାରା ଚହ୍ନିତ ଏବଂ ପ୍ରକୃତ ବା ଧର୍ମର ଚହ୍ନ ସହିତ ମିଶ୍ରିତ ହେଲେ ସଂଘର ଚିତ୍ର ହେବ । ଏହି ସମ୍ମିଳିତ ଚହ୍ନଟି ବୌଦ୍ଧ ତ୍ରିରତ୍ନର ଚିତ୍ର (୪ର୍ଥ ଚିତ୍ର) । ଏହି ଚହ୍ନ ପୁଣି ଦୁଇ ପ୍ରକାରର ଦେଖାଯାଏ । ଜଡ଼ବାଦୀ ବୌଦ୍ଧମାନେ ଧର୍ମକୁ ଉଚ୍ଚ ଆସନ ଦିଅନ୍ତି ଏବଂ ଅନ୍ୟମାନେ ବୁଦ୍ଧଙ୍କୁ ଉଚ୍ଚାସନ ଦିଅନ୍ତି । ଏହି ଦୁଇ ମତ ଅନୁସାରେ କେଉଁ କେଉଁ ସ୍ଥାନରେ ଚକ୍ର ଧର୍ମର ଚହ୍ନ ଉପରେ ରହିଛି ଏବଂ କେଉଁ କେଉଁ ସ୍ଥାନରେ ଚକ୍ର ଧର୍ମଚହ୍ନର ତଳେ ରହିଛି । କିନ୍ତୁ ବୁଦ୍ଧ ଓ ଧର୍ମର ସଂଯୋଗରେ ସଂଘର ଉଦ୍ଭବ; ଏହା ଉଭୟ ମତର ଲୋକେ ମାନି ନେଇଛନ୍ତି । ସାଞ୍ଚିରେ ଉଭୟ ମତର ଚହ୍ନ ଦେଖାଯାଏ । ତାହା ଛଡ଼ା ସାଞ୍ଚିରେ ଗୋଟିଏ ପଟ୍ଟ ଉପରେ ସଙ୍ଘର ତିନୋଟି ଚହ୍ନ ପାଖକୁ ପାଖ ଲାଗି ଏକ ପୀଠ ଉପରେ ରହିଥିବାର ଚିତ୍ର ଦେଖାଯାଏ । ଚକ୍ର, ଧର୍ମଚହ୍ନ, ଚକ୍ର ଓ ଧର୍ମଚହ୍ନର ମିଶ୍ରଣ—ଏହି ତିନି ଚହ୍ନକୁ ଯଦି ତ୍ରିରତ୍ନର ଚହ୍ନ ବୋଲି ଧରାଯିବ, ତାହାହେଲେ ଏହି ପଟ୍ଟରେ ସଙ୍ଘର ତିନୋଟି ଚିତ୍ର ଥିବାର ତାତ୍ପର୍ଯ୍ୟ ବୁଝାଯାଉ ନାହିଁ । କାନିଙ୍ଗହାମ୍ ମଧ୍ୟ ତାହା ବୁଝାଇ ନାହାନ୍ତି ।

କାନିଙ୍ଗହାମ୍ ତ୍ରିମୂର୍ତ୍ତି (ବଳଭଦ୍ର, ସୁଭଦ୍ରା, ଜଗନ୍ନାଥ)ଙ୍କ ଯେଉଁ ଚିତ୍ର ଦେଇଛନ୍ତି ତାହା ସହିତ ତ୍ରିରତ୍ନ ଚିତ୍ରର ମେଳ ଅଛି ବୋଲି ଯେଉଁ ଅନୁମାନ କରିଛନ୍ତି ତାହା ଭୁଲ । କାରଣ ସେ ତ୍ରିମୂର୍ତ୍ତିର ଯେଉଁ ଚିତ୍ର ଦେଇଛନ୍ତି ତାହା ତ୍ରିମୂର୍ତ୍ତିଙ୍କର ଠିକ୍ ଚିତ୍ର ନୁହେଁ । କାନିଙ୍ଗହାମଙ୍କ ଚିତ୍ରରେ ବଳଭଦ୍ର ଓ ଜଗନ୍ନାଥ ଊର୍ଦ୍ଧ୍ୱବାହୁ ଥିବାର ଜଣାଯାଉଛି । କିନ୍ତୁ ମୂର୍ତ୍ତିରେ ତାହା ନାହିଁ—ଏ ଦୁହିଁଙ୍କ ହାତ ସମ୍ମୁଖ ଭାଗକୁ ସିଧା ହୋଇ ରହିଅଛି । ସେହିହେତୁ ଏହି ପଞ୍ଚମହାଭୂତ (କି ଷଡ଼ମହାଭୂତ)ର ବାୟୁର ବୀଜାକ୍ଷର ᒧ ର ତଳଅଂଶ କାନିଙ୍ଗହାମ୍‌ଙ୍କ ଚିତ୍ରରେ ଯେଉଁ ଦୁଇ

ଊର୍ଦ୍ଧ୍ୱବାହୁ ଚହ୍ନିତ କରୁଛି, ତାହା ଜଗନ୍ନାଥ କ ବଳଭଦ୍ରଙ୍କ ମୂର୍ତ୍ତିରେ ଆଦୌ ଭେଦାଣ ହୋଇ ପାରବ ନାହିଁ । ତାହାହେଲେ ପଞ୍ଚମହାଭୂତର ବୀଜାକ୍ଷରମାନଙ୍କର ସମ୍ମିଶ୍ରଣ ଯୁକ୍ତିଟି ଠିଆ ହୋଇପାରୁ ନାହିଁ । ଆହୁରି ମଧ୍ୟ ସୁଭଦ୍ରାଙ୍କ ହାତ ନାହିଁ । ତିରନୁ ମତରେ ସୁଭଦ୍ରା ଧର୍ମ । ଧର୍ମର ଚହ୍ନରେ ହାତର ସଙ୍କେତ ଅଛି । ଏହି ଅମେଳ ବିଷୟ କାନଙ୍ଗହାମ୍ ଦେଖାଇ ନାହାନ୍ତି ।

ଏସବୁ କାରଣରୁ ବୌଦ୍ଧ ପଞ୍ଚମହାଭୂତର ବୀଜାକ୍ଷରମାନଙ୍କ ସମ୍ମିଶ୍ରଣରେ ଯେଉଁ ଚହ୍ନ ମିଳୁଛି, ତାହା ସହିତ ଜଗନ୍ନାଥଙ୍କ ମୂର୍ତ୍ତିର ଆକାରର ଗଭୀର ଅଭେଦତ୍ୱ ରହିଛି ବୋଲି କାନଙ୍ଗହାମ୍ ଯେଉଁ ଯୁକ୍ତି କରିଛନ୍ତି, ତାହା ଠିକ୍ ନୁହେଁ ।

ଜଗନ୍ନାଥଙ୍କ ବୌଦ୍ଧଧର୍ମ ସହିତ ସମ୍ପର୍କର ପ୍ରଧାନ ପ୍ରମାଣ ସ୍ୱରୂପ ବୌଦ୍ଧଯନ୍ତ୍ର ଉପରେ ନିର୍ଭର କରିବାକୁ ହେବ ବୋଲି ଡାକ୍ତର ରାଜେନ୍ଦ୍ରଲାଲ ମିତ୍ର ଲେଖିଛନ୍ତି— ଏକମାତ୍ର ବୌଦ୍ଧଧର୍ମର ଚହ୍ନ (ଯନ୍ତ୍ର)ରେ ଏହି ଜଗନ୍ନାଥ-ବୁଦ୍ଧ ସମସ୍ୟାର ସନ୍ତୋଷ-ଜନକ ସମାଧାନ ମିଳିବ । ଡାକ୍ତର ମିତ୍ର ଖ୍ରୀ.୧୮୮୦ରେ ଏହିମତ ପ୍ରକାଶ କରିଥିଲେ । (୧୩୪) । ତାଙ୍କ ପୂର୍ବରୁ ଜେନେରଲ୍ କାନଙ୍ଗହାମ (୧୩୫) ବୌଦ୍ଧଯନ୍ତ୍ର ଉପରେ ନିର୍ଭର କରି ଜଗନ୍ନାଥଙ୍କୁ ବୁଦ୍ଧ ବୋଲି ପ୍ରମାଣ କରିଥିଲେ । ଡାକ୍ତର ମିତ୍ର କାନଙ୍ଗ୍-ହାମ୍ଙ୍କ ଯୁକ୍ତି ଉପରେ ନିର୍ଭର କରି କାନଙ୍ଗହାମଙ୍କ ମତକୁ ସମର୍ଥନ କରିଛନ୍ତି । ବୌଦ୍ଧମତବାଦୀ ମିତ୍ରଙ୍କ ମତରେ ସୁଦର୍ଶନ ବୁଦ୍ଧଙ୍କର ଚହ୍ନ, ବୁଦ୍ଧ ହିଁ ଚକ୍ର । ଏହି ଚକ୍ର ହିଁ ସୁଦର୍ଶନ । ବିଷ୍ଣୁଙ୍କର ସୁଦର୍ଶନ ଚକ୍ର ବୁଦ୍ଧଙ୍କ ଚକ୍ର ଅନୁକରଣରେ ହୋଇଛି । ଏହି ମତକୁ ଗ୍ରହଣ କରିବାକୁ ହେଲେ କହିବାକୁ ହେବ ଯେ ଚକ୍ରକୁ ବୁଦ୍ଧ ବୋଲି ବୌଦ୍ଧମାନେ ଗ୍ରହଣ କରିବା ସମୟ ପୂର୍ବରୁ ସୁଦର୍ଶନଚକ୍ରର ଅସ୍ତିତ୍ୱ ନ ଥିଲା; କିନ୍ତୁ ଏହା ଠିକ୍ ନୁହେଁ । ବୁଦ୍ଧଦେବଙ୍କ ଆବିର୍ଭାବର ବହୁପୂର୍ବରୁ ବିଷ୍ଣୁଙ୍କର ଏବଂ ତାଙ୍କର ଅସ୍ତ୍ର ସୁଦର୍ଶନ ଚକ୍ରର ଅସ୍ତିତ୍ୱ ଥିଲା ।

ଏହି ସୁଦର୍ଶନଚକ୍ର ଯେ ପୂଜା ପାଉଥିଲେ, ଏଥିରେ ମଧ୍ୟ କୌଣସି ସନ୍ଦେହ ନାହିଁ । ବୌଦ୍ଧମନ୍ଦିରମାନଙ୍କରେ ଏକ ସମୟରେ ଚକ୍ର ପୂଜା ପାଉଥିଲେ ବୋଲି ମିତ୍ର ମହାଶୟ କହନ୍ତି । "ଯେତେବେଳେ ପ୍ରାଚୀନ ଯୁଗରେ ବୁଦ୍ଧଦେବଙ୍କ ମୂର୍ତ୍ତି ପୂଜା କରିବାକୁ ବୌଦ୍ଧମାନେ ଆରମ୍ଭ କରି ନ ଥିଲେ, ସେହି ସମୟରେ ବୌଦ୍ଧ-

---

୧୩୪। **Antiquities of Orissa, Vol. II., P. 135, 1880.**

୧୩୫। **General Cunningham: Bhilsa Topes.**

ବିହାରମାନଙ୍କରେ ଚକ୍ର ସର୍ବପ୍ରଧାନ ପୂଜ୍ୟ ଉପାଦାନ ହୋଇଥିଲା । ମନ୍ଦିର ଭିତରେ ମଧ୍ୟସ୍ଥଳରେ ଚକ୍ରକୁ ଲୋକେ ପୂଜା କରୁଥିବା ଦୃଶ୍ୟ ବୌଦ୍ଧବିହାରର ମୂର୍ତ୍ତି ଶିଳ୍ପରୁ ଜଣାଯାଏ ।" (୧୩୬)

ସେ ପୁଣି ଯୁକ୍ତି କରିଛନ୍ତି ଯେ କୌଣସିଠାରେ ସୁଦର୍ଶନ ଚକ୍ରର ପୂଜା କରିବାର ନିର୍ଦ୍ଦେଶ ନାହିଁ, କି ଅନ୍ୟ ତିନି ପଦାର୍ଥ—ଶଙ୍ଖ, ଗଦା, ପଦ୍ମର ପୂଜାର ନିର୍ଦ୍ଦେଶ ମଧ୍ୟ ନାହିଁ ଏବଂ 'ପୁରୀରେ ଚକ୍ରକୁ ପ୍ରାଧାନ୍ୟ ଦିଆଯାଇଛି । ପୁରୁଷୋତ୍ତମ ମାହାତ୍ମ୍ୟ (ଉ:ଖ:)ରେ ଏହାଙ୍କୁ ସ୍ୱତନ୍ତ୍ର କରି ଓ ଅନ୍ୟ ତିନିମୂର୍ତ୍ତିଙ୍କ ସହିତ ଏକ ଆସନ ଦେଇଛି । ଏଥିରୁ ଜଣାଯାଉଛି ଯେ ସୁଦର୍ଶନ ଚକ୍ର ବୌଦ୍ଧ ଚକ୍ରରୁ ଉତ୍ପତ୍ତି ଲାଭ କରିଛି । ମିତ୍ର ମହାଶୟ ପ୍ରଥମେ ଯୁକ୍ତି କଲେ ଯେ ଚକ୍ର (ସଂସାର ପ୍ରବର୍ତ୍ତନ ଚକ୍ର)କୁ ବୌଦ୍ଧମାନେ ବୁଦ୍ଧଦେବଙ୍କଠାରୁ ଅଭିନ୍ନ କଳ୍ପନା କରନ୍ତି । କିନ୍ତୁ ବର୍ତ୍ତମାନ ଯେତେ ବୌଦ୍ଧବିହାର ଅଛି କୌଣସିଠାରେ ଚକ୍ର ସ୍ୱତନ୍ତ୍ର ଭାବରେ ପୂଜା ପାଇବା ଦେଖାଯାଏ ନାହିଁ । ଶିଳ୍ପରୁ ଦେଖିବା ଛଡ଼ା ପୂର୍ବେ ମଧ୍ୟ ଏହି ଚକ୍ରକୁ ପ୍ରାଚୀନମନ୍ଦିରମାନଙ୍କରେ ପୂଜା କରୁଥିବାର କୌଣସି ପ୍ରମାଣ ନାହିଁ । ଯେଉଁ କିମ୍ବଦନ୍ତି ବୌଦ୍ଧଧର୍ମରେ ପ୍ରଚଳିତ ନାହିଁ କି ପୂର୍ବେ ପ୍ରଚଳିତ ଥିବାର ନିର୍ଦ୍ଦିଷ୍ଟ ପ୍ରମାଣ ନାହିଁ ତା ଉପରେ ନିର୍ଭର କରି ପୁରୀର ସୁଦର୍ଶନଙ୍କୁ ବୌଦ୍ଧଚକ୍ର ବୋଲି କହିବାରେ କିଛି ଯୁକ୍ତି ନାହିଁ । ଯଦି ପୁରୀରେ ସୁଦର୍ଶନ ବିଷ୍ଣୁଙ୍କ ସହିତ ସମ ଆସନ ପାଇ ଥାଆନ୍ତି ତାହାହେଲେ ସୁଦର୍ଶନଙ୍କ ଏ ଗୌରବକୁ ଏକ ପ୍ରମାଣ ରୂପେ ଦର୍ଶାଇବାକୁ ହେବ । ବିଷ୍ଣୁଙ୍କ ସୁଦର୍ଶନଙ୍କୁ ବୁଦ୍ଧଦେବଙ୍କ ଚକ୍ର ବୋଲି କହିବାର କିଛି ଯୁକ୍ତି ନାହିଁ । ପୂର୍ବ କଥାକୁ ପର କଥାର ଅନୁକରଣ ବୋଲି କହିଲେ ଯୁକ୍ତିର ଅସାରତା କେବଳ ପ୍ରତିପାଦିତ ହୁଏ । ତାହାଛଡ଼ା ବୌଦ୍ଧଚକ୍ର ସହିତ ସୁଦର୍ଶନ ଚକ୍ରର କୌଣସି ସାମ୍ୟ ମଧ୍ୟ ଥିବାର ଦେଖାଯାଏ ନାହିଁ । ଜଗନ୍ନାଥ ମନ୍ଦିରର ସୁଦର୍ଶନ ଗୋଟିଏ କାଠଗଡ଼ ଖଣ୍ଡ । କେବଳ ମୁଣ୍ଡ ଉପରେ ଚକ୍ରର ଏକ ଚିହ୍ନ ଦିଆଯାଇଛି । କୌଣସିମତେ ବୌଦ୍ଧଚକ୍ରର ଏହା ଅନୁକରଣ ବୋଲି କୁହାଯାଇ ପାରିବ ନାହିଁ ।

## (୩) ରାଜେନ୍ଦ୍ରଲାଲଙ୍କ ଭ୍ରାନ୍ତମତ :

ଡାକ୍ତର ରାଜେନ୍ଦ୍ରଲାଲ ମିତ୍ର କହନ୍ତି, ଚତୁର୍ଦ୍ଧାମୂର୍ତ୍ତିଙ୍କ ଅସମ୍ପୂର୍ଣ୍ଣ ଅବସ୍ଥାର କାରଣ ସମ୍ବନ୍ଧରେ ଯେଉଁ କିମ୍ବଦନ୍ତୀ ଶୁଣାଯାଏ ତାହା ସହିତ ବୁଦ୍ଧଗୟାର ବୁଦ୍ଧଙ୍କ ମୂର୍ତ୍ତିର ଅସମ୍ପୂର୍ଣ୍ଣ ଅବସ୍ଥାର କିମ୍ବଦନ୍ତୀ ସଙ୍ଗେ ସମାନ । ସପ୍ତମ ଶତାବ୍ଦୀରେ ହ୍ୟୁଏନସାଂ ବୁଦ୍ଧଗୟାର ମୂର୍ତ୍ତି କିମ୍ବଦନ୍ତୀ ଏହିପରି ଲେଖିଛନ୍ତି—ମନ୍ଦିର ନିର୍ମିତ ହୋଇ ସାରିବା

୧୩୬ । Antiquitties of Orissa. Vol. I . p. 125

ପରେ ତଥାଗତ (ବୁଦ୍ଧ)ଙ୍କ ବୁଦ୍ଧତ୍ୱପ୍ରାପ୍ତି ସମୟର ଅବସ୍ଥାର ଏକ ମୂର୍ତ୍ତି ଗଠନ କରିବା ପାଇଁ ସେମାନେ ଶିଳ୍ପୀମାନଙ୍କୁ ନିବେଦନ କଲେ । ବହୁମାସ ଓ ବର୍ଷର ଗତ ହୋଇଗଲା । କିନ୍ତୁ କେହି ଏହି କାର୍ଯ୍ୟରେ ହାତ ଦେଇ ପାରିଲେ ନାହିଁ । ଶେଷରେ ଜଣେ ବ୍ରାହ୍ମଣ ଭିକ୍ଷୁମାନଙ୍କ ସଭାରେ ଉପସ୍ଥିତ ହୋଇ କହିଲେ, "ମୁଁ ତଥାଗତଙ୍କ ମୂର୍ତ୍ତି ଗଠନ କରିବି ।" ଭିକ୍ଷୁମାନେ କହିଲେ, "ଏ କାର୍ଯ୍ୟରେ ତୁମର ଆଉ କଣ ଦରକାର ?" ବ୍ରାହ୍ମଣ କହିଲେ, "କିଛିମାତ୍ର ପରିମାଣରେ ଅଠା ବିହାରର ମଧ୍ୟସ୍ଥଳରେ ରଖିଦିଅନ୍ତୁ । ଗୋଟିଏ ଆଲୋକ ବିହାର ଭିତରେ ରଖନ୍ତୁ । ମୁଁ ବିହାର ଭିତରେ ପଶିଗଲେ କବାଟ ବନ୍ଦ କରିଦେବେ ଏବଂ ଛଅ ମାସ ପର୍ଯ୍ୟନ୍ତ ଖୋଲିବେ ନାହିଁ ।" ଭିକ୍ଷୁମାନେ ସେପରି କଲେ । ଚାରି ମାସ ଗତ ହେଲା । ଭିକ୍ଷୁମାନେ କୌତୁହଳ ଓ ଶ୍ରଦ୍ଧାବଶରୁ ଛଅ ମାସ ପୂର୍ଣ୍ଣ ହେବା ପୂର୍ବରୁ ଦ୍ୱାର ଖୋଲିଦେଲେ । ବିହାରର ମଧ୍ୟସ୍ଥଳରେ ବୁଦ୍ଧଦେବ ଗାମ୍ଭୀର୍ଯ୍ୟଭାବରେ ଧ୍ୟାନସ୍ଥ ଅବସ୍ଥାରେ ହାତ ଉପରେ ହାତ ରଖିଥିବା ଦେଖିଲେ । ମୂର୍ତ୍ତି ଏକାବେଳେକେ ଜୀବନ୍ତ ଦେଖାଗଲା । କେବଳ ବକ୍ଷର ବାମଭାଗଟା ପୂର୍ଣ୍ଣଭାବରେ ଗଠନ ହୋଇ ନ ଥିଲା । ବ୍ରାହ୍ମଣ ଶିଳ୍ପୀଙ୍କୁ ଭିକ୍ଷୁମାନେ ଦେଖିପାରିଲେ ନାହିଁ । ଦୈବୀଶକ୍ତି ବଳରୁ ଏ ମୂର୍ତ୍ତି ଗଠିତ ହୋଇଥିଲା ବୋଲି ଏଥିରୁ ପ୍ରମାଣିତ ହେଲା ।

ଅବଶ୍ୟ ଏ କିମ୍ବଦନ୍ତୀ ସହିତ ଚତୁର୍ଦ୍ଧାମୂର୍ତ୍ତି ଗଠନର କିମ୍ବଦନ୍ତୀର ମେଳ ଅଛି । ପୁରୀର କିମ୍ବଦନ୍ତୀରେ ପନ୍ଦରଦିନ ମନ୍ଦିର ଦ୍ୱାର ବନ୍ଦ କରିବା ପାଇଁ ଶିଳ୍ପୀ କହିଥିବା କଥା ଅଛି । ବର୍ତ୍ତମାନ ସୁଦ୍ଧା ଜ୍ୟେଷ୍ଠପୂର୍ଣ୍ଣିମାଠାରୁ ଆଷାଢ଼ ଅମାବାସ୍ୟା ପର୍ଯ୍ୟନ୍ତ ଠାକୁରମାନେ ଯେଉଁ ପନ୍ଦର ଦିନଟି "ଅଣସର"ରେ ରହନ୍ତି, ତାହା ଏହି ପନ୍ଦରଦିନ । କିନ୍ତୁ ଇନ୍ଦ୍ରଦ୍ୟୁମ୍ନ ରାଣୀ ଗୁଣ୍ଡିଚାଦେବୀଙ୍କ ପରାମର୍ଶମତେ ପନ୍ଦରଦିନ ପୂର୍ଣ୍ଣହେବା ପୂର୍ବରୁ ମନ୍ଦିର ଦ୍ୱାର ଖୋଲିଦେବାରୁ ମୂର୍ତ୍ତି ଅସମ୍ପୂର୍ଣ୍ଣ ହୋଇ ରହିଲେ ବୋଲି କିମ୍ବଦନ୍ତୀରେ ଅଛି । ଗୟା କିମ୍ବଦନ୍ତୀରେ ଛଅମାସ । ଗୟାର ମୂର୍ତ୍ତି ପୁରୀର ମୂର୍ତ୍ତି ଅପେକ୍ଷା ପୂର୍ଣ୍ଣ ଅବସ୍ଥାରେ ଅଛି । କେବଳ ବକ୍ଷର ଏକ କ୍ଷୁଦ୍ର ଅଂଶ ଅସମ୍ପୂର୍ଣ୍ଣ ହେଲା । କିନ୍ତୁ ପୁରୀର ଚାରିମୂର୍ତ୍ତି ଯାକ ଅସମ୍ପୂର୍ଣ୍ଣ । ମନୁଷ୍ୟ ଆକାର ସହିତ ଅଳ୍ପ ପରିମାଣରେ ମେଳ ହେଉଛି । ପୁରୀରେ ଜଗନ୍ନାଥଙ୍କ ଖଣ୍ଡିଆ ହାତ ଦୁଇଟି ସମ୍ମୁଖ ଭାଗକୁ ପ୍ରସାରିତ ହୋଇଛି, କିନ୍ତୁ ବୁଦ୍ଧଗୟାରେ ବୁଦ୍ଧଙ୍କ ହାତ ଛନ୍ଦା ହୋଇଥିବା କିମ୍ବଦନ୍ତୀରୁ ଜଣାଯାଏ ।

ଦେଉଳଦ୍ୱାର ପନ୍ଦରଦିନ ବନ୍ଦକରି ଶିଳ୍ପୀ ମୂର୍ତ୍ତିଗଠନ କରିବା ବିଷୟଟି ସ୍କନ୍ଦପୁରାଣରେ ଲେଖାଅଛି । (୧୩୭)

୧୩୭ । ସ୍କନ୍ଦପୁରାଣ । ଉତ୍କଳଖଣ୍ଡ । ୧୮ଶ ଅ· ।

କିନ୍ତୁ ପନ୍ଦରଶହ ପୂର୍ବରୁ ଦ୍ୱାର ଖୋଲିବା ବ୍ୟବସ୍ଥା ଏହିଠାରେ ନାହିଁ । ବିଭିନ୍ନ ପୁରାଣରେ ଜଗନ୍ନାଥଙ୍କ ଚରିତ ବିଭିନ୍ନ ପ୍ରକାର ଦେଖାଯାଏ । ବର୍ତ୍ତମାନ ଏ ଯୁଗରେ ସୁଦ୍ଧା ଐତିହାସିକମାନଙ୍କ ଭିତରେ ଚରିତ ସମ୍ବନ୍ଧରେ ବହୁ ମତଭେଦ ଦେଖାଯାଉଛି । ପୁରୀର କିମ୍ବଦନ୍ତୀଟି ସଂସ୍କୃତ ଗ୍ରନ୍ଥମାନଙ୍କରେ ନ ଥିଲେ ମଧ୍ୟ ୧୫ଶ ୧୬ଶ ଶତାବ୍ଦୀ ବେଳକୁ ଓଡ଼ିଆ ଭାଷାରେ ଏହା ଲିପିବଦ୍ଧ ହୋଇ ସାରିଲାଣି । ମୂର୍ତ୍ତି ଅସମ୍ପୂର୍ଣ୍ଣ ରହିଛି ଏଥିରେ କୌଣସି ସନ୍ଦେହ ନାହିଁ । ସଂସ୍କୃତ ପୁରାଣର ବର୍ଣ୍ଣନାକୁ ଦେଖିଲେ ମୂର୍ତ୍ତି ଅସମ୍ପୂର୍ଣ୍ଣ ହୋଇଛି ବୋଲି ଧାରଣା ହେବ ନାହିଁ । ଉତ୍କଳଖଣ୍ଡରେ ବଳଭଦ୍ର, ଜଗନ୍ନାଥ, ସୁଭଦ୍ରାଙ୍କ ଯେଉଁ ବର୍ଣ୍ଣନା ଦିଆଯାଇଛି, ସେଥିରେ ଜଗନ୍ନାଥ ଚତୁର୍ବାହୁ ହୋଇ ଶଙ୍ଖ, ଚକ୍ର, ଗଦା, ପଦ୍ମ ଧରିଛନ୍ତି । ବଳଭଦ୍ର ଗଦା, ମୂଷଳ, ଚକ୍ର, ପଦ୍ମ ଧାରଣ କରିଛନ୍ତି । ଅନନ୍ତ ଫଣା ତାଙ୍କର ମସ୍ତକ ଉପରେ ଛତ୍ରାକୃତ ହୋଇ ଶୋଭାପାଉଛି ।' ତାଙ୍କର ମୁକୁଟ ଅଛି, କୁଣ୍ଡଳ ଅଛି । ସୁଭଦ୍ରା ଶୁଭ୍ରବଦନା, ବରଦାହସ୍ତା ହୋଇଛନ୍ତି । ପଦ୍ମ ଧାରଣ କରିଛନ୍ତି । ( ଉତ୍କଳ ଖଣ୍ଡ ୧୯ ଅ· ୯, ୧୦, ୧୧ ଶ୍ଳୋକ ) ମୂର୍ତ୍ତିମାନଙ୍କର ଏ ବର୍ଣ୍ଣନା ସହିତ ବର୍ତ୍ତମାନର ମୂର୍ତ୍ତିର କୌଣସି ମେଳ ନାହିଁ । ପୁରାଣକାରମାନେ ଭକ୍ତିପ୍ରଣୋଦିତ ହୋଇ କେବଳ ସୁନ୍ଦର ରୂପ ବର୍ଣ୍ଣନା କରିଛନ୍ତି । ମୂର୍ତ୍ତିମାନଙ୍କର ବେଶ ପୁରାଣବର୍ଣ୍ଣିତ ରୂପ ପ୍ରାୟ ଦେଖାଯାଏ । ହୁଏନ୍‌ସାଂଙ୍କ ସମୟକୁ ଅର୍ଥାତ୍ ୭ମ ଶତାବ୍ଦୀ ବେଳକୁ ପୁରୀର ଏ କିମ୍ବଦନ୍ତୀ ପ୍ରଚଳିତ ଥିଲା କି ନାହିଁ, ତାହା ଜାଣିବାର ଉପାୟ ନାହିଁ । ବୁଦ୍ଧଙ୍କର ମୂର୍ତ୍ତି ସମ୍ବନ୍ଧୀୟ କିମ୍ବଦନ୍ତୀ ଯେ ବୁଦ୍ଧଦେବଙ୍କ ସମୟରୁ ପ୍ରଚଳିତ ହୋଇ ଆସୁଛି, ଏହା କହି ହେବ ନାହିଁ । ହୁଏନ୍‌ସାଂଙ୍କ ପୂର୍ବରୁ ଜଗନ୍ନାଥାଦି, ଚତୁର୍ଦ୍ଧାମୂର୍ତ୍ତି ପୁରୀରେ ପୂଜା ପାଉଥିଲେ ବୋଲି କହି ହେବ । ଡାକ୍ତର ମିତ୍ରଙ୍କ ମତାନୁସାରେ ଦେଖିଲେ କିମ୍ବଦନ୍ତୀର ଏହି ସାମଞ୍ଜସ୍ୟ ଜଗନ୍ନାଥ ବୁଦ୍ଧମୂର୍ତ୍ତି ହେବାର ଅନ୍ୟ ପ୍ରମାଣମାନଙ୍କ ଭିତରେ ଏକ ପ୍ରମାଣ । କିନ୍ତୁ ବୌଦ୍ଧକିମ୍ବଦନ୍ତୀ ହିନ୍ଦୁ କିମ୍ବଦନ୍ତୀର ଅନୁକରଣରେ ହୋଇ ନ ଥିବ ବୋଲି ଭାବିବା ମଧ୍ୟ ଅଯୌକ୍ତିକ ହେବ । ସମଗ୍ର ବୌଦ୍ଧଶାସ୍ତ୍ରରେ ହିନ୍ଦୁଶାସ୍ତ୍ରର, ହିନ୍ଦୁ ଦେବଦେବୀର ବହୁ ଅନୁକରଣ ଦେଖାଯାଏ । ବସ୍ତୁତଃ ବୌଦ୍ଧଯୁଗରେ ବୌଦ୍ଧଧର୍ମ ହିନ୍ଦୁଧର୍ମର ଏକ ଶାଖା ରୂପରେ ପରିଗଣିତ ହେଉଥିଲା । ସେହି କାରଣରୁ ଚରିତରେ, ଦର୍ଶନରେ ସାମ୍ପ୍ରଦାୟିକ ଆଗ୍ରହ ବ୍ୟବହାରରେ "ବୈଦେଶିକ" ଆକାର ଧାରଣ କରିବା ଭଳି କୌଣସି ପ୍ରଭେଦ ଦେଖାଯାଏ ନାହିଁ । ବୁଦ୍ଧଗୟାର କିମ୍ବଦନ୍ତୀଟି ହୁଏ ତ ଭାରତର ଏକ ପ୍ରସିଦ୍ଧକ୍ଷେତ୍ର ପୁରୀର ଏ କିମ୍ବଦନ୍ତୀ ଅନୁକରଣରେ ସୃଷ୍ଟି ହୋଇଥିବା ସମ୍ଭବ ।

# ଅଷ୍ଟମ ପରିଚ୍ଛେଦ

## ଜଗନ୍ନାଥଙ୍କ ଇତିହାସ

ଶ୍ରୀ ଜଗନ୍ନାଥଙ୍କ ଧାରାବାହିକ ଇତିହାସ ଲେଖିବା ସମ୍ଭବ ନୁହେଁ । ଗଙ୍ଗବଂଶ ରାଜତ୍ୱ ପୂର୍ବର ଘଟଣାବଳୀର ବିବରଣ ପ୍ରାମାଣିକ ଭାବରେ ଜଣାଯାଉ ନାହିଁ । ପୌରାଣିକ ଉପାଖ୍ୟାନ ବ୍ୟତୀତ ଐତିହାସିକ ଯୁଗର ଘଟଣା ବହୁ ସ୍ଥାନରେ ନିର୍ଦ୍ଦିଷ୍ଟ ଭାବରେ ମିଳୁ ନାହିଁ । 'ମାଦଳାପାଞ୍ଜି'ରେ ଯେଉଁସବୁ ବିବରଣ ମିଳୁଛି, ତାହା ମଧ୍ୟ କେତେକ ସ୍ଥଳରେ ସମସାମୟିକ ଐତିହାସିକ ପ୍ରମାଣ ସହିତ ମେଳ ହେଉ ନାହିଁ । ଏହା ସତ୍ତ୍ୱେ ମାଦଳାପାଞ୍ଜିରୁ ବହୁତ ବିଷୟ ମିଳୁଛି । ପାରମ୍ପରିକ ପ୍ରଥା, କିମ୍ବଦନ୍ତୀ ଓ ଐତିହାସିକ ଘଟଣାର ସମାବେଶ ଏଥିରେ ଥିବାରୁ ଜଗନ୍ନାଥଙ୍କ ଇତିହାସ ଓ ଓଡ଼ିଆ ଇତିହାସ ଲେଖାରେ ପାଞ୍ଜିଟି ଅପରିହାର୍ଯ୍ୟ ଉପାଦାନ ରୂପେ ବ୍ୟବହୃତ ହେଉଛି ।

**ମାଦଳା ପାଞ୍ଜି** :—ଲୋକେ କଥାରେ କହନ୍ତି, "ଯାହା ନାହିଁ ଭାରତେ, ତାହା ନାହିଁ ଭାରତେ ।" ଅର୍ଥାତ୍ ଯାହା ମହାଭାରତ ଗ୍ରନ୍ଥରେ ନାହିଁ ତାହା ଭାରତବର୍ଷରେ ନାହିଁ । ଏହି ଅନୁରୂପ ଆଉ ଗୋଟିଏ କଥା ଆମ ଓଡ଼ିଶାରେ ପ୍ରଚଳିତ ଅଛି, ତାହା ହେଉଛି, "ମାଦଳାରେ ସବୁ ଅଛି ।" ଏହି ମାଦଳା ହିଁ ମାଦଳାପାଞ୍ଜି । ଓଡ଼ିଶାର ରାଜବଂଶ ଚରିତ, ଓଡ଼ିଶା ଇତିହାସ ଓ ପୁରୁଷୋତ୍ତମ କ୍ଷେତ୍ରର ପ୍ରସିଦ୍ଧ ଶ୍ରୀ ଜଗନ୍ନାଥ ମନ୍ଦିରର ଇତିବୃତ୍ତ, ରୀତିନୀତି ପ୍ରଭୃତି ବିଷୟରେ କଥା ପଡ଼ିଲେ ଲୋକେ କହିଥାଆନ୍ତି "ମାଦଳାପାଞ୍ଜିରେ କଣ ଅଛି, ଦେଖ ।" ଏହି ଦିଗରୁ ଦେଖିଲେ ଓଡ଼ିଶାର ପ୍ରାଚୀନ ରାଜନୈତିକ ଜୀବନ, ସାମାଜିକ ରୀତିନୀତି ଓ ପରମ୍ପରା ସମ୍ବନ୍ଧରେ ମାଦଳାପାଞ୍ଜିର ପ୍ରଭାବ ଅସ୍ୱୀକାର କରି ହୁଏ ନାହିଁ ।

ତେବେ ଏହି ମାଦଳାପାଞ୍ଜିଟି କଣ, ଏବଂ କାହାକୁ କୁହାଯାଉଛି ?

ଓଡ଼ିଶାର ଓ ଶ୍ରୀ ଶ୍ରୀ ଜଗନ୍ନାଥଦେବଙ୍କର ମନ୍ଦିରର ରୀତିନୀତି ଓ ରାଜାମାନଙ୍କର ରାଜତ୍ୱର ସଂକ୍ଷିପ୍ତ ଇତିହାସ କ୍ରମାନୁସାରେ ମାଦଳାପାଞ୍ଜିରେ ଲେଖା ହୋଇଥିବା

ଲୋକେ ବିଶ୍ୱାସ କରନ୍ତି । ଏହି ସବୁ ବିଷୟ ତାଳପତ୍ରରେ ଲେଖା ହୋଇ ଜଗନ୍ନାଥ ମନ୍ଦିରରେ ରକ୍ଷିତ ହେଉଥିଲା । ପୁରୀର ବଡ଼ଦେଉଳରେ ଏଭଳି ଏକ ପାଞ୍ଜି ରକ୍ଷିତ ହୋଇଆସୁଅଛି ଏବଂ ଏହି ମାଦଳାପାଞ୍ଜି ଲେଖା ମନ୍ଦିରର ଏକ ସେବା ଭାବରେ ରହିଛି । ଶ୍ରୀ ଜଗନ୍ନାଥ ମନ୍ଦିରର ଦେଉଳ-କରଣ ମନ୍ଦିରର ଦୈନିକ ଆୟବ୍ୟୟ ଲେଖି ରଖନ୍ତି ଏବଂ ତଢ଼ାଉ-କରଣ ଦୈନିକ ରାଜଭୋଗର ବିବରଣ ଲେଖନ୍ତି । ଦେଉଳ କରଣଙ୍କ ଘରେ, ତଢ଼ାଉ-କରଣଙ୍କ ଘରେ ଓ ଜଗନ୍ନାଥ ମନ୍ଦିରରେ, ଏପରି ତିନି ସ୍ଥାନରେ ମାଦଳାପାଞ୍ଜିର ତିନୋଟି ଲେଖା ଥିବାର ଜଣାଯାଏ । ପ୍ରଥମ ବ୍ୟବସ୍ଥା ଅନୁସାରେ ଏହି ତିନି ସ୍ଥାନରେ ତିନୋଟି ଲେଖା ଥିବାର ହିଁ ଅନୁମାନ କରାଯାଏ । କାଳକ୍ରମେ ସେବାବିଭାଗ ଯୋଗୁଁ ପାଞ୍ଜିର ନକଲ ସଂଖ୍ୟା ବୃଦ୍ଧି ପାଇ ନ ଥିଲେ ମଧ୍ୟ ବିଭିନ୍ନ ଲେଖକଙ୍କ ହାତରେ ରୁଚି ଅନୁସାରେ ଘଟଣାବଳୀର ବିବରଣରେ ବିଭିନ୍ନତା ଦେଖାଦେବା ସ୍ୱାଭାବିକ । ଯେଉଁ ତାଳପତ୍ର ଉପରେ ଦୈନିକ ପାଞ୍ଜିଭଳି ଏହି ବିବରଣ ସବୁ ଲେଖାହୁଏ ସେ ସବୁ ବିଡ଼ା ବନ୍ଧାହୋଇ ମାଦଳା ବା ମର୍ଦ୍ଦଳ ଆକାରରେ ରଖା ହେଉଥିବାରୁ ଏହି ତାଳପତ୍ର-ପୋଥିକୁ ମାଦଳାପାଞ୍ଜି ବୋଲି କୁହାଯାଏ ।

ମନେ ହେଉଛି, ବହୁ ପ୍ରାଚୀନ କାଳରୁ ଜଗନ୍ନାଥ ମନ୍ଦିରରେ ମାଦଳାପାଞ୍ଜି ରକ୍ଷିତ ହୋଇ ଆସୁଥିଲା ଏବଂ ଏହାର ପ୍ରତିଳିପି ଅନ୍ୟସ୍ଥାନରେ ରହିବା ବ୍ୟବସ୍ଥା ନ ଥିଲା । ମୁଖ୍ୟ ଭାବରେ ଜଗନ୍ନାଥ ମନ୍ଦିରର ରୀତିନୀତି, ଦୈନିକ ନୀତି ଓ ଦେଶର ମୁଖ୍ୟ ଘଟଣାର ବିବରଣ ଟିପା ଆକାରରେ ରହୁଥିଲା । ଗଙ୍ଗବଂଶୀ ଅନଙ୍ଗଭୀମ ଦେବଙ୍କ ରାଜତ୍ୱ ଅମଳରୁ ମନ୍ଦିରର ରୀତିନୀତି, ପର୍ବପର୍ବାଣି ପ୍ରଭୃତିରେ ବହୁ ଆଡ଼ମ୍ବର ଦେଖା-ଦେଇଛି ଏବଂ ସେହି ସମୟରୁ ହିନ୍ଦୁ ରାଜାମାନଙ୍କ ରାଜତ୍ୱ ଶେଷ ପର୍ଯ୍ୟନ୍ତ ପାଞ୍ଜିର ବିବରଣ କ୍ରମରେ ବର୍ଦ୍ଧିତ ଆକାର ଧାରଣ କରିଛି । ମତ୍ତଭାନୁଦେବଙ୍କ ସମୟରେ ଫିରୋଜ ସାହା ଜଗନ୍ନାଥ ମନ୍ଦିର ଆକ୍ରମଣ କରି ମନ୍ଦିରର ବହୁ କ୍ଷତି କରିଥିବା ତାଙ୍କ ଜୀବନୀରୁ ଜଣାଯାଏ । ସେତେବେଳେ ବହୁ ମୂଲ୍ୟବାନ୍ ଦ୍ରବ୍ୟ ମଧ୍ୟରେ ପାଞ୍ଜି ମଧ୍ୟ ନଷ୍ଟ ହୋଇ ଯାଇଥିବା ସମ୍ଭବ । ପରେ, ହୁଏତ, ଏହା ପୁନର୍ବାର ଲେଖାଇବାର ବ୍ୟବସ୍ଥା ହୋଇଥିବ । ଜନଶ୍ରୁତି, ସ୍ମୃତିଶକ୍ତି ଓ ବିକ୍ଷିପ୍ତ ଉପାଦାନ ଉପରେ ନିର୍ଭର କରି ଏହା ଲେଖା ହୋଇଥିବ । କଳାପାହାଡ଼ଙ୍କ ଆକ୍ରମଣ ବେଳେ ମଧ୍ୟ ଏହିପରି ଅବସ୍ଥା ଉପୁଜିଥିବ ଏବଂ ଆଉ ଥରେ ନୂତନ ଭାବରେ ପାଞ୍ଜିକୁ ରକ୍ଷା କରାଯାଇଥିବ । ଏହା ପରେ ମଧ୍ୟ ମୁସଲମାନ ଶାସକମାନଙ୍କ ଅମଳରେ କେତେଥର ଜଗନ୍ନାଥ ମନ୍ଦିର ଉପରେ ଆକ୍ରମଣ ହୋଇଛି ଏବଂ ବହୁ ପଦାର୍ଥ ନଷ୍ଟ ହୋଇଛି । ସେତେବେଳେ ମଧ୍ୟ ଏହି

ଦୁର୍ଦ୍ଦଶା ଘଟିଥିବ । ପାଞ୍ଜି ମଧ୍ୟ ପୁନର୍ବାର ଗଠିତ ହୋଇଥିବ । ଏହିପରି ଭାବରେ ଭିନ୍ନ ଭିନ୍ନ ସମୟରେ ପାଞ୍ଜିର ନୂତନ କଳେବର ହୋଇଥିବାରୁ ବିଷୟବସ୍ତୁରେ ଏତେ ପ୍ରମାଦ ଓ ପ୍ରଭେଦ ଦେଖାଦେଇଥିବା ସହଜେ ଅନୁମେୟ ।

ଏହି ମାଦଳାପାଞ୍ଜିର ଆରମ୍ଭ ସମ୍ବନ୍ଧରେ କିମ୍ବଦନ୍ତୀ ଅଛି ଯେ ଦକ୍ଷିଣ କଳିଙ୍ଗର ଗଙ୍ଗବଂଶୀୟ ରାଜା ଚୋଡ଼ଗଙ୍ଗଦେବ ସମଗ୍ର ଉତ୍କଳ ଦେଶକୁ ଜୟ କରିବାପରେ ଓଡ଼ିଶା ସିଂହାସନରେ ବସିବାଦିନ ତାଙ୍କ ଆଦେଶ ଅନୁସାରେ ଏହା ଆରମ୍ଭ ହୋଇଥିଲା । ମାଦଳାପାଞ୍ଜିର ଏକ ପ୍ରତିଲିପି ଅନୁସାରେ କନ୍ୟାମାସ ଦଶମୀ ଚୋଡ଼ଗଙ୍ଗ-ଦେବ ଓଡ଼ିଶାରେ ରାଜାହେଲେ । କିନ୍ତୁ କେଉଁବର୍ଷରେ ରାଜତ୍ୱ ଆରମ୍ଭହେଲା ତାହା ପାଞ୍ଜିରୁ ଜାଣିବା ଉପାୟ ନାହିଁ । ଖ୍ରୀ: ୧୧୧୨ ବେଳକୁ ଚୋଡ଼ଗଙ୍ଗ ଓଡ଼ିଶା ଜୟ କରିବା ସମ୍ଭବ । ଏହି ବର୍ଷରୁ ଏହିପାଞ୍ଜି ଆରମ୍ଭ ହୋଇଥିବା ଅନୁମାନ କରାଯାଇ-ପାରେ ।

ମାଦଳାପାଞ୍ଜି ଗଙ୍ଗବଂଶୀ ରାଜାମାନଙ୍କ ରାଜତ୍ୱ ଆରମ୍ଭ ସମୟରେ ଲେଖା-ହେଉଛି ବୋଲି କିମ୍ବଦନ୍ତୀରୁ ଜଣାଯାଉଥିଲେ ମଧ୍ୟ କେତେକ ଐତିହାସିକଙ୍କ ମତରେ ଏହା ମୁସଲମାନ ରାଜତ୍ୱକାଳରେ ଲେଖାହୋଇଥିଲା । ପାଞ୍ଜି ବହୁ ପୂର୍ବରୁ ଲେଖା-ହୋଇ ଆସୁଥିଲେ ଗଙ୍ଗବଂଶୀୟ ସୂର୍ଯ୍ୟବଂଶୀୟ ଓ ତତ୍‌ପରବର୍ତ୍ତୀ ଅନ୍ୟାନ୍ୟ ରାଜାମାନଙ୍କର ରାଜତ୍ୱ କାଳର ବିବରଣ ନିର୍ଭୁଲ ଭାବରେ ଲେଖା ହୋଇଥାଆନ୍ତା । କିନ୍ତୁ ପାଞ୍ଜିରେ କେତେକ ରାଜାଙ୍କ ଅମଳର ଐତିହାସିକ ଘଟଣାବଳୀ ଯେପରି ଭାବରେ ଦିଆଯାଇଛି ତାହା ସମସାମୟିକ ଅଧିକ ବିଶ୍ୱାସଯୋଗ୍ୟ ଐତିହାସିକ ଉପାଦାନ ସହିତ ମେଳହେଉ ନାହିଁ । ପାଞ୍ଜିଟି ଚୋଡ଼ଗଙ୍ଗଙ୍କ ସମୟରୁ ଆରମ୍ଭ ହୋଇଥିବା ମତକୁ ସ୍ୱୀକାର କଲେ ଅନ୍ତତଃପକ୍ଷେ ଏହି ସମୟଠାରୁ ପାଞ୍ଜିଲିଖିତ ଘଟଣାବଳୀ ଅନ୍ୟ ପ୍ରାମାଣ୍ୟ ଉପାଦାନ ଦ୍ୱାରା ସମର୍ଥିତ ହେବା ଆବଶ୍ୟକ । କିନ୍ତୁ ଏହାର ବ୍ୟତିକ୍ରମ ଦେଖାଯାଉଥିବାରୁ ପାଞ୍ଜିର ଐତିହାସିକତା ସମ୍ବନ୍ଧରେ ସନ୍ଦେହ ଉପୁଜିବା ସମ୍ଭବ ହୋଇଛି ।

ପାଞ୍ଜିରେ ସୃଷ୍ଟି ଆରମ୍ଭରୁ ଓଡ଼ିଶାର ଯେତେ ରାଜା ରାଜତ୍ୱ କରିଛନ୍ତି ସେମାନଙ୍କର ନାମ ଓ ସେମାନଙ୍କର ରାଜତ୍ୱକାଳ ବର୍ଣ୍ଣିତ ଅଛି । ଗଙ୍ଗବଂଶ ରାଜତ୍ୱ ପୂର୍ବରୁ ଯେଉଁ ରାଜାମାନେ ରାଜତ୍ୱ କରିଥିଲେ ସେମାନଙ୍କ ସମ୍ବନ୍ଧରେ ପ୍ରମାଦଶୂନ୍ୟ ବିବରଣୀ ପାଞ୍ଜିରୁ ମିଳୁନାହିଁ । ସତ୍ୟ,ତ୍ରେତା,ଦ୍ୱାପର,କଳି—ଏ ଚାରିଯୁଗର ଓଡ଼ିଶା ରାଜା-ମାନଙ୍କର ନାମୋଲ୍ଲେଖ ଓ ରାଜତ୍ୱର ସମୟ ପାଞ୍ଜିରେ ଲେଖାଅଛି । କଳିଯୁଗରେ ପ୍ରାୟ

ପନ୍ଦର କି ଷୋଳ ରାଜାଙ୍କ ପରେ କେଶରୀବଂଶର ରାଜାମାନଙ୍କର ଉଲ୍ଲେଖ ଅଛି । ଏହି ବଂଶରେ ପ୍ରାୟ ଷାଠିଏ ଜଣ ରାଜା ରାଜତ୍ୱ କରିଥିବା ପାଞ୍ଜି କହନ୍ତି । କେଶରୀବଂଶ ପରେ ଗଙ୍ଗବଂଶର ତେତିଶି ଜଣ ରାଜା ରାଜତ୍ୱ କରିଥିଲେ ।

କେଶରୀବଂଶର ରାଜତ୍ୱ ପୂର୍ବରୁ ଓ ତା ପରେ ଗଙ୍ଗବଂଶର ରାଜତ୍ୱର କେତେକ ରାଜାଙ୍କ ନାମ କାଳ୍ପନିକ, ବର୍ତ୍ତମାନ ସୁଦ୍ଧା ମିଳିଥିବା ଐତିହାସିକ ଉପାଦାନ ସହିତ ଅନେକ ସ୍ଥାନରେ ମେଳ ହେଉ ନାହିଁ । କେବଳ କେତେକ ପ୍ରସିଦ୍ଧ ରାଜାଙ୍କ ସମୟର-ପ୍ରସିଦ୍ଧ ଘଟଣାର ଉଲ୍ଲେଖ ଏଥିରେ ଅଛି । ଏ ଗୁଡ଼ିକ କିମ୍ବଦନ୍ତୀ ସହିତ ମେଳ ହେଉଥିବାରୁ ଐତିହାସିକ ତଥ୍ୟ ସଂଗ୍ରହ କରିବାରେ ଏହା ସାହାଯ୍ୟ କରୁଛି । ଗଙ୍ଗବଂଶ ରାଜତ୍ୱ ଆରମ୍ଭରୁ ପ୍ରଥମ ରାଜା ଚୋଡ଼ଗଙ୍ଗଦେବଙ୍କ ଆଦେଶରେ ପାଞ୍ଜି ଲେଖାହେବା ସୂତ୍ରପାତ ହୋଇଥିଲା ବୋଲି ଜନଶ୍ରୁତି କହୁଛି । ଏପରି ସ୍ଥଳେ ଅନ୍ତତଃପକ୍ଷେ ଏହି ବଂଶର ରାଜାମାନଙ୍କର ନାମତାଲିକା ଓ ରାଜତ୍ୱକାଳ ସମ୍ବନ୍ଧରେ ପ୍ରମାଦଶୂନ୍ୟ ବିବରଣୀ ଏଥିରୁ ମିଳିବା ଆଶା କରାଯାଏ । କିନ୍ତୁ ଏହି ବଂଶର ରାଜତ୍ୱ ସମ୍ବନ୍ଧରେ ସମସାମୟିକ ଅଭିଲେଖ ଓ ଗ୍ରନ୍ଥ ପ୍ରଭୃତିରୁ ଯେଉଁ ତଥ୍ୟ ମିଳୁଛି ତାହା କେତେକ ସ୍ଥାନରେ ଅମେଳ ହେଉଥିବାରୁ ପାଞ୍ଜିର ସବୁ ତଥ୍ୟ ଉପରେ ନିର୍ଭର କରିହେଉ ନାହିଁ । ଗଙ୍ଗବଂଶର ରାଜାମାନଙ୍କର ନାମ ଓ ରାଜତ୍ୱସମୟ ପାଞ୍ଜିରେ ପ୍ରମାଦପୂର୍ଣ୍ଣ ଥିବା ହିଁ ଜଣାଯାଏ । କିନ୍ତୁ ପ୍ରଧାନ ପ୍ରଧାନ ରାଜା ଓ ସେମାନଙ୍କ ସମୟର ପ୍ରଧାନ ପ୍ରଧାନ ଘଟଣାର ବିବରଣ ପାଇଁ ବର୍ତ୍ତମାନ ସୁଦ୍ଧା ମାଦଳାପାଞ୍ଜି ହିଁ ଅବଲମ୍ବନ ହୋଇରହିଛି । ଗଙ୍ଗବଂଶ ପରେ ସୂର୍ଯ୍ୟବଂଶ ଓ ପରବର୍ତ୍ତୀ ରାଜାମାନଙ୍କର ବିବରଣୀ ଐତିହାସିକ ତଥ୍ୟଠାରୁ ବେଶି ଅମେଳ ହେଉ ନ ଥିବାରୁ ପାଞ୍ଜିର ଏହି ଅଂଶର ଐତିହାସିକ ଗୁରୁତ୍ୱ ରହିଛି ।

ମାଦଳାପାଞ୍ଜି କେବେ ଆରମ୍ଭ ହୋଇଛି ତାହା ମଧ୍ୟ ସଠିକ କହିହେଉ ନାହିଁ । ଏ ସମ୍ବନ୍ଧରେ ଜନଶ୍ରୁତି ମଧ୍ୟ ବିଭିନ୍ନ ପ୍ରକାରର ଥିବା ଜଣାଯାଏ । ଯଯାତି, ଜନ୍ମେଜୟ, ଚୋଡ଼ଗଙ୍ଗଦେବ—ଏହି ତିନି ରାଜାଙ୍କ ଭିତରୁ କେହି ଜଣଙ୍କ ରାଜତ୍ୱରେ ମାଦଳାପାଞ୍ଜି ଲେଖା ଆରମ୍ଭ ହୋଇଥିବା ବେଶି ଲୋକ ବିଶ୍ୱାସ କରନ୍ତି ।

ଓଡ଼ିଶାର ଇତିହାସ ଲେଖକମାନଙ୍କ ଭିତରେ ପ୍ରଥମେ ଷ୍ଟାର୍ଲିଙ୍ଗସାହେବ (୧୩୮) ମାଦଳାପାଞ୍ଜି ଉପରେ ନିର୍ଭରକରି ଓଡ଼ିଶାର ରାଜବଂଶାବଳୀ ରଚନା କରିଥିଲେ । ପାଞ୍ଜି ତ୍ରୟୋଦଶ ଶତାବ୍ଦୀରେ ଆରମ୍ଭ ହୋଇଥିବା ସେ କହିଛନ୍ତି ।

୧୩୮ । ଷ୍ଟାର୍ଲିଂଙ୍କ ଓଡ଼ିଶା ଇତିହାସ (ଇଂରାଜୀ) ।

ଜନଶ୍ରୁତି ହିଁ ତାଙ୍କର ଭିତ୍ତି । ଗତ ଶତାବ୍ଦୀରେ ଭବାନୀଚରଣ ବନ୍ଦ୍ୟୋପାଧ୍ୟାୟ ନାମକ ଜଣେ ବଙ୍ଗୀୟ ଲେଖକ ଏହି ମାଦଳାପାଞ୍ଜିକୁ ଅବଲମ୍ବନ କରି "ପୁରୁଷୋତ୍ତମ ଚନ୍ଦ୍ରିକା" ନାମକ ଏକ ଗ୍ରନ୍ଥ ବଙ୍ଗଭାଷାରେ ରଚନା କରିଛନ୍ତି (୧୬୯) । ସେ ଲେଖିଛନ୍ତି ଯେ ମାଦଳାପାଞ୍ଜି ଖୋର୍ଦ୍ଧା ରାଜା ରାମଚନ୍ଦ୍ର ଦେବଙ୍କ ଦ୍ୱିତୀୟ ଅଙ୍କରେ ରାଜାଙ୍କ ଆଦେଶାନୁସାରେ ବଟକୃଷ୍ଣ ମହାନ୍ତିଙ୍କ ଦ୍ୱାରା ଲିଖିତ ହୋଇଛି । ଏହା ଓଡ଼ିଶାରେ ମୁସଲମାନ ରାଜତ୍ୱ ସମୟର ପ୍ରାୟ ଚାରିଶହ ବର୍ଷ ତଳର ବା ଷୋଡ଼ଶ ଶତାବ୍ଦୀର ଘଟଣା ।

ମାଦଳାପାଞ୍ଜିରେ କେତେକ ଐତିହାସିକ କିମ୍ବଦନ୍ତୀ ଚର୍ଚ୍ଚିତ ହୋଇଥିବାରୁ ବର୍ତ୍ତମାନ ଐତିହାସିକମାନେ ତାହାର ଆଶ୍ରୟ ନେଉଛନ୍ତି । ପ୍ରାଚୀନକାଳର ପ୍ରମାଦଶୂନ୍ୟ ନିର୍ଭରଯୋଗ୍ୟ ଐତିହାସିକ ଉପାଦାନ ସ୍ୱରୂପ ଏହାକୁ ଗ୍ରହଣ କରାଯାଇ ନ ପାରେ । ଯଦି ଭବିଷ୍ୟତରେ ପ୍ରାଚୀନ ପାଞ୍ଜିର ସମ୍ପୂର୍ଣ୍ଣ ପ୍ରତିଲିପି କୌଣସିଠାରେ ଆବିଷ୍କୃତ ହୁଏ ତାହାହେଲେ ପ୍ରାଚୀନ ଓଡ଼ିଶାର ଇତିହାସ ସଙ୍କଳନରେ ଏହା ଯେ ବିଶେଷ ସାହାଯ୍ୟ କରିବ ଏଥିରେ କୌଣସି ସନ୍ଦେହ ନାହିଁ । ବର୍ତ୍ତମାନ ମୁଦ୍ରିତ ପାଞ୍ଜିର ଯେଉଁ ବିଭିନ୍ନ ରୂପ ବିଭିନ୍ନ ଭାବରେ ପ୍ରକାଶ ପାଉଛି ସେଥିରୁ ପ୍ରାଚୀନ ଓଡ଼ିଶା ଇତିହାସ ନିର୍ଭୁଲ ଭାବରେ ଲେଖା ହୋଇପାରିବା ସମ୍ଭବ ନୁହେଁ ।

ତେବେ ଏହି କେତେକ କାରଣରୁ ମାଦଳାପାଞ୍ଜିର ଐତିହାସିକ ମୂଲ୍ୟ ରହିଛି । ପ୍ରଥମରେ, ପ୍ରାଚୀନ ଓଡ଼ିଶାର ବହୁ ପ୍ରଧାନ ପ୍ରଧାନ ଐତିହାସିକ ଘଟଣା ଏଥିରେ ଲିପିବଦ୍ଧ ହୋଇଛି ।

ଦ୍ୱିତୀୟରେ ଜଗନ୍ନାଥ ମନ୍ଦିରର ରୀତିନୀତି, ପର୍ବପର୍ବାଣିର ବିବରଣ ପାଇଁ ମାଦଳାପାଞ୍ଜି ଏକ ପ୍ରଧାନ ସହାୟ । ସୂର୍ଯ୍ୟବଂଶ ରାଜତ୍ୱ ଆରମ୍ଭଠାରୁ ପାଞ୍ଜିର ବିବରଣ ବହୁ ସ୍ଥାନରେ ଅନ୍ୟାନ୍ୟ ପ୍ରାମାଣିକ ଐତିହାସିକ ଉପାଦାନ ସହିତ ମେଳ ହେଉଛି । ଏହି ସମୟ ପାଇଁ ପାଞ୍ଜି ଏକ ଉପାଦାନ-ଗ୍ରନ୍ଥରୂପେ ଗୃହୀତ ହେବାରେ କୌଣସି ଆପତ୍ତି ନାହିଁ ।

ଶ୍ରୀ ଜଗନ୍ନାଥଙ୍କ ଧାରାବାହିକ ଇତିହାସ ଲେଖିବା ସମ୍ଭବ ନୁହେଁ । ଗଙ୍ଗବଂଶ-ପୂର୍ବ ସମୟର ଇତିହାସ ଠିକ୍ ଭାବରେ ଜଣାଯାଉ ନାହିଁ । ପୌରାଣିକ ଉପାଖ୍ୟାନ

---

୧୬୯ । ଭବାନୀଚରଣ ବନ୍ଦୋପାଧ୍ୟାୟ ! "ପୁରୁଷୋତ୍ତମ ଚନ୍ଦ୍ରିକା" (ବଙ୍ଗଳା)

ପରେ ଐତିହାସିକ ଯୁଗର ଘଟଣା ନିର୍ଦ୍ଦିଷ୍ଟ ଭାବରେ ମିଳୁ ନାହିଁ । "ମାଦଳାପାଞ୍ଜି"ରେ ଯେଉଁ ସବୁ ବିବରଣୀ ମିଳୁଛି ତାହା ମଧ୍ୟ କେତେକ ସ୍ଥଳରେ ସମସାମୟିକ ଅଭିଲେଖ-ମାନଙ୍କ ସହିତ ମେଳ ହେଉନାହିଁ । ଏହାସତ୍ତ୍ୱେ ମାଦଳାପାଞ୍ଜିରୁ ବହୁତ ବିଷୟ ମିଳୁଛି । କିନ୍ତୁ ରାଜାମାନଙ୍କର ରାଜତ୍ୱକାଳ ଜଣାଯାଉ ନଥିବାରୁ ଘଟଣାମାନଙ୍କର ସମୟ ଦିଆଯାଇ ପାରୁ ନାହିଁ ।

କେଶରୀ ବଂଶର ରାଜତ୍ୱ ଭିତରେ ଶ୍ରୀ ଜଗନ୍ନାଥଙ୍କ ସମ୍ବନ୍ଧରେ ପ୍ରଥମ ଐତିହାସିକ ଉଲ୍ଲେଖ ଦେଖାଯାଏ । ରକ୍ତବାହୁଙ୍କ ଓଡ଼ିଶା ଆକ୍ରମଣରୁ ଜଗନ୍ନାଥଙ୍କ ବିଷୟ ଆରମ୍ଭ ହୋଇଛି । ( ୧୪୦ )

**ଶୋଭନଦେବ: ରକ୍ତବାହୁର ଆକ୍ରମଣ**—ଶୋଭନଦେବ ଷଷ୍ଠ ଶତାବ୍ଦୀରେ ରାଜା ହୋଇଥିଲେ ବୋଲି ଅନୁମାନ କରାଯାଏ । ଏହାଙ୍କ ସମୟରେ ଭାରତବର୍ଷରେ ବୈଦେଶିକମାନଙ୍କର ବିଶେଷତଃ ହୁଣ୍ ଓ ଶକମାନଙ୍କର ପ୍ରଭାବ ବୃଦ୍ଧି ପାଇଥିଲା । ଏମାନଙ୍କ ଭିତରୁ ରକ୍ତବାହୁ ନାମକ ଜଣେ ସେନାଧ୍ୟକ୍ଷ ପୁରୀ ଆକ୍ରମଣ କରିଥିଲା । ରକ୍ତବାହୁ ସମୁଦ୍ର ବାଟେ ଏହି ଆକ୍ରମଣ କରିଥିଲା । ବୈଦେଶିକ ଶତ୍ରୁର ଆକ୍ରମଣରୁ ରକ୍ଷା କରିବା ପାଇଁ ଶୋଭନଦେବ ଠାକୁରମାନଙ୍କୁ ସୋନପୁରକୁ ନେଇଯାଇ ସେଠାରେ ଏକ ବରଗଛ ମୂଳେ ପୋତିଦେଲେ । ସେଠାରେ ଠାକୁରମାନେ ଅଜ୍ଞାତବାସରେ ବହୁ ବର୍ଷ ରହିଲେ ।

"ଶୋଭନଦେବ ଭୋଗ କଲେ ବ ୧୭ ବର୍ଷ । ଏହି ମହାରାଜାଙ୍କ ଅଙ୍କେ ଦିଲ୍ଲୀରୁ ରକ୍ତବାହୁ ଆସିବା ବାରତାକୁ ପରମେଶ୍ୱରଙ୍କୁ ସୁନପୁର ଗୋପଲୀ ଦେଇ-ଗଲେ । ସେଠାରେ ମଣ୍ଡପ ଗୋଟିଏ କରି ବିଜେ କରାଇଲେ ବ ୪୫ ବର୍ଷ । ଏଥି ଉତ୍ତାରେ ମୁଗଲେ ପ୍ରବଳ ହୋଇଲାକୁ ସେବକେ ସେଠାରେ ପରମେଶ୍ୱରଙ୍କୁ ପାତାଳ କରି ଉପରେ ଗଛ ଲଗାଇ ରାଜ୍ୟ ଅନ୍ତର ହୋଇଗଲେ । ପାତସାଙ୍କ ଅମୁରା ରକତବାହୁ ଶ୍ରୀପୁରୁଷୋତ୍ତମ ବୋଲି ଅଇଲା । ସମୁଦ୍ର ଯୋକାଏ ଦୂର ମାଡ଼ି ଅଇଲା । ଏ ରାଜା ବହୁତ ଯୁଦ୍ଧ କଲେ । ଛିହି ନପାରି ଝାରଖଣ୍ଡ ଭିତରେ ରହିଲେ ।" ଶୋଭନଦେବଙ୍କ ପରେ ବୈଦେଶିକମାନେ ଓଡ଼ିଶାରେ ରାଜତ୍ୱ କରିବାରୁ ଠାକୁରମାନଙ୍କୁ ସୋନପୁରରୁ ଆଉ ଆଣିବାର ସୁବିଧା ହେଲା ନାହିଁ । ୧୪୪ବର୍ଷ ଠାକୁରମାନେ ବରଗଛତଳେ ପୋତା ହୋଇ ରହିଥିଲେ ବୋଲି ମାଦଳାପାଞ୍ଜିରୁ ଜଣାଯାଏ ।

---

୧୪୦ । ମାଦଳାପାଞ୍ଜି । ପ୍ରାଚୀସମିତିଦ୍ୱାରା ସମ୍ପାଦିତ ଓ ପ୍ରକାଶିତ ଗ୍ରନ୍ଥର ଉଦ୍ଧୃତ ଅଂଶ ସଂଗୃହୀତ ହୋଇଛି । ପ୍ରାଚୀ ସମିତି ତିନୋଟି ନକଲ ପ୍ରକାଶ କରିଛନ୍ତି ।

**ଯଯାତିକେଶରୀ :** ଠାକୁରମାନଙ୍କ ଉଦ୍ଧାର—କେଶରୀବଂଶର ପ୍ରସିଦ୍ଧ ରାଜା ଯଯାତିଙ୍କ ରାଜତ୍ୱ ସମୟକୁ (୭ମ ଶତାବ୍ଦୀ) ଓଡ଼ିଶା ବୈଦେଶିକମାନଙ୍କ ହାତରୁ ମୁକ୍ତ ହୋଇଥିଲା । ସେ ସୋନପୁରରୁ ଠାକୁରମାନଙ୍କୁ ଆଣାଇ ପୁନର୍ବାର ପ୍ରତିଷ୍ଠା କରାଇଥିଲେ । ଯଯାତି ଏହି କାର୍ଯ୍ୟ ଯୋଗୁ ଦ୍ୱିତୀୟ ଇନ୍ଦ୍ରଦ୍ୟୁମ୍ନ ବୋଲି ପରିଚିତ ହୋଇଥିଲେ ।

"ଏ ମହାରାଜାଙ୍କ ଅଂ ୧ଙ୍କେ ସନ୍ନ୍ୟାସୀ ବ୍ରହ୍ମଗୃହୀ ବ୍ରାହ୍ମଣମାନଙ୍କୁ ପଚାରିଲେ ଓଡ଼ିଶା ରାଜାର ପ୍ରଭୁ ଯେ ଶ୍ରୀ ଜଗନ୍ନାଥ ମହାପ୍ରଭୁ ସେ କାହିଁଛନ୍ତି ? ସେମାନେ କହିଲେ ମୁଗଲ ଗୋଳ ହୋଇଲାକୁ ସମୁଦ୍ର ମାଡ଼ି ଅଇଲାକୁ ଅପାର ଦିନ ହୋଇଲା । ଶ୍ରୀ ପରମେଶ୍ୱରଙ୍କୁ ପାତାଳି କରି ସୁନପୁରଆଡ଼େ କଉଁଠାରେ ବିଜେ କରାଇଲେ ଜ୍ଞାତବ୍ୟ ନାହିଁ । ଏହା ଶୁଣି ମହାରାଜା ସୁନପୁର ଗଲେ । ସେଠାରେ ଝଣ୍ଡାଇତଙ୍କୁ ପଚାରିଲେ । ସେମାନେ କହିଲେ ଆମ୍ଭେ ଜ୍ଞାତବ୍ୟ ନୋହୁଁ । ଆମ୍ଭ ବାପ ଅଜା କହନ୍ତି ଦିଅଁ ବର ଏହି । ଏହି ତଳେ ଦିଅଁଙ୍କୁ ପୋତିଥିଲେ । ଏହା ଶୁଣି ରାଜା କଟୁଆ ବାହ୍ମଣଙ୍କୁ ଆଣି ସେ ଗଛ କଟାଇ ଖୋଳାଇଲେ । ପରମେଶ୍ୱରଙ୍କୁ ବାହାର କଲେ । ସେଦିନେ ଶ୍ରୀମୂର୍ତ୍ତିମାନ ମାଟି ଖାଇ ଛିନ୍ନଭିନ୍ନ ହୋଇଛନ୍ତି । ଦିଅଁମାନଙ୍କୁ ଲୁଗାଗୁଡ଼ାଇ ମୁଣ୍ଡରେ ପୂରେଇ ମୁଦିଅଇଲେ । ଏ ଘଟଣା ବେଳେ ରାଜା ଅଧିକ ସେବକ ଜାତି ଭିଅର କଲେ । ଗଛକଟା କଟୁଆ ବାହ୍ମଣ ପାଞ୍ଚସେବା । ଏହାଙ୍କ ଗୋଟି ବସ୍ତ୍ର । ପାଞ୍ଚଜଣଙ୍କୁ ଦଶଜଣ । ପତିମାନଙ୍କର ଏଗାର ଜଣଙ୍କୁ ଛଅଜଣ । ଦଇତାମାନଙ୍କର ଉଲୁକ ଗୋଟି । ଆଠଜଣଙ୍କୁ ଆଠଜଣ ପରିଛା । ଗାଏ ଚବିଶଜଣ । ଶ୍ରୀପୁରୁଷୋତ୍ତମେ ଶଙ୍ଖନାଭି ମଣ୍ଡଳେ ଅଠତିରିଶ ହାତ କରି ପଟୋଳ ଗୋଟିଏ ତୋଳି ପ୍ରତିଷ୍ଠା କରି ପରମେଶ୍ୱରଙ୍କୁ ବିଜେ କରାଇଲେ । ଏ ମହାରାଜାଙ୍କ ଅଂ ୯ଙ୍କେ କକଡ଼ା ଦିନେ ସିଂହାସନେ ବିଜେ କରିଲେ । ବିମଳାଙ୍କ ପାଇଁ ମଧ ହା ୧୮ ତର ଏକ ଦେଉଳ ନିର୍ମାଣ କରିଥିଲେ ।

**ଚୋଡ଼ଗଙ୍ଗଦେବ :** ନୂତନ ମନ୍ଦିର ନିର୍ମାଣ ; ମାଦଳାପାଞ୍ଜି ଆରମ୍ଭ—

ଦ୍ୱାଦଶ ଶତାବ୍ଦୀରେ ଚୋଡ଼ଗଙ୍ଗ (ଖ୍ରୀ ୧୦୭୮-୧୧୪୮) ଓଡ଼ିଶାରେ ରାଜତ୍ୱ କରିଥିଲେ । ଯଯାତି ଜଗନ୍ନାଥଙ୍କ ପାଇଁ ଯେଉଁ ମନ୍ଦିରଟି କରିଥିଲେ, ସେ ଜୀର୍ଣ୍ଣ ହୋଇ ଯିବାରୁ ଚୋଡ଼ଗଙ୍ଗଦେବ ଏକ ନୂତନ ମନ୍ଦିର ନିର୍ମାଣ କରିଥିଲେ ବୋଲି କେହି କେହି କହନ୍ତି । ଗଙ୍ଗବଂଶର ଏକ ତାମ୍ରଶାସନରେ ମଧ୍ୟ ଚୋଡ଼ଗଙ୍ଗ ଦେଉଳଟିଏ ନିର୍ମାଣ କରିଥିବା ବିଷୟ ଉଲ୍ଲେଖ ଅଛି । ତେବେ ସେ ଦେଉଳଟି ବର୍ତ୍ତମାନର ଦେଉଳ ନୁହେଁ । ଚୋଡ଼ଗଙ୍ଗ ବଡ଼ଦେଉଳରେ ମାଦଳାପଞ୍ଜିର ପ୍ରବର୍ତ୍ତନ କରିଥିଲେ ବୋଲି ପ୍ରବାଦ

ଅଛି । ଦେଉଳ ସମ୍ପର୍କୀୟ ଘଟଣାଠାର ବିବରଣୀ ଏହି ପାଞ୍ଜିରେ ଲେଖା ଯାଉଥିଲା । ଓଡ଼ିଶାର ବହୁ ଐତିହାସିକ ଘଟଣାର ଉଲ୍ଲେଖ ମଧ୍ୟ ଏଥିରେ ଦେଖାଯାଏ । ତାଳପତ୍ର ପୋଥିରେ ଏହିସବୁ ବିବରଣୀ ଲେଖା ଯାଉଥିଲା । ତାଳପତ୍ରଗୁଡ଼ିକ ମାଦଳା ଆକାରରେ ବନ୍ଧା ବାନ୍ଧି ରଖାଯାଉଥିଲା ବୋଲି ଏହାର ନାମ ମାଦଳାପାଞ୍ଜି । ଏହି ମାଦଳାପାଞ୍ଜି ଗଙ୍ଗରାଜାଙ୍କଠାରୁ ଆରମ୍ଭ ହୋଇ ବର୍ତ୍ତମାନ ସୁଦ୍ଧା ଚାଲି ଆସୁଛି ବୋଲି ଶୁଣାଯାଏ । ଠାକୁରଙ୍କ ପର୍ବପର୍ବାଣି ଛଡ଼ା ଐତିହାସିକ ତଥ୍ୟ ଠିକ୍ ଭାବରେ ଏଥିରେ ଲିଖିତ ହୋଇନାହିଁ ।

## ଅନଙ୍ଗଭୀମଦେବ ୨ୟ (ଖ୍ରୀ. ୧୨୧୧-୧୨୩୮) : ବର୍ତ୍ତମାନର ମନ୍ଦିର ନିର୍ମାଣ : ମାତ୍ର ପ୍ରଚଳନ—

ଅନଙ୍ଗଭୀମଦେବ ୨ୟ ଖ୍ରୀ ୧୨୧୭ରେ ବର୍ତ୍ତମାନର ବଡ଼ଦେଉଳ ନିର୍ମାଣ କରିଥିଲେ । ଏହାଙ୍କ ସମୟରୁ ଦେଉଳର ବର୍ତ୍ତମାନର ବହୁ ନୀତିକାନ୍ତି ପ୍ରଚଳିତ ହୋଇ ଆସୁଅଛି । ମନ୍ଦିର ନିର୍ମାଣ ସମ୍ବନ୍ଧରେ ମାଦଳାପାଞ୍ଜିରେ ସୁନ୍ଦର ବର୍ଣ୍ଣନା ଦେଖାଯାଏ ।

ଅନଙ୍ଗଭୀମଦେବ "ଅ୧୫ଙ୍କ ସାହି ଫଗୁଣ ଶୁକ୍ଳ ଦଶମୀ ଉତ୍କାଳ ଏକାଦଶୀ ଗୁରୁବାରେ ଶ୍ରୀପୁରୁଷୋତ୍ତମ କଟକେ" ପାତ୍ରମନ୍ତ୍ରୀ ସଭାସଦ୍‌ବର୍ଗଙ୍କୁ ସମ୍ବୋଧନ କରି ଏପରି ଆଜ୍ଞା ଶୁଣାଇଥିଲେ, '...ଏ ଆମର ଅରଜିତ ପଦାର୍ଥ । ଏଥୁଁ ଆମ୍ଭେ ଯୋକାଏ ପରମେଶ୍ୱରଙ୍କ ଆଡ଼ତରେ ଲଗାଇବାକୁ ଏଥକୁ ଆମ୍ଭେମାନେ ଏମନ୍ତ କଳ୍ପନା କରିଅଛୁ । ଯଯାତି ରାଜା ଯେଉଁ ପାଟଳ ତୋଳାଇ ପରମେଶ୍ୱରଙ୍କୁ ବିଜେ କରାଇ ଅଛନ୍ତି, ସେ ପାଟଳ ଉଣାଗୋଟି ଅତି ବଇଷମ ହୋଇଲା । ଏହା ଭାଙ୍ଗି ଶହେ ହାତ ଉଚ୍ଚ ପ୍ରାସାଦ ଗୋଟିଏ ତୋଳାଇବା । ଆଡ଼ସୁତ ଭିତର ଦେବତାମାନଙ୍କ ଦେଉଳ ଗୋଟାମାନ ଆନକରି ତୋଳାଇବା । ଏଥକୁ ଯୋକାଏ ସୁନା ଦବା । ପରମେଶ୍ୱରଙ୍କ ଭଣ୍ଡାରମାନ ଖଟଣି ସେବାୟତମାନଙ୍କୁ ମଧ୍ୟ କରି ଯୋକାଏ ସୁନା ଯୋକାଏ ରତନ ଦେବା । ଏମନ୍ତ ବିଚାରିଅଛୁ । ଏଥକୁ ପାତ୍ରମାନେ ଜଣାଇଲେ, ଦେଓ ଏମନ୍ତ ଯେବେ ବିଚାରିବା ହୋଇଅଛି, ଏତେ ହୋଇତ କଥା ନାହିଁ । ଏ କଥାକୁ ବଡ଼ ବେଗ ଅବଧାନ ହେଉ । ଧର୍ମସ୍ୟ ତ୍ୱରିତା ଗତି । ଧର୍ମ ବିଚାରିଲେ ବଡ଼ ବେଗ କରି । ଏତେ କେବଳ ଜଣାଉଅଛୁଁ ପ୍ରାସାଦ ଯେ ଶହେ ହାତ ଉଚ୍ଚ କରିବା ବୋଲି ବିଚାରିବା ହୋଇଅଛି । ଶରୀର ନିତ୍ୟ ନୋହଇ । ଏଥୁଁ ଦଶହାତ ତୁଟି ନବେହାତ ହୋଇ ପ୍ରାସାଦ ହୋଇଲେ ବଡ଼ ବେଗ ହୋଇବ । ଏଥକୁ ରାଜା ଆଜ୍ଞାଦେଲେ, ବିଚାରିବାରୁ ତୁଟିଲେ ଦୋଷ ହୋଇବ ପରା । ଏଥକୁ ପାତ୍ରମାନେ ଜଣାଇଲେ ଦେଓ ବିଘ୍ନ ହୋଇ ରହିଲେ ସେ ସବୁହିଁ ଅପାର ହୋଇବ । ଏଥକୁ ଠାକୁରେ ଆଜ୍ଞା ଦେଲେ ହେଉ, ନବେ

ହାତ ଉଚ୍ଚେ ପ୍ରାସାଦ ହେଉ । ଏମନ୍ତକୁ ଶିଳ୍ପୀଶାସ୍ତ୍ରମାନ ଦେଖ, କେଉଁ ପ୍ରାସାଦ ହେଲେ ବିଷ୍ଣୁ ଯୋଗ୍ୟ । ଏଥକୁ ଭଟ୍ଟମିଶ୍ରମାନେ କହିଲେ, ପ୍ରାସାଦ ଯେ ଛତିଶ ପ୍ରକାରେ । ଏଥକୁ କୋଣ୍ଡିଏ ପ୍ରକାରେ ପ୍ରାସାଦ ଶ୍ରେଷ୍ଠ । ଏଥିଭିତରୁ ଶ୍ରୀବତ୍ସ ଖଣ୍ଡଶାଳ ଦୋଇ ଯୋଡ଼ ପ୍ରାସାଦ ସେ ପ୍ରାସାଦ ହରିର ବଡ଼ ପ୍ରିୟ । ଏହା ଶୁଣି ରାଜାଏ ଆଜ୍ଞାଦେଲେ ଏହି ପ୍ରାସାଦ ଉଜ କରାଇବା । ଏଥକୁ ଦେଉଳ ତୋଳାକୁ ଦେଲେ ପରମହଂସ ବାଜପେୟୀ ମୂଲେ ସୁନା ଦଶଲକ୍ଷ ମାଢ଼ । ପରମେଶ୍ୱରଙ୍କ ଅଳଙ୍କାରକୁ ସୁନା ଦୁଇଲକ୍ଷ ପଞ୍ଚାଶ ହଜାର ମାଢ଼ । ଗାଏ ଦୁଇପଦକୁ ସୁନା ମାଢ଼ ବାରଲକ୍ଷ ପଞ୍ଚାଶ ହଜାର । ଏ ଦେଉଳ ତୋଳାକୁ ଶୁଭ ଦେଲେ । ପନ୍ଦର ଅଙ୍କ (ମସ୍ତ ପାଞ୍ଜିରେ ଅଠର ଅଙ୍କ) ଫଗୁଣ ଶୁକ୍ଳ ଦଶମୀ ତତ୍କାଳ ଏକାଦଶୀ ଗୁରୁବାର ବେଳ ଚଉଦଦଣ୍ଡ ସର ପରମେଶ୍ୱରଙ୍କ ସମ୍ପୂର୍ଣ୍ଣ ବୃଷ ଲଗ୍ନେ ଅଭିଜିତ ମୁହୂର୍ତ୍ତେ ତୋଳାଇ ଦେଉଳ ପ୍ରତିଷ୍ଠା କଲେ କରାଇ ଭୋଗମଡ଼ଫଳ ଭିଆଇଲେ । ଏ ରାଜା ଛତିଶା ନିଯୋଗ ଭିଆଇଲେ । ଏ ରାଜାଙ୍କ କାଳେ ବ୍ରହ୍ମହତ୍ୟା କଲେ । ଏଥକୁ ପ୍ରାୟଶ୍ଚିତ କଲେ । ଶ୍ରୀ ଜଗନ୍ନାଥ ମହାପ୍ରଭୁଙ୍କ ଦଶହଜାର ସୁନାଅାଁ ଦେଲେ । ନିବନ୍ଧ ପ୍ରମାଣେ ଭୋଗ ଭିଆଇଲେ । ମଣୋହି ହୋଇ ଅନ୍ନଛତ୍ରକୁ ଦଶହଜାର ଭରଣ ଧାନ ଭିଆଇଲେ ।

ମସ୍ତ ପାଞ୍ଜିରେ—ରାଜା ବଡ଼ଦେଉଳ ତୋଳାଉ ଥିଲେ । ଏଥିରେ ମଧ ହିଡ଼ାସିଂଘ ବଙ୍କା ହୋଇ ବସିଲା । ଏଥିକି ବିଜ୍ଞାଣୀ ସଳଖି ନ ପାରିଲେ । ଏ ରାଜା ବିସ୍ମୟ ହୋଇ ନିରାହାର କରି ଶୋଇଲେ । ଏ ଦିନ ମହାପ୍ରଭୁଙ୍କର ମଠାଣିଆ ହନୁମନ୍ତଙ୍କୁ ଅଜ୍ଞା ହୋଇଲା । ସେ ଆସି ସିଂଘକୁ ସଳଖି ବସାଇଲେ । ଶ୍ରୀନଗରରେ ଯୋଳସାଆନ୍ତ ବାହତ୍ତରି ନିଯୋଗ କଲେ । ଶ୍ରୀପୁରୁଷୋତ୍ତମପୁର ଦେଉଳ ଦୁଇ ପାଖରେ ବଳଭଦ୍ରପୁର, ଜଗନ୍ନାଥପୁର ଦୁଇ ଶାସନ କଲେ । ଦ୍ୱାଦଶ ଯାତ୍ରା ପର୍ବପର୍ବାଣିମାନ ଭିଆଣ କଲେ । ନାରାୟଣ ମୂର୍ତ୍ତିକି ବଜେ ପ୍ରତିମା କଲେ ।······ମଣୋହିକି ମଣ୍ଡପ କଲେ । ଆଉ ପ୍ରାଚୀନ ଦେବତାମାନଙ୍କ ଦେଉଳ ପାରୁଶରେ ତୋଳାଇଲେ । ଆଉ କ୍ଷେତ୍ର ଭିତରେ ଅଷ୍ଟଚଣ୍ଡୀ ଅଷ୍ଟଶମ୍ଭୁଙ୍କ ଦେଉଳମାନ କଲେ । ବଡ଼ଦେଉଳ ଉତ୍ତର ପାରୁଶରେ କୂପ କଲେ । ଏଥିଉତ୍ତାରୁ ସ୍ନାହାନପୂର୍ଣ୍ଣିମୀ ଦିନକୁ ସୁନା କୂଅ କଲେ । ପୁରୁଷୋତ୍ତମ ଭିତରେ ବୟାଳିଶ ଗୋଟା କୂପ କଲେ ।”

**କବି ନରସିଂହ ଦେବ** (ନରସିଂହଦେବ ମସ୍ତ-ଖ୍ରୀ୧୨୭୮-୧୩୦୬): ଅଠରମଲା ବନ୍ଧ: ନରେନ୍ଦ୍ର ଧୁଷ୍ଟରଣୀ: ବାଙ୍କିମୁହାଣ ପୋତା— ନଖପୋଡ଼ ନରେନ୍ଦ୍ର ମହାପାତ୍ର ଏ ରାଜାଙ୍କ ପାତ୍ର । ଏ ନରେନ୍ଦ୍ର ଶୌଚ

ଖୋଳାଇଲେ । ନଈରେ ଅଠରନଳା ବନ୍ଧ ପକାଇଲେ । (୧୨ପାଞ୍ଜି) ଏ ରାଜା ବାଙ୍କିମୁହାଣ ଦେଖାଇଲେ । ଛଅ ରଥ ହେଉଥିଲା, ନଈ ପୋତାଇ ତିନି ରଥ କରାଇଲେ । ଗୁଣ୍ଡିଚାଘରର ଦେଉଳ କାଠ ମଣ୍ଡପ ହୋଇଥିଲା, ତାହା ପଥର ମଣ୍ଡପ କଲେ । ଚକ୍ରପାଖେ ବେଢ଼ା କଲେ ।ଏଥିରେ କୂଅ ଖୋଳାଇଲେ । (୨୪ ପାଞ୍ଜି)

## ଭାନୁଦେବ ୩ୟ (ଖ୍ରୀ ୧୩୫୨-୭୮): ଫିରୋଜଶାହଙ୍କର ମନ୍ଦିର ଆକ୍ରମଣ—

ଖ୍ରୀ· ୧୩୬୦ରେ ଦିଲ୍ଲୀ ବାଦଶାହ ଫିରୋଜଶାହ ଓଡ଼ିଶା ଆକ୍ରମଣ କରିଥିଲେ । ସେତେବେଳକୁ ଗଙ୍ଗବଂଶର ବୀରଭାନୁଦେବ (ମତ୍ତଭାନୁଦେବ ବା ଭାନୁଦେବ ୩ୟ) ଓଡ଼ିଶାରେ ରାଜତ୍ୱ କରୁଥିଲେ । ଓଡ଼ିଶା ସ୍ୱାଧୀନ ରାଜ୍ୟ ଥିବାରୁ ତାହା ଉପରେ ଫିରୋଜଶାହଙ୍କ ନଜର ପଡ଼ିଥିଲା । ସେ ବଙ୍ଗ ଓ ବିହାର ଗସ୍ତ ଶେଷକରି ଦିଲ୍ଲୀ ଫେରିଯିବା ବାଟରେ ଓଡ଼ିଶା ଆକ୍ରମଣ କଲେ । ବିହାର ବାଟେ ଓଡ଼ିଶା ସୀମାରେ ପ୍ରବେଶ କରି ଓଡ଼ିଶା ଆକ୍ରମଣର କାରଣ ଏପରି ବ୍ୟକ୍ତ କଲେ, "ଆମର ଲକ୍ଷ୍ୟ ହେଉଛି ହାତୀ ଧରିବା, ପ୍ରତିମା ଧ୍ୱଂସ କରିବା ଓ ଓଡ଼ିଶା ରାଜାଙ୍କୁ ଲୋପ କରିବା ।" ଫିରୋଜ ଓଡ଼ିଶାର ଉତ୍ତର ସୀମାଆଡୁ ଆକ୍ରମଣ କରି କେତେକ ରାଜଦ୍ରୋହୀ ବିଶ୍ୱାସଘାତକଙ୍କ ସାହାଯ୍ୟରେ ଓଡ଼ିଶା ରାଜଧାନୀ (କଟକ-ବାରାଣାସୀ)ରେ ପଶିଗଲେ । ଭାନୁଦେବ ନଗର ଛାଡ଼ି ପଶ୍ଚିମର ପାର୍ବତ୍ୟ ଅଞ୍ଚଳକୁ ଚାଲିଗଲେ । ଦିଲ୍ଲୀ ସୁଲତାନଙ୍କ ସୈନ୍ୟମାନେ ବହୁ ନିରୀହ ଲୋକଙ୍କୁ ହତ୍ୟାକଲେ, ବହୁ ମନ୍ଦିର ଓ ପ୍ରତିମା ଧ୍ୱଂସ କଲେ । କୁଆଖାଇ ନଦୀର ଦକ୍ଷିଣକୁ ଥିବା ସାରଙ୍ଗଗଡ଼କୁ ଧ୍ୱଂସ କଲେ । ସେଠାରୁ ନିଜେ ଫିରୋଜ ବହୁ ସୈନ୍ୟ ଧରି ପୁରୀ ଆକ୍ରମଣ କଲେ । ଜଗନ୍ନାଥ ମନ୍ଦିରକୁ ଭାଙ୍ଗି ଚୂନା କରିବା ପାଇଁ ଚେଷ୍ଟା କଲେ । ବହୁ ଶ୍ରେଷ୍ଠ ଶ୍ରେଷ୍ଠ ମନ୍ଦିର ଓ ପ୍ରତିମା ନଷ୍ଟ କଲେ । ସିଂହାସନରୁ ପ୍ରତିମାମାନଙ୍କୁ ଉଠାଇ ନେଇଗଲେ । ପୁରୀ ମନ୍ଦିର ଓ ବାରାଣାସୀ ଗଡ଼ ଭିତରେ ପୂଜା ପାଉଥିବା ଜଗନ୍ନାଥ ମୂର୍ତ୍ତିମାନଙ୍କୁ ନାକ କଣାକରି ଦଉଡ଼ି ବାନ୍ଧି ବାଟରେ ଘୋସାଡ଼ି ଘୋସାଡ଼ି ଦିଲ୍ଲୀ ନେଇଗଲେ । ସେଠାରେ ଜୁମା ମସଜିଦ୍ ଆଗରେ ଏ ମୂର୍ତ୍ତିଗୁଡ଼ିକୁ ପକେଇଲେ । ସୁଲତାନଙ୍କ ଆଦେଶରେ ମୁସଲମାନମାନେ ମସଜିଦ୍‌କୁ ଯିବାବେଳେ ଓ ଆସିଲାବେଳେ ମୂର୍ତ୍ତିମାନଙ୍କୁ ପାଦରେ ଦଳୁଥିଲେ (୧୪୧)

---

୧୪୧ । ସାମ୍ସ-ଇ-ସିରାଜ ଆଫିଫ୍‌ଙ୍କ ତାରିଖ-ଇ-ଫିରୋଜଶାହୀ ।

## କପିଳେନ୍ଦ୍ରଦେବ ( ଖ୍ରୀ ୧୪୩୫—୬୫ ) : ବାହାରବେଢ଼ା ନିର୍ମାଣ—

ପନ୍ଦର ଅଙ୍କରେ (ଖ୍ରୀ ୧୪୪୮ରେ) ଶ୍ରୀ ପୁରୁଷୋତ୍ତମ ବଡ଼ଦେଉଳ ବାହାର ବେଢ଼ା ବନ୍ଧାଇଲେ । (ଅନ୍ୟ ପାଞ୍ଜିରେ ତିନି ଅଙ୍କରେ ବାହାର ବେଢ଼ା ବନ୍ଧାଇଲେ ।)

## ପୁରୁଷୋତ୍ତମଦେବ ( ଖ୍ରୀ ୧୪୬୫—୯୭ ) : ଭୋଗମଣ୍ଡପ ଓ ମଣି-କୂର୍ମବେଢ଼ା ନିର୍ମାଣ—

ଏ ରାଜାଙ୍କ ସାତ ଅଙ୍କରେ ( ଖ୍ରୀ ୧୪୭୦ରେ ) ଭୋଗମଣ୍ଡପ ତୋଳାଇଲେ । ନଅ ଅଙ୍କରେ ମଣିକୂର୍ମବେଢ଼ା ଗଢ଼ାଇଲେ ।

## ପ୍ରତାପରୁଦ୍ରଦେବ ( ଖ୍ରୀ ୧୪୯୭—୧୫୩୮ ) :—

ଏ ରାଜାଙ୍କ ସତର ଅଙ୍କେ (ଖ୍ରୀ ୧୫୦୯ରେ) ଗଉଡ଼ନଗରୁ ମୁଗଲ ବାହୁଲେ । ପରମେଶ୍ୱରଙ୍କୁ ଚକା ଛଡ଼ାଇ ଗୃପରେ ବସାଇ ଚଡ଼େଇଗୁହା ପର୍ବତେ ବିଜେ କରାଇଲେ । ଶ୍ରୀ ପୁରୁଷୋତ୍ତମେ ଆସି ଗୌଡ଼ ପାତଶା ଅମୁରା ସୁରଥାନ ପ୍ରବେଶ ହୋଇଲେ । ବଡ଼ଦେଉଳେ ଯେତେ ପିତୁଳାମାନ ଥିଲେ ସବୁକୁ ଧ୍ୱଂ ଖଣ୍ଡ କଲେ ।

## ଗଉଡ଼ିଆ ଗୋବିନ୍ଦଦେବ—( ଖ୍ରୀ ୧୫୩୪-୧୫୪୧ )

ଏ ରାଜାଙ୍କ ଦିନରେ ଦୋଳବେଦୀ ଉପରେ ଦୋଳି ଛତ୍ରପଡ଼ିଲା । ବଡ଼ଠାକୁରଙ୍କ ଭୁଜ ଭାଙ୍ଗିଗଲା । ଦେଉଳ ଭିତରେ ବିଜେ କଲା ଦିନରୁ ଶ୍ରୀଭୁଜ ନିର୍ମାଣ ମହାସ୍ନାନ ହୋଇ ଏହିଠାରୁ ଦୋଳଯାତ୍ରାକୁ ଦୋଳଗୋବିନ୍ଦ ବିଜେ କଲେ ।

## ମୁକୁନ୍ଦଦେବ ( ଖ୍ରୀ ୧୫୫୯-୧୫୬୮ ): କଳାପାହାଡ଼ ଆକ୍ରମଣ—

ପୁରୁଷୋତ୍ତମ ବଡ଼ଦେଉଳ ସିଂହଦ୍ୱାରଠାରୁ ଗୁଣ୍ଡିଗୃଘର ସଙ୍କେ ଦୁଇକଡ଼େ ଶାସନ ବସାଇଲେ । ସିଂହଦ୍ୱାରଠାରୁ ଗୁଣ୍ଡିଗୃଘର ଦ୍ୱାର ସଙ୍କେ ରଥ ବିଜେ ନିମନ୍ତେ ଗଏଲମାନ ପୋଚି ଆକାଶ ମଣ୍ଡଣା କଲେ । ଏ ମହାରାଜାଙ୍କ ୮ ଅଙ୍କରେ ( ଖ୍ରୀ ୧୫୬୨ରେ ) ପରମେଶ୍ୱରଙ୍କୁ ବାହାର ବେଢ଼ା ଦକ୍ଷିଣ ବାଡ଼େ ଜଗଦୋଳ କଲେ ।

**କଳାପାହାଡ଼ର ମନ୍ଦିର ଆକ୍ରମଣ** ( ଖ୍ରୀ ୧୫୬୮) :—ଓଡ଼ିଶାର ସ୍ୱାଧୀନ ରାଜା ତେଲଙ୍ଗା ମୁକୁନ୍ଦଦେବଙ୍କ ମୋଗଲ ସମ୍ରାଟ ଆକବର ମିତ୍ରତା ସ୍ଥାପନ କରିଥିଲେ । ଏହି ମିତ୍ରତା ଦ୍ୱାରା ବଙ୍ଗ ନବାବ ସୁଲେମାନଙ୍କର ଶକ୍ତି ହ୍ରାସ ହୋଇଥିଲା ଏବଂ ସେ ବାଧ

ହୋଇ ଆକବରଙ୍କ ବଶ୍ୟତା ସ୍ୱୀକାର କରିଥିଲେ । ପରେ ନିଜେ ଶକ୍ତିଶାଳୀ ହୋଇ-ଯିବାରୁ ଓଡ଼ିଶା ଆକ୍ରମଣ କଲେ । ଆକବର ମୁକୁନ୍ଦଙ୍କୁ ସାହାଯ୍ୟ କଲେ ନାହିଁ । ମୁକୁନ୍ଦଦେବ କଟକକୁ ଫେରିବା ପୂର୍ବରୁ ସୁଲେମାନଙ୍କ ସେନାପତି କଳାପାହାଡ଼ କଟକ ଆକ୍ରମଣ କଲେ । ମୁକୁନ୍ଦଙ୍କ ଶତ୍ରୁମାନେ ତାଙ୍କୁ ସାହାଯ୍ୟ କଲେ । କଳାପାହାଡ଼ଙ୍କ ସୈନ୍ୟମାନେ କଟକ ଦୁର୍ଗ ଅଧିକାର କରିନେଲେ । ଭୁବନେଶ୍ୱର, କୋଣାର୍କ ଓ ପୁରୀରେ ଯେତେ ମନ୍ଦିର ଥିଲା, ସବୁ ଭାଙ୍ଗି ପକାଇଲେ । ଠାକୁରମାନଙ୍କୁ ଖଣ୍ଡ କଲେ । ଜଗନ୍ନାଥ ମନ୍ଦିରକୁ ଧ୍ୱଂସ କରିବାପାଇଁ ତିନିଶହ ହାତୀ ଉପରେ ଆଫଗାନ୍ ସୈନ୍ୟଙ୍କ ବସାଇ କଳାପାହାଡ଼ ପୁରୀ ସହର ଭିତରେ ପଶିଲେ । ଏ ଆକ୍ରମଣର ବିବରଣୀ ଜଣେ ମୁସଲମାନ ଲେଖକ ଏହିପରି ଭାବରେ ଲେଖିଛନ୍ତି—"ଗୋଟିଏ ମନ୍ଦିରରେ ତିରିଶି-ମହଣ ସୁନାରେ ତିଆରି ଏକ ପ୍ରତିମା ଥିଲା । ଏହି ପ୍ରତିମାର ଆଖି ଦୁଇଟି ହୀରାର । ସୁନାରେ ତିଆରି ସାତଶହ ପ୍ରତିମା ଏହି ମୂର୍ତ୍ତି ଚୂତୁପର୍ଶ୍ୱେ ରହିଥିଲା । ଏହିସବୁ ସୈନ୍ୟମାନଙ୍କ ହାତରେ ପଡ଼ିଲା । ସହରର ସ୍ତ୍ରୀମାନେ ନାନା ବେଶଭୂଷାରେ ଭୂଷିତ ହୋଇ ସହରର ଦେଉଳମାନଙ୍କରେ ଲୁଚି ରହିଥିଲେ । ସହର ଛାଡ଼ି ପଳାଇଯିବା ଉଦ୍ୟମ କରି ନ ଥିଲେ । ସେମାନେ କହୁଥିଲେ, "କିଏ ଏପରି ବଳୀୟାର ଅଛି ଯେ, ଆମ ଠାକୁରଙ୍କ ସେବକମାନଙ୍କର କ୍ଷତି କରିବ ?" ଆକ୍ରମଣକାରୀମାନେ ଦେଉଳ ଭିତରେ ପଶି ସ୍ତ୍ରୀମାନଙ୍କୁ ବନ୍ଦୀ କରି ନେବା ପରେ ସେହି ସ୍ତ୍ରୀମାନେ ଆଶ୍ଚର୍ଯ୍ୟ ହୋଇ-ଗଲେ । ସୁଲେମାନଙ୍କ ସଙ୍ଗରେ ଯେଉଁ ଧାର୍ମିକ ସନ୍ଥସବୁ ଯାଇଥିଲେ, ସେମାନେ କହୁଥିଲେ ଯେ ପ୍ରତ୍ୟେକ ସୈନ୍ୟ ପ୍ରାୟ ମହଣେ ଓଜନର ସୁନା-ପ୍ରତିମା ଧରି ଆଣିଥିଲେ । କିନ୍ତୁ ସର୍ବାପେକ୍ଷା ଆଶ୍ଚର୍ଯ୍ୟର ବିଷୟ ଯେ ଯେଉଁମାନେ ଏହି ଲୁଣ୍ଠନରେ ଯୋଗ ଦେଇଥିଲେ, ସେମାନେ ପ୍ରତ୍ୟେକେ ଦୁଃଖ ଯନ୍ତ୍ରଣା ଭୋଗ କରି ମୃତ୍ୟୁମୁଖରେ ପଡ଼ିଥିଲେ ।" ମାଦଳାପାଞ୍ଜିରେ ଲେଖାଅଛି ଯେ, ମୁସଲମାନଙ୍କ ଆକ୍ରମଣ ଭୟରେ ଠାକୁରମାନଙ୍କୁ ଛପଲ୍ଲୀ ହାଣ୍ଡିପଡ଼ା ନେଇଯାଇ ସେଠାରେ ସେବକମାନେ ଲୁଚାଇ ରଖିଥିଲେ । "ସେଦିନୁ କଟକରେ କେହି ରାଜା ରହି ନ ପାରିଲେ । ମୋଗଲ ପୀଡ଼ କରି ମାଡ଼ି ରହିଲେ । ପରୀକ୍ଷା ଦିବ୍ୟସିଂହ ପଟ୍ଟନାୟକେ ଠାକୁରଙ୍କୁ ନେଇଗଲେ । ଏ ଗୋଳରେ ପରମେଶ୍ୱରଙ୍କୁ ଛପଲ୍ଲୀ ହାଟପଡ଼ାରେ ପାତାଳ କରିଥିଲେ । ତହିଁକି ବୋଲି କଳାପାହାଡ଼ ଯାଇ ଠାବ କଲା । ମୁହାଣ ପାରି ହୋଇ ଗଲା । ଭେଉଁଆ କଢ଼ାଇ ଅଶ୍ୱାକ ପାଣିରେ ନେଲା । ସେଠାରୁ ପରମେଶ୍ୱରଙ୍କୁ ହାଟରେ ପକାଇ ଆଣିଲା । ବାଉନକୋଟି ଭଣ୍ଡାର ସେଠାରେ ଜୁରି କଲା । ବଡ଼ଦେଉଳ ଅଁଳାଣିରି ଯାଏ ଭଙ୍ଗାଇଲା । ଯେତେ ଦେବତାମାନ, ପିତୁଳାମାନ ସବୁକୁ ହିଁ ଖଣ୍ଡ କଲା । କଳପବଟ ଖୋଳାଇ ପକାଇଲା । ଘୋଡ଼ାନଣ୍ଡି ପୁରାଇ ନିଆଁ ଲଗାଇଲା । ଶ୍ରୀ ଜଗନ୍ନାଥ ମହାପ୍ରଭୁଙ୍କୁ ଗଙ୍ଗାକୂଳ ତଣ୍ଡାଯାଏ ନେଲା । କାଠ କୁଢ଼ାଇ ଅଗ୍ନିରେ

ପୂର୍ବୋକ୍ତ ଜାଳିଦେଲା । ସେତେବେଳେ ଚୋରର ଦେହ ଫଣ କୁଷ୍ଠ ରୋଗ ଲାଗିଲା ! ଏହା ଶୁଣି ତାର ପଥ ଗଙ୍ଗାରେ ପରମେଶ୍ୱରଙ୍କୁ ପେଲିଦେଲା । ସେ ଦାରୁ ଭାସି ଆସନ୍ତେ ଅମୁର ଗୋଟିଏ କାଳକାଠ ବୋଲି ଧରି ତାହା ତୀରରେ ପକାଇଲା । ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କୁ ନେବାବେଳେ ବିଶର ମହାନ୍ତି ଯାଇଥିଲା । ବୈଷ୍ଣବ ହୋଇ ଯାଇଁ ଗୋଡ଼ାଇଲା । ଅତଏବ ରନ୍ଧ୍ର ବାତ୍ୟପଣ କରି ଦାରୁ ମାଗିଲା । ବ୍ରହ୍ମ ଖୋଳକରି ମୃଦଙ୍ଗେ ପୂର୍ବୋକ୍ତ ଦେଇ ଅଛିଲା । କୁଜଙ୍ଗଗଡ଼ରେ ଆଣି ପ୍ରବେଶ କଲା । ଖଣ୍ଡାଏତ ଓଳିଆ ଉପରେ ଦୁଇଠାକୁରେ ରହିଲେ ।

## ରାମଚନ୍ଦ୍ରଦେବ ( ଖ୍ରୀ· ୧୫୮୬-୧୬୦୭): ଜଗନ୍ନାଥଙ୍କ ପୁନଃପ୍ରତିଷ୍ଠା—

ରାମଚନ୍ଦ୍ରଦେବଙ୍କ ରାଜତ୍ୱ ୯ଅଙ୍କ ( ଖ୍ରୀ ୧୫୭୫ )ରେ କୁଜଙ୍ଗରୁ ବ୍ରହ୍ମକୁ ଆଣି ଖୋର୍ଦ୍ଧାଗଡ଼ରେ ରଖିଲେ । ତା ପରବର୍ଷ ୧୦ଅଙ୍କ ( ଖ୍ରୀ· ୧୫୭୬ )ରେ ନୂତନ ମୂର୍ତ୍ତି ଗଠନ କରି କକଡ଼ା ଦ ୧୮ ନ ଶ୍ରାବଣ ଶୁକ୍ଳ ନବମୀ ଦିନ ବଡ଼ଦେଉଳରେ ଠାକୁରମାନଙ୍କୁ ବିଜେ କରାଇଲେ । ଏହି ବର୍ଷ ବ୍ରହ୍ମ ଆଣି ମୂର୍ତ୍ତିଗଠନ କରି ପୁନଃପ୍ରତିଷ୍ଠା କରିବା ପରେ ପ୍ରାୟ ଗୃରିମାସ ପର୍ଯ୍ୟନ୍ତ ମନ୍ଦିରରେ ସଙ୍କୁଡ଼ି ଭୋଗ ହେଉ ନ ଥିଲା । ରାଜା ସଙ୍କୁଡ଼ି ମହାପ୍ରସାଦ କରିବାକୁ ଭୟ କରୁଥିଲେ । ରାଜା ବହୁ ବ୍ରାହ୍ମଣ ଓ ପଣ୍ଡିତ ଓ ଅନ୍ୟାନ୍ୟମାନଙ୍କୁ ଡାକି ସଙ୍କୁଡ଼ି ଭୋଗ କରାଇଲେ । ସକାଳ ଧୂପ ପରେ ଖେଚଡ଼ି ପ୍ରସାଦ ହାତରେ ଧରି ଜୟ ବିଜୟ ଦ୍ୱାର କଳାପାହାଚ ଉପରେ ଠିଆ ହେଲେ । ରାମଚନ୍ଦ୍ର ଭଞ୍ଜ, ଗୋବର୍ଦ୍ଧନ ପଟ୍ଟନାୟକ ଓ ମିଶ୍ର ଗୋସାଇଁ—ଏ ତିନିହେଁ ରାଜାଙ୍କ ହାତରୁ ମହାପ୍ରସାଦ ନେଇ ସେବାକରି ମୁଣ୍ଡରେ ହାତ ବୋଳିଲେ । ତାପରେ ଉପସ୍ଥିତ ବ୍ରାହ୍ମଣ, ବ୍ରହ୍ମଚାରୀ, ସନ୍ନ୍ୟାସୀ ପ୍ରଭୃତି ଅନ୍ୟମାନେ 'ହରି ହରିବୋଲ' ଧ୍ୱନି କରି ପ୍ରସାଦ ସେବା କଲେ । ରାମଚନ୍ଦ୍ରଦେବଙ୍କୁ ଦ୍ୱିତୀୟ ଇନ୍ଦ୍ରଦ୍ୟୁମ୍ନ ବୋଲି ବୋଇଲେ ।

## ମୁକ୍ତିମଣ୍ଡପ ନିର୍ମାଣ (ଖ୍ରୀ· ୧୫୭୮ )

ଏହି ରାମଚନ୍ଦ୍ର ଦେବଙ୍କ ୧୪ ଅଙ୍କରେ ଖ୍ରୀ· ୧୫୭୮ରେ ଦିଲ୍ଲୀ ଦରବାରର ମନ୍ତ୍ରୀ ମାନସିଂହଙ୍କ ସ୍ତ୍ରୀ ମହାରାଣୀ ଶ୍ରୀମତୀ ଗୌରଦେବୀ ମୁକ୍ତିମଣ୍ଡପ ନିର୍ମାଣ କରିଥିଲେ । ସେହି ବର୍ଷ ମହାରାଜା ରାମଚନ୍ଦ୍ର ଦେବ ବହୁପ୍ରକାର କୋଠ ଭୋଗ ଦ୍ୟାନ୍ତି । କଲେ । ରାମଚନ୍ଦ୍ର ଦେବଙ୍କ ୩୪ଅଙ୍କ (ଖ୍ରୀ· ୧୫୯୫ )ରେ ଦାମୋଦର ଚମ୍ପତିରାୟ (ପରିଛା ବଡ଼ଜେନା ମହାପାତ୍ରଙ୍କ ପୁତ୍ର) ନୀଳଚକ୍ର ବସାଇଲେ ।

## ପୁରୁଷୋତ୍ତମଦେବ (୨ୟ)—

ଖ୍ରୀ. ୧୬୦୬ରେ ରାଜା ମାନସିଂହ ଦିଲ୍ଲୀ ଫେରିଯିବା ପରେ କୁତ୍‌ବୁଦ୍ଦିନ ସାହେବ ସୁବେଦାର ହୋଇ ଓଡ଼ିଶାକୁ ଆସିଲେ । ତାର ପରବର୍ତ୍ତୀ ବଙ୍ଗଠାରୁ ଓଡ଼ିଶାକୁ ଅଲଗା କରିଦେଇ ଏକ ସ୍ୱତନ୍ତ୍ର ସୁବା ଗଠନ କରାଗଲା । ହାସିମ୍‌ଖାଁଙ୍କ ଅମଳରେ ମୋଗଲ ଓ ଆଫଗାନଙ୍କ ଭିତରେ ପୁନର୍ବାର ବିବାଦ ଲାଗିଯିବାରୁ ଓଡ଼ିଶାରେ ମୁସଲମାନଙ୍କ ଅତ୍ୟାଗ୍ରହର ଆଶଙ୍କା ବେଶି ହେଲା । କୁତ୍‌ବୁଦ୍ଦିନ୍ ଓଡ଼ିଶା ଆସିବା ସଙ୍ଗେ ସଙ୍ଗେ ଓଡ଼ିଶାକୁ ବଙ୍ଗଳାରୁ ଅଲଗା କରିବା ପ୍ରସ୍ତାବରେ ମଧ୍ୟ ବଙ୍ଗ ଓ ଦିଲ୍ଲୀ ଶାସନକର୍ତ୍ତାମାନଙ୍କ ମଧ୍ୟରେ ମନୋମାଳିନ୍ୟ ଦେଖାଯିବାର ସମ୍ଭାବନା ଦେଖା ଦେଇଥିଲା । ଏହିସବୁ କାରଣରୁ ପୂର୍ବରୁ ସତର୍କ ରହିବାପାଇଁ ଠାକୁରମାନଙ୍କୁ କପିଳେଶ୍ୱର ପୁର ଶାସନ (ପୁରୀଠାରୁ ପ୍ରାୟ ୮ମାଇଲ ଦୂର) ପଞ୍ଚମୁଖୀ ଗୋସାଣୀଙ୍କ ନିକଟକୁ ରାଜା ପୁରୁଷୋତ୍ତମଦେବ ନେଇଗଲେ । ସେଠାରେ ଦୋଳଯାତ୍ରା ଶେଷକରି ଅବସ୍ଥା ଟିକିଏ ଭଲ ଦେଖାଯିବାରୁ ପୁରୀକୁ ଠାକୁରମାନଙ୍କୁ ନେଇ ଆସିଲେ ।

ହାସିମଖାଁଙ୍କ ଅମଳରେ (ଖ୍ରୀ. ୧୬୦୭) ପୁଣି ଆଶଙ୍କା ଦେଖାଯିବାରୁ ଠାକୁରମାନଙ୍କୁ ଖୋର୍ଦ୍ଧା ଗୋପାଳ ଦେଉଳକୁ ନେଇଗଲେ । ତାର ପରବର୍ଷ ଠାକୁରମାନେ ପୁରୀ ବାହୁଡ଼ିଲେ । ଖ୍ରୀ. ୧୬୧୦ରେ (ପୁରୁଷୋତ୍ତମ ଦେବଙ୍କ ରାଜତ୍ୱରେ) ପୁଣି ଅଶାନ୍ତି ଦେଖାଗଲା । ସୁବେଦାର ହାସିମ୍‌ଖାଁ ଜନୈକ ରାଜପୁତ କର୍ମଚାରୀ କେସୋଦାସ ମାରୁ ବଡ଼ଦେଉଳ ଭିତରେ ପଶି ବହୁ ସମ୍ପତ୍ତି ଲୁଟି କରିନେଲେ ।

### କେସୋଦାସ ମାରୁଙ୍କ ମନ୍ଦିର ଲୁଣ୍ଠନ :— (ଖ୍ରୀ. ୧୬୧୦)

ହାସିମ୍‌ଖାଁ କଟକର ଲାଟ ଥିଲାବେଳେ ଖୋର୍ଦ୍ଧା ରାଜା ପୁରୁଷୋତ୍ତମଦେବ ନାମତଃ ଦିଲ୍ଲୀର ମୋଗଲ ସମ୍ରାଟଙ୍କ ବଶ୍ୟତା ସ୍ୱୀକାର କରିଥିଲେ ମଧ୍ୟ କାର୍ଯ୍ୟତଃ ସ୍ୱାଧୀନ ଥିଲେ । ଖୋର୍ଦ୍ଧା ରାଜାଙ୍କ ପ୍ରତିପତ୍ତି କମାଇ ଦେବାପାଇଁ ମୋଗଲ ଦରବାରର କର୍ମଚାରୀମାନେ ବହୁତ ଚେଷ୍ଟା କରୁଥିଲେ । ଅର୍ଦ୍ଧ ସ୍ୱାଧୀନ ରାଜ୍ୟଗୁଡ଼ିକୁ କ୍ରମାନ୍ୱୟରେ ଲୋପ କରିଦେବା ପାଇଁ ଉଦ୍ୟମ ହେଉଥିଲା । ଏ ଦିଗରେ ଯେଉଁ କର୍ମଚାରୀ ଯେତେଦୂର ଆଗଉଥିଲା, ସେ ସେତେ ସମ୍ମାନ ଦିଲ୍ଲୀ ଦରବାରରୁ ପାଉଥିଲା । ଏଥିରେ କେତେକ ହିନ୍ଦୁ ରାଜକର୍ମଚାରୀ ମଧ୍ୟ ବିଶେଷ ଭାବରେ ସଂପୃକ୍ତ ଥିଲେ । ହାସିମ୍‌ଖାଁଙ୍କ ଅଧୀନରେ କେସୋଦାସ ମାରୁ ନାମରେ ଜଣେ ରାଜପୁତ ଚାକିରି କରୁଥିଲେ । କେତେକ ହିନ୍ଦୁ ସୈନ୍ୟଙ୍କୁ ଧରି ସେ କଟକଠାରୁ ପୁରୀକୁ ଆସିଲେ । ସେତେବେଳକୁ ରଥଯାତ୍ରା ସମୟ । ରାଜା ପୁରୁଷୋତ୍ତମଦେବ ସେ ବର୍ଷ ରଥଯାତ୍ରାକୁ ପୁରୀକୁ ଆସି

ନ ପାର ଖୋର୍ଦ୍ଧାରେ ଥିଲେ । କେଶୋଦାସ ପୁରୀକୁ ଆସି ରଥଯାତ୍ରା ସମୟର ସୁବିଧା ନେଲେ । ଠାକୁର ଗୁଣ୍ଡିଚା ବାହୁଡ଼ା ଯିବା ପରେ ବଡ଼ଦେଉଳରେ ଜନଗହଳ ନ ଥିବାର ସୁବିଧା ନେଇ ରାଜପୁତ ସୈନ୍ୟମାନଙ୍କ ଧରି ଯାତ୍ରୀବେଶରେ ଦେଉଳ ଭିତରେ ପଶିଗଲେ । ଦେଉଳ ଅବରୋଧ କରି ଲୁଣ୍ଠନ ଆରମ୍ଭ କଲେ ।

କେଶୋଦାସ ଭଣ୍ଡାର ଘରୁ ପ୍ରାୟ ତିନକୋଟି ଟଙ୍କାର ସମ୍ପତ୍ତି ଲୁଟି କଲେ । ଅନ୍ୟାନ୍ୟ ସ୍ଥାନରେ ଥିବା ବହୁମୂଲ୍ୟ ପଦାର୍ଥସବୁ ଆଣି ତାଙ୍କୁ ଦେବା ନିମିତ୍ତ ସେବକ ଓ ବ୍ରାହ୍ମଣମାନଙ୍କୁ ବହୁ କଷ୍ଟ ଦେଲେ । ସେବକମାନଙ୍କ ଉପରେ ବହୁ ଅତ୍ୟାଚାର କଲେ । ରଥଗୁଡ଼ିକ ପୋଡ଼ି ଦେଲେ । ଖୋର୍ଦ୍ଧାରେ ରାଜାଙ୍କଠାରେ ଏ ଖବର ପହଞ୍ଚିବା ମାତ୍ରେ ସେ ପୁରୀ ଆସିଲେ । ଦଣ୍ଡନାର ଅଶ୍ୱାରୋହୀ, ତିନି ଗୃହଲକ୍ଷ ସୈନିକ ଓ ବହୁ ରଥ ଆଣିଥିଲେ । ଦେଉଳକୁ ବାହାରରୁ ଘେରାଉ କଲେ । ରଥଗୁଡ଼ିକୁ ବାହାର ପାଚେରୀ ଚୂଡ଼ଉପରେ ରଖିଲେ । କେଶୋଦାସ ଏ ଅବରୋଧ ଭିତରେ ଖସି ଆସିବା ପାଇଁ ଚେଷ୍ଟାକଲେ । ବାଉଁଶରେ ଲୁଗା ଗୁଡ଼େଇ ଦେଉଳ ଭଣ୍ଡାର ଭିତରେ ଥିବା ଘିଅ, ତେଲରେ ବୁଡ଼ାଇ, ନିଆଁ ଲଗାଇ ରଥ ଉପରକୁ ମନ୍ଦିର ଭିତରୁ ଫୋପାଡ଼ିଲେ । ନିଆଁ ଲାଗି ବହୁ ରଥ ପୋଡ଼ିଗଲା । ବହୁ ଲୋକମଧ୍ୟ ହତାହତ ହେଲେ । ପୁରୁଷୋତ୍ତମଦେବଙ୍କ ଅବରୋଧ ଭାଙ୍ଗିଲା ନାହିଁ । ମନ୍ଦିର ଭିତରେ ଥିବା ଖାଦ୍ୟସାମଗ୍ରୀ ସାହାଯ୍ୟରେ କେଶୋଦାସ ଖାଦ୍ୟପେୟ ଚଳେଇଲେ । କଟକରୁ ହାସିମ୍‌ଖାଁ କେଶୋଦାସଙ୍କୁ ସାହାଯ୍ୟ କରିବାକୁ ସୈନ୍ୟ ପଠାଇଲେ । ପୁରୁଷୋତ୍ତମଦେବ ହାସିମ୍‌ଖାଁଙ୍କ ସହିତ ସନ୍ଧି କରିବାକୁ ବାଧ୍ୟ ହେଲେ । ସନ୍ଧିର ସର୍ତ୍ତ ହେଲା—(୧) ପୁରୁଷୋତ୍ତମଦେବ ନିଜ ଝିଅକୁ ଦିଲ୍ଲୀ ସମ୍ରାଟଙ୍କ ସହିତ ବିବାହ ଦେବେ । ଦିଲ୍ଲୀ ସମ୍ରାଟଙ୍କ ପେସ୍‌କେଶ୍ ସ୍ୱରୂପ ତିନିଲକ୍ଷ ଟଙ୍କା ଦେବେ । (୨) ପୁରୁଷୋତ୍ତମଙ୍କ ଭଗିନୀଙ୍କୁ ରାଜା କେଶୋଦାସଙ୍କ ସହିତ ବିବାହ ଦେବେ ଓ ଲକ୍ଷେ ଟଙ୍କା ଯୌତୁକ ଦେବେ । ସନ୍ଧି ପରେ ମୋଗଲ ଦରବାରରେ କେଶୋଦାସଙ୍କୁ ସମ୍ମାନ ମିଳିଲା । ରଥଗୁଡ଼ିକ ପୋଡ଼ିଯାଇଥିବାରୁ ଗୁଣ୍ଡିଚା ପରେ ବହୁ କଷ୍ଟରେ ବିମାନ ଉପରେ ଠାକୁରମାନଙ୍କୁ ଦେଉଳକୁ ଆଣିଲେ । ଠାକୁରମାନେ ଆଠମାସକାଳ ବାହାରେ ରହିଲେ । ମହାପ୍ରସାଦ ହେଲା ନାହିଁ । (୧୪୨)

## ଦେଉଳ ଉପରେ ପୁନର୍ବାର ଆକ୍ରମଣର ଆଶଙ୍କା :—

ଖ୍ରୀ: ୧୬୧୫ରେ ଓଡ଼ିଶା ଲାଟ ରାଜା କଲ୍ୟାଣ ପୁରୁଷୋତ୍ତମଦେବଙ୍କ ବିରୁଦ୍ଧରେ ଅଭିଯାନ ଆରମ୍ଭ କଲେ । କଲ୍ୟାଣଙ୍କ ସୈନିକମାନଙ୍କ ଭିତରେ ବହୁ ସଂଖ୍ୟକ

୧୪୨ । ବାହାରିସ୍ଥାନ-ଇ-ଘାଇବି ।

ମୁସଲମାନ ଥିବାରୁ ପୁରୁଷୋତ୍ତମଦେବ ଆଗରୁ ବଡ଼ଦେଉଳରୁ ଠାକୁରମାନଙ୍କୁ ବାହାର କରିଆଣି 'ଗୁରୁବାଦଇ'ଠାରୁ ନେଇ ଲୁଚାଇ ରଖିଲେ । କିନ୍ତୁ କଲ୍ୟାଣ ପୁରୁଷୋତ୍ତମଙ୍କ ଦ୍ୱାରା ସେହିବର୍ଷ ପରାସ୍ତ ହେଲେ । ଖ୍ରୀ.୧୬୬୭ରେ ନୂତନ ଲାଟ ମୁକରମ୍ ଖାଁ ଖୋର୍ଦ୍ଧା ଆକ୍ରମଣ କଲେ । ଠାକୁରମାନଙ୍କୁ 'ଗୁରୁବାଦଇ' ଠାରୁ ବାଣପୁରକୁ ରାଜା ପୁରୁଷୋତ୍ତମ ନେଇଗଲେ ।

**ମୁତାବତଖାଁଙ୍କ ଆକ୍ରମଣ** ( ଖ୍ରୀ୧୬୪୬ )—ଖ୍ରୀ. ୧୬୪୬ରେ ଓଡ଼ିଶା ସୁବାଦାର ମୁତାବତଖାଁ ଖୋର୍ଦ୍ଧା ରାଜା ପୁରୁଷୋତ୍ତମଦେବଙ୍କ ବିରୁଦ୍ଧରେ ସୈନ୍ୟ ପଠାଇଲେ ଏବଂ ଷଡ଼ଯନ୍ତ୍ର କରି ରାଜାଙ୍କ ଅନା ଅନିରୁଦ୍ଧ ରାୟଙ୍କ ଦ୍ୱାରା ପୁରୀଠାରେ ରାଜାଙ୍କୁ ହତ୍ୟା କଲେ । ରାଜନହର ଓ ବଡ଼ଦେଉଳ ଭିତରେ ପଶି ବହୁ ଧନ ସମ୍ପତ୍ତି ଲୁଟି କରିନେଲେ ।

**ଏକରାମ ଖାଁଙ୍କ ଆକ୍ରମଣ** ( ଖ୍ରୀ୧୬୯୮ )—ସମ୍ରାଟ ଆଉରଙ୍ଗଜେବ ବିଜାପୁରରେ ଥିଲବେଳେ ଜଗନ୍ନାଥ ମନ୍ଦିରକୁ ଧ୍ୱଂସ କରିବା ପାଇଁ ଆଦେଶ ଦେଇ-ଥିଲେ । ସେହି ଆଦେଶ ଅନୁସାରେ ଏକରାମ ଖାଁ ନାମକ ଜଣେ କର୍ମଚାରୀ ଖ୍ରୀ ୧୬୯୮ରେ ପୁରୀ ଆକ୍ରମଣ କଲେ । ଖୋର୍ଦ୍ଧାର ରାଜା ଦିବ୍ୟସିଂହଦେବ ବଡ଼ଦେଉଳକୁ ରକ୍ଷା କରିବା ପାଇଁ ବହୁ ଉଦ୍ୟମ କଲେ; କିନ୍ତୁ ପାରିଲେ ନାହିଁ । ଏକରାମ ଖାଁ ସିଂହଦ୍ୱାର କବାଟକୁ ଭାଙ୍ଗି ଭିତରେ ପଶିଲେ । ତାଙ୍କ ଭାଇ ମରମସ୍ତ ଖାଁ ନାମାଉଲ୍ ମନ୍ଦିର ଭିତରକୁ ପଶି ସିଂହାସନ ଉପରୁ ଠାକୁରମାନଙ୍କୁ ବାହାର କରିଦେଇ ନିଜ ସାଙ୍ଗରେ ନେଇଗଲେ । ଦିବ୍ୟସିଂହଦେବ କୌଣସି ଉପାୟ ନ ଦେଖି ସହର ଭିତରେ ଲୁଚି ରହିଲେ । ଏକରାମ ଖାଁ ଦେଉଳରୁ ବହୁ ସମ୍ପତ୍ତି ଲୁଟି କରିନେଲେ । କିନ୍ତୁ ଏକରାମ ଖାଁଙ୍କ ଆକ୍ରମଣର ଆଶଙ୍କା କରି ଠାକୁରମାନଙ୍କୁ କୋକଲ ଗଡ଼ଠାକୁ ନେଇ ଯାଇଥିଲେ ବୋଲି ମାଦଳାପାଞ୍ଜିରୁ ଜଣାଯାଏ ।

ଖ୍ରୀ. ୧୭୯୩ରେ ବଡ଼ ତୋଫାନ ହେଲା । ସେଥିରେ ବଡ଼ଦେଉଳର ଚକ୍ର ଭାଙ୍ଗିଯାଇ ଭଣ୍ଡ ଗଣପତିଙ୍କ ଆଗରେ ପଡ଼ିଲା । ବେଢ଼ା ଭିତର ବହୁତ ମନ୍ଦିରର ଶିଖର ଭାଙ୍ଗିଗଲା ।

**ସୁଜାଉଦ୍ଦିନଙ୍କ ଆକ୍ରମଣ** (ଖ୍ରୀ. ୧୭୧୩):—ଖ୍ରୀ୧୭୧୩ରେ ଓଡ଼ିଶାର ଲାଟ ସୁଜାଉଦ୍ଦିନ୍ ଖୋର୍ଦ୍ଧା ରାଜାଙ୍କ ବିରୁଦ୍ଧରେ ଅଭିଯାନ କଲେ । ପୁରୀ ଆକ୍ରମଣ କଲେ । ବଡ଼ଦେଉଳର ସିଂହଦ୍ୱାର କବାଟ ଭାଙ୍ଗି ମନ୍ଦିର ଭିତରେ ପଶି ବହୁ ମୂଲ୍ୟବାନ ସମ୍ପତ୍ତି ଲୁଟି କରିନେଲେ ।

**ବଡ଼ଦେଉଳ ଚୂନ** ( ଖ୍ରୀ.୧୭୧୫ ):—ଖୋର୍ଦ୍ଧା ରାଜା ହରେକୃଷ୍ଣଦେବଙ୍କ ୩ ଅଙ୍କରେ ଧର୍ମ୍ମ ଦ୍ୱାରିଚନ୍ଦନଙ୍କ ତତ୍ତ୍ୱାବଧାନରେ ବଡ଼ଦେଉଳ ଚୂନ କଲେ । ଭଗବାନ ଭମରବର ଭୋଗଘରର ଭିତର ଦୁଆରଠାରୁ ଜଗମୋହନ ପାହାଚ ପର୍ଯ୍ୟନ୍ତ ଅଚ୍ଛଣ୍ଡା ପାହାଚ ଗଢ଼ାଇଲେ ।

**ତକି ଖାଁଙ୍କ ବକ୍ରଦୃଷ୍ଟି** (୧୭୩୩):—ଓଡ଼ିଶାର ନାଏବ ତକି ଖାଁ ଖୋର୍ଦ୍ଧା ରାଜାଙ୍କ ଅର୍ଦ୍ଧ ସ୍ୱାଧୀନତାକୁ ଆଦୌ ପସନ୍ଦ କରୁ ନ ଥିଲେ । ଜଗନ୍ନାଥ ମନ୍ଦିର ପ୍ରତି ମଧ୍ୟ ତାଙ୍କର କଡ଼ା ନଜର ଥିଲା । ଖୋର୍ଦ୍ଧା ରାଜା ଏହା ବୁଝିପାରି ତକି ଖାଁଙ୍କ ମନ୍ଦିର ଆକ୍ରମଣ ଆଶଙ୍କାରେ ଠାକୁରମାନଙ୍କୁ ଦେଉଳରୁ ବାହାର କରିନେଇ ଚିଲିକା ଭିତରେ ହରିହରଙ୍କର ମଣ୍ଡପରେ କେତେ ବର୍ଷ ଲୁଚାଇ ରଖିଲେ । ପୁଣି ରାଜା ରାମଚନ୍ଦ୍ରଦେବଙ୍କ ଅମଳରେ ଖ୍ରୀ.୧୭୩୩ରେ ତକି ଖାଁ ମନ୍ଦିର ଆକ୍ରମଣ କରିବାର ଆଶଙ୍କା ଦେଖା ଦେବାରୁ ରାଜା ଠାକୁରମାନଙ୍କୁ ହିଙ୍ଗୁଳିରେ ଲୁଚାଇ ରଖିଲେ ।

**ଗୁଣ୍ଡିଚାଘର ଜଗମୋହନ ନିର୍ମାଣ** (ଖ୍ରୀ.୧୭୨୮ )—ରାମଚନ୍ଦ୍ର-ଦେବ (୨ୟ)ଙ୍କ ଅମଳରେ (ଖ୍ରୀ. ୧୭୨୮, ୪ଅଙ୍କରେ ) ବକ୍‌ସି ବେଣୁ ଭ୍ରମରବର ପୂର୍ବେ ମହାରାଜା ମୁକୁନ୍ଦଦେବ ଆଣାଇଥିବା ୪ଟି ମୁଗୁନି ପଥରରେ ସ୍ତମ୍ଭ କରି ଗୁଣ୍ଡିଚାଘର ଜଗମୋହନ ଗଢ଼ାଇଥିଲେ ।

**ବୀରକିଶୋରଦେବ** (୨ୟ) (ଖ୍ରୀ. ୧୭୯୨-୯୫ )—"ମରହଟ୍ଟାମାନଙ୍କ ଗୁରୁ ଗୋସାଇଁ ସୁବର୍ଣ୍ଣରେ ଶ୍ରୀ ଲକ୍ଷ୍ମୀ ଠାକୁରାଣୀଙ୍କି ନିର୍ମାଣ କରାଇ ପ୍ରତିଷ୍ଠା କରି ଶ୍ରୀ ଜଗନ୍ନାଥ ମହାପ୍ରଭୁଙ୍କୁ ବାମପାର୍ଶ୍ୱ ସିଂହାସନ ଉପର ପାଦପଦ୍ମଠାରେ ବିଜେ କରାଇଲେ ।" ଝୁଲଣଯାତ୍ରା କରାଇଲେ । ପଶ୍ଚିମ ଦ୍ୱାର ଖୋଲାଇଲେ । "ରତ୍ନ-ସିଂହାସନ ପଥର କାଢ଼ି ବସାଇଲେ । ଏଥିରୁ ଶଙ୍କରାଚାର୍ଯ୍ୟଙ୍କୁ ପଦ୍ମପାଦାଚାର୍ଯ୍ୟଙ୍କୁ ବାହାର କରି ଦକ୍ଷିଣ ଘରେ ରଖିଲେ । ପୁନଶ୍ଚ କେତେଦିନ ଉତ୍ତାରୁ ଏହାଙ୍କୁ ନେଇ ସିଂହାସନରେ ବିଜେ କରାଇଲେ । ବୈଷ୍ଣବେ ଭାଙ୍ଗିଲେ ।" କୋଣାର୍କରୁ ଅରୁଣ ସ୍ତମ୍ଭ ଆଣାଇ ସିଂହଦ୍ୱାର ଚକଡ଼ାରେ ରଖିଲେ ।

**ମୁକୁନ୍ଦଦେବ** ( ଖ୍ରୀ. ୧୭୯୫-୧୮୧୭)—ଏହାଙ୍କ ଅମଳରେ ମନ୍ଦିର ଇଂରେଜ ସରକାରଙ୍କ ହାତକୁ ଚାଲିଗଲା ।

**ବିଭିନ୍ନ ରାଜତ୍ୱରେ ମନ୍ଦିର ପରିଚାଳନା**:—ଓଡ଼ିଶାର ସ୍ୱାଧୀନ ହିନ୍ଦୁ ରାଜାମାନଙ୍କ ଅମଳରେ ଓଡ଼ିଶା ସରକାର ମନ୍ଦିରର ରକ୍ଷଣାବେକ୍ଷଣର ଦାୟିତ୍ୱ ନେଇଥିଲେ । ଗଙ୍ଗବଂଶ ଓ ସୂର୍ଯ୍ୟବଂଶ ରାଜାମାନଙ୍କ ଅମଳରେ ଠାକୁରମାନଙ୍କୁ ବନ୍ଧୁ

ଜମିବାଡ଼ି, ଧନରତ୍ନ ଦାନ ଦିଆଯାଉଥିଲା । ମନ୍ଦିରର ନୀତି ପଦ୍ଧତିମାନରେ ତ୍ରୁଟି ଦେଖାଦେଲେ ଦୋଷୀକୁ ରାଜା ଦଣ୍ଡ ଦେଉଥିଲେ ।

ମୋଗଲମାନଙ୍କ ରାଜତ୍ୱରେ ରାଜା ମାନସିଂହ ଖୋର୍ଦ୍ଧାରେ ରାଜା ରାମଚନ୍ଦ୍ରଦେବଙ୍କୁ ଖ୍ରୀ: ୧୫୯୦ରେ ପୁରୀର ବଡ଼ଦେଉଳର ପରିଚାଳନା ଭାର ଅର୍ପଣ କରିଥିଲେ ।

ମରହଟ୍ଟାମାନେ ନବାବ ଆଲିବର୍ଦ୍ଦିଖାଁଙ୍କ ହାତରୁ ଓଡ଼ିଶାର ଶାସନ ହାତକୁ ନେବା ପରେ ମରହଟ୍ଟା ଶାସକମାନେ ନିଜ ତତ୍ତ୍ୱାବଧାନରେ ମନ୍ଦିରକୁ ରଖିଲେ । ଠାକୁରମାନଙ୍କର ନୀତି ଭଲଭାବରେ ଚଳିବା ପାଇଁ ବନ୍ଦୋବସ୍ତ କମି ଖଞ୍ଜିଲେ । ମୁସଲମାନମାନଙ୍କ ରାଜତ୍ୱ ସମୟରେ ଯାତ୍ରୀମାନଙ୍କ ଉପରେ କର ବସୁଥିଲା । ମରହଟ୍ଟାମାନେ ମଧ୍ୟ ଯାତ୍ରୀକର ଆଦାୟ କରୁଥିଲେ ।

ଓଡ଼ିଶା ରାଜାମାନଙ୍କ ଅମଳରେ ଜଗନ୍ନାଥ ମନ୍ଦିର ସରକାରଙ୍କ ଅଧୀନରେ ଥିବାରୁ ସେବକମାନଙ୍କୁ ସେବକ ରୂପରେ ବୃତ୍ତି ଦିଆଯାଉଥିଲା । ଦୋଷ ଅନୁସାରେ ଦଣ୍ଡ ଦିଆଯାଉଥିଲା । ବେତ ମାଡ଼ଠାରୁ ଆରମ୍ଭ କରି ଜେଲ ପର୍ଯ୍ୟନ୍ତ ଦଣ୍ଡବିଧାନ ଥିଲା । ବଡ଼ ଦୋଷୀକୁ କାର୍ଯ୍ୟରୁ ଅନ୍ତର କରି ଦିଆଯାଉଥିଲା । ମରହଟ୍ଟାମାନଙ୍କ ରାଜତ୍ୱ ସମୟରେ ମଧ୍ୟ ସରକାରଙ୍କର ପୂର୍ଣ୍ଣ କ୍ଷମତା ମନ୍ଦିର ଉପରେ ଥିଲା । ପ୍ରାୟ ଶହେ ବର୍ଷ ପୂର୍ବେ ଦେଉଳ ଭିତରେ ୩୬ଟି ନିଯୋଗ ଥିଲା । କିନ୍ତୁ କାଳକ୍ରମେ ଏହା ବୃଦ୍ଧି ପାଇ ଖ୍ରୀ: ୧୮୦୫ ବେଳକୁ ଯେ ସମୟରେ କଲେକ୍ଟର ଗ୍ରୁମ୍ ସାହେବ ୨୫୦ ନିଯୋଗର ତାଲିକା ଦେଇଥିଲେ । ବର୍ତ୍ତମାନ ଆଉ କିଛି ବଢ଼ିଥିବାର ଆଶଙ୍କା କରାଯାଉଛି । ମରହଟ୍ଟାମାନଙ୍କ ଅମଳରେ ଦଣ୍ଡର ପରିମାଣ କିପରି କମି ଯାଇଥିବା କଥା ଗ୍ରୁମ୍ ସାହେବ ଲେଖିଛନ୍ତି । ପିଆଦା ଲଗେଇ ଦୋଷୀକୁ ଦଣ୍ଡ ଦିଆଯାଉଥିଲା । ନ ହେଲେ ଦିନେ ଦୁଇ ଦିନ ପାଇଁ ତାଙ୍କର ଭୋଗ ଖେଇ ବନ୍ଦ କରି ଦିଆଯାଉଥିଲା । ଦେଉଳର ପରିଚାଳନା ଭାର ମରହଟ୍ଟାମାନଙ୍କ ଅମଳରେ ଦେଉଳ ପରୀକ୍ଷଙ୍କ ଉପରେ ଥିଲା । ସେ ବାଜି ଅଙ୍କିଟ୍ୟ ଖ୍ରୀ: ୧୮୦୩ ବେଳକୁ ଦେଉଳ ପରୀକ୍ଷା ରୂପେ ନିଯୁକ୍ତ ଥିଲେ । ପ୍ରାୟ ୨୫୦ ବର୍ଷ ପୂର୍ବେ ଦେଉଳର ପରିଚାଳନା ଭାର ଜଣେ ପରୀକ୍ଷଙ୍କ ଉପରେ ଥିଲା । ତାଙ୍କୁ ବଡ଼ ଦେଉଳ ପରୀକ୍ଷା କୁହାଯାଉଥିଲା । କିନ୍ତୁ ମରହଟ୍ଟାମାନଙ୍କ ରାଜତ୍ୱରେ ପରିଚାଳନାରେ ସୁବିଧା ହେବା ଉଦ୍ଦେଶ୍ୟରେ ଗୋଟିଏ ପରୀକ୍ଷା ସରକାରଙ୍କ ଦ୍ୱାରା ନିଯୁକ୍ତ ହୋଇଥିଲେ ।

ଖ୍ରୀ: ୧୮୦୩ରେ ଇଂରେଜମାନେ ମରହଟ୍ଟାମାନଙ୍କ ହାତରୁ ଓଡ଼ିଶାକୁ ଛଡ଼ାଇ ନେଲେ । ସେହି ବର୍ଷ ପୁରୀର ଜଗନ୍ନାଥ ମନ୍ଦିର ମଧ୍ୟ ଇଂରେଜମାନେ ଦଖଲ

କଲେ । ମନ୍ଦିରଟି ଦଖଲ କରି ସାରିବା ପରେ ଇଂରେଜ ସରକାର ମନ୍ଦିର ଉପରେ ପୂର୍ଣ୍ଣ କ୍ଷମତା ବିସ୍ତାର କରିଥିଲେ । ଲର୍ଡ ୱେଲେସ୍‌ଲି ମନ୍ଦିର ଦଖଲ ବେଳେ କପରି ଭାବରେ ଚଳିବାକୁ ହେବ ସେ ସମ୍ବନ୍ଧରେ ସୈନିକମାନଙ୍କୁ ଆଦେଶ ଦେଇଥିଲେ— "ତୁମ୍ଭେମାନେ ଜଗନ୍ନାଥରେ ପହଞ୍ଚିବା ପରେ ବଡ଼ ଦେଉଳର ମାନମର୍ଯ୍ୟାଦା ବ୍ରାହ୍ମଣ ଓ ଯାତ୍ରୀମାନଙ୍କର ଧର୍ମବିଶ୍ୱାସ ପ୍ରତି ଯେପରି କୌଣସି ଆଘାତ ନ ଲାଗେ, ସେଥିପାଇଁ ସତର୍କ ରହିବ । ବ୍ରାହ୍ମଣମାନଙ୍କର ଏବଂ ଦେବମନ୍ଦିରମାନଙ୍କର ନିରାପତ୍ତା ପାଇଁ ଯଥେଷ୍ଟ ଜଗୁଆଳ ରଖିବ । ନୀତି, ପର୍ବପର୍ବାଣୀ ଯେପରି ନିରାପଦରେ ସମାହିତ ହୁଏ, ସେଥିପ୍ରତି ଦୃଷ୍ଟି ରଖିବ । ××" ଇତ୍ୟାଦି । ପୁଣି ମରହଟ୍ଟାମାନଙ୍କ ସମୟରେ ଯେଉଁସବୁ କର ଆଦାୟ ହେଉଥିଲା, ସେତକ କେବଳ ଆଦାୟ କରିବା ପାଇଁ ୱେଲେସ୍‌ଲି ଆଦେଶ ଦେଇଥିଲେ । ୱେଲେସ୍‌ଲିଙ୍କ ଆଦେଶ ବଳରୁ ତାଙ୍କ ଅଫିସରମାନେ ଭଲ ବ୍ୟବହାର କରିବାକୁ ସେହି ବର୍ଷ (ଖ୍ରୀ: ୧୮୦୩) ପୁରୀର ବିଶିଷ୍ଟ ବ୍ରାହ୍ମଣ ପଣ୍ଡିତ, ମଠମାନଙ୍କର ମହନ୍ତ ଓ ମୁଖ୍ୟ ସେବକମାନେ ଇଂରେଜ ଶାସକଙ୍କୁ ଭେଟିକରି ଇଂରେଜମାନେ ଓଡ଼ିଶା ଦଖଲ କରିଥିବାରୁ ଆନନ୍ଦ ପ୍ରକାଶ କରିଥିଲେ ଏବଂ ବଡ଼ ଦେଉଳ ଉପରେ ଇଂରେଜମାନଙ୍କ କର୍ତ୍ତୃତ୍ୱକୁ ସ୍ୱୀକାର କରି ନେଇଥିଲେ ।

ମରହଟ୍ଟା ସରକାରଙ୍କ ରାଜତ୍ୱ ବେଳେ ବଡ଼ ଦେଉଳର ନୀତି ସତ୍ର ଯେପରି ଚାଲୁଥିଲା, ଇଂରେଜ ସରକାର ସେହିପରି ଚଳେଇଲେ । ତିନି ଚାରି ବର୍ଷ ଏହିପରି ଚଳାଇବା ପରେ ଆୟଠାରୁ ବ୍ୟୟ ବେଶି ହୋଇଥିବାରୁ ସରକାର ହାତରୁ ଟଙ୍କା ଦେଇ ମନ୍ଦିରକାର୍ଯ୍ୟ ନିର୍ବାହ କରିବାକୁ ବାଧ୍ୟ ହେଲେ । ଇଂରେଜମାନେ ଖ୍ରୀଷ୍ଟଧର୍ମାବଲମ୍ବୀ ଥିବାରୁ ସେମାନଙ୍କ ସରକାର ନିଜ ପାଣ୍ଠିରୁ "ପ୍ରତିମା ପୂଜା" ବାବଦରେ ଟଙ୍କା ଖର୍ଚ୍ଚ କରୁଥିବାରୁ ଏହି "ଧର୍ମବିରୋଧୀ" କାର୍ଯ୍ୟ ବିରୋଧରେ ବିଲାତରେ ଆନ୍ଦୋଳନ ଆରମ୍ଭ ହେଲା । ଏହି ଆନ୍ଦୋଳନ ଫଳରେ ଇଂରେଜ ସରକାର ମନ୍ଦିରକୁ ପ୍ରତ୍ୟକ୍ଷ ଭାବରେ ନ ବୁଝି ଅନ୍ୟଦ୍ୱାରା ପରିଚାଳନା କରାଇବାର ବ୍ୟବସ୍ଥା କଲେ । ଖ୍ରୀ: ୧୮୦୮ ରେ ଏକ ରେଗୁଲେଶନ (ନଂ ୪) ଜାରି କରି ତିନି ଜଣ ପଣ୍ଡିତଙ୍କୁ ନେଇ ଗୋଟିଏ କମିଟି ଗଠନ କଲେ ଏବଂ ଏହି କମିଟି ହାତରେ ମନ୍ଦିରର ପରିଚାଳନା ଭାର ରହିଲା । ସେତେବେଳେ ଯାତ୍ରୀକର ଆଦାୟ ହେଉଥିଲା । ଯାତ୍ରୀକର କଲେକ୍ଟର ଏହି କମିଟିକୁ ସଭ୍ୟ ମନୋନୀତ କରୁଥିଲେ ।

୧୮୦୮ ଖ୍ରୀଷ୍ଟାବ୍ଦରେ ଖୋର୍ଦ୍ଧା ରାଜା ମୁକୁନ୍ଦଦେବ ଇଂରେଜ ଶାସନ ବିରୁଦ୍ଧରେ ବିଦ୍ରୋହ କରିବାକୁ ଉଦ୍ୟମ କରୁଥିବା ଅଭିଯୋଗରେ ତାହାଙ୍କୁ ଇଂରେଜ

ସରକାର ଅଟକ କରି ରଖିଲେ ଏବଂ ଏହି ସମୟରୁ ଖୋର୍ଦ୍ଧାରାଜାବଂଶ ଉପାଧି ଲୋପ ପାଇଲା । ପରେ ସରକାର ମୁକୁନ୍ଦଦେବଙ୍କୁ ଛାଡ଼ି ଦେଲେ ଏବଂ ପୁରୀରେ ଅବସ୍ଥାନ କରିବାକୁ ଅନୁମତି ଦେଲେ । ମୁକୁନ୍ଦଦେବଙ୍କ ରାଜ୍ୟ ବା ଜମିଦାରୀ ନ ଥିଲେ ମଧ୍ୟ ତାଙ୍କୁ "ପୁରୀରାଜା" ଉପାଧି ସରକାର ଦେଲେ । ୧୮୦୯ର ଆଇନ ବଳରେ ପଣ୍ଡିତ କମିଟିକୁ ସରକାର ଭାଙ୍ଗି ଦେଲେ ଏବଂ ରାଜାଙ୍କୁ ବଡ଼ ଦେଉଳ ଚଳାଇବା ପାଇଁ ନିଯୁକ୍ତ କରାଗଲା । ତାଙ୍କର ପଦବୀ ରହିଲା "ମନ୍ଦିର ସୁପରିଣ୍ଟେଣ୍ଡେଣ୍ଟ" ଓ ଏହି ପଦବୀ ମୌରସୀ ସୂତ୍ରରେ ତାଙ୍କୁ ଦିଆଗଲା । ମନ୍ଦିର ଉପରେ ତାଙ୍କର ମାଲିକତ୍ୱ ସ୍ୱୀକାର କରାଯାଇ ନ ଥିଲା । ଚିରାଚରିତ ବିଧିବିଧାନ ମାନ ସୁଚାରୁରୂପେ ନ୍ୟାୟାନୁମୋଦିତ ଭାବରେ ମନ୍ଦିର ପରିଚାଳନା କରିବା ପାଇଁ ଏହି ଆଇନରେ ନିର୍ଦ୍ଦେଶ ଦିଆଯାଇଥିଲା । ମନ୍ଦିର ପରିଚାଳନାରେ ସୁପରିଣ୍ଟେଣ୍ଡେଣ୍ଟଙ୍କୁ ସାହାଯ୍ୟ କରିବା ପାଇଁ ତିନି ଜଣ ମୁଖ୍ୟସେବକଙ୍କୁ ମନୋନୀତ କରାଗଲା । ମନ୍ଦିରର ନୀତି ଚଳାଇବାରେ କୌଣସି ତ୍ରୁଟି ଦେଖାଗଲେ ରାଜାଙ୍କ ବିରୁଦ୍ଧରେ ସରକାରଙ୍କଠାରେ ରିପୋର୍ଟ କରିବା ପାଇଁ ଏମାନଙ୍କୁ କ୍ଷମତା ଦିଆଗଲା ।

ମରହଟ୍ଟାମାନଙ୍କ ଅମଳରେ ସରକାର ବହୁତ ସମ୍ପତ୍ତି ଜଗନ୍ନାଥଙ୍କ ସେବା ପାଇଁ ଛାଡ଼ିଥିଲେ । ସତାଇଶି ହଜାରୀ ମାହାଲ ସମ୍ପୂର୍ଣ୍ଣଭାବେ ଠାକୁରଙ୍କ ସେବା ପାଇଁ ଦିଆଯାଇଥିଲା । ଏହାଛଡ଼ା ଯାତ୍ରୀକର ମଧ୍ୟ ଆଦାୟ କରି ସରକାର ମନ୍ଦିର ପରିଚାଳନାରେ ବ୍ୟୟ କରୁଥିଲେ । ଇଂରେଜ ଅମଳରେ ସରକାର ମରହଟ୍ଟା ସମୟର ବ୍ୟବସ୍ଥା କାଏମ ରଖିଥିଲେ । ୧୮୦୩ରେ ପୁରୀର ସେବକ, ମହନ୍ତ ଓ ବିଶିଷ୍ଟ ବ୍ରାହ୍ମଣ ପଣ୍ଡିତମାନେ ଇଂରେଜ ସରକାରଙ୍କଠାରେ ଆସ୍ଥା ସ୍ଥାପନ କରି ମନ୍ଦିରଟିକୁ ଇଂରେଜ ସରକାରଙ୍କ ହାତରେ ଅର୍ପଣ କରି ଦେଇଥିବାରୁ ଇଂରେଜ ସରକାର ମନ୍ଦିରର ଖର୍ଚ୍ଚ ପାଇଁ ପୂର୍ବ ସରକାରଙ୍କ ରୀତି ଅନୁସରଣ କରି, ବାର୍ଷିକ ଟ୫୩୦୦୦୲ ଦେଉଥିଲେ । ଖ୍ରୀ.୧୮୦୩ରେ ମନ୍ଦିର ଖର୍ଚ୍ଚ ତୁଲାଇବା ପାଇଁ ସରକାର ରାଜାଙ୍କ ହାତରେ ସତେଇଶି ହଜାରୀ ଇଲାକାଟି ଦେଲେ । ସତେଇଶି ହଜାରୀ ମାହାଲର ବାର୍ଷିକ ଆୟ ଟ୧୭୪୮୦୲ ଥିଲା । ଏହାକୁ ଛାଡ଼ି ସରକାର ବାର୍ଷିକ ଟ୩୫୭୩୮୲ ମଧ୍ୟ ଦେଉଥିଲେ ।

ପୂର୍ବରୁ ମରହଟ୍ଟାମାନଙ୍କ ଅମଳରେ କେତେକ ସମ୍ପତ୍ତି ଠାକୁରମାନଙ୍କୁ ଦିଆଯାଇଥିଲା । ଏହି ସମ୍ପତ୍ତିର ଆୟର ହିସାବ କରାଯାଇ ପରେ ଖ୍ରୀ. ୧୮୪୫ରେ ସରକାରୀ ବାର୍ଷିକ ଗ୍ରାଣ୍ଟ କମେଇ ଦିଆଯାଇ ଟ ୨୩,୩୨୧୲ରେ ରଖାଗଲା । ଖ୍ରୀ. ୧୮୫୬ରେ ମନ୍ଦିରରେ ଯାତ୍ରୀମାନଙ୍କ ନିରାପତ୍ତା ପ୍ରତି ସୁପରିଣ୍ଟେଣ୍ଡେଣ୍ଟ ଉପଯୁକ୍ତ ଦୃଷ୍ଟି ଦେଉ ନ ଥିବାର ଜଣାଯିବାରୁ ବାର୍ଷିକ ଟ ୭୦୦୦୲ ଖର୍ଚ୍ଚରେ କେତେ ସରକାରୀ ପୋଲିସ

ମନ୍ଦିରରେ ରଖାଗଲା ଏବଂ ଏହି ଖର୍ଚ୍ଚ ବାର୍ଷିକ ରାଜସ୍ୱରୁ କାଟି ଦିଆଗଲା । ବାର୍ଷିକ ରାଜସ୍ୱ ଦେବାରୁ ମୁକ୍ତି ପାଇବା ପାଇଁ ମାରହାଟି ମନ୍ଦିରର ପରିଚାଳନା ଖର୍ଚ୍ଚ କାଟିବାକୁ ଏବଂ ରାଜ ମାନଙ୍କୁ ମନ୍ଦିର ମଠ ଶ୍ରେଣୀଙ୍କ ହାତରେ ଦେଲେ । ଏହି ମାନଙ୍କର ଆୟ ବାର୍ଷିକ ୫ ୧୦୦୦୦ ଥିଲା । ଖ୍ରୀ: ୧୮୫୯ରେ ମନ୍ଦିରରେ ନୀତିପଦ୍ଧତି ରକ୍ଷା କରିବାର ସଂପୂର୍ଣ୍ଣ ଭାର ସୁପରିଣ୍ଟେଣ୍ଡେଣ୍ଟଙ୍କ ଉପରେ ରହିଲା ଏବଂ ମନ୍ଦିରର ଭିତରେ ଓ ବାହାରେ ପଣ୍ଡାପଧାନୀ ଓ ଗମାଦିମାନଙ୍କରେ ରାଜା ନିଜେ ନଜରଦାର ରଖିବା ସ୍ଥିର ହେଲା । ପୂର୍ବ ପୋଲିସ ବିଭାଗକୁ ଏହି ବାବଦ୍‌ରେ ଯେଉଁ ଖର୍ଚ୍ଚ ଦିଆଯାଉଥିଲା, ତାହା ବନ୍ଦ ହେଲା ।

ପୁରୀ ରାଜାଙ୍କୁ ସୁପରିଣ୍ଟେଣ୍ଡେଣ୍ଟ ରୂପେ ସ୍ୱୀକାର କରି ତାଙ୍କ ହାତରେ ମନ୍ଦିର ପରିଚାଳନା ଭାର ଦେବା ପରେ ବିଲାତରେ ଖ୍ରୀଷ୍ଟିୟାନ୍ ସମ୍ପ୍ରଦାୟର ସମାଲୋଚନା ହ୍ରାସ ପାଇଯିବାର ଆଶା କରାଯାଉଥିଲା; କିନ୍ତୁ ତାହା ହେଲା ନାହିଁ, । କ୍ରମେ ଆନ୍ଦୋଳନ ତୀବ୍ର ହେଲା । ୧୮୩୨ ଖ୍ରୀଷ୍ଟାବ୍ଦରେ ହିନ୍ଦୁ ମନ୍ଦିରମାନଙ୍କର ପରିଚାଳନାରେ ସରକାରଙ୍କ ପ୍ରତ୍ୟକ୍ଷ ସମ୍ପର୍କ ଛୁଟିବ ବୋଲି ବିଧ୍ୟକଙ୍କ ଭାବରେ ଆନ୍ଦୋଳନ ଆରମ୍ଭ ହେଲା । ହିନ୍ଦୁ ଦେବୋତ୍ତର ସମ୍ପତ୍ତିର ପର୍ଯ୍ୟବେକ୍ଷଣରୁ ସରକାର କ୍ଷାନ୍ତ ହେବା ଉଚିତ ବୋଲି ଲର୍ଡ଼ ଗ୍ଲେନ୍‌ଲେଗ୍ ମତ ଦେଲେ । ଖ୍ରୀଷ୍ଟିୟାନ୍ ଧର୍ମଯାଜକମାନଙ୍କ ପ୍ରଚାର ମଧ୍ୟ ତୀବ୍ର ହେଲା । ଜଗନ୍ନାଥମନ୍ଦିର ଉପରେ ସେମାନଙ୍କର କଡ଼ା ନଜର ପଡ଼ିଲା । ଏହି ମନ୍ଦିର ଉପରେ ସରକାରଙ୍କର ସମ୍ପୂର୍ଣ୍ଣ କର୍ତ୍ତୃତ୍ୱ ଥିବାରୁ ଖ୍ରୀଷ୍ଟିୟାନ୍ ଧର୍ମଯାଜକଙ୍କ ଦୃଷ୍ଟି ଏହା ଉପରେ ବେଶି ପଡ଼ିଥିଲା । ବିଲାତରେ ଇଷ୍ଟଇଣ୍ଡିଆ କମ୍ପାନୀ ଡିରେକ୍‌ଟର ବୋର୍ଡ଼ ଓ ଭାରତ ସରକାର ଏହି ଆନ୍ଦୋଳନରେ ବିଚଳିତ ହୋଇପଡ଼ିଲେ ଏବଂ ୧୮୪୦ ଖ୍ରୀଷ୍ଟାବ୍ଦରେ ଯାତ୍ରୀକର ଆଦାୟ ବନ୍ଦ କରି ଦିଆଗଲା ଏବଂ ସେହି ବର୍ଷର ନଂ ୧୦ ଆଇନରେ ମନ୍ଦିରର ପର୍ଯ୍ୟବେକ୍ଷଣ ଭାର ପୁରୀ ରାଜାଙ୍କ ହାତରେ ରହିଲା ।

ଖ୍ରୀ: ୧୮୪୦ର ଆଇନରେ ଚାରୋଟି ଧାରା ଥିଲା । ପ୍ରଥମ ଧାରାରେ ପୁରୀ ଓ ଗୟାରେ ଯାତ୍ରୀକର ବନ୍ଦ କରି ଦିଆଗଲା । ଦ୍ୱିତୀୟ ଧାରାରେ ଜଗନ୍ନାଥମନ୍ଦିରର ପରିଚାଳନା ଭାର ପୁରୀ ରାଜାଙ୍କ ହାତରେ ନ୍ୟସ୍ତ ରହିଲା ଏବଂ ସେ ଅନ୍ୟାନ୍ୟ ସମ୍ପୃକ୍ତ ବ୍ୟକ୍ତିମାନେ ପରମ୍ପରା ଅନୁଯାୟୀ ବିଧିବିଧାନ ରକ୍ଷା କରି ମନ୍ଦିର କାର୍ଯ୍ୟ କରିବେ ବୋଲି ନିର୍ଦ୍ଦେଶ ଦିଆଗଲା । ତୃତୀୟ ଧାରାରେ ରାଜା ଯାତ୍ରୀମାନଙ୍କଠାରୁ ବାଧ୍ୟ କରି କୌଣସି ପାଉଣା ଆଦାୟ କରିବେ ନାହିଁ ବୋଲି ବିଧାନ ରହିଲା । ଚତୁର୍ଥ ଧାରାରେ ରାଜା ଓ ଅନ୍ୟମାନେ ବିଧିବିଧାନ ରକ୍ଷା ନ କଲେ, ଠାକୁରଙ୍କ ସମ୍ପତ୍ତି ତୋସରଫ କଲେ କିମ୍ବା ଏଭଳି ଅନ୍ୟାନ୍ୟ ବିଶୃଙ୍ଖଳା ଘଟିଲେ ସରକାର ସେମାନଙ୍କ ବିରୁଦ୍ଧରେ ଦେବାନୀ ଅଦାଲତରେ ମକଦ୍ଦମା କରି ପାରିବେ ବୋଲି ବିଧାନ ରହିଲା । କିନ୍ତୁ ଏହି ଆଇନର

ଚାରୋଟି ଧାରା ଭିତରୁ ତିନୋଟି ଧାରା ପରେ ବିଭିନ୍ନ ସମୟରେ ରଦ୍ଦ କରି ଦିଆଗଲା । ପ୍ରଥମ ଧାରାଟିର ଆଉ ଆବଶ୍ୟକ ନ ଥିବାରୁ ଖ୍ରୀ: ୧୮୨୮ର ୮ ନମ୍ବର ଆଇନରେ ଉଠାଇ ଦିଆଗଲା । ରାଜାଙ୍କ ପରିଚାଳନା ସମ୍ପର୍କୀୟ ଧାରାଟି ଖ୍ରୀ: ୧୮୮୨ର ୧୪ ନମ୍ବର ଆଇନର ୫୩୯ ଧାରା ଦ୍ୱାରା ଉଠାଇ ଦିଆଗଲା । ଚତୁର୍ଥ ଧାରାଟି ଖ୍ରୀ: ୧୮୬୮ର ୮ ନମ୍ବର ଆଇନ ଦ୍ୱାରା ରଦ୍ଦ କରି ଦିଆଗଲା । ପୁଣି ଅବଶିଷ୍ଟ ଧାରା ସହିତ ଖ୍ରୀ: ୧୮୪୦ର ୧୦ ନମ୍ବର ଆଇନଟି ସଂପୂର୍ଣ୍ଣ ଭାବରେ ଖ୍ରୀ: ୧୮୯୧ରେ ରଦ୍ଦ କରି ଦିଆଗଲା । ଅତଏବ ଖ୍ରୀ: ୧୮୯୧ ବେଳକୁ ମନ୍ଦିର ସମ୍ପର୍କରେ ସରକାରଙ୍କ କ୍ଷମତା ହସ୍ତାନ୍ତର ସମ୍ପର୍କୀୟ କୌଣସି ଆଇନ ଆଉ ବଳବତ୍ତର ନାହିଁ । ଯେଉଁ ଆଇନ ବଳରେ ପୁରୀ ରାଜାଙ୍କୁ ମନ୍ଦିର ପରିଚାଳନା କରିବା ପାଇଁ ଯେଉଁ ଭାର ଦିଆଯାଇଥିଲା, ସେହି ଆଇନଟି ସରକାର ରଦ୍ଦ କରି ଦେବାରୁ ମନ୍ଦିର କର୍ତ୍ତୃତ୍ୱ ସରକାରଙ୍କ ହାତକୁ ପୁଣି ଫେରିଆସିଲା ବୋଲି କହିବାକୁ ହେବ । ଖ୍ରୀ: ୧୮୯ ରେ ପୂର୍ବ ଆଇନ ସବୁ ରଦ୍ଦ ହୋଇଯିବାରୁ ଖ୍ରୀ: ୧୮୯୭ରେ ପୁରୀ ରାଜା ମୁକୁନ୍ଦଦେବ ସରକାରଙ୍କ ସହିତ ଏକ ଚୁକ୍ତି ବଳରେ ମନ୍ଦିରର ସୁପରିଣ୍ଟେଣ୍ଡେଣ୍ଟ ନିଯୁକ୍ତ ହେଲେ ।

ଏହା ପୂର୍ବରୁ ୧୮୭୮ ଖ୍ରୀଷ୍ଟାବ୍ଦରେ ପୁରୀ ରାଜା ଦିବ୍ୟସିଂହଦେବଙ୍କ ଦ୍ୱୀପାନ୍ତର ଦଣ୍ଡ ହେବାରୁ ମନ୍ଦିର ପରିଚାଳନାରେ ବିଭ୍ରାଟ ଘଟିଲା । ସେତେବେଳକୁ ମୁକୁନ୍ଦଦେବ ନାବାଳକ ଥିଲେ । ସରକାର କିଛି ନ କରି ତୁନି ରହିଲେ । ୧୮୮୨ ଖ୍ରୀଷ୍ଟାବ୍ଦରେ ଖ୍ରୀ: ୧୮୪୦ର ରାଜାଙ୍କୁ ସୁପରିଣ୍ଟେଣ୍ଡେଣ୍ଟ ନିଯୁକ୍ତ କରିଥିବା ଧାରାଟି ଉଠି ଯାଇଥିବାରୁ ପୁରୀ ରାଜାଙ୍କୁ ମନ୍ଦିରର ପରିଚାଳନା ଭାର ସରକାର ଆଉ ଦେବାକୁ ଇଚ୍ଛା ନ କରି ନିଜ ହାତକୁ ନେବା ବ୍ୟବସ୍ଥା କଲେ । କିନ୍ତୁ ନାବାଳକଙ୍କ ମାହାଫିସ ତାଙ୍କ ପିତାମହୀ ସୂର୍ଯ୍ୟମଣି ପାଟମହାଦେବୀ ଆପତ୍ତି କଲେ । ଓଡ଼ିଶାରେ ମଧ୍ୟ ରାଜାଙ୍କ ସପକ୍ଷରେ ଆନ୍ଦୋଳନ ହେଲା । ସରକାର ନିଜେ ଆଇନ ବଳରେ କିଛି ନ କରି ମନ୍ଦିରର ସୁପରିଣ୍ଟେଣ୍ଡେଣ୍ଟ ସ୍ଥାନ ଶୂନ୍ୟ ହେଲା ବୋଲି ଘୋଷଣା କରିବାକୁ ଦେୱାନୀ କୋର୍ଟରେ ମକଦ୍ଦମା ଦାଏର କଲେ । କିନ୍ତୁ ଆଇନରେ ସରକାରଙ୍କ ମନ୍ଦିର ଉପରେ କର୍ତ୍ତୃତ୍ୱ ପୂର୍ଣ୍ଣମାତ୍ରାରେ ଥିଲା । ପରେ ଆନ୍ଦୋଳନରେ ବିଚଳିତ ହୋଇ ସରକାର ସୂର୍ଯ୍ୟମଣି ପାଟମହାଦେବୀଙ୍କ ସହିତ ଖ୍ରୀ: ୧୮୮୮ରେ ଏକ ଚୁକ୍ତି କଲେ ଏବଂ କୋର୍ଟରେ ନିଷ୍ପତ୍ତି ହେବା ପୂର୍ବରୁ ମକଦ୍ଦମା ଉଠାଇ ନେଲେ । ଖ୍ରୀ: ୧୮୮୮ର ଏହି ଚୁକ୍ତିପରେ ଖ୍ରୀ: ୧୮୯୧ର ୧୨ ନମ୍ବର ଆଇନ ଜାରି ହେବାରୁ ସରକାର କେବଳ ଭିତ୍ତିରେ ମୁକୁନ୍ଦଦେବ ସାବାଳକ ହେବା ପରେ ତାଙ୍କୁ ଖ୍ରୀ: ୧୮୯୭ରେ ସୁପରିଣ୍ଟେଣ୍ଡେଣ୍ଟ ନିଯୁକ୍ତ କରିଥିଲେ । ପୂର୍ବରୁ ସବୁ ଆଇନ ରଦ୍ଦ ହୋଇଯାଇଥିବାରୁ ମୁକୁନ୍ଦଦେବଙ୍କ ନିଯୁକ୍ତିକୁ ବ୍ୟକ୍ତିଗତ ନିଯୁକ୍ତି ହିଁ ବୋଲିବାକୁ ହେବ । ଏଥିରେ ଆଇନର ବଳ ନାହିଁ ।

ମୁକୁନ୍ଦଦେବଙ୍କ ପରେ ରାଜା ରାମଚନ୍ଦ୍ରଦେବ ସୁପରିଣ୍ଟେଣ୍ଡେଣ୍ଟ ହେଲେ । ଏହାଙ୍କ ପରେ ଏହାଙ୍କ ପୁତ୍ର ରାଜା ବୀରକେଶରୀଦେବ ସୁପରିଣ୍ଟେଣ୍ଡେଣ୍ଟ ଅଛନ୍ତି ଏବଂ ଜଗନ୍ନାଥ ମନ୍ଦିର ପରିଚାଳନା ଆଇନଅନୁସାରେ ପରିଚାଳନା କମିଟିର ଚେୟାରମ୍ୟାନ ମଧ୍ୟ ଅଛନ୍ତି । କିନ୍ତୁ ପରିଚାଳନା ଭାର କମିଟି ଓ ଆଡ଼ମିନିଷ୍ଟ୍ରେଟର ଅଫିସରଙ୍କ ହାତରେ ରହିଛି ।

# ନବମ ପରିଚ୍ଛେଦ

## ଠାକୁରମାନଙ୍କର ଦୈନିକ ନୀତି ।

ଦୈନିକ ଠାକୁରମାନଙ୍କର ଏହି ଭାବରେ ନୀତି ବଢ଼ିବ ।

କବାଟ ଫିଟା—ରାତି ଚାରି ଦଣ୍ଡ ଥିବ ।

ପାହାନ୍ତ ଅବକାଶ—ରାତି ଏକ ଦଣ୍ଡ ଥିବ ।

ଗୋପାଳ ବଲ୍ଲଭ—ଦିନ ଦୁଇ ଦଣ୍ଡ ସମୟକୁ ।

ସକାଳ ଧୂପ—ଦିନ ଛଅ ଦଣ୍ଡ ସମୟକୁ ।

"ସାହାଣ ମେଲା"—ଦିନ ଦଶ ଦଣ୍ଡ ସମୟକୁ ।

ଦୁଇ ପ୍ରହର ଧୂପ—ଦିନ ଚଉଦ ଦଣ୍ଡ ସମୟକୁ ।

ଅଧରପୋଣ୍ଡା ଓ ମୁକୁନ୍ଦ ବଲ୍ଲଭ—କୋଡ଼ିଏ ଦଣ୍ଡ ମଧ୍ୟରେ ।

ପହୁଡ଼—ଛଅ ଦଣ୍ଡ ପହୁଡ଼ ହେବ ।

କବାଟ ଫିଟା—ଦୁଇ ଦଣ୍ଡ ବେଳ ଥିବ ।

ସନ୍ଧ୍ୟାଧୂପ—ରାତି ଚାରି ଦଣ୍ଡ ପରେ ।

ବଡ଼ସିଂହାର—ରାତି ଦଶ ଦଣ୍ଡଠାରେ ।

ପହୁଡ଼—ବଡ଼ ସିଂହାର ପରେ ।

ବେ-ନିୟମ ପାଇଁ ଦଣ୍ଡ—ଏହି ନୀତିରେ ବିଳମ୍ବ ହେଲେ ଏଥିପାଇଁ ଯେ ଦୋଷୀ କରିଥିବ, ସେ କୋଠଭଣ୍ଡାରକୁ ଦଶ ଅମୃତକୁଣ୍ଡ ଜରିମାନା ଦେବ ।

---

※ ଠାକୁରମାନଙ୍କ ଦୈନିକ ନୀତି, ପର୍ବପର୍ବାଣି ପ୍ରଭୃତି ବିଷୟର ବିସ୍ତୃତ ବିବରଣ ଦେବା ସହଜ ବ୍ୟାପାର ନୁହେଁ । ସେବକମାନଙ୍କଠାରୁ ଓ କେତେକ ଗ୍ରନ୍ଥରୁ ଲିଖିତ ବିଷୟ ସଂଗୃହୀତ ହୋଇଛି ।

## ବର୍ତ୍ତମାନ ପ୍ରଚଳିତ ନୀତି-ନିର୍ଘଣ୍ଟ

ବର୍ତ୍ତମାନ ଆଇନାନୁମୋଦିତ ନୀତି ନିମ୍ନଲିଖିତ ଭାବେ ଚଳୁଥିବା ସରକାରୀ ରିପୋର୍ଟମାନଙ୍କରୁ ଜଣାଯାଏ । ଏହାର ସଂକ୍ଷିପ୍ତ ବିବରଣ ଏଠାରେ ଉଦ୍ଧାର କରାଗଲା ।

**ଗୋପନୀୟ ନୀତି**—"ପୂର୍ବ ସମ୍ପ୍ରଦାୟମତେ କେତେଗୁଡ଼ିଏ ନୀତି ଗୋପନୀୟ ଅଟେ । ଉଦାହରଣ ସ୍ୱରୂପ ନବକଳେବର ସମୟରେ ସମାଚରିତ ବିଧିବିଧାନ ଓ ଅନବସର ସମୟର ଅନ୍ୟ କେତେକ ବିଶେଷ ନୀତି ଗୋପନୀୟ ଥିବାରୁ ଆପତ୍ତିଯୋଗ୍ୟ ବିଷୟ ବାଦ ଦେଇ ଏହି ନୀତିମାନଙ୍କର ସଂକ୍ଷିପ୍ତ ବିବରଣୀ ଦିଆଯାଇଅଛି । ମନ୍ଦିର କର୍ତ୍ତୃପକ୍ଷ ଓ ଦଇତା-ପତି ଓ ଦେଉଳ କରଣ, ତଢ଼ାଉ କରଣ ଆଦି ଅନ୍ୟାନ୍ୟ ସଂପୃକ୍ତ ଲୋକମାନେ ମନ୍ଦିରର ପ୍ରାଚୀନ ପ୍ରଥା ଓ ପ୍ରଚଳିତ ନିୟମାନୁସାରେ ନବକଳେବର ନୀତି ସମ୍ପନ୍ନ କରନ୍ତି ଏବଂ ମନ୍ଦିର ସଂସ୍କୃତିମତେ ଉକ୍ତ ବିଷୟ ପ୍ରକାଶ କରିବା ନିଷିଦ୍ଧ ଅଟେ ।"

**ଦୈନିକ ନୀତି**— "(୧) (ଭୋର ୫ଘଣ୍ଟା)—ସକାଳ ପାଞ୍ଚ ଘଣ୍ଟିକା ସମୟରେ ପହିଲି ଭୋଗ ଓ କାର୍ତ୍ତିକ ମାସରେ ଆହୁରି ବହୁତ ଆଗରୁ ମନ୍ଦିରର ପ୍ରଥମ ନୀତି ଦ୍ୱାରଫିଟା ଓ ତାହି ସଙ୍ଗେ ସଙ୍ଗେ ଭିତର ଶୋଧ ଓ ମଙ୍ଗଳ ଆରତି ସମାପନ ହୁଏ । ଏହି ନୀତି ଓ ନିମ୍ନରେ ଉଲ୍ଲେଖ କରାଯାଉଥିବା ଅନ୍ୟାନ୍ୟ ନୀତିର ବିଶେଷ ବିଧିବିଧାନ ସ୍ୱତ୍ୱଲିପିର ଦ୍ୱିତୀୟ ଖଣ୍ଡରେ ବର୍ଣ୍ଣିତ କରାଯାଇଅଛି । ଏହି ଦ୍ୱାରଫିଟା ନୀତିର ପ୍ରଧାନ ବିଷୟ ହେଉଛି ଯେ ପୂର୍ବଦିନ ପହୁଡ଼ ବେଳେ ତାଲିଛେ ମହାପାତ୍ର ମନ୍ଦିର-ଦ୍ୱାରରେ ଯେଉଁ ମୁଦ ଦେଇଥାନ୍ତି, ପରଦିନ ସକାଳେ ଉକ୍ତ ମୁଦ ଠିକ୍ ଅଛି କି ନାହିଁ ତାହା ଭିତରଚ୍ଛୁ ମହାପାତ୍ର ତଦାରଖ କରି ଦେଖନ୍ତି ।

(ଭୋର ୬ ଘଣ୍ଟା)—ତା ପରେ ଠାକୁରମାନଙ୍କର ବେଶ ଉଲଗି ବା ମଇଲମ ହୁଏ । ପୂର୍ବ ରାତ୍ରର ସିଂହାର ବେଶ ଉଲଗି କରି ପରବର୍ତ୍ତୀ ଅବକାଶ ନୀତି ନିମନ୍ତେ ଠାକୁରମାନଙ୍କୁ ତଡ଼ପ ଓ ଉତ୍ତରୀୟ ପିନ୍ଧାଇ ଦିଆଯାଏ ।

(ସକାଳ ୭ଟା)—ଏହାପରେ ଅବକାଶ ବା ଠାକୁରମାନଙ୍କର ଦନ୍ତଧାବନ ଓ ସ୍ନାନ ବିଧି ହୁଏ ଏବଂ ତା ପରେ ଠାକୁରମାନଙ୍କୁ ଶୁଖିଲା ଲୁଗା ପିନ୍ଧାଇ ଦିଆଯାଏ ।

(ସକାଳ ୭ରୁ ୮ଟା)—ଏହାପରେ ସାହାଣମେଲା ବା ସର୍ବସାଧାରଣ ଦର୍ଶନ ହୁଏ । ସାହାଣମେଲା ଠାକୁରଙ୍କର ଅପରିହାର୍ଯ୍ୟ ନୀତି ନ ହେଲେ ମଧ୍ୟ ଅସଂଖ୍ୟ ଯାତ୍ରୀମାନଙ୍କୁ ରତ୍ନସିଂହାସନ ନିକଟକୁ ଯାଇ ଠାକୁର ଦର୍ଶନ କରିବାର ସୁବିଧା ଦେବା

ନିମନ୍ତେ ଏହା ପ୍ରଚଳିତ ହୋଇଥାଏ। ସାହାଣମେଲା ସମୟରେ ପିଣ୍ଡିକାସ୍ୱରୂପ ବହୁତ ଟଙ୍କା ଆମଦାନି ହୁଏ ଏବଂ ତଦ୍ୱାରା ମନ୍ଦିରର ଆୟ ବୃଦ୍ଧି ହୁଏ। [ଏହି ରିପୋର୍ଟର ମନ୍ଦିର ଆମଦାନି ସମ୍ପର୍କୀୟ ଅଧ୍ୟାୟରେ ଏ ସମ୍ବନ୍ଧରେ ବିସ୍ତୃତ ବିବରଣ ଦ୍ରଷ୍ଟବ୍ୟ।] ଏହା ଉଲ୍ଲେଖଯୋଗ୍ୟ ଯେ ସାହାଣମେଲା ବେଳେ କୌଣସି ଯାତ୍ରୀ ଠାକୁରଙ୍କର ପବିତ୍ର ମୂର୍ତ୍ତିକୁ ସ୍ପର୍ଶ କଲେ କିମ୍ବା ମନ୍ଦିର ମଧ୍ୟରେ କେହି ଛେପ ପକାଇଲେ କିମ୍ବା ମଳମୂତ୍ର ତ୍ୟାଗ କଲେ କିମ୍ବା ବମନ କଲେ ଠାକୁରମାନେ ଅଶୁଚି ହୁଅନ୍ତି ଏବଂ ସେଥିଯୋଗୁ ମହାସ୍ନାନ ହୁଏ ଓ ଅପରାଧୀ ଧରା ପଡ଼ିଲେ ତାହା ଠାରୁ ଜୋରିମାନା ଆଦାୟ ହୁଏ ଓ ଧରା ନ ପଡ଼ିଲେ ମନ୍ଦିର ପାଣ୍ଠିରୁ ଖର୍ଚ୍ଚ ଦିଆଯାଏ। ତେଣୁ ଯେଉଁ ଅଳ୍ପବୟସ୍କ ଶିଶୁମାନେ ଅଜ୍ଞାନରେ ହେଲେ ମଧ୍ୟ ସେପରି ଅପରାଧ କରିବା ସମ୍ଭବ ସେମାନଙ୍କୁ ମନ୍ଦିର ମଧ୍ୟକୁ ଆସିବାକୁ ଉତ୍ସାହିତ ନ କରିବା ବିଧେୟ ବୋଲି ମନେ ହୁଏ।

(୫) (ସକାଳ ୮ଟାରୁ ୮।୩୦)—ସାହାଣମେଲା ପରେ ବେଶଲାଗି ହୁଏ ଏବଂ ସ୍ୱତ୍ୱଲିପି ବର୍ଣ୍ଣିତ ମତେ ଭିନ୍ନ ଭିନ୍ନ ଋତୁରେ ଠାକୁରମାନେ ବିଭିନ୍ନ ପୋଷାକ ପିନ୍ଧନ୍ତି ଯଥା:—

ସାଧାବେଶ—ଦୋଳଠାରୁ ଅଶ୍ୱିନ ପର୍ଯ୍ୟନ୍ତ;

ରାଧାଦାମୋଦର ବେଶ—ଦଶହରା ଏକାଦଶୀଠାରୁ କାର୍ତ୍ତିକ ଶୁକ୍ଳଦଶମୀ ପର୍ଯ୍ୟନ୍ତ;
ସାଧାବେଶ—ମାର୍ଗଶିର ଓ ପୌଷ—ଘୋଡ଼ଲାଗିବେଶ ଓଢ଼ଣଷଷ୍ଠୀଠାରୁ ବସନ୍ତ-
ପଞ୍ଚମୀ ପର୍ଯ୍ୟନ୍ତ;

ଲକ୍ଷ୍ମୀନାରାୟଣ ବେଶ—କାର୍ତ୍ତିକ ଶୁକ୍ଳ ଏକାଦଶୀଠାରୁ ଚତୁର୍ଦ୍ଦଶୀ ପର୍ଯ୍ୟନ୍ତ;
ଜାମାଲାଗି ବେଶ—ବସନ୍ତପଞ୍ଚମୀଠାରୁ ଦୋଳ ପର୍ଯ୍ୟନ୍ତ;
ରାଜବେଶ—ଦଶହରା, କାର୍ତ୍ତିକ ପୂର୍ଣ୍ଣିମୀ, ପୌଷପୂର୍ଣ୍ଣିମୀ, ଓ ରଥଏକାଦଶୀ।

[ଏହି ବେଶମାନଙ୍କର ବିଶେଷ ବିବରଣୀ ଓ ଭିନ୍ନ ଭିନ୍ନ ବେଶରେ ଲାଗି ହେଉଥିବା ଅଳଙ୍କାରମାନ ରିପୋର୍ଟ 'ରବି' ଚିହ୍ନିତ ଫର୍ମରେ ବର୍ଣ୍ଣିତ ହୋଇଅଛି।]

(୬) (ସକାଳ ୮ଟା ୩୦ମିନିଟ୍)—ରୋଷହୋମ ବା ରୋଷମଧ୍ୟରେ ଅମୃତ-ମଣୋହି ରନ୍ଧନ ନିମନ୍ତେ ଅଗ୍ନି ସ୍ଥାପନ।

(୭) (୮ଟା ୪୦)—ସୂର୍ଯ୍ୟପୂଜା; ମୁକ୍ତିମଣ୍ଡପ ନିକଟରେ ଥିବା ସୂର୍ଯ୍ୟମୂର୍ତ୍ତିଙ୍କ ସମ୍ମୁଖରେ ଅନୁଷ୍ଠିତ ହୁଏ।

(୮) (ସକାଳ ୮ଟା ୫୦) ଦ୍ୱାରପାଳ ପୂଜା—ଜୟବିଜୟଙ୍କ ଦ୍ୱାରରେ ହୁଏ ।

(୯) (ସକାଳ ୯ଟା) ଗୋପାଳବଲ୍ଲଭ—ନଡ଼ିଆକୋରା, କଦଳୀ, ଖୁଆମଣ୍ଡା, ଦହି, ଲହୁଣୀ, ନଡ଼ିଆ, ଓ ଉରଜୁଆଦି । ଏହା ହିଁ ପ୍ରଥମ ଶୁଖିଲ ଭୋଗ ।

(୧୦) (ସକାଳ ୧୦ଟା)—ସକାଳ ଧୂପ ବା ରାଜଭୋଗ—ଏହା ପ୍ରଥମ ଶଙ୍ଖୁଡ଼ି ଭୋଗ—ଏଥିରେ ଘିଅରେ ପ୍ରସ୍ତୁତ ବଡ଼କାନ୍ତି, ମାନକାନ୍ତି ଏଣ୍ଡୁରି ଓ ମାଠପୁଲି, ହଂସକେଳି, କାକଟୁଆ, ଝିଲି, ଅଦା ପାଚେଡ଼ି, ଖେଚେଡ଼ି, ସାଗ ପିଠାପୁଲି, ବୁନ୍ଦିଆ କ୍ଷୀରି ପ୍ରଭୃତି ଅନ୍ୟାନ୍ୟ ଖାଦ୍ୟ ପଦାର୍ଥ ନିର୍ଦ୍ଦିଷ୍ଟ ସଂଖ୍ୟା ଓ ପରିମାଣରେ ଠାକୁରଙ୍କୁ [ଭୋଗ ଦିଆଯାଏ । ପୂର୍ବ ଅପେକ୍ଷା ବର୍ତ୍ତମାନ ଏହାର ପରିମାଣ କମିଯାଇଅଛି ।]

(୧୧) (ପୂର୍ବାହ୍ଣ ୧୧ଟା)—ସକାଳ ଧୂପ ପରେ ଠାକୁରମାନଙ୍କର ମଇଲମ ବା ବେଶ ପରିବର୍ତ୍ତନ ହୁଏ ଏବଂ ତାପରେ ଭୋଗମଣ୍ଡପ ଭୋଗ ହୁଏ । ମନ୍ଦିର ନୀତିରେ ଏହି ଭୋଗମଣ୍ଡପ ଭୋଗ ବାଧ୍ୟତାମୂଳକ ନୁହେଁ । ଯାତ୍ରୀମାନଙ୍କ ସୁବିଧାନିମନ୍ତେ ଓ ବହୁ ମଠ,ବାଡ଼ି, ଅନ୍ୟାନ୍ୟ ପ୍ରତିଷ୍ଠାନ, ସର୍ବସାଧାରଣ ଓ ପ୍ରସାଦ-ବିକ୍ରୟକାରୀ ସେବକ-ମାନଙ୍କ ସୁବିଧା ନିମନ୍ତେ ଏବଂ ସେମାନେ ଯେପରି ବହୁ ପରିମାଣରେ ଭୋଗ ଦେଇ ପାରିବେ ତହିଁର ସୁବିଧା କରିବା ଉଦ୍ଦେଶ୍ୟରେ ଏହି ଭୋଗ ବହୁ ପୂର୍ବକାଳରେ ପ୍ରଚଳିତ କରାଯାଇଥିଲା । ଭିତର ପୋଖରିଆରେ ଯେଉଁ ଭୋଗସବୁ ଦିଆଯାଏ ତହିଁ ମଧ୍ୟରେ କୋଠଭୋଗ ବ୍ୟତୀତ ନିର୍ଦ୍ଦିଷ୍ଟ ସ୍ଥାନ ଓ ସମୟରେ ଭୋଗ ଦେବାକୁ ଅଧିକାର ଥିବା ଲୋକଙ୍କ ଛଡ଼ା ଅନ୍ୟ କାହାରିକୁ ଭୋଗ ବାଢ଼ିବାକୁ ଅନୁମତି ଦିଆଯାଏ ନାହିଁ । ଏହା ହିଁ ଭୋଗମଣ୍ଡପ ଭୋଗ ପ୍ରଚଳନର କାରଣ ଅଟେ ।

ଏହା ବ୍ୟତୀତ ମନ୍ଦିର ଭିତରେ ସାମୟିକ ବିଭିନ୍ନ ପ୍ରକାର ନୀତି ପ୍ରଚଳିତ ଅଛି । ଏ ସମ୍ବନ୍ଧରେ ସରକାରୀ ରିପୋର୍ଟ ଦ୍ରଷ୍ଟବ୍ୟ ।

(୧୨) (ଅପରାହ୍ଣ ୧ ଘଟିକା)—ମଧ୍ୟାହ୍ନ ବା ଦ୍ୱିତୀୟ ଶଙ୍ଖୁଡ଼ି ଧୂପ—ଏହି ଧୂପରେ ବହୁପ୍ରକାର ଅନ୍ନ, ସାକର, କଦମ୍ବା ଏବଂ ଆରିସା, ଧାଉଳା, ମାଠପୁଳି, ବଡ଼ା, ଝିପୁରି, ନାଡ଼ୁ, ମନୋହର, କାକରା, ମରିଚଲଡ଼ୁ, ପିଠା, ସର, ପଣା, ମୁଗ, ବଡ଼ଖିରିଷା, ଦୁଧ ଓ ଗଜା ପ୍ରଭୃତି ମିଷ୍ଟାନ୍ନ ଭୋଗ ଦିଆଯାଏ । ୧୯୧୦ ମସିହାରେ ଏହି ଭୋଗମାନଙ୍କର ସଂଖ୍ୟା ୪୩୬ ଥିଲା । [ଉକ୍ତ ଭୋଗମାନଙ୍କର ତାଲିକା ଓ ବର୍ତ୍ତମାନ ଦିଆଯାଉଥିବା ଅଳ୍ପସଂଖ୍ୟକ ଭୋଗମାନଙ୍କର ତାଲିକା ରିପୋର୍ଟରେ 'ବି' ଫର୍ମରେ ଦିଆଯାଇଅଛି ।]

(୧୩) (ଅପରାହ୍ନ ୨ଟା ୩୦ ମିନଟ)—ମଧ୍ୟାହ୍ନ ପହୁଡ଼ ବା ଠାକୁରମାନଙ୍କ ବିଶ୍ରାମ—ରତ୍ନପଲଙ୍କ ଭିତରକୁ ନିଆଯାଇ ସ୍ୱଳ୍ପକୁପି ବର୍ଣ୍ଣିତ ବିଧିବିଧାନ ପରେ ଠାକୁରମାନଙ୍କର ଶୟନ ହୁଏ ।

(୧୪) (ସନ୍ଧ୍ୟା ୬ଟା)—ପହୁଡ଼ଫିଟା ଓ ସନ୍ଧ୍ୟା ଆରତି—ନାନାବିଧ ବିଧି ପାଳନ ପରେ ଦ୍ୱାର ଫିଟାଯାଏ ଏବଂ ଠାକୁରମାନଙ୍କର ଆରତି ହୁଏ ।

(୧୫) (ରାତ୍ର ଆଠ ଘଣ୍ଟା)—ସନ୍ଧ୍ୟାଧୂପ—ଏହି ଧୂପରେ ଅନ୍ନଭୋଗ ହୁଏ ନାହିଁ । କେବଳ କଅଁଳ ପୁଳି, ଟାକୁଆ, ମାଠପୁଳି, ଭୋଗପିଠା, ଗୋଟାଳି, କାକରା, ଖିରୁମା, ଅମାଲୁ, ଚଡ଼େଇନେଦା, କଡ଼ମ୍ବା ଓ ସୁବାସ ପଖାଳ ପ୍ରଭୃତି ମିଷ୍ଟାନ୍ନ ଓ ଅନ୍ୟାନ୍ୟ ଭୋଗମାନ ଏହି ଧୂପର ବୈଶିଷ୍ଟ୍ୟ । ସନ୍ଧ୍ୟା ଧୂପର ଆଉ ଏଗୋଟିଏ ଉଲ୍ଲେଖଯୋଗ୍ୟ ବିଷୟ ଏହି ଯେ ଏହି ଭୋଗ ସମୟରେ ଜୟମଙ୍ଗଳ ନାମଧେୟ ଗୋଟିଏ ଆରତିଦାନରେ ଅଧିକା ଦୁଇଥର ଆରତି ହୋଇଥାଏ ।

(୧୬) (ରାତ୍ର ୯ଟା୪୫)—ସାହାଣମେଲା ବା ସର୍ବସାଧାରଣ ଦର୍ଶନ—[ଏହି ତାଲିକାର ଉପରୋକ୍ତ ୫ନମ୍ବର ମୁତାବକ ଏହି ସାହାଣମେଲା ହୋଇଥାଏ । ]

(୧୭) (ରାତ୍ର ୧୦ଘଣ୍ଟା)—ବେଶ ପରିବର୍ତ୍ତନ ଓ ଚନ୍ଦନଲାଗି—ଠାକୁରମାନଙ୍କର ବେଶ ଉଲାଗି ହୁଏ ଏବଂ ଭୂପାପାଦମାନଙ୍କରେ କର୍ପୂର, କେଶର ଓ କସ୍ତୁରୀମିଶ୍ରିତ ଘଷାଚନ୍ଦନ ଶ୍ରୀଅଙ୍ଗରେ ଲାଗି କରାଯାଏ ।

(୧୮) (ରାତ୍ର ୧୦ଟା ୩୦ ମିନଟ)—ଏହାପରେ ବେଶ ପରିବର୍ତ୍ତନ । ଏହାକୁ ସାଧାରଣତଃ ବଡ଼ ସିଂହାର ବେଶ କହନ୍ତି । ଏ ବେଶରେ ଠାକୁରମାନେ ବଡ଼ଲାଗି ପାଟ, ଚନ୍ଦ୍ରିକା, କରପଲ୍ଲବଆଦି ଲାଗି ହୁଅନ୍ତି । ଶ୍ରୀରାମଦାସ ମଠ ଓ ଏମାର ମଠ ଏହି ବେଶର ଉପକରଣମାନ ଯୋଗାଇବା ନିମନ୍ତେ ଖଞ୍ଜାଜମି ଭୋଗ କରନ୍ତି ଓ ଖଞ୍ଜାର ସର୍ତ୍ତ ମୁତାବକ ଉକ୍ତ ଉପକରଣମାନ ଦିଅନ୍ତି । ଏହି ବଡ଼ଲାଗି ପାଟରେ ଓଡ଼ିଆରେ ଗୀତଗୋବିନ୍ଦ ବୁଣା ଯାଇଥାଏ ଏବଂ ଏହାକୁ ଓଡ଼ିଶାର କେତେକ ବିଶିଷ୍ଟ ଶ୍ରେଣୀର ତନ୍ତି ତିଆରି କରନ୍ତି ।

(୧୯) (ରାତ୍ର ୧୧ଟା ୩୦)—ବଡ଼ ସିଂହାର ଧୂପ—ଏହି ଧୂପରେ କେବଳ କଦଳୀବଡ଼ା, ପିଠା, କ୍ଷୀରି, କାଞ୍ଜି ଓ ସାକର ଭୋଗ ଦିଆଯାଏ ।

(୨୦) (ରାତ୍ରି ୧୨ଟା)—ବୀଣାକାରଙ୍କ ଗାନ, ଖଟଶେଯଲାଗି, ପୁଷ୍ପାଞ୍ଜଳି, ପହୁଡ଼, ମୁଦ ଓ ଶୋଧ। ଏହା ହିଁ ଶେଷ ନୀତି। ରତ୍ନସିଂହାସନ ଭିତରକୁ ନିଆଯାଏ; ଜୟବିଜୟ ଦ୍ୱାରଠାରେ ଠାକୁରଙ୍କର ପୁଷ୍ପାଞ୍ଜଳି ନୀତି ହୁଏ ଓ ଠାକୁରମାନେ ଶୟନକୁ ଯାଆନ୍ତି। ସେହି ସମୟରେ ଭିତର-ଗାଉଣୀ ନାମଧେୟ ଦେବଦାସୀମାନେ ଗୀତଗାନ କରନ୍ତି ଓ ବୀଣାକାର ସେବକ ବୀଣା ବଜାନ୍ତି ଏବଂ ଠାକୁରମାନେ ଶୋଇପଡ଼ନ୍ତି। ତା'ପରେ ଦ୍ୱାର ବନ୍ଦ ହୁଏ ଏବଂ ତଳିଚ୍ଛୁ ମହାପାତ୍ର ସ୍ୱନାମମୁଦ ଦେଇ ଦ୍ୱାରମୁଦ କରନ୍ତି ଓ ମନ୍ଦିର ପହରାରେ ରହୁଥିବା ବ୍ୟକ୍ତିମାନଙ୍କ ବ୍ୟତୀତ ଅନ୍ୟାନ୍ୟ ସମସ୍ତ ଲୋକଙ୍କୁ ଭିତର ଓ ବାହାର ବେଢ଼ା ମଧ୍ୟରୁ ବାହାର କରି ଦିଆଯାଏ।" (୧୪୩)

## ପୂର୍ବ ନୀତି ନିର୍ଘଣ୍ଟ

ପୂର୍ବେ ଯେଉଁ ପ୍ରକାର ନୀତି ପ୍ରଚଳିତ ଥିଲା ତାହାଠାରୁ ବର୍ତ୍ତମାନ ପ୍ରଚଳିତ ନୀତି ଭିନ୍ନ ନୁହେଁ। ସମୟାନୁଯାଇ କେତେକ ସାମାନ୍ୟ ପରିବର୍ତ୍ତନ ହୋଇଛି ମାତ୍ର। (୧୪୪)

## ଠାକୁରମାନଙ୍କର ଦୈନିକ ନୀତି

"ପ୍ରତିଦିନ ରାତ୍ର ଏକ ପ୍ରହର ଥାଇ ଠାକୁରମାନଙ୍କର ନିଦ୍ରାଭଙ୍ଗ କରାଇବାକୁ ହେବ। ଗୁରୁ ଶଙ୍ଖ, ମହୁରୀ, ବୀଣା, ଭେଟ, ତାଲ, ଶିଙ୍ଗା, ଘଣ୍ଟା, ଭେରୀ, ମୃଦଙ୍ଗ ଓ କାମ ଏପରି ୧୨ ଶବ୍ଦ ହେଲା ପରେ ଗମ୍ଭୀର ଦ୍ୱାର କବାଟ ଫିଟାଇବ। ଲାଗି ପଢ଼ିଛା, ପରି କରଣ, ମୁଦିରଥ, ଦ୍ରୋଣସ୍ଥ ବ୍ରାହ୍ମଣ, ପାଳିଆ ପଣ୍ଡା, ସିଂହାରି ପଶୁପାଳକ, ଅଖଣ୍ଡ ମେକାପ, ବାହାର ଗରାବଡ଼ୁ, ଭିତର ଗରାବଡ଼ୁ, ଶ୍ରୀମୁଖ ସିଂହାରୀ, ଭିତର ସୁନା ଦହୁକ୍ଷ୍ଣ ସେବକ, ପଥୀ ବଡ଼ୁ, ଭିତର ଭଣ୍ଡାର ମେକାପ, ଫାରେକ ମୁଦୁଲି, ଜ୍ୟୋତିଷ, ପାତ୍ର, ଦର୍ପଣିଆ, ଖଟଣି ସମସ୍ତ ସେବକମାନେ ଥାଇ ମୁଦ ଦେଖି ମୁଦ ଭାଙ୍ଗି କବାଟ ଫିଟାଇବ। ପାଦ ପ୍ରକ୍ଷାଳନ କରି ସେବକମାନେ ଭିତରେ ପ୍ରବେଶ କରିବେ। ଶେଜ ଘର ମେକାପ ଖଟ ବନ୍ଦେ କରାଇ ଶେଜ ଘରକୁ ନେଲେ ଉତ୍ତରେ ସିଂହାସନ ଉପରକୁ ହାତରେ ସୁନା ବଟଠା ନେଇ ଭିତରେ ଭଣ୍ଡାର ମେକାପ ଶ୍ରୀଅଙ୍ଗମାନ ମଣ୍ଡିବ। ସିଂହାରୀ ପଶୁପାଳକ ସିଂହାସନ ଉପରକୁ ଉଠି ତଡ଼ାଉଲାଗିମାନ ଉଲଗି କରିବ। ବସ୍ତ୍ର ଉଲଗି କରି ଗୋଟିଏ ଗୋଟିଏ ଓଢ଼ୀ ପିନ୍ଧାଇବ। ଶ୍ରୀମୁଖ ସିଂହାରୀ ସୁନା କୋପରାରେ କର୍ପୂରମିଶ୍ରିତ ଜଳରେ ଧୋଇ ଲୁଗା ଭିଡ଼ାଇ ଶ୍ରୀମୁଖମାନ ପୋଛି ଶଙ୍ଖକଲା ହେଙ୍ଗୁଳ, ହରିତାଳ ବର୍ଣ୍ଣମାନ ଶ୍ରୀମୁଖରେ ଲାଗି କରିବ।

---

୧୪୩। ଶ୍ରୀ ଜଗନ୍ନାଥଙ୍କ ମନ୍ଦିର ସ୍ପେଶାଲ୍ ଅଫିସରଙ୍କ ରିପୋର୍ଟ
୧୪୪। ବିଭିନ୍ନ ପ୍ରାଚୀନ ଲେଖାରୁ ସଂଗୃହୀତ ପ୍ରାଚୀନ ଉତ୍କଳ ମଧ୍ୟ ଦ୍ରଷ୍ଟବ୍ୟ।

ପରେ ସିଂହାସନ ତଳେ ପାଳିଆ ପଣ୍ଡା ପୀଢ଼ା ମାଡ଼ି ବସି କଂସା ଦର୍ପଣ, ୩ ଗୋଟି ଭୂମିରେ ନମାଇବ । ଏ ଦର୍ପଣରେ ପ୍ରକ୍ଷାଳନ, ଦାନ୍ତକାଠି ଲାଗି ଆଚମନ ତୋଳା-ମାନଙ୍କରେ ତ୍ରିଫଳା ପାଣି ଲାଗି କରଇ ଧୂପ ଦୀପରେ ପୂଜା କରି ପଞ୍ଚାମୃତ ସ୍ନାନ କରାଇବ । ପରେ ଉଷ୍ମ ଜଳ, ତୀର୍ଥ ଜଳ, ମନ୍ତ୍ର ଜଳ, ବସ୍ତ୍ରକ୍ଷାଳିତ ସୁବାସ ଜଳ ପ୍ରଭୃତି ଜଳମାନ ସଂସ୍କାର ପୂର୍ବକ ଦର୍ପଣରେ ସ୍ନାନ କରାଇବ । ଶୁକ୍ଳ ଶୁଦ୍ଧ ବସ୍ତ୍ର ଦ୍ୱାରା ଶ୍ରୀଅଙ୍ଗ ପୋଛିବ । ଏହା ପାହାନ୍ତି ଶ୍ରୀମୁଖ ପଖାଳ । ପୂଜା ପଣ୍ଡାମାନଙ୍କର ସେବା । ପଣ୍ଡା କୌଣସି ଦିନ ସେବା କରି ନପାରିଲେ ସିଂହାରି ପଶୁପାଳକ କରିବ ।

କାଠିଲାଗି ଦ୍ରବ୍ୟ—କୁମ୍ଭାଟୁଆ ଦାନ୍ତ କାଠି ୩, ତିନି ଖଣ୍ଡ ପୋଡ଼ା ଗୁଆ ଗୁଣ୍ଡି ସୁନା ଖଡ଼ିକା ୩, ସୁନା ଜିଭଚଞ୍ଛା ପାତିଆ ୩, ତ୍ରିଫଳା ପାଣି ୩ ବଟା, ହରିଆ ପାହାଡ଼ା ଅଁଳା ୩ ପୁଞ୍ଜା, ପଞ୍ଚାମୃତ ଦୁଧ ୩ କୁଞ୍ଚା, ବସା ଦହି ୩ ସରୋଇ, ଘିଅ ୩ ମାଣିକା, ଖଣ୍ଡ ୩ ପୁଞ୍ଜା, କାଙ୍କୋଲି ଖରବଡ଼ା ଚନ୍ଦ୍ରମିମିବଟା, ଅଁଳା ଗୋ ୩ ଓ ୩ ପୁଞ୍ଜା, ସରସ ଚନ୍ଦନ । ମାନଣା ଉଆ ପିଠାଉକୁ ଗୃହଳ ଅଧ ମାଣ, ନଡ଼ିଆ ୩, ପାଣି ପାଇଁ ବଡ଼ ୧, ନଜନ୍ତ ତୀର୍ଥ ଜଳ ୧ କୁଡ଼ୁଆ, ଉଷ୍ମ ଜଳ ୧ କୁଡ଼ୁଆ, କାଠ ୨ ଖଣ୍ଡ, ଚତୁସମଜଳ ୧ କୁଡ଼ୁଆ, ଚତୁସମା ଜଳ ପାଇଁ (ସରସ ଚନ୍ଦନ ଅଗୁରୁ ମା ୩ ତ କର୍ପୂର ଟଙ୍କାଏ, କସ୍ତୁରୀ ଅଧ ଟଙ୍କାଏ, ଗନ୍ଧ ୨ ଟଙ୍କା )

ନୈବେଦ୍ୟ—ପାଚିଲା ଅମୃତପାଣି କଦଳି ୩୦, କଦଳି ପତ୍ର ୩ ଖଣ୍ଡ ଆଦ୍ୟ ସମ୍ବୋଧନ ପୂଜା ସିଂହାରୀ ପଶୁପାଳକମାନେ ସିଂହାସନ ଉପରେ ଶ୍ରୀଅଙ୍ଗରେ ଲୁଗା ଲାଗି କରି ଶ୍ରୀକାପଡ଼ା ଲାଗି କରାଇବେ । ପରେ ଚୂନ ଲାଗି ବଢ଼ିବ । ସୁର ବଡ଼ୁ ଧୋପଖାଳ କରି ପାହାଡ଼ା ଲୁଗା ଦେବ ପୋଚ୍ଛମାରି ଧୋବ ଲୁଗା ପାହାଡ଼ା ପଡ଼ିବ ଶୀଘ୍ର ସିଂହାର ଭୋଗରେ କର୍ପୂର ମରିଚ ମିଶି ଖଣ୍ଡ ମଣ୍ଡା, ଖଣ୍ଡସାକର, ଝଣ୍ଟ ପନ୍ତି, ନଡ଼ିଆ ରସ କୋରା ଅମୃତପାଣି ପାଚିଲା କଦଳୀ, ସିଂହାର ଲିଆ, କର୍ପୂର ଖଣ୍ଡ ମିଶ୍ରିତ ଭଜା ଚଡ଼ା, ବାଣ ପଇଡ଼, ଯେଉଁ ଋତୁରେ ଯେଉଁ ଫଳ ପଞ୍ଚ ଉପଚାରରେ ଭୋଗ ହେବ ।

ଏହାପରେ ବାହାରେ ସୂର୍ଯ୍ୟ ପୂଜା, ଗରୁଡ଼ ପୂଜା, ଦ୍ୱାରପାଳ ପୂଜା ହେବ ।

ସକାଳ ଧୂପ—ଗମ୍ଭିରା ଧୋ ପଖାଳ ହେବ । ପାହାଡ଼ା ପଡ଼ି ସୁବର୍ଣ୍ଣ ପାତ୍ରମାନଙ୍କରେ ଭୋଗମଣ୍ଡଫୁଲ ବଢ଼ା ହେବ । ପଣ୍ଡା ପିଢ଼ା ଉପରେ ଉତ୍ତରାଭିମୁଖ ହୋଇ ବସିବେ, ଷୋଡ଼ଶ ଉପଚାରରେ ପୂଜା ହେବ ।

ବଳରାମଙ୍କୁ ଦ୍ୱାଦଶାକ୍ଷର ମନ୍ତ୍ରରେ ପୂଜା କରିବ ।
ଜଗନ୍ନାଥଙ୍କୁ ରାଜମନ୍ତ୍ରରେ ପୂଜା କରିବ ।
ସୁଭଦ୍ରାଙ୍କୁ ଭୁବନେଶ୍ୱରୀ ମନ୍ତ୍ରରେ ପୂଜା କରିବ ।

ଷୋଡ଼ଶ ଉପଚାରର ପ୍ରକାରେ କରିବା ବିଧାନ—

ଆସନ—ସୁବର୍ଣ୍ଣ ପଦ୍ମପାଦ ଚନ୍ଦନ ତୁଳସୀ ।
ସ୍ୱାଗତ—ସୁବର୍ଣ୍ଣ ପଦ୍ମପାଦ ଚନ୍ଦନ ତୁଳସୀ ମିଶ୍ରିତ ଫୁଲ ।

ପାଦ୍ୟ—ସୁବର୍ଣ୍ଣ ଗାଡ଼ିଆ ୩, ଜଳ, ପଦ୍ମଫୁଲ ୩ ମାତ୍ର, ବିଷ୍ଣୁକ୍ରାନ୍ତ ଫୁଲ ୩ମାତ୍ର, ସୁନାଧାନ ଫୁଲ ୩ମାତ୍ର, ଦୁର୍ବାଙ୍କୁର ୩ମାତ୍ର, ଶ୍ୱେତ ସୋରିଷ, ଚନ୍ଦନ, କେସର ଓ କୁଙ୍କୁମ ।

ଆଚମନ—ସୁନାଥାଳ ୩, ବସ୍ତ୍ରଶୋଧିତ ଜଳରେ ଲବଙ୍ଗ, ଜାଇଫଳ, ଉଶିର, ବେଣା, ଚନ୍ଦନ, ମୁରାମାଂସୀ, କସ୍ତୁରୀ, କର୍ପୂରମିଶ୍ରିତ ଜଳ ।

ମଧୁପର୍କ—୩ଟା ରୂପା କୁଣ୍ଡକରେ ମହୁ, ଗୁଆଦୁଧ, ଘୃତ । ମହୁ ଅଭାବରେ ଗୁଡ଼ ଦେବ । ରୂପା ଢାଙ୍କୁଣି ୩ ।

ପୁନରାଚମନ—ସୁନା ଥାଳ ଉପରେ ଲବଙ୍ଗ, ଜାଇଫଳ, ଅଳାଇଚ, କାଙ୍କୋଲ, ଉଶିର, ବେଣା, ଅଗୁରୁ, କର୍ପୂରମିଶ୍ରିତ ବସ୍ତ୍ରଶୋଧିତ ସୂକ୍ଷ୍ମ ଜଳ ।

ସ୍ନାନ—ସୁନାଥାଳ ଉପରେ ବସ୍ତ୍ରଶୋଧିତ କର୍ପୂରମିଶ୍ରିତ ଜଳ ୧୦୦ପଲ ଠାରୁ ୩୦୦ପଲ, ଗଙ୍ଗାଯମୁନାଦି ମନ୍ତ୍ରରେ ଆବାହନ କରିବ । ସୁନା ବଇଠିଲଗା କାଂସାଦର୍ପଣ ଶ୍ରୀମୁଖରେ ରଖି ସ୍ନାନ କରାଇବ । ଧୋବ ବସ୍ତ୍ରରେ ଶ୍ରୀଅଙ୍ଗ ପୋଛିବ । ନୂତନ ପଟନୀ ବସ୍ତ୍ର ପିନ୍ଧାଇବ । ଅଳଙ୍କାର ଲାଗି କରିବ । ଫୁଲ ଚନ୍ଦନ, ଅଗୁରୁ କସ୍ତୁରୀ, ଦେବତାଫୁଲ କାକର ପଥର ଜଳ ଲାଗି ହେବ । ସୁନା ଦୀପରେ ଆଳତି ହେବ । ଧୂପ ହେବ । ବାଦ୍ୟ ବାଜିବ । କୋଠ ଭୋଗମାନ ଏ ପୂଜା ଫୁଲକୁ ଫୁଲ ଦେବ । ରାଜୋପଚାର ହେଲା ପରେ ଶ୍ରୀମୁଖରେ ବେଦ ପଢ଼ିବ । ଭିତରେ ନୈବେଦ୍ୟ ହେବ । ବାହାରେ ପୁରାଣପଣ୍ଡା କଳାପାବଚ୍ଛଦ୍ୱାରେ ପୁରାଣ ଶୁଣାଇବ । ଷଡ଼ରସରେ ନୈବେଦ୍ୟ ପଦାର୍ଥମାନ ହେବ । କେବଳ ତିକ୍ତ ହେବନାହିଁ । ୪ପ୍ରକାର ପାକ ହେବ । ଯଥା—ଖ୍ରାମ, ନଳ, ପୈଷ୍ଟ ଓ ଗୌଷ୍ଟ । ଅନ୍ନ ଚାରି ପ୍ରକାର ଯଥା—ଶାଳୀ, କ୍ଷୀର, ଦଧି, ଶୀତଳ ।

ଏ ସମସ୍ତ ଗ୍ରାମୁରେ ଧୋବଲୁଗା ଧାଏଡ଼ା ପଡ଼ି ତା ଉପରେ ସୁବର୍ଣ୍ଣଥାଳମାନଙ୍କରେ ଅନ୍ନ ପର୍ବତ ଆକାରରେ କୁଢ଼ା ହୋଇ ଘିଅ ପଡ଼ିବ । ବଡ଼ ଗୋଟାଭାତ ସାର୍ଦ୍ଦଚେକା ଏଣ୍ଡୁରି ଆଉ ଏଣ୍ଡୁରି ଏମାନେ ପର୍ବତର ପଥର ହେବ । ବଡ଼ କାକରା କୁଣ୍ଡଆ ଖଇମାନ ଗଛ ହେବ । ବଡ଼ ବଡ଼ ଖଣ୍ଡ ଆଳୁ ଭଜା ଗୋଳା ହୋଇ କଟା ହୋଇ ଅମୃତମଣ୍ଡା ସହିତ ପର୍ବତର ଶୃଙ୍ଗ ହେବ । କାକରାପିଠା, ଆରିସା, ପୁଳି, ଅମାଲୁ, ହୋଲବଡ଼ା, ନାଡ଼ୁ, ତ୍ରିପୁରା ଏମାନେ ଗଛର ଡ଼ାଳପତ୍ର ହେବ । ଗଜାପିଠା, ଗୋଟା କଦଳୀଭଜା, ଖଣ୍ଡଖୋଜି ଏମାନେ ଗଛର ଫୁଲକଢ଼ି ହେବେ । ସରପାପୁଡ଼ି, ଗୋଟିକା, କଦମ୍ବଫୁଲ ଜମନ୍ତେ ରସକୋରା ଏମାନେ ଫୁଲ ହେବେ । ହରିବଲ୍ଲଭ, ଧର୍ମଶରଣ, ବଡ଼ ତାଳମ୍ବ, ଛେନା ଲଡ଼ୁ, ମରିଚ ଲଡ଼ୁ, ବଡ଼ା, ଖଇରଚୂଲ, ଚଢ଼େଇଲେଦା, ଛେନାମଣ୍ଡା, ପଞ୍ଚୁପିଆ, ଯୋଧୁଅ, ପଇଡ଼, ପାଚିଲ୍‌କଦଳୀ ଏମାନେ ଗଛର ଫଳ ହେବେ । ନାନାପ୍ରକାର ବ୍ୟଞ୍ଜନ, ଖିରଖିରସା, ଅମୃତ ଦୁଧ, ଅଧାମ ବସାଦହି, ସର ଦହି, ବହଳ ଦୁଧ, ଦ୍ୱିଗୁଣ ଦୁଧ ତ୍ରିଗୁଣ ଦୁଧ ଏମାନେ ଖଣ୍ଡ ମରିଚ ଶାକର ମିଶ୍ରିତ ହୋଇ ଗଛର ରସ ହେବ । ନାନାପ୍ରକାର ପଣା, ସୁବାସ ପାଣି ଏମାନେ ପର୍ବତ କନ୍ଦରର ଜଳ । ଏପରି ପର୍ବତାକାର କରି ପଣ୍ଡା ମନରେ କଳ୍ପନା କରିବ । ପଞ୍ଚମୂଳ ହୋଇ ମଣୋହିବେଳେ ଯେଉଁ ପଦାର୍ଥ ଉଠିବୁ ଯେଉଁ ପଦାର୍ଥ ମଣୋହି ହେବ, ଯେପ୍ରକାର ମହାସୁଆର ପଞ୍ଚମୂଳ କରି ବାଢ଼ି ଖଦି ଗୋଟିଏ ଧରି ବାନ୍ଧିଥିବ । ପଣ୍ଡା ମନ୍ତ୍ର ଦ୍ୱାରା କରାଇବ । ମଣୋହି ପରେ ଭିତର ଗରାବଡ଼ୁ ଆଚମନକୁ ସୁବାସ ପାଣି ଦେବ । ଆଚମନ ଧାରି ଖୋଲି ବସ୍ତ୍ରରେ ଶ୍ରୀହସ୍ତ ପୋଛିଲ ଉଠିବୁ ଟେରା ନ ଫିଟିବା ପୂର୍ବରୁ ପୂଜାପଣ୍ଡା ଅନ୍ନ ମହାପ୍ରସାଦ ଖେଚଡ଼ି ଭାତ ଗୋଟିଏ ଘେନି ବାହାରକୁ ଆସି ଦେଉଳ ଗୃହପାଖେ ଦଶଦିଗପାଳଙ୍କୁ ବଳିଦେଇ ଆଚମନ କରି ଟେରା ଭିତରକୁ ଆସି ତାମ୍ବୁଲ ଲଗି କରାଇବ । ଟେରା ଫିଟିବା ପରେ ଆଳତି ହେବ । ରାଜୋପଚାରରେ ଆଳତି ହେବ । ୧୬ପଦାର୍ଥ ଲୋଡ଼ା ହେବ—ପଇତା, ଧ୍ୱଜ, ଛତ୍ର, ଚାମର, ଆଲଟ, ଧୂପ, କର୍ପୂର, ଆଳତି,ଅଗୁରୁ, ଧୂପକାଠି, ସୁନାବେତ, ପୁରାଣଶ୍ରବଣ, ନୃତ୍ୟ ଗୀତ, ଭାଟ କଏବାର ଘଣ୍ଟାଦି ଚତୁର୍ବିଧ ବାଦ୍ୟ, ଅସୁରମାନଙ୍କ ମର୍ଦ୍ଦଳାଦି ଚର୍ମ ବାଦ୍ୟ, ଯକ୍ଷମାନଙ୍କର ଘଣ୍ଟ କାହାଳୀଆଦି ଫୁଙ୍କା ବାଦ୍ୟ । କିନ୍ନରମାନଙ୍କର ତାଳ କଂସାଳାଦି ଘଣ୍ଟବାଦ୍ୟ । ଦେବତାମାନଙ୍କର ବୀଣାଦି ବାଦ୍ୟ ।

ଦାରୁବ୍ରହ୍ମ ପୂଜାରେ ଆବାହନ ବିସର୍ଜନ ନାହିଁ । ଧୂପ ବଢ଼ିଲେ ପଣ୍ଡା ଅକ୍ଷତ ନେଇ ରାଜାଙ୍କୁ ଆଶୀର୍ବାଦ କରିବ । ଧୂପ ଶେଷରେ ହୋମ ହେବ । ଉପନ ଚନ୍ଦନ ମଡ଼ଫୁଲ ଗନ୍ଧପୁଷ୍ପ ଧୂପଦୀପ ନୈବେଦ୍ୟ ସହ ପଞ୍ଚୋପଚାର ପୂଜା ହେବ ଏବଂ ମଣୋହି ହେବ । ପରେ ସୁବର୍ଣ୍ଣ ନାରାୟଣ ଦେବତା ବିମାନରେ ବିଜେ କରି ଦେଉଳ ଗୃହପାଖ

ରନବେଢ଼ା ବୁଲି ଜଗମୋହନ ଦ୍ୱାରରେ ରତ୍ନ-ପଲଙ୍କ ଉପରେ ବିଜେ କରିବେ । ଏଠାରେ ବେଢ଼ା ଆହ୍ୱାନ ହେବ । ଏଠାରେ ଗୋଟିଏ ଶୀତଳ ସିଂହାର ମଣୋହି ଭୋଗ ହେବ । ବନ୍ଦାପନା ହୋଇ ଭିତରକୁ ବିଜେ କରିବେ । ଏହାପରେ ଦହିକଡ଼ମା ଭୋଗ ହେବ ।

ଦ୍ୱିପ୍ରହର ଧୂପ—ଠାକୁରମାନେ ମଇଲମ ହେବେ ଏବଂ ବସ୍ତ୍ର ଲାଗି ଚକାକଲାଗି ମାଳଚୂଳ ଲାଗିହେବା ପରେ ଗମ୍ଭିରୀ ଧୋପଖାଳ ହେବ । ପାହାଡ଼ା ଲୁଗା ପଡ଼ି ସୁବର୍ଣ୍ଣ ଯୋଗାଡ଼ମାନଙ୍କରେ ଭୋଗ, ମଡ଼ଫୁଲି ସକାଳ ଧୂପ ପରି ପର୍ବତାକାରରେ ଜମା ହେବ । ଷୋଡଶ ଉପଚାରରେ ପୂଜା ହେବ । ହୋମ ଉପନ ଭୋଗମାନ ସକାଳ ପରି ହେବ । ସକାଳ ପରି ନାରାୟଣଙ୍କ ବେଢ଼ାବୁଲା, ଶୀତଳସିଂହାର ଭୋଗ ଓ ବନ୍ଦାପନା ପରେ ଭିତରବିଜେ ହେବ । ବେଶ ଉଲାଗି ହୋଇ ନେତପାଟନି ଲୁଗା ଲାଗି ହୋଇ, ରତ୍ନଚଡ଼ାଉ, ସୁବାସପଟ୍ଟ, ମାଳଚୂଳ ଲାଗି ହୋଇ ଗମ୍ଭିରୀ ଧୋପଖାଳରେ ଖଟସେଜ ପଡ଼ିବ । ତହିଁରେ ଠାକୁରେ ପହୁଡ଼ିବେ । ଏଠାରେ ଶୀତଳ ଭୋଗ ହୋଇ ଟେରା ପଡ଼ିବ ।

ସନ୍ଧ୍ୟା ଧୂପ ବଡ଼ସିଂହାର—ସକାଳଧୂପ ପରି ଷୋଡ଼ଶ ଉପଚାରରେ ପୂଜା । ଏ ଧୂପରେ ଅଧିକା ବନ୍ଦାପନା, ନାରାୟଣଙ୍କ ବେଢ଼ାବୁଲା, ଶୀତଳ ଭୋଗ, ଉପନ ଭୋଗ, ବଡ଼ସିଂହାର, ଅବକାଶ, ସଞ୍ଜ ଭୂଇଁସିଂହାର, ଅବକାଶ, ପୁରାଣ ପାଠ, ତାମ୍ବୁଲ ଲାଗି, ହୁଡ଼ପ ନାଏକ, ବଡ଼ଆଲାଗି ଉତ୍ତମ ସିଂହାର, ପିଠା, କାଞ୍ଜି, ବାଟୁଲି ପଖାଳ ଇତ୍ୟାଦି । ଆଳତି ବନ୍ଦାପନା ପରେ ଖଟଶେଯ ପଡ଼ିବ । ଶ୍ରୀମୁର୍ତ୍ତି ମୁଚୁଳା, ଗୋଲ ମୁଚୁଳା, କୋଳ ମୁଚୁଳା, ଶ୍ରୀପୟର ମୁଚୁଳା ଦିଆଯିବ । କଳାପାହାଚ ସରିକି ଲୁଗା ପଡ଼ିବ । ସୁନା ଅର୍ଦ୍ଧନାରୀ ନାରାୟଣ ଦେବଙ୍କୁ ଫୁଲର ମଣ୍ଡୋଚୁଲ ଗୋଟିଏ ଅପସର ଦେଇ ଦଣ୍ଡିଡ଼ି ଚନ୍ଦ୍ରଉଦଆ, ଛତ୍ର ଚାମର, ଆଲଟ ଖଦୀ, ବୀଣା, ଗୀତଗାୟନ, ସୁନାବେତ, ଏମାନ ମାହାରୀମାନେ ଘେନି ପଶୁପାଳକ ବିଜେ କରାଇ ଆଣି ଜଗମୋହନ ଦ୍ୱାରରେ ସୁନା ଡ଼ଙ୍ଗିଆ ଉପରେ ବିଜେ କରାଇ ଜୟସିଂହାର ଶୀତଳ ଭୋଗ ପଞ୍ଚଉପଚାରରେ ପୂଜା କରିବେ । ଆଳତି ପରେ ପହୁଡ଼ ହେବ । ଖଟ ପାଖେ ଶୀତଳ ଭୋଗ ସିଂହାର ବଢ଼ା ହୋଇଥିବ । ଭିତର ଭଣ୍ଡାର ମେକାପ ବଇଠା ନେଇ ଗୃହପାଖ ଶୋଧି ଭଣ୍ଡାର-ପମକାପ ଗୁମୁଟରେ ଆଖଣ୍ଡମାନ ଓ ବାଡ଼ି ଦୀପମାନ ବାହାର କରି ଆଣିଲା ପରେ କବାଟ ପଡ଼ିବ । ବଡ଼ସିଂହାରରେ ପଖାଳ, ପିଠା, ପଣା ପିଭୃତି ଭୋଗ ହେବ । ଠାକୁରମାନେ ବିଭିନ୍ନ ପ୍ରକାରର ସୁନ୍ଦର ଫୁଲମାଳ ଲାଗି ହେବେ । ବେଶ ହେବେ । ଗୀତ ବାଦ୍ୟ ହେବ । ଦେବଦାସୀମାନେ ଗୀତଗାୟନ କରିବେ । ଏହାପରେ ଠାକୁରମାନଙ୍କର ପହୁଡ଼ ହେବ ।

**ଅଷ୍ଟକାଳ ସେବା :**—ବଡ଼ଦେଉଳର ପ୍ରତିଦିନ ତିନି ଧୂପ, ପାଞ୍ଚ ଅବକାଶ, ଏପରି ଆଠ ଗୋଟି ଭୋଗର ବ୍ୟବସ୍ଥା ଅଛି । ଏହି ପୂଜାର ଆରମ୍ଭ କେବେ ହେଲା, ତାହା ନିର୍ଦ୍ଦିଷ୍ଟ ଭାବରେ କହି ହେଉ ନାହିଁ । ବଲ୍ଲଭାଚାର୍ଯ୍ୟ ସମ୍ପ୍ରଦାୟ ଶ୍ରୀକୃଷ୍ଣଙ୍କର ଅଷ୍ଟକାଳ ସେବା ସଙ୍ଗେ ଜଗନ୍ନାଥଙ୍କ ଅଷ୍ଟକାଳ ସେବାର କେତେକ ମେଳ ଅଛି । ବଲ୍ଲଭାଚାର୍ଯ୍ୟ ବା ଶୁଦ୍ଧାଦ୍ୱୈତବାଦୀ ବୈଷ୍ଣବ ସମ୍ପ୍ରଦାୟ ବାଳଗୋପାଳ ସେବାର ପ୍ରାଧାନ୍ୟ ପ୍ରତିପାଦିତ କରିଅଛନ୍ତି ।

୧। ମଙ୍ଗଳ ଆରତି—ସୂର୍ଯ୍ୟୋଦୟର ଅଧଘଣ୍ଟା ପରେ ଶ୍ରୀହରିଙ୍କୁ ଶଯ୍ୟାରୁ ଉଠାଇ ଆସନରେ ବସାଇ ଫଳାହାର ଅର୍ପଣ, ଦୀପଦାନ ।

୨। ଚାରି ଦଣ୍ଡ ବେଳରେ ତୈଳ ଚନ୍ଦନ, କର୍ପୂର ଓ ବସ୍ତ୍ର, ଅଳଙ୍କାର ଦ୍ୱାରା ଶ୍ରୀହରିଙ୍କୁ ଭୂଷିତ କରଣ ।

୩। ଛଅ ଦଣ୍ଡ ବେଳରେ ଶ୍ରୀକୃଷ୍ଣଙ୍କ ଗୋଚାରଣ ବେଶ ।

୪। ମଧ୍ୟାହ୍ନ ଭୋଗରେ ରାଜଭୋଗ—ଭୋଗ ପରେ ନିଦ୍ରା ।

୫। ବେଳ ଛଅ ଦଣ୍ଡ ଥିବ ଉତ୍ଥାପନ ।

୬। ଉତ୍ଥାପନର ଅଧଘଣ୍ଟା ପରେ ଦ୍ୱିପ୍ରହର ଭୋଗ ।

୭। ସନ୍ଧ୍ୟା ସମୟରେ ଦିନର ବେଶଭୂଷା ଉନ୍ମୋଚନ କରି ପୁନର୍ବାର ତୈଳ, ଚନ୍ଦନ, ବସ୍ତ୍ର, ଗନ୍ଧଦ୍ରବ୍ୟଦ୍ୱାରା ସେବା ।

୮। ଛଅ ଦଣ୍ଡ ରାତିରେ ଶୟନ । ନୂତନ ବେଶଭୂଷା । ପିଠାପଣା ଭୋଗ ।

ବଲ୍ଲଭାଚାର୍ଯ୍ୟ ମତାନୁସାରେ ଉପବାସର ବ୍ୟବସ୍ଥା ସ୍ୱୀକାର କରାଯାଇ ନାହିଁ । ବୋଧହୁଏ, ପୁରୀ ଦେଉଳରେ ଏକାଦଶୀ ଉପବାସ ନ ଥିବା ଏହି ମତର ପ୍ରଭାବର ଫଳ ।

**ପ୍ରତିମା ନିର୍ମାଣ ବିଧି** —ନବକଳେବର ହେବା ପାଇଁ ସ୍ୱୟଂ ଭଗବାନ ଜଗନ୍ନାଥଙ୍କ ଆଜ୍ଞା ହେଲେ ଦଇତା ଓ ପତିବଂଶୀୟ ସେବକମାନେ ନିମ୍ବବୃକ୍ଷ ଅନ୍ୱେଷଣ କରି ଆଣିବେ । ନିମ୍ବବୃକ୍ଷ ସର୍ବାପେକ୍ଷା ଶ୍ରେଷ୍ଠ । ଏ ବୃକ୍ଷର ପରିମାଣ ମଧ୍ୟମାଙ୍ଗୁଳି ଯବରେ ୨୪ ଯବ ଲେଖାଏଁ ଚୌରସ ୧୬ ଯବ ଥିବ । ସେ ବୃକ୍ଷ ୪ ଶାଖା ବିଶିଷ୍ଟ ହୋଇଥିବ । ଏପରି ଚାରିଗୋଟି ବୃକ୍ଷ ଆସିବ । ଏକଶାଖା, ଦ୍ୱିଶାଖା ବା ତ୍ରିଶାଖା ବୃକ୍ଷ ହେବ ନାହିଁ । ଏ ବୃକ୍ଷମାନ ଗ୍ରାମ ସାନ୍ନିଧ୍ୟରେ ନ ଥିବେ । ଚଢ଼ାଇମାନେ ବସା

କଣ ନ ଥିବେ । ପକ୍ଷୀନଖୀଜନ୍ତୁ ଘଞ୍ଚି ହୋଇ ନ ଥିବେ । ଅନ୍ୟ ବୃକ୍ଷ ଡାଳଦ୍ୱାରା ଏ ବୃକ୍ଷମାନ ଆଚ୍ଛାଦିତ ହୋଇ ନ ଥିବ । ବଜ୍ରାଘାତ ପଡ଼ି ବୃକ୍ଷ ଫାଟି ନ ଥିବ । ଅଗ୍ନି ତେଜ ଲାଗି ନ ଥିବ । ଜଳ ସମୀପରେ ଥିଲେ ଉତ୍ପାଟିତ ହୋଇ ପଙ୍କରେ ପଡ଼ି ନ ଥିବ । ଦେଖିବାକୁ ବୃକ୍ଷମାନ ଶୋଭନୀୟ ହୋଇଥିଲେ ଏ ସମସ୍ତ ଲକ୍ଷଣ ଥିବା ବୃକ୍ଷ ଗ୍ରହଣୀୟ । ବିଶ୍ୱକର୍ମା ମଧ୍ୟମାଙ୍ଗୁଷ୍ଠି ଯବ ମାପରେ ମାପି ନେବ ।

ଶ୍ରୀ ଜଗନ୍ନାଥଦେବ—ଚକ୍ରାକୃତି, ଉଚ୍ଚ ୮୪ ଯବ, ମେଘଶ୍ୟାମବର୍ଣ୍ଣ ।
ଶ୍ରୀ ବଳରାମଦେବ—ଶଙ୍ଖାକୃତି, ଉଚ୍ଚ ୮୪ଯବ, ଶୁଭ୍ରବର୍ଣ୍ଣ ।
ଶ୍ରୀ ସୁଭଦ୍ରାଦେବୀ—ପଦ୍ମାକୃତି, ଉଚ୍ଚ ୫୨ଯବ, ହରିଦ୍ରାବର୍ଣ୍ଣ ।
ଶ୍ରୀ ସୁଦର୍ଶନଦେବ—ଗଦାକୃତି, ଉଚ୍ଚ ୮୪ଯବ, ରକ୍ତବର୍ଣ୍ଣ ।
ପ୍ରତିମାମାନଙ୍କର ଆକୃତି ଯନ୍ତ୍ର ଅନୁସାରେ ନିର୍ମିତ ।

ଚକ୍ରଯନ୍ତ୍ର—ଊର୍ଦ୍ଧ୍ୱ ୧୪ ଭାଗ, ନିମ୍ନ ୧୮ ଭାଗ । ପାଦପଦ୍ମଦ୍ୱୟ ୧୬ $\frac{୧୦}{୧୭}$ ଯବ, ଅବଶିଷ୍ଟ ଉପଯୁକ୍ତ ୧୪ଶ ଭାଗ ୫୦ $\frac{୧୨}{୧୭}$, ପ୍ରତ୍ୟେକ ଭୁଜ ୧୮ ଯବ । ପାର୍ଶ୍ୱ ଭୁଜଦ୍ୱୟ ୮ଯବ । ଭୁଜ ଦ୍ୱୟର ଦଶମାଂଶ ନାସିକାରନ୍ଧ୍ର, ନାସିକାର ଅଧୋଭାଗ ୧୨ଯବ,ଅଧୋଭାଗଠାରୁ ମସ୍ତକାବଧି ୨୫ $\frac{୧୨}{୧୭}$ ଯବ । ଶ୍ରୀମୁଖ ଆୟତନ ୩୦ଯବ, ହୃଦୟ ମଧ୍ୟରେ ବ୍ରହ୍ମସ୍ଥାପନ ସ୍ଥାନ ୧୪ ଯବ ।

ଶଙ୍ଖଯନ୍ତ୍ର—ମୁଖପଦ୍ମ ୩୧ ଯବ । ଶ୍ରୀମୁଖର ଊର୍ଦ୍ଧ୍ୱଫଳକ ୫ଯବ । ଚତୁର୍ବନ୍ଧ ସ୍ଥାନ ୧ଯବ । ହୃଦୟ ୯ଯବ । ମଧ୍ୟଭାଗ ୧୦୨ ଯବ । ପ୍ରତ୍ୟେକ ଭୁଜ ୨୪ ଯବ । ସ୍କନ୍ଧୋପରି ଦେଦୀପ୍ୟମାନ ଫାଳ ୨ଟି ୨ଯବ । ନାସାରନ୍ଧ୍ର ୨ ଯବ । ନାସିକାର ଅଧୋଭାଗ ୮ଯବ। ଊର୍ଦ୍ଧ୍ୱଭାଗ ୧୮ ଯବ । ଲଲାଟ ୧ଯବ । କେଶ ୫ ଯବ ।

ପଦ୍ମଯନ୍ତ୍ର—ଶ୍ରୀମୁଖର ବିସ୍ତାର ୧୫ ଯବ । କେଶକଳାପ ୩୨ ଯବ, ଶ୍ରୀମୁଖ ୧୭ ଯବ, ମଧ୍ୟସ୍ଥଳ ୩୨ ଯବ, ପାଦପଦ୍ମ ଯୁଗଳ ୧୭ ଯବ, ପ୍ରତ୍ୟେକ ଭୁଜ ୧୫ ଯବ, ପାର୍ଶ୍ୱ ଭୁଜ ୧୭ ଯବ ।

ଗଦାଯନ୍ତ୍ର—ଗଦାକୃତି, ପ୍ରସାର ୨୨ ଯବ ।
ଶରୀର ଗ୍ରହଣ—ଶିରାପ୍ରଶିରା ଲାଗି ପାଟସୂତା ବଳା ହୋଇ ଡୋର ।

ସପ୍ତାଭରଣ—ଚର୍ମ ଲାଗି ବସ୍ତ୍ର, ରକ୍ତ ନିମନ୍ତେ ନେତପାଟ, ମାଂସ ନିମନ୍ତେ ସକଳ ସମେଧନୀ ସୁବାସ ତେଲ, ଅସ୍ଥି ନିମନ୍ତେ ଦାରୁ, ମଜ୍ଜା ନିମନ୍ତେ ଚନ୍ଦନ, ଶୁକ୍ର ନିମନ୍ତେ ଅଷ୍ଟକାଳୀ ।

**ପ୍ରତିଷ୍ଠା ବିଧି**—ପ୍ରାସାଦ ପୂର୍ବ ଭାଗରେ ପ୍ରତିଷ୍ଠା ମଣ୍ଡପ ହେବ । ମଣ୍ଡପର ଓସାର ପ୍ରାସାଦର ୨ ଗୁଣ ହେବ । ମଣ୍ଡପ ଚତୁର୍ଦ୍ଦିଗରେ ବାଡ଼ ଦିଆଯିବ । ଚାରି ଦ୍ୱାର ହୋଇ ୪ ତୋରଣ ହେବ । ଅଶ୍ୱତ୍ଥ, ଉଦମ୍ବର, ବଟ ଓ ପଲାଶ ଦ୍ୱାରା ୫ ହାତ ଉଚ୍ଚରେ ତୋରଣ ହେବ, ହୋମ ଧୂପ ବାହାରିଯିବା ଲାଗି ଚୂଳ ଉପରେ ବାଟ ଥିବ । ମଣ୍ଡପରେ ଚନ୍ଦ୍ରୁଆ ବାନ୍ଧିବ । ଚାମର, ବସ୍ତ୍ର, ଘଣ୍ଟି ଓ ଫୁଲମାଳମାନଙ୍କ ଦ୍ୱାରା ମଣ୍ଡପ ମଣ୍ଡିତହେବ । ମଣ୍ଡପର ଈଶାନ୍ୟ କୋଣରେ ସ୍ନାନମଣ୍ଡପ ଗୋଟିଏ ହେବ । ସ୍ନାନଜଳ ବାହାରିଯିବାକୁ ଗୋଟିଏ ନଳା ରଖିବ । ମଣ୍ଡପର ଦକ୍ଷିଣ ଦିଗରେ ବେଦୀ କରିବ, ପୂର୍ବ ଦିଗରେ ଯଜ୍ଞ ଦ୍ରବ୍ୟମାନ ରଖିବାକୁ ସ୍ଥାନ କରିବ । ବେଦୀ ଉପରେ ଗଙ୍ଗାବାଲି ପକାଇବ, ପଞ୍ଚଗବ୍ୟ ଦ୍ୱାରା ବେଦୀ ପ୍ରକ୍ଷାଳନ କରିବ । ଏ ମଣ୍ଡପ ଚାରି କୋଣରେ ଚାରି ପ୍ରକାର ହୋମକୁଣ୍ଡ ହେବ । (ଚନ୍ଦ୍ରାକାର, ଅର୍ଦ୍ଧ ଚନ୍ଦ୍ରାକାର, ମଣ୍ଡଳାକାର, ପଦ୍ମାକାର ) । ତୋରଣମାନଙ୍କରେ ଫୁଲମାଳ ମଣ୍ଡନ କରିବ, ଧ୍ୱଜ ପତାକା ବାନ୍ଧିବ, ପତାକା ଲମ୍ବ ପାଞ୍ଚହାତ, ଓସାର ଷୋଳ ଅଙ୍ଗୁଳ । ମଣ୍ଡପ ମଧ୍ୟରେ ବେଦୀ ଉପରେ ପଦ୍ମାକାର ଶୁକ୍ଳ ଚନ୍ଦ୍ରୁଆ ବନ୍ଧାହେବ, ପାଣ୍ଡୁର-ବର୍ଣ୍ଣ କଳସରେ ଛଣା ପାଣି ୧୨୮ ପଲ ପୂରେଇବ । ଏଥିରେ ଖଣ୍ଡିଏ ସୁବର୍ଣ୍ଣ ପକାଇବ । ନୂତନ ବସ୍ତ୍ର କଳସ ଚାରିପାଖେ ଗୁଡ଼େଇବ, କଳସରେ ଆମ୍ବଡାଳ ଦେଇ ନାରକେଳ ରଖି ମାଣେ ଧାନ ଉପରେ କଳସ ଥୋଇବ । ମଣ୍ଡପ ଚାରି ଦ୍ୱାରେ ଚାମର ଝୁଲାଇବ । ପରମେଶ୍ୱରଙ୍କୁ ନେଇ ଖଟ ଉପରେ ବିଜେ କରାଇବ । ପରେ ବେଦୋକ୍ତ ମନ୍ତ୍ରମାନଙ୍କରେ ବିଧି-ବିଧାନ ଅନୁସାରେ ଜୀବନ୍ୟାସ ହେବ ।” *

---

* ପ୍ରାଚୀନ ଉତ୍କଳ ।

# ଦଶମ ପରିଚ୍ଛେଦ

## ଠାକୁରମାନଙ୍କର କେତେକ ପ୍ରଧାନ ଯାନଯାତ୍ରା

ଶ୍ରୀ ଶ୍ରୀ ଜଗନ୍ନାଥଙ୍କର କାହିଁକି ବହୁପ୍ରକାର ଯାତ୍ରାର ଉଦ୍ଭବ ହୋଇଛି, ସେ ବିଷୟରେ ଜୈମିନୀ ଋଷି ମାନଙ୍କୁ କହୁଅଛନ୍ତି—

ଶୃଣ୍ୱନ୍ତାଂ ତତ୍ତ୍ୱତୋ ବ୍ରୂହି ଯଥୋଦ୍ଦେଶଂ କୃତଃ ପୁରା ।
ସର୍ବଥା ବର୍ତ୍ତିତେ ଲୋକହିତାୟ ପୁରୁଷୋତ୍ତମଃ । ୩
ନାନାଗୁଣ ବିକାରୈଶ୍ଚ ନାନାରୂପ ବିଚେଷ୍ଟିତୈଃ ।
ନାନାଭାବ ବିଲାସେନ ବିଜହାର ଜଗନ୍ମୟଃ । ୪
ଅହଙ୍କାରଂ ବିନା କର୍ମଫଳଂ ନୋ ଦ୍ୱିଜସତ୍ତମାଃ ।
ଅହଙ୍କାରେଣ ବଧ୍ୟନ୍ତେ କାରାଗାରେ ଭବାର୍ଣ୍ଣବେ । ୫
ବୁଦ୍ଧ୍ୟାହଙ୍କାରଯୁକ୍ତସ୍ତୁ ଯତ୍କର୍ମାରଭତେ ନରଃ ।
ତସ୍ୟ ଷଡ଼୍‌ଗୁଣମାପ୍ନୋତି ଫଳଂ ଶୁଭମଥାପରମ୍ । ୬
ତତ୍ର ଯେ ସାତ୍ତ୍ୱିକାଃ ସନ୍ତଃ ଫଳାବାପ୍ତିପରାଙ୍‌ମୁଖାଃ
ଭଗବତ୍ ପ୍ରୀତୟେ କର୍ମ କୁର୍ବତେ ତେ ମୁମୁକ୍ଷବଃ । ୭
ପରସ୍ୟ ସ୍ପର୍ଦ୍ଧୟା କୀର୍ତ୍ତ୍ୟୈ ଫଳମୁଦ୍ଦସ୍ୟ ବା ପୁନଃ ।
ବହୁ ପ୍ରାୟାସବ୍ୟାସକ୍ତା ରାଜସଂ କର୍ମ କୁର୍ବତେ । ୮
ଗତାନୁଗତିକା ଯେ ଚ ଦୃଷ୍ଟାର୍ଥୈକ ପରାୟଣାଃ ।
ପ୍ରସଙ୍ଗାତ୍ ଫଳମିଚ୍ଛନ୍ତୋ ତାମସଂ କର୍ମ କୁର୍ବତେ । ୯
ସାତ୍ତ୍ୱିକାନାଂ ଜଗନ୍ନାଥଃ ସର୍ବଦା ସର୍ବଭାବନଃ ।
ଧ୍ୟାତୋ ଦୃଷ୍ଟଃ ସ୍ମୃତୋ ବାପି ମୁକ୍ତିଦାତା ନ ସଂଶୟଃ । ୧୦
ରାଜସାସ୍ତାମସା ଯେ ବୈ ମୂଢ଼ାତ୍ମାନଃ ଫଳୈଷିଣଃ ।
ଉତ୍ସବାଦିକୃତଂ କର୍ମ ମନ୍ୟନ୍ତେ ଫଳଦାୟିନେ । ୧୧
ସନ୍ତ୍ୟାସ୍ତୁ ବହବୋ ବିପ୍ରା ଆରଭନ୍ତେଽଲ୍ପକଂ ବିଧିମ୍ ।
ବହୁଳାୟାସ ଦୁଃଖଂ ଯତ୍ କର୍ମ ତେଷାଂ ଫଳପ୍ରଦମ୍ । ୧୨

ଇତ ମତ୍ୱା ଜଗନ୍ନାଥ ସ୍ୱେଚ୍ଛାମୁଦ୍ଧରଣାୟ ବୈ
ଗତାନୁଗତ ମୂଢ଼ାନାଂ ବିଶ୍ୱାସାୟ ଦୁରାତ୍ମନାମ୍
ଯାତ୍ରା ଏବଂବିଧ ବିପ୍ରା ବର୍ଷେ ବର୍ଷେ ପ୍ରବର୍ତ୍ତୟେତ୍ । ୧୩ (୧୪୫)

ଜୈମିନି କହିଲେ--"ଭଗବାନ ପୁରୁଷୋତ୍ତମ ସବୁବେଳେ ଲୋକମାନଙ୍କର ହିତ ପାଇଁ ନାନାପ୍ରକାର ଲୀଳା କରିବାରେ ପ୍ରବୃତ୍ତ ହୋଇଥାନ୍ତି ଏବଂ ସେଥିପାଇଁ ସେହି ଜଗନ୍ମୟ ଜଗନ୍ନାଥଦେବ ନାନାପ୍ରକାର ଗୁଣବୈକାର, ନାନାପ୍ରକାର ରୂପ ଓ ଚେଷ୍ଟାରେ ଏବଂ ନାନାପ୍ରକାର ଭାବରେ ବିହାର କରନ୍ତି । ୩-୪ । ଦ୍ୱିଜବରମାନେ ! ଅହଙ୍କାର ଛଡ଼ା କର୍ମଫଳ ଜନ୍ମେ ନାହିଁ ଏବଂ ଅହଙ୍କାର ବଶରୁ ଜୀବମାନେ ସଂସାରରୂପ ବନ୍ଧଘରରେ ବନ୍ଦ ହୋଇଥାନ୍ତି । ୫ । ଅହଂଜ୍ଞାନଯୁକ୍ତ ଲୋକ ବୁଦ୍ଧି ପୂର୍ବକ ଯେଉଁସବୁ ଶୁଭାଶୁଭ କର୍ମ ଆଚରଣ କରେ, ସେ କେବଳ ଶୁଭ ବା ଅଶୁଭ ଷଡ଼ଗୁଣ ଫଳ ଲାଭ କରିଥାଏ । ୬ । ସତ୍ତ୍ୱାଦି ଗୁଣଭେଦରେ ମାନବମାନଙ୍କର ଏହି ବୁଦ୍ଧି ତିନି ପ୍ରକାର । ଏ ଭିତରେ ଯେଉଁମାନଙ୍କର ବୁଦ୍ଧି ସତ୍ତ୍ୱମୟୀ, ସେହିସବୁ ସାତ୍ତ୍ୱିକ ସାଧୁମାନେ ଅନ୍ୟ ଫଳର ଅଭିଳାଷୀ ନୁହନ୍ତି, କେବଳ ମୋକ୍ଷ-ପଦ ହିଁ ସେମାନଙ୍କର ପ୍ରାର୍ଥନୀୟ । ଏହି ହେତୁ ସେମାନେ କେବଳ ଭଗବତ୍ ପ୍ରୀତି ଅର୍ଥରେ ସବୁ କାର୍ଯ୍ୟ କରନ୍ତି । ୭ । ଯେଉଁ ମାନଙ୍କର ବୁଦ୍ଧି ରଜୋଗୁଣରେ ପୂର୍ଣ୍ଣ, ସେ ସବୁ ଲୋକ ଅନ୍ୟ ପ୍ରତି ସ୍ପର୍ଦ୍ଧା, କୀର୍ତ୍ତି ବା ଅନ୍ୟ କୌଣସି ଫଳ ଉଦ୍ଦେଶ୍ୟରେ ବହୁ ପ୍ରୟାସରେ ରାଜସ କର୍ମର ଅନୁଷ୍ଠାନ କରିଥାଆନ୍ତି । ୮ । ଆଉ ଯେଉଁମାନେ କେବଳ ଐହିକ ଦୃଷ୍ଟ ଫଳରେ ଆସକ୍ତ ଗତାନୁଗତ ସେହି ସବୁ ତାମସ ପୁରୁଷମାନେ ପ୍ରସଙ୍ଗାଧୀନ ଫଳ କାମନାରେ ତାମସ କର୍ମରେ ପ୍ରବୃତ୍ତ ହୁଅନ୍ତି । ୯ । ଉପରେ ଲେଖା ଯାଇଥିବା ସାତ୍ତ୍ୱିକ ବ୍ୟକ୍ତିମାନେ ଯଦି ସର୍ବଭାବନ ଭଗବାନ୍ ଜଗନ୍ନାଥଦେବଙ୍କୁ ସର୍ବଦା ଧ୍ୟାନ, ଦର୍ଶନ ବା ସ୍ମରଣ କରିପାରନ୍ତି, ତାହାହେଲେ ନିଶ୍ଚୟ ସେ ସେମାନଙ୍କୁ ମୁକ୍ତି-ଦାନ କରିଥାଆନ୍ତି । ଫଳାଭିଳାଷୀ ମୂଢ଼ମତି ରାଜସ ଓ ତାମସ ପୁରୁଷମାନେ ଫଳପ୍ରଦ ଉତ୍ସବାଦି କାର୍ଯ୍ୟକୁ ହିତକର ମନୋନୀତ କରନ୍ତି । ୧୦-୧୧ । ବିପ୍ରମାନେ ! ସେମାନେ ସମସ୍ତେ ମିଳିତ ହୋଇ ଯେଉଁ ସାମାନ୍ୟ ଫଳଦାୟକ ସାମାନ୍ୟ କାର୍ଯ୍ୟ ଆରମ୍ଭ କରନ୍ତି, ସେହି କାର୍ଯ୍ୟରେ ସେମାନଙ୍କର ବହୁତ ପ୍ରୟାସ ଓ ଦୁଃଖଭୋଗ କରିବାକୁ ହୁଏ । ଏହିଭଳି ବିବେଚନା କରି ସେହି ସେହି ସବୁ ଗତାନୁଗତିକ ମୂଢ଼ ମାନବମାନଙ୍କ ଉଦ୍ଧାରସାଧନ ଓ ମହାତ୍ମାମାନଙ୍କର ବିଶ୍ୱାସ ନିମିତ୍ତ ହିଁ ଭଗବାନ୍ ଜଗନ୍ନାଥଦେବ ବର୍ଷ ବର୍ଷ ଏହିପରି ଯାତ୍ରାସବୁ ପ୍ରବର୍ତ୍ତିତ କରିଥାନ୍ତି । ୧୨-୧୩ (୧୪୬)

---

୧୪୫ । ସ୍କନ୍ଦପୁରାଣ । ଉତ୍କଳଖଣ୍ଡ । ୩୧ଶ ଅଧ୍ୟାୟ ।

୧୪୬ । ସ୍କନ୍ଦପୁରାଣ । ଉତ୍କଳଖଣ୍ଡ । ୩୧ଶ ଅଧ୍ୟାୟ । ବଙ୍ଗବାସୀ ସଂସ୍କରଣ ।

ପାର୍ଶ୍ୱ ପରିବର୍ତ୍ତନ—ଭାଦ୍ରବ ଶୁକ୍ଳ ଏକାଦଶୀ ଦିନ ସକାଳଧୂପ, ଭୋଗମଣ୍ଡପ ସରିଲେ ପରେ ମଇଲମ ହେବ । ବଡ଼ ମହାସ୍ନାନ ହୋଇ ପାଣି ଲଗି ହେବ । ଶ୍ରୀଅଙ୍ଗ ପୋଛା ହେବ । ପଞ୍ଚ ଉପଚାରର ପୂଜା କରି ଧୂପ ଦୀପ ଦେଇ ମହାସ୍ନାନ କରାଇବ । ମଇଲମ ହେବ । ରୂପା ପିଙ୍ଗଣ ତିନି ଗୋଟିରେ ଚନ୍ଦନ ପୂରାଇ ଶ୍ରୀକାପଡ଼ା ଘୋଡ଼େଇ ରଖା ହୋଇଥିବ । ଛତା, ଘଣ୍ଟା, କାହାଳୀ ବାଜିବ । ଦ୍ୱାର ଦେଇ ଜଗମୋହନ, ଗରୁଡ଼ଙ୍କ ଆଗଦେଇ ସିଂହାସନରେ ବିଜେ କରାଇବ । ସର୍ବାଙ୍ଗ ଲଗି ହେବ । ନୂଆ ଲୁଗା ଲଗି ନ ହୋଇ ନୀତିପ୍ରମାଣେ ବେଶ ହୋଇବେ । ଏହା ପରେ ଦ୍ୱିପ୍ରହର ଧୂପ ସରିବ । ଠାକୁରମାନେ ପହୁଡ଼ ହେବେ । ସନ୍ଧ୍ୟାଧୂପ ସରିବ । ଏ ଉତ୍ତାରୁ ପବିତ୍ରା ଅଧିବାସ ନିମନ୍ତେ ଅନନ୍ତ ପୁରୁଷୋତ୍ତମଙ୍କଠାରେ ଦେଉଳ ପୁରୋହିତ ଏ ଅଧିବାସ ବିଧି କର୍ମ କରିବେ । ଶୁଦ୍ଧ ଶୁଆର ପୂଜା ଠା କରିବ । ଦେଉଳ ପୁରୋହିତ ବରଣ କରିବେ । ଆଚାର୍ଯ୍ୟ ବ୍ରହ୍ମା ବରଣ ହୋଇବ । ଏ ଉତ୍ତାରୁ ଠାକୁରଙ୍କ ନାଗସଗୋଜି ପ୍ରମାଣେ ସଙ୍କଳ୍ପ ହୋଇବ । ହୋମ ହେବ । ଏହି ନୀତି ପ୍ରମାଣେ ଭିତର ପରମେଶ୍ୱରଙ୍କ ଚନ୍ଦନ ଲଗିଠାରୁ ବଡ଼ସିଂହାର ପର୍ଯ୍ୟନ୍ତ ସବୁ ସରିବ । ପବିତ୍ରା ଅଧିବାସ ହେବ । ପାର୍ଶ୍ୱପରିବର୍ତ୍ତନ ନିମନ୍ତେ ଏ ଉତ୍ତାରୁ ଭିତରେ ସିଂହାସନ ତଳେ ପାଣି ପକାଇ ବଡ଼ ମହାସ୍ନାନ ହେବ । ପଞ୍ଚଉପଚାରର ପୂଜାରେ ମହାସ୍ନାନ ହେବ । ଅବକାଶ ଖଟୁଲି ନେଇ ଗ୍ରାମୁରେ ରଖିବ । ଶ୍ରୀକପଡ଼ା ରହିବ । ଏଥିରେ ଆବାହନ ହୋଇବେ । ମହାସ୍ନାନ ପରେ ମଇଲମ ହେବ । ନୂଆ ଲୁଗା ଲଗି ହେବ । ଏ ଉତ୍ତାରୁ ସର୍ବାଙ୍ଗ ନିମନ୍ତେ ଆୟୋଜନ ହେବ । ରୂପା ପିଙ୍ଗଣରେ ଚନ୍ଦନ ରହିବ । ଶ୍ରୀକାପଡ଼ା ଘୋଡ଼ା ହେବ । ଛତା, ଘଣ୍ଟା, କାହାଳୀ ବାଜିବ । ବଟମୂଳ ଦ୍ୱାରଦେଇ ଜଗମୋହନ ବାଟେ ଚନ୍ଦନ ଭିତରକୁ ବିଜେ କରାଇବ । ସିଂହାସନରେ ରଖିବ । ସର୍ବାଙ୍ଗ ହେବ ।

କୌମୁଦୀ ଉତ୍ସବ—ଏ ଉତ୍ସବ ଆଶ୍ୱିନ ପୌର୍ଣ୍ଣମୀ ଦିନ ହୁଏ । ଶ୍ରୀ ଶ୍ରୀଜଗନ୍ନାଥଙ୍କୁ ପୂଜା କରି ଆନନ୍ଦରେ ଜଳକ୍ରୀଡ଼ା କରାଇବ । ପୁଷ୍ପ, ମାଲ୍ୟ ଓ ଅନୁଲେପନ ଦ୍ୱାରା ସେବା କରିବ । ପୌର୍ଣ୍ଣମୀ ରାତିରେ ପିଠା ଓ ନଡ଼ିଆ ପ୍ରଭୃତି ଦ୍ରବ୍ୟ ଦ୍ୱାରା ଠାକୁରଙ୍କୁ ଅର୍ଚ୍ଚନା କରିବ ।

କାର୍ତ୍ତିକ ବ୍ରତ—ଆଶ୍ୱିନ ପୌର୍ଣ୍ଣମୀ ପର ଦିନ ପ୍ରାତଃକାଳରୁ କାର୍ତ୍ତିକ ବ୍ରତର ସଙ୍କଳ୍ପ ହେବ । ଶୁକ୍ଳପକ୍ଷ ଏକାଦଶୀ ପର୍ଯ୍ୟନ୍ତ ଏ ବ୍ରତ ଚାଲିଥିବ ।

ଉତ୍ଥାପନ ଉତ୍ସବ—କାର୍ତ୍ତିକ ମାସ ଶୁକ୍ଳ ଏକାଦଶୀ ଦିନ ଏ ଉତ୍ସବ ହୁଏ ବିଧିପୂର୍ବକ ପୂଜାକରି ଜଗନ୍ନାଥଙ୍କୁ ଶଯ୍ୟାରୁ ଉଠାଇବାକୁ ହୁଏ । ଏ ଦିନ ରାତିରେ ଭଗବାନଙ୍କୁ

ଉଠାଇବାକୁ ହେବ । ବେଣୁ, ବୀଣା, ଶବ୍ଦ ହେବ । ଶଙ୍ଖ କାହାଳୀ ପ୍ରଭୃତି ବାଦ୍ୟ ହେବ । ବନ୍ଦୀ, ମାଗଧ ଓ ସୂତମାନଙ୍କର ମଙ୍ଗଳସୂଚକ ସ୍ତୁତିଗାନ ହେବ । ନୃତ୍ୟ ମଣ୍ଡପରେ ବଜେ କରାଇବ । ତା ପରେ ଠାକୁରଙ୍କର ସର୍ବାଙ୍ଗରେ ସୁଗନ୍ଧ ତେଲ ମର୍ଦ୍ଦନ କରିବ । ପଞ୍ଚାମୃତ ଓ ନଡ଼ିଆ ପ୍ରଭୃତି ବିବିଧ ଫଳରସରେ ଭଗବାନଙ୍କୁ ସ୍ନାନ କରାଇବ । ସର୍ବାଙ୍ଗରେ ସୁଗନ୍ଧ ଓ ଅଁଳାଚୂର୍ଣ୍ଣ ସହିତ ଯବକଲ୍କ ଲେପନ କରିବ । ତୁଳସୀଚୂର୍ଣ୍ଣ ଦ୍ୱାରା ଘଷିବ । ସୁଗନ୍ଧ ଚନ୍ଦନରେ ସର୍ବାଙ୍ଗ ଲେପନ କରିବ । ପୁଷ୍ପବାସିତ ଓ କର୍ପୂରମିଶ୍ରିତ ଜଳ, କୁଶଜଳ, ରତ୍ନୋଦକ, ଗନ୍ଧୋଦକ, ତୀର୍ଥୋଦକ ଦ୍ୱାରା ଭଗବାନଙ୍କୁ ସ୍ନାନ କରାଇବ । ଚନ୍ଦନ, କୁଙ୍କୁମ, ଅଗୁରୁ, କସ୍ତୁରୀ, କର୍ପୂରଚୂର୍ଣ୍ଣ, ସର୍ବାଙ୍ଗରେ ଲେପିବ । କର୍ପୂରଚୂର୍ଣ୍ଣ ଦ୍ୱାରା ସୁବାସିତ ମାଳତୀମାଳା ଲାଗି କରି ମହା ଉପଚାରରେ ପୂଜା କରିବ । ନୃତ୍ୟଗୀତ ଦ୍ୱାରା ଅବଶିଷ୍ଟ ରାତ୍ରି କଟାଇବ ।

ପ୍ରାବରଣ ଉତ୍ସବ—ମାର୍ଗଶୀର ଶୁକ୍ଳ ପକ୍ଷ ଷଷ୍ଠୀଦିନ ଏ ଉତ୍ସବ ହୁଏ । ପୂର୍ବଦିନ ପଞ୍ଚମୀ ରାତିରେ ପ୍ରାବରଣ ଉତ୍ସବ ପାଇଁ ବସ୍ତ୍ରଗୁଡ଼ିକ ଅଧିବାସ କରିବ । ପରେ ଠାକୁରଙ୍କ ଆଗରେ ଅଷ୍ଟଦଳ ପଦ୍ମ କାଟିବ । ମଣ୍ଡଳ ଦଶଦିଗରେ ଦଶଦିଗପାଳ ତା ପରେ ଗୃହଆଡ଼େ କ୍ଷେତ୍ରପାଳ ଗଣପତି ଚଣ୍ଡ ଓ ପ୍ରଚଣ୍ଡଙ୍କ ପୂଜା କରିବ । ପରେ ମଣ୍ଡଳ ଭିତରେ ବସ୍ତ୍ର ରଖିବା ପାଇଁ ଗୋଟିଏ ପାତ୍ର ଥୋଇବ । ପ୍ରୋକ୍ଷଣ କରିବ । ବସ୍ତ୍ର ଦ୍ୱାରା ତାକୁ ଘୋଡ଼ାଇବ । ତା ପରେ ସେ ପାତ୍ର ଭିତରେ ଗନ୍ଧ ଦ୍ରବ୍ୟରେ ସୁବାସିତ ୨୧ (ଏକୋଇଶିଟି) ଲୁଗା ଥୋଇ ଆଉ ଗୋଟିଏ ଲୁଗା ଦ୍ୱାରା ତାହା ଘୋଡ଼ାଇବ । ଭଗବାନଙ୍କୁ ପୂଜା କରିବ । ନିତ୍ୟ ନୀତି ପ୍ରମାଣେ ସେଦିନ ଠାକୁରଙ୍କ ନୀତି ସରିବ । ତା ଆର ଦିନ ଅରୁଣ ଉଦୟ ହେଲେ ପ୍ରାତଃସନ୍ଧ୍ୟା ପରେ ଭଗବାନଙ୍କୁ ଅର୍ଚ୍ଚନା କରିବ । ଆଉ ଥରେ ବସ୍ତ୍ରଗୁଡ଼ିକୁ ଅର୍ଚ୍ଚନା କରିବ । ଘଣ୍ଟା କାହାଳୀ ବାଜିବ । ଛତି ଧରିବ । ଆଗରେ ପୁଷ୍ପ ବର୍ଷଣ ହେବ । ନୃତ୍ୟ ଗୀତ, ବାଦ୍ୟ ହେବ । ବସ୍ତ୍ରପାତ୍ର ଧରି ପୂଜକ ତିନିବାର ମନ୍ଦିର ପ୍ରଦକ୍ଷିଣ କରିବ । ଠାକୁରଙ୍କୁ ତିନିବାର ପ୍ରଦକ୍ଷିଣ କରା ହେବା ପରେ ଠାକୁରଙ୍କ ଆବରଣ ବସ୍ତ୍ର କାଢ଼ିବ । ଠାକୁରଙ୍କ ସର୍ବାଙ୍ଗ ହେବ । ସର୍ବାଙ୍ଗରେ ପ୍ରତ୍ୟେକଙ୍କୁ ସାତୋଟି ଲେଖାଏଁ ଶୀତପ୍ରାବରଣ ବସ୍ତ୍ରଦ୍ୱାରା ଘୋଡ଼ାଇବ। କର୍ପୂର ସୁବାସିତ ତାମ୍ବୁଳ ନିବେଦନ କରି ଦୂବ ଓ ଅକ୍ଷତଦ୍ୱାରା ପୂଜା କରିବ ।

ପୁଷ୍ୟାସ୍ନାନ ଉତ୍ସବ—ଯେଉଁ ବର୍ଷ ପୌଷମାସର ପୂର୍ଣ୍ଣିମାରେ ପୁଷ୍ୟା ନକ୍ଷତ୍ର ଯୋଗ ହୁଏ, ସେହିବର୍ଷ ଠାକୁରଙ୍କର ପୁଷ୍ୟାସ୍ନାନ ଉତ୍ସବ ହୁଏ ।

ପୌଷମାସର ଶୁକ୍ଳ ଏକାଦଶୀ ଦିନ ଈଶାନ କୋଣରେ ଏହି କାର୍ଯ୍ୟ ହେବ । ପ୍ରତି ରାତ୍ର ଠାକୁରଙ୍କ ପ୍ରୀତି ପାଇଁ ପୂଜା ହେବ । ନୃତ୍ୟଗୀତ ହେବ ।

ଚତୁର୍ଦ୍ଦଶୀ ରାତିରେ ଏକାଅଶୀଟି କୁମ୍ଭ ଅଧିବାସ ହେବ । ଏକୋଇଶିଟି ଗୁଆଳିଆ ପୂର୍ଣ୍ଣ ଶୁଭପୂର୍ଣ୍ଣ କୁମ୍ଭ ସ୍ଥାପନ ହେବ । ଠାକୁରଙ୍କ ଆଗରେ ସର୍ବତୋଭଦ୍ରମଣ୍ଡଳ ରଚନା କରିବ । ଏହି ମଣ୍ଡଳ ଭିତରେ ଗୋଟିଏ ବଡ଼ ପାତ୍ରରେ ଗୋଟିଏ ସୁନ୍ଦର ଦର୍ପଣ ରଖିବ । ପୂର୍ଣ୍ଣକୁମ୍ଭଗୁଡ଼ିକ ମଣ୍ଡଳ ଭିତରେ ଥୋଇ ଅଧିବାସ କରିବ । ତା ପରେ ବିଧି ପ୍ରମାଣେ ଠାକୁରଙ୍କ ନୀତି ସାରିବ । ପୂର୍ଣ୍ଣିମା ଦିନ ପ୍ରଭାତରେ ଠାକୁରଙ୍କ ଆଗରେ ହୋମ କରିବ । ହଜାରେ ଆହୁତି ଦେବ । ଦର୍ପଣରେ ପ୍ରତିବିମ୍ବିତ ପୁରୁଷୋତ୍ତମଙ୍କୁ ପୂଜା କରିବ । ତା ପରେ ପୁରୁଷସୂକ୍ତ ମନ୍ତ୍ରରେ ଜଳକୁମ୍ଭଗୁଡ଼ିକୁ ମନ୍ତ୍ରାଇବ । ପାବମନୀନାତ୍ମକ ମନ୍ତ୍ର ପାଠ କରି କରି ଅଚ୍ଛିଦ୍ର ଜଳଧାରରେ ଠାକୁରଙ୍କ ସ୍ନାନ କରାଇବ । ତା ପରେ ଶ୍ରୀସୂକ୍ତ ଦ୍ୱାରା ତିନିଦେବତାଙ୍କୁ ସ୍ନାନ କରାଇବ । ଘିଅକୁମ୍ଭଗୁଡ଼ିକୁ 'ଗାୟତ୍ରୀ ମନ୍ତ୍ରରେ ମନ୍ତ୍ରେଇ ମନ୍ତ୍ର ପାଠ କରି କରି ଠାକୁରଙ୍କ ମସ୍ତକ ଉପରେ ଘୃତ ସେଚନ କରାଇବ । ତା ପରେ ଜଗନ୍ନାଥଙ୍କୁ ପଞ୍ଚାମୃତ ଦ୍ୱାରା ସ୍ନାନ କରାଇବ । ତା ପରେ ବୈଷ୍ଣବୀ ମନ୍ତ୍ର ବା ଶଙ୍ଖସୂକ୍ତ ପାଠ କରି ସୁବାସଜଳରେ ଜଗନ୍ନାଥଙ୍କୁ ସ୍ନାନ କରାଇବ । ଶ୍ରୀଅଙ୍ଗରୁ ନିର୍ମାଲ୍ୟ ବାହାର କରିଦେଇ ସର୍ବାଙ୍ଗରେ ସୁଗନ୍ଧ ଚନ୍ଦନ ଲେପନ କରିବ । ଠାକୁରଙ୍କୁ ଅଳଙ୍କାର ଓ ପୁଷ୍ପମାଳା ଲାଗି କରିବ । ଠାକୁରଙ୍କ ପାଖରେ ଚକ୍ରାଦି ଅଷ୍ଟପ୍ରକାର ଆୟୁଧ ସ୍ଥାପନ କରିବ । ଛତ୍ର ଧରିବ । ଲକ୍ଷ୍ମୀ ସହିତ ଭଗବାନଙ୍କୁ ପୂଜା କରିବ । ଶଙ୍ଖଧ୍ୱନି ହେବ । ନୃତ୍ୟଗୀତ ହେବ । ଚାମର ପଡ଼ିବ । ଗୁହ୍ୟୋପନିଷଦ ପାଠ କରି ଠାକୁରଙ୍କ ଚାରିପାଖରେ ଚଉଦ ଥର ପ୍ରଦକ୍ଷିଣ କରିବେ । ଠାକୁରଙ୍କୁ ପୂଜା କରିବ ।

ମକର **ସଂକ୍ରାନ୍ତି**—ସଂକ୍ରାନ୍ତିର ପୂର୍ବ ଦିବସ ସୁନ୍ଦରଭାବରେ ନୂଆ ଶାଳୀ ଚାଉଳ କୁଟା ହୋଇ ଅଧିବାସ କରାଯିବ । ତା ପରେ ଦୂବ, ସୋରିଷ ଓ ଫୁଲ ଦ୍ୱାରା ପୂଜା ଅର୍ଚ୍ଚନା ହେବ । ନୂଆ ଲୁଗା ଦ୍ୱାରା ସେ ଚାଉଳ ପୂର୍ବରୁ ଘୋଡ଼ା ହୋଇଥିବ । ତହିଁଆର ଦିନ ଠାକୁରଙ୍କ ପାଖକୁ ପ୍ରତିମା ନେବ । ଜଗନ୍ନାଥଙ୍କୁ ପୂଜା କରିବ । ଅବଶିଷ୍ଟ ଉପଚାରରେ ପ୍ରତିମାଙ୍କୁ ପୂଜା କରିବ । ପୂଜା ପରେ ଜଗନ୍ନାଥଦେବଙ୍କୁ ଦିଆଯାଇଥିବା ଲୁଗା ଓ ମାଳ ପ୍ରତିମାକୁ ପିନ୍ଧାଇବ । ସେ ପ୍ରତିମାକୁ ଜଗନ୍ନାଥଙ୍କ ଚାରିଆଡ଼େ ତିନି ଥର ପ୍ରଦକ୍ଷିଣ କରାଇବ । ପରେ ବିମାନରେ ବସାଇ ମନ୍ଦିରର ଦ୍ୱାରଠାକୁ ଆଣିବ । ତା ପରେ ଭଗବାନ-ତ୍ରିବିକ୍ରମଙ୍କୁ ତିନି ଥର ଦେଉଳ ଚାରିପଟ ବୁଲାଇବ । ଏହାର ନାମ 'ନବାଙ୍କ ନବଡ଼ା' । ଏହି ପ୍ରଦକ୍ଷିଣ ବେଳେ ମନେ ହେବ ଯେପରି ଭଗବାନ ତ୍ରିପାଦଦ୍ୱାରା ତ୍ରିଲୋକ ଆକ୍ରମଣ ରୂପ ପୂର୍ବଲୀଳାର ଅନୁକରଣ କରୁଛନ୍ତି । ଏ ତିନିବାର ମନ୍ଦିର ବୁଲା ପରେ ଆଉ ଥରେ ଧୀରେ ଧୀରେ ମନ୍ଦିର ପ୍ରଦକ୍ଷିଣ କରାଇବ । ଏ ସମୟରେ ନୃତ୍ୟ, ଗୀତ, ବାଦ୍ୟ, ଧ୍ୱଜ ପତାକା, ଛତ୍ର ବ୍ୟବହାର ହେବ । ତା ପରେ ପୁଣି ସକାଳ ହେଲେ ଜଗନ୍ନାଥଙ୍କୁ ଗନ୍ଧ ଚନ୍ଦନ ଦ୍ୱାରା

ବିଲେପନ କରିବ । ଯଥାବିଧି ବସ୍ତ୍ର ଅଳଙ୍କାର ଓ ମାଲ୍ୟ ଦ୍ୱାରା ବିଭୂଷିତ କରିବ । ଯଥା ଉପଚାରରେ ପୂଜା କରିବ । ପୂର୍ବେ ଅଧିବାସ ହୋଇଥିବା ଚାଉଳରେ ଦହି, ଘିଅ, ଖଣ୍ଡ, ନଡ଼ିଆ, ଅଦା ମିଶାଇବ । ସୁନା ଥାଳରେ ଥୋଇବ । ଛତ୍ରଧର ମନ୍ଦିର ଚାରିଆଡ଼େ ବୁଲାଇବ । ମହାପ୍ରଭୁଙ୍କ ପାଖକୁ ନେବ । ଗନ୍ଧ ଫୁଲ ଓ ଅକ୍ଷତ ନେଇ ଠାକୁରଙ୍କ ଆଗରେ ପନ୍ତି କ୍ରମରେ ଥୋଇବ । କର୍ପୂରଖଣ୍ଡ ଓ ମରିଚଚୂର୍ଣ୍ଣ ମିଶ୍ରିତ ଶାଳି ଚାଉଳ ବିବିଧ ପ୍ରକାର ପିଠା ଓ ଦଧିକୁମ୍ଭ ନିବେଦନ କରିବ । ପୂର୍ବକାଳରେ ଭଗବାନ କଶ୍ୟପ ଯୁଷ୍ଟିକାର୍ଯ୍ୟ ସମ୍ପାଦନ କରିବା ପରେ ଭଗବାନଙ୍କ ପ୍ରୀତି ଅର୍ଥରେ ଏହି ମହୋତ୍ସବ କରିଥିଲେ । ଏହି ଉତ୍ସବର ପ୍ରତିଦିନ ପାକଶାଳା ସଂସ୍କାର, ବହ୍ନିସଂସ୍କାର ଓ ବୈଶ୍ୱଦେବ ବଳି କର୍ତ୍ତବ୍ୟ ।

ଦୋଳଯାତ୍ରା—ଫାଲ୍‌ଗୁନ ଶୁକ୍ଳ ଦଶମୀଠାରୁ ଆରମ୍ଭ ହୋଇ ପୌର୍ଣ୍ଣମୀ ପର୍ଯ୍ୟନ୍ତ ଦୋଳଯାତ୍ରା ହୁଏ । ପ୍ରତିଦିନ ସନ୍ଧ୍ୟାଧୂପ ପରେ ଏ ଯାତ୍ରା ଆରମ୍ଭ ହେବ । ପଞ୍ଚପାଣ୍ଡବ (ଲୋକନାଥ, ଯମେଶ୍ୱର, ମାର୍କଣ୍ଡେଶ୍ୱର, ନୀଳକଣ୍ଠ, କପାଳମୋଚନ) ବଡ଼ ଦେଉଳ ସାମନାକୁ ଆସିବେ । ଜଗନ୍ନାଥ ପ୍ରତିମୂର୍ତ୍ତି ଗୋବିନ୍ଦ ବିମାନରେ ବସିବେ । ଲକ୍ଷ୍ମୀ, ସରସ୍ୱତୀ ମଧ୍ୟ ବିମାନରେ ବସିବେ । ଗୀତ, ବାଦ୍ୟ, ଚାମର, ଆଲଟ ପ୍ରଭୃତି ସହିତ ବଡ଼ଦାଣ୍ଡ ବାଟେ ଜଗନ୍ନାଥବଲ୍ଲଭ ମଠର ଦ୍ୱାର ପର୍ଯ୍ୟନ୍ତ ଯିବେ । ସେଠାରୁ ବଡ଼ ଦେଉଳକୁ ଫେରିଆସିବେ । ଦୋଳବେଦୀର ଆଗ୍ନେୟ କୋଣରେ ବହ୍ନିଉତ୍ସବ ହେବ । ପୂର୍ଣ୍ଣମୀ ଦିନ ଦୋଳବେଦୀ ସଜା ହୋଇଥିବ । ଗୋବିନ୍ଦ, ଲକ୍ଷ୍ମୀ, ସରସ୍ୱତୀଙ୍କ ସହି ବିମାନରେ ସକାଳୁ ବିଜେ ହେବେ । ଦୋଳବେଦୀରେ ଝୁଲୁଥିବା ହାତୀଦାନ୍ତ ଦୋଳିରେ ବସିବେ । ଫଗୁ ଶ୍ରୀଅଙ୍ଗରେ ବୋଳା ହେବ । ଆମ୍ବକଷି ଠାକୁରଙ୍କ ଠାରେ ଅର୍ପଣ ହେବ । ବାଲଭୋଗ, ଛତ୍ରଧର ଧୂପ ହେବ । ସନ୍ଧ୍ୟାବେଳେ ଠାକୁର ମନ୍ଦିରକୁ ଫେରିବେ ।

ଦମନଭଞ୍ଜିକା ଉତ୍ସବ—ଚୈତ୍ରମାସ ଶୁକ୍ଳପକ୍ଷ ତ୍ରୟୋଦଶୀ ଦିନ ଦମନକ (ଦଣା, ଦବଣା) ମୂଳ ଥାଇ ଆଣିବ । ଜଗନ୍ନାଥଙ୍କ ଆଗରେ ବାଲୁକା ମଣ୍ଡପଟିଏ କରିବ । ମଣ୍ଡପର ମଧ୍ୟ ସ୍ଥାନ ଛାଡ଼ିଦେଇ ଚାରିଆଡ଼େ ସେହି ତୃଣ ରୋପଣ କରିବ । ମଝିରେ ସୁନ୍ଦର ପଦ୍ମମଣ୍ଡଳ କରିବ । ତା ଭିତରେ ଲକ୍ଷ୍ମୀ ଓ ସତ୍ୟଭାମାଙ୍କ ସହିତ ପ୍ରତିପୂଜିତ ବିଷ୍ଣୁ ପ୍ରତିମା ସ୍ଥାପନପୂର୍ବକ ଯଥାବିଧି ପୂଜା କରିବ । ଏହା ଅର୍ଦ୍ଧରାତ୍ରିଠାରେ କରଣୀୟ । କାରଣ ପୂର୍ବେ ଭଗବାନ ନିଶୀଥ ସମୟରେ ଦମନାସୁରକୁ ଦଳିତ କରି ପରମ ପ୍ରୀତି ଲାଭ କରିଥିଲେ ଏବଂ ଏହି ତୃଣ ସେହି ଅସୁରର ଶରୀରରୁ ଜାତ ହୋଇଥିଲା । ଜଗନ୍ନାଥଙ୍କୁ ପ୍ରାର୍ଥନା କରି ଆଗରେ ଦଅଣାକୁ ରଖିଦେବ । ତା ପରେ ନୃତ୍ୟଗୀତ ଦ୍ୱାରା ଅବଶିଷ୍ଟ ରାତି କଟାଇବ । ସୂର୍ଯ୍ୟୋଦୟ ହେଲେ ପ୍ରତିମାଙ୍କୁ ସେହି ତୃଣ ସହିତ

ଜଗନ୍ନାଥଙ୍କ ପାଖକୁ ନେଇଯିବ । ଜଗନ୍ନାଥଙ୍କୁ ପୂର୍ବପରି ବିବିଧ ଉପଚାରରେ ପୂଜା କରିବ । ତା ପରେ ଭଗବାନଙ୍କ ମସ୍ତକରେ ଶୁଭ ଗନ୍ଧଚୂର୍ଣ୍ଣ ପ୍ରଦାନ କରିବ । ଜଗନ୍ନାଥବଲ୍ଲଭ ମଠରେ ଏ ଉତ୍ସବଟି ହେବ ।

ଅକ୍ଷୟ ତୃତୀୟା— ବୈଶାଖ ଶୁକ୍ଳ ପକ୍ଷ ଦ୍ୱିତୀୟା ଦିନ ଅର୍ଦ୍ଧରାତ୍ରି କାଳରେ ମଧ୍ୟସ୍ଥଳରେ ଚୂନ ଲିପାହୋଇ ସୁନ୍ଦର ବେଦୀ କରିବ । ଉପରେ ଚାନ୍ଦୁଆ ଟାଣିବ । ସୁନ୍ଦର ଶ୍ରେଣୀ ଦ୍ୱାରା ସୁଶୋଭିତ ମଣ୍ଡଳ ପ୍ରସ୍ତୁତ କରିବ । ତାର ଚାରିଆଡ଼େ ସୁନ୍ଦର ଧୋବଲୁଗା ଦ୍ୱାରା ଘୋଡ଼ାଇବ । ସେ ଭିତରେ ଭଦ୍ରାସନ କରିବ । ଏ ଭଦ୍ରାସନକୁ ଲୁଗାରେ ଘୋଡ଼ାଇବ । ତା ଉପରେ ସୁନାର ପାତ୍ର ଥୋଇବ । ଏହାର ପଶ୍ଚିମ ଆଡ଼େ ବ୍ରାହ୍ମଣ ଶୁଚିହୋଇ ସୁନ୍ଦର ଆସନରେ ବସି କୃଷ୍ଣଲୌହ ମିଶ୍ରିତ ପାତ୍ରରେ କୋଡ଼ିଏ ପଲ ଘୋରାଚନ୍ଦନ, ଛ ପଲରୁ ଅଧିକ ଅଗୁରୁ, ତହିଁର ଅଧେ କୁଙ୍କୁମ, ତାର ସମାନ ସିନେହ ଏବଂ ସିନେହ ସମାନରେ କସ୍ତୁରୀ ଓ କର୍ପୂର ଚୂର୍ଣ୍ଣ ମିଶାଇ ପଞ୍ଚତୀର୍ଥ ଜଳଦ୍ୱାରା ସବୁ ଏକାଠି କରି ଗୋଳାଇବ । ତା ପରେ ସେଥିରେ ଦି ପଲ ଅଗୁରୁସ୍ନେହ ପକାଇବ । ତା ପରେ ସବୁ ଏକାଠି ଗୋଳାଇ ପୂର୍ବରେ ଥୋଇଥିବା ସୁନାପାତ୍ରରେ ରଖିବ । ତା ପରେ କେତକୀ ପତ୍ରରେ ଘୋଡ଼ାଇବ । ଚୀନବସ୍ତ୍ର ଦ୍ୱାରା ପରିବେଷ୍ଟନ କରିବ । ଗରୁଡ଼ ମୁଦ୍ରା ପ୍ରଦର୍ଶନ କରି ସୋମମନ୍ତ୍ର ପାଠଦ୍ୱାରା ଚନ୍ଦନର ରକ୍ଷା ବିଧାନ କରିବ । ସେହି ମଣ୍ଡଳ ଭିତରେ ଅଧିବାସ କରି ରଖିବା ପରେ ଅରୁଣୋଦୟ କାଳରେ ଜଗନ୍ନାଥଙ୍କ ପାଖକୁ ନେବ । ଶଙ୍ଖ, ଚାମର, ଛତି ସହିତ ଦେଉଳ ଚାରିପଟ ବୁଲାଇ ଠାକୁରଙ୍କ ଆଗରେ ଥୋଇବ । ଠାକୁରଙ୍କୁ ପୂଜା କରିବ । ଆବରଣ ବସ୍ତ୍ର ଉଠାଇବ । ଦିବ୍ୟ-ଦୃଷ୍ଟି ଦ୍ୱାରା ଅବଲୋକନ ମନ୍ତ୍ରରାଜ ଦ୍ୱାରା ପ୍ରୋକ୍ଷଣ, ତାଡ଼ନାଦି ଦ୍ୱାରା ସଂସ୍କାର ଏବଂ ଗନ୍ଧପୁଷ୍ପ ଓ ଅକ୍ଷତ ଦ୍ୱାରା ଅର୍ଚ୍ଚନା କରି ଶ୍ରୀସୂକ୍ତ ପାଠ କରି ମୃଦୁ ଭାବରେ ଧୀରେ ଧୀରେ ଭଗବାନଙ୍କ ଅଙ୍ଗରେ ଲେପନ କରିବ । ତୃତୀୟା ତିଥିର ପ୍ରଥମ ଭାଗରେ ଏହି ଚନ୍ଦନ-ଲାଗି କାର୍ଯ୍ୟ ହେବା ବିଧି । ତା ପରେ ନାନାବିଧ ସୂକ୍ଷ୍ମ ବସ୍ତ୍ର, ମାଲ୍ୟ, ଭୋଜ୍ୟ ଭକ୍ଷ୍ୟ, ପେୟ ଏବଂ ଗବ୍ୟ ଦ୍ରବ୍ୟସମ୍ଭୂତ ନାନାପ୍ରକାର ସୁସ୍ୱାଦ ଓ ଶୁଭ ଖାଦ୍ୟଦ୍ରବ୍ୟ ଓ କର୍ପୂର ସୁବାସିତ ତାମ୍ବୂଳ ଦ୍ୱାରା ପୁନର୍ବାର ଜଗନ୍ନାଥ ଦେବଙ୍କୁ ପୂଜା କରିବ ।

ଚନ୍ଦନ ଯାତ୍ରା—ବୈଶାଖ ଶୁକ୍ଳପକ୍ଷ ତୃତୀୟା ଦିନ ଆରମ୍ଭ ହୋଇ ଜ୍ୟେଷ୍ଠ କୃଷ୍ଣପକ୍ଷ ଅଷ୍ଟମୀରେ ଶେଷ ହୁଏ । ଏହି ଯାତ୍ରା ଏକୋଇଶ ଦିନ ହୁଏ । ପ୍ରତିଦିନ ଦୁଇ ପ୍ରହର ଭୋଗ ପରେ ଯାତ୍ରାଭୋଗ ହୁଏ । ପରେ ମହାପ୍ରଭୁଙ୍କର ପ୍ରତିମୂର୍ତ୍ତି ରାମକୃଷ୍ଣ ପାଲିଙ୍କିରେ ମଦନମୋହନ, ଲକ୍ଷ୍ମୀ ଓ ଧରାଦେବୀଙ୍କ ସହିତରେ ନରେନ୍ଦ୍ର ପୋଖରୀକୁ ଯାଆନ୍ତି । ଆଗରେ ରାମକୃଷ୍ଣ ପରେ ମଦନମୋହନ ପରେ ଲକ୍ଷ୍ମୀ ତାଙ୍କ ପରେ ଧରାଦେବୀ ଆଗପଛ ହୋଇ ଯାଆନ୍ତି । ତାଙ୍କ ପଛରେ ପଞ୍ଚମହାଦେବମାନଙ୍କର ବିମାନ ଯାଏ ।

ବଡ଼ ଦାଣ୍ଡରେ ସ୍ଥାନେ ସ୍ଥାନେ ଘୁମୁଣ୍ଟିଆ ତିଆରି ହୋଇଥାଏ । ଏହି ଘୁମୁଣ୍ଟିଆଗୁଡ଼ିକ ନାନାପ୍ରକାର ଫୁଲଫଳରେ ମଣ୍ଡିତ କରାଯାଇଥାଏ । ଏହି ଘୁମୁଣ୍ଟିଆ ତଳେ ଠାକୁରମାନେ ବିଶ୍ରାମ ନିଅନ୍ତି । ରାସ୍ତାରେ ବହୁତ ଜାଗାରେ ପନ୍ତି ଭୋଗ ହୁଏ । ନରେନ୍ଦ୍ର ପୁଷ୍କରିଣୀ ପାଖରେ ପ୍ରବେଶ ହେବାକ୍ଷଣି ଚାପରେ ବସନ୍ତି । ଦୁଇଟି ନୌକାରେ ଗୋଟିଏ ଚାପ ହୁଏ । ଏହାର ଚାରିଆଡ଼େ ଚାରୋଟି ଖମ୍ବ ଥାଏ । ଏହା ଉପରେ ମଣ୍ଡପ ତିଆରି ହୋଇଥାଏ । ଚାନ୍ଦୁଆ ଓ ନାନା ପ୍ରକାର ଦ୍ରବ୍ୟ ଦ୍ୱାରା ସଜା ହୋଇଥାଏ । ଦୁଇଟି ଚାପ ତିଆରି ହୋଇଥାଏ । ଗୋଟିଏ ଚାପ ଧୋବ ଲୁଗା ଦ୍ୱାରା ସଜା ହୋଇଥାଏ । ସେଥିରେ ମଦନମୋହନ, ଲକ୍ଷ୍ମୀ ଓ ଧରାଦେବୀ ବସନ୍ତି । ଆର ଚାପରେ ରଙ୍ଗଲୁଗା ମଣ୍ଡନ କରାଯାଇଥାଏ । ସେଥିରେ ରାମକୃଷ୍ଣ ଓ ପଞ୍ଚମହାଦେବ ବିଜେ କରନ୍ତି । ପ୍ରଥମ ଚାପରେ ଦେବଦାସୀ, ଦ୍ୱିତୀୟ ଚାପରେ ଗୋଟିପୁଅ ନାଚନ୍ତି । ଦିବସରେ ଚାପ ଦୁଇଟିକୁ ଥରେ, ରାତିରେ ତିନି ଥର ବୁଲାହୁଏ । ଚାପ ଆଗରେ ଅନ୍ୟ ଏକ ନୌକାରେ ନାନାବିଧ ବାଦ୍ୟ ବଜାନ୍ତି । ଚନ୍ଦନ ମଣ୍ଡପରେ ଠାକୁରମାନଙ୍କ ପାଇଁ ସ୍ୱତନ୍ତ୍ର ଚନ୍ଦନ କୁଣ୍ଡ ତିଆରି ହୋଇଥାଏ । ଦିବସ ଚାପ ପରେ ଠାକୁରମାନଙ୍କୁ ନିଜ ନିଜ ଚନ୍ଦନ କୁଣ୍ଡରେ ବିଜେ କରାଇ ଜଳକ୍ରୀଡ଼ା କରାଯାଏ । ପ୍ରାୟ ତିନି ଦଣ୍ଡ କାଳ ଏ ଜଳକ୍ରୀଡ଼ା ହୁଏ । ଏ ଜଳକ୍ରୀଡ଼ା ପରେ ମହାପ୍ରଭୁମାନଙ୍କ ବେଶକରାଇ ରାତି ଚାପ କରାଯାଏ । ରାତି ଚାପ ପରେ ଠାକୁରମାନେ ମନ୍ଦିରକୁ ଫେରିଆସନ୍ତି । ଦଶ ଦିନ ପର୍ଯ୍ୟନ୍ତ ରାତି ଚାପ ହୁଏ । ଏଗାର ଦିନଠାରୁ ଠାକୁରଙ୍କର ବେଶ ପରିବର୍ତ୍ତନ ହୁଏ । ଏହି ଶେଷ ଦଶ ଦିନରେ କୃଷ୍ଣାବତାର ବେଶ ହୁଏ । ମନ୍ଦିରଠାରୁ ଚନ୍ଦନ ପୋଖରୀ ପର୍ଯ୍ୟନ୍ତ ଏ ରାସ୍ତାରେ ଛଅଟି ଜାଗାରେ ଦେବଦାସୀ ଓ ନର୍ତ୍ତକ ବାଳକମାନେ ପ୍ରଭୁଙ୍କ ଆଗରେ ନୃତ୍ୟ କରନ୍ତି । ଶେଷଦିନ ଏକୋଇଶି ଥର ଚାପ ବୁଲି ଉତ୍ସବ ହୁଏ ।

ସ୍ନାନଯାତ୍ରା ବା ସ୍ନାନପୌର୍ଣ୍ଣମୀ—ଏହି ଯାତ୍ରା ଜ୍ୟେଷ୍ଠ ପୂର୍ଣ୍ଣିମା ଦିନ ହୁଏ । ଏହାର ପୂର୍ବଦିନ ଠାକୁରମାନଙ୍କ ସ୍ନାନ ପାଇଁ ଜଳ ଅଧିବାସ ହୋଇ ରହିଥିବ । ପୂର୍ଣ୍ଣିମା ଦିନ ସକାଳୁ ବଳଭଦ୍ର, ସୁଭଦ୍ରା, ଜଗନ୍ନାଥ ଓ ସୁଦର୍ଶନଙ୍କୁ ସ୍ନାନବେଦୀକୁ ଆଣି ସ୍ନାନ କରାଯାଏ । ଜଗନ୍ନାଥ ଗଣେଶ ବେଶ ହୁଅନ୍ତି । ବେଦୀରେ ଅନ୍ନ ଓ ପିଠା ଭୋଗ ହୁଏ । କୂଅର ପାଣିରେ ସ୍ନାନ ହୁଏ । ସନ୍ଧ୍ୟାରେ ଠାକୁରମାନେ ବଡ଼ଦେଉଳକୁ ଫେରି ଆସନ୍ତି । ଅଣସର ଘରେ ଠାକୁରମାନଙ୍କୁ ରଖାଯାଏ । ଆଷାଢ଼ କୃଷ୍ଣ ପ୍ରତିପଦଠାରୁ ଅମାବାସ୍ୟା ପର୍ଯ୍ୟନ୍ତ ଠାକୁରମାନେ ଅଣସର ଘରେ ରହିଥାନ୍ତି । ଏହି ସମୟରେ ଠାକୁରମାନଙ୍କୁ ଜ୍ୱର ହୋଇଛି ବୋଲି କଳ୍ପନା କରାଯାଇ ପ୍ରତିଦିନ ଔଷଧ ବ୍ୟବସ୍ଥା ହୁଏ । ଅଣସର ଘରର ତାଟିରେ ଠାକୁରମାନଙ୍କର ଏକ ଚିତ୍ରପଟ ରଖାଯାଇଥାଏ ।

ଏହି ଚନ୍ଦ୍ର ( ବା ପତି )ଙ୍କୁ ଅର୍ଚ୍ଚନା କରି ଭୋଗ ପ୍ରଭୃତି ହୁଏ । ଏହି ଅନବସର ସମୟରେ ପ୍ରଭୁଙ୍କର ଦର୍ଶନ ନିଷିଦ୍ଧ । ଏହି ପନ୍ଦର ଦିନ ଭିତରେ ପ୍ରତିଦିନ ନିୟମ ଅନୁସାରେ ଶ୍ରୀଅଙ୍ଗ ସଂସ୍କାର ହୁଏ । ଅମାବାସ୍ୟା ସକାଳ ଠାକୁରମାନଙ୍କର ଚନ୍ଦ୍ର କାମ ଶେଷ ହୋଇଯାଇଥାଏ । ସେହି ଦିନ "ନବ ଯୌବନ" ଦର୍ଶନ ହୁଏ । ପ୍ରତିପଦ ଦିନ ଠାକୁରମାନଙ୍କର ନେତ୍ରୋତ୍ସବ ହୁଏ ।

**ରଥଯାତ୍ରା**— ଏହି ଯାତ୍ରାଟି 'ରଥଯାତ୍ରା' ପରିଚ୍ଛେଦରେ ବର୍ଣ୍ଣିତ ହୋଇଛି ।

## ପର୍ବପର୍ବାଣୀ

ସାଧାରଣରେ ଲୋକେ କହନ୍ତି, ଜଗନ୍ନାଥ ମନ୍ଦିରରେ ବାର ମାସରେ ତେର ଯାତ ହୁଏ । କିନ୍ତୁ ପ୍ରକୃତରେ ଏହାଠାରୁ ବହୁ ବେଶିସଂଖ୍ୟାରେ ଯାତ୍ରା ହେଉଛି । ଶ୍ରେଷ୍ଠ ବଡ଼ ହୋଇ ପ୍ରାୟ ୪୦ଟି ଯାତ୍ରା ହେଉଥିବା ଦେଖାଯାଏ ।

ବାର ମାସରେ ତେର ଯାତ୍ରା ହେଉଥିବା ପ୍ରବାଦ ଥିଲେ ହେଁ ଦ୍ୱାଦଶଟି ପ୍ରଧାନ ଥିବା ବାକ୍ୟମାନଙ୍କରୁ ମିଳୁଛି । ଏ ସମ୍ପର୍କରେ ଏହି ଶ୍ଳୋକଟି ପ୍ରମାଣସ୍ୱରୂପ ଉଦ୍ଧାର କରାଯାଇଥାଏ—

ମଞ୍ଚେସ୍ନାନ ରଥବରଗତ ଶୟନଗୃତ୍ଥନଦ୍ୱଯ୍ୟଂ
ପାର୍ଶ୍ୱାବୃତ୍ତି ଶୟନବୃତ୍ତି ପର୍ବଣ ପୁଷ୍ୟପୂଜା
ଦୋଲକେଳି, ଦମନକମୋହଂଗୃକ୍ଷପୂର୍ଣ୍ଣିତୃତୀୟା
ଏସାଂ ଯାତ୍ରା ଭୁବନବନ୍ଦିତା ଦ୍ୱାଦଶେସ୍ୟଂ ନରେନ୍ଦ୍ର ।

(୧) ସ୍ନାନ ପୂର୍ଣ୍ଣିମୀ, (୨) ରଥଯାତ୍ରା, (୩) ଶୟନ, (୪) ଅୟନ, (୫) ପାର୍ଶ୍ୱ ପରିବର୍ତ୍ତନ, (୬) ଉତ୍ଥାନ, (୭) ପାବଣ, (୮) ପୁଷ୍ୟପୂଜା, (୯) ଦୋଲକେଳି, (୧୦) ଦମନକ ଚତୁର୍ଦ୍ଦଶୀ (୧୧) ଅକ୍ଷପୂର୍ଣ୍ଣିମା (୧୨) ଅକ୍ଷୟ ତୃତୀୟା ।

କେତେକ ବାର୍ଷିକ ପାଞ୍ଜିରେ ଶ୍ରୀଜଗନ୍ନାଥଙ୍କ ଯାତ୍ରାର ନାମ ଏପରି ଦେଖାଯାଏ:—

(୧) ଅକ୍ଷୟ ତୃତୀୟା—ବୈଶାଖ ଶୁକ୍ଳ ତୃତୀୟା
(୨) ସ୍ନାନଯାତ୍ରା—ଜ୍ୟେଷ୍ଠ ପୂର୍ଣ୍ଣିମା
(୩) ଶ୍ରୀଗୁଣ୍ଡିଚା—ଆଷାଢ଼ ଶୁକ୍ଳଦ୍ୱିତୀୟା
(୪) କର୍କଟ ସଂକ୍ରାନ୍ତି—ଶ୍ରାବଣ କୃଷ୍ଣ ଦଶମୀ

(୫) ଝୁଲଣଯାତ୍ରା—ଶ୍ରାବଣ ଶୁକ୍ଳ ଏକାଦଶୀ
(୬) ପାର୍ଶ୍ୱପରିବର୍ତ୍ତନ—ଭାଦ୍ର ଶୁକ୍ଳ ଏକାଦଶୀ
(୭) ଦେବୋତ୍ଥାପନ—କାର୍ତ୍ତିକ ଶୁକ୍ଳ ଏକାଦଶୀ
(୮) ପ୍ରାବରଣ ଷଷ୍ଠୀ—ପୌଷ ଶୁକ୍ଳ ଷଷ୍ଠୀ
(୯) ପୁଷ୍ୟାଭିଷେକ—ପୌଷ ପୂର୍ଣ୍ଣିମା
(୧୦) ମକର ସଂକ୍ରାନ୍ତି—ମାଘ
(୧୧) ଦୋଳଯାତ୍ରା—ଫାଲ୍‌ଗୁନ ପୂର୍ଣ୍ଣିମା,
(୧୨) ଦମନକ ଚତୁର୍ଦ୍ଦଶୀ—ଦଅଣା ଚୋରି ( ବା ଲାଗି )—
ଚୈତ୍ର ଶୁକ୍ଳତ୍ରୟୋଦଶୀ ଓ ଚତୁର୍ଦ୍ଦଶୀ ।

ବର୍ତ୍ତମାନ ମନ୍ଦିରରେ ବଳେ ହୋଇଥିବା ଠାକୁରମାନଙ୍କର ବାହ୍ୟ "ସଂଗୃହଯାତ୍ରା" ପ୍ରଚଳିତ ଅଛି । ପ୍ରତ୍ୟେକ ଯାତ୍ରାରେ ବିସ୍ତୃତ ଭାବରେ ନୀତି ଓ ଭୋଗ ହୁଏ ।

(୧) ଦେବସ୍ନାନପୂର୍ଣ୍ଣିମା—ଜ୍ୟେଷ୍ଠ ପୂର୍ଣ୍ଣିମା

(୨) ଅଣସର ନୀତି—(ଚକାବିଜେ, ଚନ୍ଦନଲାଗି, ଅଣସର ଦ୍ୱାଦଶୀ ନୀତି, ଘଣାଲାଗି, ଖଡ଼ିଲାଗି, ଖଲିଲାଗି, ଶ୍ରୀପୟର ପୂଜା, ଚକା ଅପସରଲାଗି)—ଦେବସ୍ନାନ ପୂର୍ଣ୍ଣିମାଠାରୁ ଆଷାଢ଼ ଅମାବାସ୍ୟା ପର୍ଯ୍ୟନ୍ତ ହୁଏ ।

(୩) ନବକଳେବର ଓ ମହା ଅଣସର—ଏହି ନୀତି ଗୋପନୀୟ; କିନ୍ତୁ ୧୮୦୫ ମସିହାରେ ପ୍ରଦତ୍ତ ଗ୍ରୋମ୍ ସାହେବଙ୍କ ରିପୋର୍ଟରେ ନିମ୍ନଲିଖିତ ବିବରଣୀ ଇତିପୂର୍ବରୁ ପ୍ରକାଶିତ ହୋଇଥିବାରୁ ସାଧାରଣଙ୍କ କୌତୂହଳ ନିବାରଣ ନିମନ୍ତେ ତାହା ଏଠାରେ ଉଦ୍ଧୃତ କରାଗଲା—

(କ) ଏହି ବିବରଣୀ କେତେଦୂର ନିର୍ଭରଯୋଗ୍ୟ ତାହା ଜାଣିବାର ଉପାୟ ନାହିଁ ।

"ଯେଉଁ ବର୍ଷ ଦୋ-ଆଷାଢ଼ୀ ପଡ଼େ, ସେ ବର୍ଷ ଠାକୁରଙ୍କ ଶ୍ରୀଅଙ୍ଗ ଫିଟା ହୁଏ ଏବଂ ଶ୍ରୀବିଗ୍ରହ ସର୍ବତୋଭାବେ ପରୀକ୍ଷା କରାଯାଏ । ଯଦି କୌଣସି ଅଙ୍ଗ ବିଶେଷ ଦରଜଗମ ହୋଇଥାଏ, ତେବେ ଶ୍ରୀବିଗ୍ରହ ମଧ୍ୟସ୍ଥିତ ବ୍ରହ୍ମ ସଂରକ୍ଷଣ ନିମନ୍ତେ ନୂତନ କଳେବର ନିର୍ମାଣ ଆବଶ୍ୟକ ହୁଏ । ଯେଉଁ ପତିମାନେ ନୂତନ ମୂର୍ତ୍ତିମଧ୍ୟକୁ ବ୍ରହ୍ମ ପଦାର୍ଥ ସ୍ଥାନାନ୍ତରିତ କରନ୍ତି, ସେମାନଙ୍କ ଆଖିରେ ଅନ୍ଧପୋଟଳି ବାନ୍ଧି ଦିଆଯାଏ ଏବଂ ତହିଁ ଉପରେ ପରୀଚ୍ଛାମାନଙ୍କର ମୁଦି ବା ମୋହର ଅଙ୍କିତ କରି ଦିଆଯାଏ । ଏହି ବ୍ରହ୍ମ-

ପଦାର୍ଥ ପ୍ରକୃତରେ କି ବସ୍ତୁ, ତାହା କେହି ଜାଣନ୍ତି ନାହିଁ, କିନ୍ତୁ ବ୍ରହ୍ମ ଏହା ସ୍ଥାପନ କରିଥିଲେ ବୋଲି ଶାସ୍ତ୍ରରେ ଉଲ୍ଲେଖ ଅଛି । କଥିତ ଅଛି ଯେ ଏହି ଅନ୍ଧପୋଟଳି ଖୋଲିବାକୁ ଚେଷ୍ଟା କରିଥିବାରୁ ଜଣେ ଦଇତା ତତ୍‌କ୍ଷଣାତ୍ ଅନ୍ଧ ହୋଇ ଯାଇଥିଲା ଏବଂ ଏହି ବ୍ରହ୍ମପଦାର୍ଥ ଯେଉଁ ଦଇତାପତିମାନେ ବିରହାନ୍ତରେ କରନ୍ତି, ସେମାନେ କେତେଦିନ ପରେ ମରିଯାନ୍ତି ଓ ସେଥିଯୋଗେ ସେମାନେ ବହୁପରିମାଣ ଲାଖରାଜ ଜମି ଭୋଗ କରନ୍ତି—ଏହା ମଧ୍ୟ ପ୍ରବାଦ ଅଛି" ।

(୪) ଆଷାଢ଼ ଅମାବାସ୍ୟା ଓ ନେତ୍ରୋତ୍ସବ ଦିନ ଯାତ୍ରୀମାନେ ନବଯୌବନ ଦର୍ଶନ କରନ୍ତି । ବିଶେଷତଃ ପୂର୍ବବର୍ତ୍ତୀ ପନ୍ଦର ଦିନ ମଧ୍ୟରେ ଆଉ ଠାକୁରଙ୍କ ଦର୍ଶନ ମିଳିବ ନାହିଁ ବୋଲି ଏହି ସମୟରେ ଦର୍ଶନାର୍ଥୀମାନଙ୍କର ଅତ୍ୟଧିକ ଭିଡ଼ ହୋଇଥାଏ ।

(୫) ରଥଯାତ୍ରା ବା ଶ୍ରୀଗୁଣ୍ଡିଚା—ଆଷାଢ଼ ଶୁକ୍ଳ ଦ୍ୱିତୀୟା ।

(୬) ହେରାପଞ୍ଚମୀ—ଶ୍ରୀଗୁଣ୍ଡିଚାକୁ ମିଶାଇ ରଥଯାତ୍ରାର ପଞ୍ଚମୀ ଦିନ ଲକ୍ଷ୍ମୀ-ଠାକୁରାଣୀ ମହାପ୍ରଭୁଙ୍କ ଦର୍ଶନ ନିମନ୍ତେ ଗୁଣ୍ଡିଚାଘରକୁ ଯାଆନ୍ତି ।

(୭) ଗୁଣ୍ଡିଚାଘର ନବଦିନ ଯାତ୍ରା—ଗୁଣ୍ଡିଚାଘରେ ଠାକୁରଙ୍କ ଅବସ୍ଥିତି ସମୟରେ ଏହି ଯାତ୍ରା ବା ନୀତି ଅନୁଷ୍ଠିତ ହୁଏ ।

(୮) । ବାହୁଡ଼ାଯାତ୍ରା—ଆଷାଢ଼ ଶୁକ୍ଳ ଦଶମୀ ।

(୯) ଶୟନ ଏକାଦଶୀ—ଆଷାଢ଼ ଶୁକ୍ଳ ଏକାଦଶୀ ।

(୧୦) ଗରୁଡ଼ ଶୟନ ଦ୍ୱାଦଶୀ—ଆଷାଢ଼ ଶୁକ୍ଳ ଦ୍ୱାଦଶୀ ।

(୧୧) କର୍କଟ ସଂକ୍ରାନ୍ତି ।

(୧୨) ଚିତାଲାଗି—ଶ୍ରାବଣ ଅମାବାସ୍ୟା । ଯେଉଁ ସ୍ୱର୍ଣ୍ଣ ଓ ମଣିଖଚିତ ଚିତା ସ୍ନାନପୂର୍ଣ୍ଣିମା ସମୟରେ ଉଲଗି କରାଯାଏ, ତାହା ଠାକୁରମାନେ ଏହି ଅମାବାସ୍ୟା ଦିନ ପୁଣି ଲାଗି ହୁଅନ୍ତି ।

(୧୩) ଝୁଲଣଯାତ୍ରା—ଶ୍ରାବଣ ଶୁକ୍ଳ ନବମୀଠାରୁ ମଦନମୋହନ ଓ ଲକ୍ଷ୍ମୀ ସରସ୍ୱତୀ ପ୍ରତିମାମାନଙ୍କୁ ନେଇ ଝୁଲଣମଣ୍ଡପସ୍ଥିତ ଦୋଳାରେ ରଖାଯାଏ ଏବଂ ବିଶେଷ ଯାତ୍ରୀ ସମାଗମ ହୁଏ ।

(୧୪) ଗହ୍ମାପୂର୍ଣ୍ଣିମା ବା ବଳଭଦ୍ରଜନ୍ମ—ଶ୍ରାବଣପୂର୍ଣ୍ଣିମୀ ଦିନ ରକ୍ଷୀବନ୍ଧନ ଓ ବଳରାମଙ୍କ ଜନ୍ମନୀତି ପ୍ରତିପାଳିତ ହୁଏ ଏବଂ ଠାକୁରମାନେ ସୁନା ଓ ପାଟସୂତା ରକ୍ଷୀ ପରିଧାନ କରନ୍ତି ।

(୧୪ କ) ରାହୁରେଖା-ଲାଗି—ଠାକୁର ରାହୁରେଖା ପିନ୍ଧନ୍ତି ।

(୧୫) କୃଷ୍ଣଜନ୍ମ—ଭାଦ୍ରବ କୃଷ୍ଣଅଷ୍ଟମୀ; ଏ ଦିନ କୃଷ୍ଣଜନ୍ମ ବିଧି ପାଳିତ ହୁଏ ।

(୧୬) ନନ୍ଦୋତ୍ସବ—କୃଷ୍ଣଜନ୍ମ ପରଦିନ କୃଷ୍ଣଙ୍କ ପିତା ନନ୍ଦ କୃଷ୍ଣଜନ୍ମ ଉପଲକ୍ଷେ ଉତ୍ସବ କରୁଥିବା ବିଷୟକ ନୀତି ଅଭିନୀତ ହୁଏ ।

(୧୭) କୃଷ୍ଣଲୀଳା—ନନ୍ଦୋତ୍ସବ ପରେ କୋଳିବିକା, ବନଭୋଜିବେଶ, ପ୍ରଲମ୍ବାସୁରବଧ, କାଳୀୟଦଳନ ଏକାଦଶୀ ପ୍ରଭୃତି ନାନାବିଧ କୃଷ୍ଣଲୀଳା ସମ୍ବନ୍ଧୀୟ ନୀତି ଅଭିନୀତ ହୁଏ ।

(୧୮) ସାତପୁରୀ ଅମାବାସ୍ୟା—ଭାଦ୍ର ଅମାବାସ୍ୟା; ଏଦିନ ସାତପୁରୀଁ ତାଡ଼ି ନ ନାମଧେୟ ବହୁ ପରିମିତ ମିଷ୍ଟାନ୍ନ ଭୋଗ ଦିଆଯାଏ ।

(୧୯) ଗଣେଶ ଚତୁର୍ଥୀ—ଭାଦ୍ର ଶୁକ୍ଳ ଚତୁର୍ଥୀ; ଏଦିନ ସରସ୍ୱତୀଙ୍କ ମନ୍ଦିରରେ ପାଣ୍ଡିପୂଜା ହୁଏ ଏବଂ ସବୁ ଗଣେଶ ମନ୍ଦିରରେ ପୂଜା ହୁଏ ।

(୨୦) ରେଖା ପଞ୍ଚମୀ ବା ଋଷିପଞ୍ଚମୀ—ଭାଦ୍ର ଶୁକ୍ଳ ପଞ୍ଚମୀ ।

(୨୧) ରାଧାଷ୍ଟମୀ—ଭାଦ୍ର ଶୁକ୍ଳ ଅଷ୍ଟମୀ—ଏଦିନ ସୁଦର୍ଶନଙ୍କୁ ଗୃହଆଶ୍ରମକୁ ନିଆଯାଇ ନୀତି ସମ୍ପନ୍ନ କରାଯାଏ ।

(୨୨) ବାମନ ଜନ୍ମ ବା ସୁନିଆଁ—ଭାଦ୍ରଶୁକ୍ଳ ଦ୍ୱାଦଶୀ; ଏଦିନ ବାମନ ଜନ୍ମ ସମ୍ବନ୍ଧୀୟ ବିବିଧ ନୀତି ଅନୁଷ୍ଠିତ ହୁଏ ।

(୨୩) ଅନନ୍ତ ଚତୁର୍ଦ୍ଦଶୀ—ଭାଦ୍ରବ ଶୁକ୍ଳ ଚତୁର୍ଦ୍ଦଶୀ; ଏଦିନ ଅନନ୍ତ ବାସୁଦେବଙ୍କ ମନ୍ଦିରରେ ପୂଜା ହୁଏ ।

(୨୪) ଇନ୍ଦ୍ର ଗୋବିନ୍ଦପୂଜା—ଭାଦ୍ରବ ପୂର୍ଣ୍ଣିମା ।

(୨୫) ସହସ୍ର କୁମ୍ଭ ଅଭିଷେକ—ଆଶ୍ୱିନ କୃଷ୍ଣ ଅଷ୍ଟମୀ । ମାଜଣା ମଣ୍ଡପରେ ଶ୍ରୀ ଦୁର୍ଗା ଠାକୁରାଣୀଙ୍କର ଅଭିଷେକ ହୁଏ ଏବଂ ଏହି ଦିନଠାରୁ ବିମଳା ଓ ଅନ୍ୟ ଠାକୁରାଣୀମାନଙ୍କ ମନ୍ଦିରରେ ଷୋଳପୂଜା ଆରମ୍ଭ ହୁଏ ।

(୨୬) ଦ୍ୱିତୀୟାଓଷା—ଲକ୍ଷ୍ମୀଙ୍କ ମନ୍ଦିରରେ ଶ୍ରୀଲକ୍ଷ୍ମୀ ଠାକୁରାଣୀ ଏହି ଓଷା କରନ୍ତି ।

(୨୭) ଦଶହରା—ଆୟୁଧ ପୂଜା—ବିଜୟା ଦଶମୀ ।

(୨୮) କୁମାର ପୂର୍ଣ୍ଣିମା—ଏଦିନ ସେବକମାନେ ଶ୍ରୀ ଜଗନ୍ନାଥ ଓ ଶ୍ରୀଲକ୍ଷ୍ମୀ ଠାକୁରାଣୀଙ୍କ ପ୍ରତିନିଧି ସ୍ୱରୂପ ପଶା ଖେଳନ୍ତି ।

(୨୯) ବାଳଧୂପ—କାର୍ତ୍ତିକ ମାସରେ ଏହି ଧୂପ ହେବାର ମୂଳ ବିବରଣୀ ପୂର୍ବରୁ ଦିଆଯାଇଅଛି ।

(୩୦) ହରିଉତ୍ଥାପନ ଏକାଦଶୀ—କାର୍ତ୍ତିକ ଶୁକ୍ଳ ଏକାଦଶୀ ।
(୩୧) ଗରୁଡ଼ ଉତ୍ଥାପନ ଦ୍ୱାଦଶୀ—କାର୍ତ୍ତିକ ଶୁକ୍ଳ ଦ୍ୱାଦଶୀ ।

(୩୨) ନବାନ୍ନ—ଏହି ଦିନ ନାନାବିଧ ଅଧିକା ଭୋଗ ଦିଆଯାଏ ଏବଂ ଶ୍ରୀ ଜଗନ୍ନାଥଙ୍କର ନକ୍ଷତ୍ର ଦୃଷ୍ଟିରୁ ମନ୍ଦିର ଜ୍ୟୋତିଷ ଏହାରତିଥି ସ୍ଥିର କରନ୍ତି ।

(୩୩) ତୁଳ ସଂକ୍ରାନ୍ତି—ଅନ୍ୟ ସଂକ୍ରାନ୍ତିପରି ଏଦିନ ବଲ୍ଲଭୋଗ ଦିଆଯାଏ ।
(୩୪) ଗୁଡ଼ଖାଇ—ମାର୍ଗଶିର କୃଷ୍ଣ ପ୍ରତିପଦା । ଶ୍ରୀ ଲୋକନାଥ ମନ୍ଦିରରେ ଏହି ନୀତି ହୋଇଥାଏ ।

(୩୫) ଦୀପାବଳୀ—ମାର୍ଗଶିର ଅମାବାସ୍ୟାରେ ଠାକୁରମାନେ ଶ୍ରାଦ୍ଧ ଦିଅନ୍ତି ।
(୩୬) ପ୍ରଥମାଷ୍ଟମୀ—ମାର୍ଗଶିର କୃଷ୍ଣ ଅଷ୍ଟମୀଦିନ ବନ୍ଦାପନା ହୁଏ ।
(୩୭) ଓଢ଼ଣଷଷ୍ଠୀ—ମାର୍ଗଶିର ଶୁକ୍ଳଷଷ୍ଠୀଠାରୁ ଘୋଡ଼ଲାଗି ଆରମ୍ଭ ହୁଏ ।
(୩୮) ବକୁଳ ଅମାବାସ୍ୟା—ପୌଷ ଅମାବାସ୍ୟା; ଏଦିନ ଗଇଣ୍ଠା ପ୍ରଭୃତି ଅଧିକା ଭୋଗ ଦିଆଯାଏ ।

(୩୯) ନବାଙ୍କ ଓ ମକର—ଏଦିନ ମକର ବେଢ଼ା ହୁଏ ।

(୪୦) ପୌଷାଭିଷେକ—ପୌଷପୂର୍ଣ୍ଣିମା; ମନ୍ଦିର ପୁରୋହିତ ପ୍ରଭୃତି ଠାକୁରଙ୍କର ଅଭିଷେକ କରନ୍ତି ଓ ଠାକୁରଙ୍କର ରାଜନୀତି ଓ ରାଜବେଶ ହୁଏ ।

(୪୧) ବସନ୍ତପଞ୍ଚମୀ—ସରସ୍ୱତୀ ମନ୍ଦିରରେ ପାଞ୍ଜି ପୂଜା ହୁଏ ଓ ଘୋଡ଼ଲାଗିରେ ପରିବର୍ତ୍ତନ ହୁଏ ।

(୪୨) ମାଘ ପୂର୍ଣ୍ଣିମୀ—ଏଦିନ ଗଜଉଦ୍ଧାରଣ ବେଶ ହୁଏ ।
(୪୩) ଶିବରାତ୍ରି—ଲୋକନାଥଙ୍କ ମନ୍ଦିର ନିକଟରେ ହରିହର ଭେଟ ହୁଏ ।

(୪୪) ଦୋଳଯାତ୍ରା—ଫାଲ୍‌ଗୁନ ଶୁକ୍ଳଦଶମୀଠାରୁ ଦୋଳପୂର୍ଣ୍ଣିମା ପର୍ଯ୍ୟନ୍ତ ଦୋଳବେଦୀରେ ନାନାପ୍ରକାର ନୀତି ଅନୁଷ୍ଠିତ ହୁଏ ।

(୪୫) ଦୋଳ ଓ ଚନ୍ଦନଯାତ୍ରା ଆରମ୍ଭରେ ଠାକୁରଙ୍କ ଉପରେ ଫଗୁ ପକାଏ ।

(୪୬) ଚୈତ୍ର ଗୁଣ୍ଡିଚା—ଚୈତ୍ର ଶୁକ୍ଳଷଷ୍ଠୀ, କୋଣାର୍କରୁ ଆସିଥିବା ସୂର୍ଯ୍ୟନାରାୟଣଙ୍କ ସୂର୍ଯ୍ୟନାରାୟଣ ମନ୍ଦିରରେ ଯାତ୍ରା ହୁଏ ।

(୪୭) ଅଶୋକାଷ୍ଟମୀ—ଚୈତ୍ର ଶୁକ୍ଳଅଷ୍ଟମୀ । ଭଣ୍ଡାର ଲୋକନାଥ ଠାକୁର ଜାକଜମକରେ ଈଶାଣେଶ୍ବର ମହାଦେବଙ୍କ ନିକଟକୁ ଯାଆନ୍ତି ।

(୪୮) ଶ୍ରୀରାମଜନ୍ମ—ଏହି ଉତ୍ସବ ଚୈତ୍ର ଶୁକ୍ଳନବମୀଠାରୁ କେତେକ ଦିନ ପର୍ଯ୍ୟନ୍ତ ହୁଏ ।

(୪୯) ଦମନକଚୌଦଶ—ଦଅଣା ଲାଗି—ଚୈତ୍ର ଶୁକ୍ଳତ୍ରୟୋଦଶୀ ଓ ଚତୁର୍ଦ୍ଦଶୀ ରାମକୃଷ୍ଣ ଠାକୁର ପାଟୁଆରରେ ଜଗନ୍ନାଥବଲ୍ଲଭକୁ ଯାଆନ୍ତି ଏବଂ ଦଅଣା ନାମକ ଏକପ୍ରକାର ସୁଗନ୍ଧ ଗଛ ଲୁଗାଇ କରି ଆଣନ୍ତି । ତତ୍‌ପରଦିନ ଏହି ଦଅଣା ବହୁ ନୀତି ଅନୁଷ୍ଠାନପୂର୍ବକ ଠାକୁରଙ୍କୁ ଲାଗି କରାଯାଏ ।

(୫୦) ପଣାସଂକ୍ରାନ୍ତି ବା ମହାବିଷୁବ ସଂକ୍ରାନ୍ତି—ଏଦିନ ବିଶେଷ ନୀତିମାନ ସମ୍ପନ୍ନ ହୁଏ । ଏହା ଓଡ଼ିଆ ନବବର୍ଷର ପ୍ରଥମ ଦିନ ।

(୫୧) ଅକ୍ଷୟ ତୃତୀୟା—ବୈଶାଖ ଶୁକ୍ଳ ତୃତୀୟା—ଏହି ଦିନଠାରୁ ଚନ୍ଦନ-ଯାତ୍ରା ଆରମ୍ଭ ହୁଏ । ବାହାର ଚନ୍ଦନ ୨୧ଦିନ ଓ ଭିତର ଚନ୍ଦନ ୨୧ଦିନ ମଧ୍ୟ ଜଳକ୍ରୀଡ଼ା ଚନ୍ଦନଯାତ୍ରାର ଅନ୍ତର୍ଭୁକ୍ତ ।

(୫୨) ନୀଳାଦ୍ରି ମହୋଦୟ—ବୈଶାଖ ଶୁକ୍ଳଅଷ୍ଟମୀ; ଶହେ ମାଠିଆ ପାଣି ମନ୍ତ୍ରପୂତ କରାଯାଇ ଠାକୁରଙ୍କୁ ଉତ୍ସର୍ଗ କରାଯାଏ ।

(୫୩) ନୃସିଂହଜନ୍ମ—ବୈଶାଖ ଶୁକ୍ଳ ଚତୁର୍ଦ୍ଦଶୀ; ନୃସିଂହ ଠାକୁର ପାଟୁଆରରେ ବାହାରନ୍ତି ।

(୫୪) ଶୀତଳଷଷ୍ଠୀ – ଜ୍ୟେଷ୍ଠ ଶୁକ୍ଳ ଷଷ୍ଠୀ; ଦୋଳଗୋବିନ୍ଦ ଠାକୁର ଓ ପଞ୍ଚପାଣ୍ଡବଙ୍କୁ ଲକ୍ଷ୍ମୀମନ୍ଦିରକୁ ନିଆଯାଏ ।

(୫୫) ରାଜେନ୍ଦ୍ରାଭିଷେକ – ଜ୍ୟେଷ୍ଠ ଶୁକ୍ଳଦଶମୀ: ଜଗନ୍ନାଥଙ୍କର ଅଭିଷେକ ହୁଏ ଏବଂ ରୁକ୍ମିଣୀ ବିବାହର ପ୍ରସ୍ତାବ ହୁଏ ।

(୫୬) ରୁକ୍ମିଣୀ ହରଣ – ଜ୍ୟେଷ୍ଠ ଶୁକ୍ଳ ଏକାଦଶୀ; ବିମଳାମନ୍ଦିରରେ ରୁକ୍ମିଣୀ ପୂଜା କରୁଥିବା ସମୟରେ ତାଙ୍କୁ ଜଗନ୍ନାଥମହାପ୍ରଭୁ ହରଣ କରି ଆଣନ୍ତି ଏବଂ ତା ପରେ ଉଭୟଙ୍କର ବିବାହ ହୁଏ । (୧୪୭)

## ବେଶ

ବାର୍ଷିକ ପାଞ୍ଜିମାନଙ୍କରେ ଜଗନ୍ନାଥଦେବଙ୍କର କେତୋଟି ବେଶର ନାମ ଓ ସମୟ ମିଳୁଛି । ଯଥା—

(୧) ହାତୀବେଶ—ଜ୍ୟେଷ୍ଠ ପୂର୍ଣ୍ଣିମା

(୨) ସୁନାବେଶ—ଆଷାଢ଼ ଶୁକ୍ଳ ଏକାଦଶୀ

(୩) ବନଭୋଜି ବେଶ—ଭାଦ୍ର କୃଷ୍ଣ ଦଶମୀ

(୪) କାଳୀୟ ଦମନ ବେଶ—ଭାଦ୍ର କୃଷ୍ଣ ଏକାଦଶୀ

(୫) ପ୍ରଳମ୍ବାସୁର ବଧ ବେଶ—ଭାଦ୍ର କୃଷ୍ଣ ଦ୍ୱାଦଶୀ

(୬) ରାମବଳରାମ ବେଶ—ଭାଦ୍ର ତ୍ରୟୋଦଶୀ

(୭) ବଳବାମନ ବେଶ—ଭାଦ୍ର ଶୁକ୍ଳ ଦ୍ୱାଦଶୀ

[୮) ଶ୍ରୀ ରାଧା ଦାମୋଦର ବେଶ—ଆଶ୍ୱିନ ଶୁକ୍ଳ ଏକାଦଶୀଠାରୁ କାର୍ତ୍ତିକ ଶୁକ୍ଳ ଦଶମୀ ପର୍ଯ୍ୟନ୍ତ ।

(୯) ଠିଆକିଆ ବେଶ—କାର୍ତ୍ତିକ ଶୁକ୍ଳ ଏକାଦଶୀ

(୧୦) ବାଙ୍କଚୂଡ଼ାବେଶ—କାର୍ତ୍ତିକ ଶୁକ୍ଳ ଦ୍ୱାଦଶୀ

(୧୧) ଆଡ଼କିଆ ବେଶ—କାର୍ତ୍ତିକଶୁକ୍ଳ ତ୍ରୟୋଦଶୀ

(୧୨) ଡାଳକିଆ ବେଶ—କାର୍ତ୍ତିକ ଶୁକ୍ଳ ଚତୁର୍ଦ୍ଦଶୀ

---

୧୪୭। ଶ୍ରୀଜଗନ୍ନାଥ ମନ୍ଦିର ସ୍ପେଶାଲ ଅଫିସରଙ୍କ ରିପୋର୍ଟ ।

(୧୩) ଗଜ ବେଶ—କାର୍ତ୍ତିକ ଶୁକ୍ଳ ପୂର୍ଣ୍ଣିମୀ
(୧୪) ରାଜବେଶ—ପୌଷ ପୂର୍ଣ୍ଣିମୀ
(୧୫) ପଦ୍ମବେଶ—ମାଘ ଶୁକ୍ଳ ଦ୍ୱିତୀୟା
(୧୬) ଗଜ ଉଦ୍ଧାରଣ ବେଶ—ମାଘ ପୂର୍ଣ୍ଣିମୀ
(୧୭) ରାଜବେଶ—ଫାଲ୍‌ଗୁନ ପୂର୍ଣ୍ଣିମୀ

ଠାକୁରମାନଙ୍କ ନୀତି, ଯାନ ଯାତ୍ରା, ପ୍ରଭୃତିର ସମୟକାଳ ନିର୍ଣ୍ଣୟ କରିବା ସହଜ ନୁହେଁ । ବିଭିନ୍ନ କାଳରେ ଓଡ଼ିଶାର ରାଜା, ସାମନ୍ତ ରାଜା, ରାଷ୍ଟ୍ରର ଉଚ୍ଚ କର୍ମଚାରୀ, ବିଶିଷ୍ଟ ବ୍ୟକ୍ତି, ଧନୀ, ଭକ୍ତ ପ୍ରଭୃତି ଲୋକେ ବିଭିନ୍ନ ଏପୁରୁକୁ ଭିଆଣ କରି ଧନ ଓ ଜମି ଦାନ କରିଛନ୍ତି । ଏସବୁ ବିଭିନ୍ନ ସମୟରେ ମନ୍ଦିର କର୍ତ୍ତୃପକ୍ଷଙ୍କ ଅନୁମୋଦନ ଅନୁସାରେ ହୋଇଛି ।

# ଏକାଦଶ ପରିଚ୍ଛେଦ

## ସେବକ ସମ୍ପ୍ରଦାୟ

ଶ୍ରୀ ଜଗନ୍ନାଥ ମନ୍ଦିରରେ ଛତିଶାନିଯୋଗ ବା ଛତିଶି ପ୍ରକାର ସେବକ ଥିବା ଜନଶ୍ରୁତି ଅଛି । କିନ୍ତୁ ପ୍ରକୃତରେ ସେବା ସଂଖ୍ୟା ଏହାଠାରୁ ବେଶି ଅଛି । ବର୍ତ୍ତମାନର ମନ୍ଦିରର ସ୍ୱତ୍ୱଲିପିରେ ୧୪୦ (ଶହେ ଚାଳିଶି) ପ୍ରକାର ସେବା ଥିବା ଦେଖାଯାଏ । ପୂର୍ବକାଳର ଛତିଶି ସେବାର ସଂଖ୍ୟା ଇଂରେଜମାନେ ଓଡ଼ିଶା ଅଧିକାର କରିବା ବେଳକୁ ବହୁ ପରିମାଣରେ ବୃଦ୍ଧି ପାଇ ଯାଇଥିଲା । ତତ୍କାଳୀନ ପୁରୀ କଲେକ୍ଟର ଗ୍ରୋମ୍ ସାହେବ ଖ୍ରୀ ୧୮୦୭ରେ ମନ୍ଦିର ସମ୍ପର୍କୀୟ ରିପୋର୍ଟରେ ଏହି ଛତିଶି ନିଯୋଗ ବୃଦ୍ଧି ପାଇ ପ୍ରାୟ ୬୫୦ ନିଯୋଗ ହୋଇଥିବା ଲେଖିଛନ୍ତି । ଏହି ନିଯୋଗର ସେବକମାନେ କର୍ତ୍ତବ୍ୟରେ ସାମାନ୍ୟ ଅବହେଳା କଲେ ମରହଟ୍ଟା ଓ ତତ୍ ପୂର୍ବରୁ ଖୋର୍ଦ୍ଧା ରାଜାମାନଙ୍କ ଅଧୀନରେ ମନ୍ଦିର ଥିବା ସମୟରେ ମନ୍ଦିର ପରିଚାଳକଙ୍କ ସେମାନଙ୍କୁ ଜରିମାନା ଓ ଶାରୀରିକ ଦଣ୍ଡ ଦିଆଯାଉଥିଲା । ସ୍ଥଳ ବିଶେଷରେ ଜେଲ୍, ବେତମାଡ଼ ଦ୍ୱାରା ସେବାବାସନ୍ଦ ପ୍ରଭୃତି ଦଣ୍ଡ ଦିଆଯାଉଥିଲା ।

(୧) **ରାଜସେବା**—ପୁରୀର ରାଜା ମନ୍ଦିରର ସୁପରିଣ୍ଟେଣ୍ଡେଣ୍ଟ ଭାବରେ କେତେକ ସ୍ୱତନ୍ତ୍ର ଅଧିକାର ପାଇଛନ୍ତି । ମନ୍ଦିର ସେବାରେ ତାଙ୍କର ସେବା ସର୍ବପ୍ରଧାନ, ଏହା ରାଜସେବା ନାମରେ ପରିଚିତ । ପୂର୍ବେ ରାଜା ସୁପରିଣ୍ଟେଣ୍ଡେଣ୍ଟଙ୍କୁ ପ୍ରାଚୀନ ପ୍ରଥା ଓ ନିୟମ ଅନୁଯାୟୀ ନ୍ୟାୟାନୁମୋଦିତ ଭାବରେ ମନ୍ଦିରର ସେବା ପୂଜା ପରିଚାଳନା କରିବା ଅଧିକାର ଦିଆଯାଇଥିଲା । "କୌଣସି ସେବକ ମରିଗଲେ ରାଜା ଉତ୍ତରାଧିକାରୀ ନିଯୁକ୍ତିର ହୁକୁମ ଦିଅନ୍ତି, ସେବକମାନଙ୍କଠାରୁ କୈଫିୟତ୍ ତଲବ କରନ୍ତି ଏବଂ ଦୋଷୀ ସେବକମାନଙ୍କୁ ଜୋରିମାନା କରି ବା ଖେଇ କାଟି ଉପଯୁକ୍ତ କ୍ଷେତ୍ରରେ କାର୍ଯ୍ୟଚ୍ୟୁତ କରି ଦଣ୍ଡ ଦିଅନ୍ତି ।" ସୁପରିଣ୍ଟେଣ୍ଡେଣ୍ଟ୍ ରୂପେ ରାଜା ଠାକୁରଙ୍କର ଜମି ବାଡ଼ି, ବିଷୟ-ସମ୍ପତ୍ତି, ରତ୍ନଭଣ୍ଡାର ପ୍ରଭୃତିର ତତ୍ତ୍ୱାବଧାନ କରନ୍ତି । ବର୍ତ୍ତମାନ ମନ୍ଦିର ପରିଚାଳନା କମିଟି ଓ ଏଡ଼ମିନିଷ୍ଟ୍ରେଟିଭ୍ ଅଫିସରଙ୍କ ହସ୍ତରେ ଏହି କ୍ଷମତା ନ୍ୟସ୍ତ ଅଛି ; ରାଜା କେବଳ କମିଟିର ସଭାପତି ଅଛନ୍ତି ।

## (୨) ଅନ୍ୟାନ୍ୟ ସେବକ

୧ ମୁଦିରସ୍ତ ମୁଦ୍ରହସ୍ତ, ମୁଦିରଥ—ରାଜା କୌଣସି କାରଣରୁ ଛେରାପହଁରା ଆଦି ତାଙ୍କର ନିଜର ସେବା କରି ନ ପାରିଲେ ତାଙ୍କର ପ୍ରତିନିଧିସ୍ୱରୂପ ମୁଦିରସ୍ତ ଉକ୍ତ ସେବାମାନ ଚଳାନ୍ତି ।

୨ ଛତିଶାନିଯୋଗନାୟକ, ପାଟଯୋଶୀ ମହାପାତ୍ର ଓ ଭଣ୍ଡାରନାୟକ—ଏହାଙ୍କର ପୂର୍ବକାଳରେ ବହୁତ କ୍ଷମତା ଓ କାର୍ଯ୍ୟ ଥିଲା, କିନ୍ତୁ ବର୍ତ୍ତମାନ ସେଥିରୁ ଅଧିକାଂଶ ଲୋପ ହୋଇଅଛି । ସେ ପଶୁପାଳକ ଶ୍ରେଣୀର ସେବକ ଅଟନ୍ତି, ଏବଂ ୧୯୬୦ ମସିହା ପର୍ଯ୍ୟନ୍ତ ଭଣ୍ଡାରର ଗୋଟିଏ ଚାବି ତାଙ୍କ ନିକଟରେ ରହୁଥିଲା । ମନ୍ଦିର କର୍ତ୍ତୃପକ୍ଷଙ୍କର ସମସ୍ତ ଆଦେଶ ତାମିଲ କରିବା ଏବଂ ସେବକମାନେ ନିଜ ନିଜ କର୍ତ୍ତବ୍ୟ ଯଥାରୀତି ସମ୍ପାଦନ କରୁଛନ୍ତି କି ନାହିଁ ତାହା ଦେଖିବା ତାଙ୍କର କର୍ତ୍ତବ୍ୟ ଓ ସେ ଶାଢ଼ିବନ୍ଧା କାର୍ଯ୍ୟ ସମ୍ପନ୍ନ କରନ୍ତି ।

୩ ଭିତରଚ୍ଛୁ ମହାପାତ୍ର—ଦ୍ୱାରଫିଟା ନୀତି କରିବା ନିମନ୍ତେ ସେ ସର୍ବ ପ୍ରଥମେ ମନ୍ଦିରକୁ ଯାଆନ୍ତି ଓ ମୁଦ ପରୀକ୍ଷା କରି ଦେଖନ୍ତି, ଶାଢ଼ିବନ୍ଧା ନୀତି କରନ୍ତି ଓ ଅମୁଣିଆ ପରୀକ୍ଷା କରି ଦେଖନ୍ତି ।

୪ ତଳଚ୍ଛୁ ମହାପାତ୍ର—ରାତି ପହୁଡ଼ପରେ ଦ୍ୱାର ମୁଦ କରନ୍ତି ଏବଂ ରୋଷ ନିର୍ମଳ ରଖାନ୍ତି ଓ ରୋଷଉପରେ କର୍ତ୍ତୃତ୍ୱ କରନ୍ତି ।

(୫) ଭଣ୍ଡାରମେକାପ—ଶ୍ରୀଜୀଉଙ୍କ ଦୈନିକ ବ୍ୟବହାର ନିମନ୍ତେ ଅଳଙ୍କାର ଆଦି ସମସ୍ତ ଆବଶ୍ୟକୀୟ ପଦାର୍ଥ ସହିତ ବାହାର ଭଣ୍ଡାର ଦାୟିତ୍ୱରେ ଥାଆନ୍ତି । ଏହି ସେବକ ସାଧୁ ଓ ବିଶ୍ୱାସଯୋଗ୍ୟ ହେବା ଆବଶ୍ୟକ ।

(୬) ପତ୍ରୀଚ୍ଛା—ପୂର୍ବେ ପତ୍ରୀଚ୍ଛାମାନେ ମନ୍ଦିର ପରିଚାଳନା କରୁଥିଲେ, କିନ୍ତୁ ବର୍ତ୍ତମାନ ସେମାନଙ୍କର କାର୍ଯ୍ୟ କେବଳ ସକାଳଧୂପ ଓ କେତେକ ପର୍ବସମୟରେ ସୁନାବେତ ଧରି ଛିଡ଼ା ହେବାରେ ପର୍ଯ୍ୟବସିତ ହୋଇଅଛି ।

(୭) ଦେଉଳ କରଣ—ଭଣ୍ଡାର, ଗୃହଡ଼ାପର, ସେବାହସ୍ତାନ୍ତରର ହିସାବ ରଖନ୍ତି ଓ ପର୍ବାଣି ଖେଇ ବର୍ଣ୍ଣନ କରନ୍ତି ।

(୮) ତଡ଼ାଉ କରଣ—ଭଣ୍ଡାରର ହିସାବ ରଖନ୍ତି ଏବଂ ପର୍ବମାନଙ୍କରେ ଆବଶ୍ୟକ ସମସ୍ତେ ମୋହର କରନ୍ତି ଏବଂ ସମସ୍ତ ମନ୍ଦିର ହିସାବ ରଖନ୍ତି ।

(୯) ଅନ୍ୟାନ୍ୟ ବନ୍ଧୁ ଶ୍ରେଣୀର କରଣ—ଏମାନେ ହିସାବ ରଖନ୍ତି ଓ ଖେଇ ବଣ୍ଟନ କରନ୍ତି ।

(୧୦) ଚର୍ଚ୍ଚାଇଳ—ଏମାନେ ଚର୍ଚ୍ଚା କରନ୍ତି (ଯଥାସମୟରେ ନୀତିହେବାର ତତ୍ତ୍ୱ ନିଅନ୍ତି)

(୧୧) ବ୍ରାହ୍ମଣ ବା ପୁରୋହିତ ଏବଂ ଦେଉଳ ପୁରୋହିତ—ଏମାନେ ରଥ ଅନୁକୂଳ, ଅଭିଷେକ ଆଦି କରନ୍ତି । ବିମଳାପୂଜକ ଷୋଳପୂଜାରେ ପୂଜା କରନ୍ତି । ନବକଳେବର ସମୟରେ ନାନାବିଧ ନୀତି ସମ୍ପନ୍ନ କରିବା ନିମନ୍ତେ ଶ୍ରୋତ୍ରୀୟ ବ୍ରାହ୍ମଣମାନଙ୍କୁ ବରଣ କରାଯାଏ ।

(୧୨) ପୂଜକ ଓ ପୂଜାପଣ୍ଡା, ବଡ଼ପଣ୍ଡା—ଏମାନେ ପୂଜା କରନ୍ତି ଓ ଠାକୁରମାନଙ୍କ ନୈବେଦ୍ୟ ଦିଅନ୍ତି ଏବଂ ଅନ୍ୟ ପୂଜାପଣ୍ଡାମାନେ ସେମାନଙ୍କ କର୍ତ୍ତବ୍ୟ ବିଧିମତେ ସମ୍ପାଦନ କରୁଛନ୍ତି କି ନାହିଁ ତାହା ବଡ଼ପଣ୍ଡା ଦେଖନ୍ତି ।

(୧୩) ଦଇତା—ଏମାନେ ନବକଳେବର, ରଥଯାତ୍ରା ଓ ଅଣସର ପ୍ରଭୃତି ବିଶେଷ ଯାତ୍ରା ସମୟ କାର୍ଯ୍ୟ କରନ୍ତି ।

(୧୪) ପତି—ଏମାନେ ଦଇତାମାନଙ୍କ ସଙ୍ଗେ କାର୍ଯ୍ୟ କରନ୍ତି । ଏମାନେ ବ୍ରାହ୍ମଣ ସେବକ ଏବଂ ଏମାନଙ୍କର ଅନ୍ୟାନ୍ୟ ବିଶେଷ କର୍ତ୍ତବ୍ୟ ମଧ୍ୟ ଅଛି ।

(୧୫) ଦତ୍ତ—ଏମାନେ ଶ୍ରୀମୁଖ ସିଂହାର କରନ୍ତି ।

(୧୬) ଖୁଣ୍ଟିଆ—ଏମାନେ ବନ୍ଧୁଶ୍ରେଣୀର, ଯଥା—ପାଳିଆ ଖୁଣ୍ଟିଆ, ବେହେରା ଖୁଣ୍ଟିଆ, ବଲେଇଜଗା ଖୁଣ୍ଟିଆ, ରୁକ୍ମିଣୀହରଣ ଖୁଣ୍ଟିଆ ପ୍ରଭୃତି । 'ମଣିମା' ଡାକ ଦେବା ଓ ଠାକୁରମାନଙ୍କୁ ଜଗିବା ଏମାନଙ୍କର ମୁଖ୍ୟ କର୍ତ୍ତବ୍ୟ ।

(୧୭) ଗୁଡ଼ିଆ ମେକାପ—ଠାକୁରଙ୍କ ଲୁଗାପଟା ଏମାନଙ୍କ ଦାୟିତ୍ୱରେ ଥାଏ । ପାଳିଆ ମେକାପ ପ୍ରଭୃତି ଅନ୍ୟାନ୍ୟ ମେକାପମାନଙ୍କର ବିଶେଷ କର୍ତ୍ତବ୍ୟ ଥାଏ । ଦ୍ୱାର ଫିଟାଠାରୁ ପହୁଡ଼ ପର୍ଯ୍ୟନ୍ତ ଠାକୁରଙ୍କର ରତ୍ନଦୀପ ଅଖଣ୍ଡ ମେକାପ ଜଳାନ୍ତି ।

(୧୮) ପଢ଼ିଅରେ—ଏମାନେ ଠାକୁରଙ୍କ ନିକଟରେ ପହରା ଦିଅନ୍ତି, ଭୋଗ ଡାକନ୍ତି ଏବଂ ଯାତ୍ରୀମାନଙ୍କ ନିରାପତ୍ତା ବିଷୟରେ ଦୃଷ୍ଟି ଦିଅନ୍ତି ।

(୧୯) ଗୋଚ୍ଛିକାର—ଏମାନେ ପଢ଼ିଆରି ଶ୍ରେଣୀର ଏବଂ ଏମାନେ ଜୟ ବିଜୟ ଦ୍ୱାର ଜଗନ୍ତି ।

(୨୦) ବୀଣାକାର—ଠାକୁରଙ୍କ ପହୁଡ଼ ପୂର୍ବରୁ ବୀଣା ବଜାନ୍ତି ।

(୨୧) ଭିତରଗାଏଣୀ—ପହୁଡ଼ ସମୟରେ ଓ ଅନ୍ୟାନ୍ୟ ଜାନିଯାତ୍ରା ସମୟରେ ଗୀତ ଗାଆନ୍ତି ।

(୨୨) ସମ୍ପ୍ରଦା ନିଯୋଗ—ଏହି ନର୍ତ୍ତକୀମାନେ ପହଣ୍ଡିର ସମୟରେ ନୃତ୍ୟକରନ୍ତି ।

(୨୩) ମାଦେଲୀ—ପହଣ୍ଡିର ସମୟରେ ମାଦଳ ବଜାନ୍ତି ।

(୨୪) ଶଙ୍ଖୁଆ—ବଜନ୍ତ୍ରୀମାନଙ୍କ ସହିତ ଶଙ୍ଖ ବଜାନ୍ତି ।

(୨୫) କାହାଳିଆ—ବଡ଼କାହାଳି ବଜାନ୍ତି ।

(୨୬) ଘଣ୍ଟୁଆ ଓ ଘଣ୍ଟନିଯୋଗ—ପ୍ରତ୍ୟହ ଓ ଜାନିଯାତ୍ରା ସମୟରେ ଘଣ୍ଟ ବଜାନ୍ତି ।

(୨୭) ଅମୁଣିଆ ଛତ୍ର—ଛତ୍ର, ଚାମର ଓ କଳା କନାଟି ସେବକ—ଜାନିଯାତ୍ରା ମାନଙ୍କରେ ଛତ୍ର ଧରନ୍ତି ।

(୨୮) ଗୀତଗୋବିନ୍ଦ ସେବକ—ଚନ୍ଦନ ଲାଗି ସମୟରେ ଠାକୁରଙ୍କ ଆଗରେ ଗୀତଗୋବିନ୍ଦ ବୋଲନ୍ତି ।

(୨୯) ଚନ୍ଦ୍ର ଦହୁଡ଼ି ଓ ଗ୍ରମୁ ଦହୁଡ଼ି—ଜାନଯାତ୍ରା ସମୟେ ମଶାଲ ଧରନ୍ତି ।

(୩୦) ସିଂହାରି ଓ ପଶୁପାଳକ—ଏମାନେ ସବୁ ସମୟେ ଠାକୁରମାନଙ୍କୁ ବେଶ କରନ୍ତି ଓ ଫୁଲ ଲାଗି କରନ୍ତି ଏବଂ ଅବକାଶ ପୂଜା କରନ୍ତି ।

(୩୧) ସୁଆରବଡ଼ୁ (ଭୋଗସାଇତା ସୁଆରବଡ଼ୁ, ବେଦେଶ୍ୱ ସୁଆରବଡ଼ୁ)— ଏମାନେ ବହୁତ ଘର ପୋଛଣିଆ ଧୁଅନ୍ତି ଓ କାଠ ଚୌକି ପ୍ରଭୃତି ଯୋଗାନ୍ତି ।

(୩୨) ପନିବଡ଼ୁ—ଏମାନେ ଦିନତମାମ ପୂଜା ଉପକରଣ ଯୋଗାନ୍ତି ।

(୩୩) ଗର୍ଗବଡ଼ୁ—ପୂଜା ଓ ଅନ୍ୟ ନୀତିସମୟରେ ଜଳ ଯୋଗାନ୍ତି ।

(୩୪) ସୁଆର ସୁଆର ଓ ଅଣସର ସୁଆର ସୁଆର—ବଲଭ ଭୋଗ ଓ ଅନ୍ୟାନ୍ୟ ପୂଜାର ଉଦ୍‌ଯୋଗ କରନ୍ତି ।

(୩୫) ମୁଦୁଲି—ପୂଜାବାସନ ଏବଂ ଅନ୍ୟାନ୍ୟ ଦୈନିକ ପୂଜା ଉପକରଣ ନିଜ ଦାୟିତ୍ୱରେ ରଖନ୍ତି ଏବଂ ମେକାପଙ୍କୁ ଯୋଗାଇ ଦିଅନ୍ତି ।

(୩୬) ହଡ଼ପନାୟକ, ବଡଆ ଯୋଗାଣିଆ ଓ ତାମ୍ବୂଳସେବକ—ଏମାନେ ଠାକୁରଙ୍କ ବଡ଼ଆ ତିଆରି କରନ୍ତି ଓ ଠାକୁରଙ୍କ ନିକଟକୁ ନିଅନ୍ତି ।

(୩୭) ଘଟୁଆରି—ଏମାନେ ଦୈନିକ ଓ ପର୍ବଯାତ୍ରା ନୀତି ନିମନ୍ତେ ଅଁଳା, ଚନ୍ଦନ ଓ ମହାଦୀପ ତିଆରି କରନ୍ତି ଓ ଯୋଗାନ୍ତି ।

(୩୮) ତୁଳସିଆ—ଏମାନେ ଦୈନିକ ତୁଳସୀ ପତ୍ର ଯୋଗାନ୍ତି ।

(୩୯) ଦଅଣାମାଳି—ଏମାନେ ଦୈନିକ ଦଅଣା ଯୋଗାନ୍ତି ।

(୪୦) ମହାଭୋଗ—ଦହି ଓ ଅନ୍ୟାନ୍ୟ ଦୁଗ୍ଧଜାତ ପଦାର୍ଥ ଯୋଗାନ୍ତି ।

(୪୧) ପାଣିଆପଟ—ଦିନତମାମ ମନ୍ଦିରରେ ଆବଶ୍ୟକୀୟ ପାଣି ଯୋଗାନ୍ତି ।

(୪୨) ବଳିତା ସେବକ—ଆରତି ବଳିତା ଯୋଗାନ୍ତି ।

(୪୩) କୁମ୍ଭାର ବିଶୋଇ—ହାଣ୍ଡି କୁଡ଼ୁଆ ପ୍ରଭୃତି ମୃତ୍ତିକାପାତ୍ର ଯୋଗାନ୍ତି ।

(୪୪) ଦଣ୍ଡିଆ—ଶ୍ରୀ ବିମଳାଙ୍କ କୂପରୁ ପାଣି କାଢ଼ିବା ନିମନ୍ତେ ଦଉଡ଼ି ଯୋଗାନ୍ତି ।

(୪୫) ମାଳଚୂଳ ସେବକ—କେତେକ ଜାନିଯାତ୍ରାରେ ଚୂଳ ଆଦି ଯୋଗାନ୍ତି ।

(୪୬) ମାଳିଆ ସୁଆଁସିଆ— ଏମାନେ କାଠପିଢ଼ା ଯୋଗାନ୍ତି ।

(୪୭) ଯୋଗାଣିଆ, କୋଠଭୋଗ ଯୋଗାଣିଆ, ପର୍ବଯାତ୍ରା ଯୋଗାଣିଆ, ବଲ୍ଲଭ ଏବଂ ବାହାର ଦେଉଳ ଯୋଗାଣିଆ—ଏମାନେ ବଲ୍ଲଭ ଆଦି ଭୋଗ ନେଇ ଆବଶ୍ୟକ ମତେ ଭିନ୍ନ ଭିନ୍ନ ସ୍ଥାନରେ ଯୋଗାନ୍ତି ।

(୪୮) ବିମାନବଡ଼ୁ—ଏମାନେ ବଳେ ବିମାନମାନ ଟାଣନ୍ତି ।

(୪୯) ଗୃପବେହେରା ଓ ଗୃପଦଳେଇ—ଏମାନେ ଗୃପପ୍ରସ୍ତୁତ କରନ୍ତି ।

(୫୦) ରଥଭୋଇ—ରଥତିଆରି କାର୍ଯ୍ୟ କରନ୍ତି ଓ ଶ୍ରମିକ ଯୋଗାନ୍ତି ।

(୫୧) କଳାବେଠିଆ—ଏମାନେ ରଥ ଟାଣନ୍ତି ।

(୫୨) କରତିଆ—ଏମାନେ ରଥଗଢ଼ାରେ କରତ କାମ କରନ୍ତି ।

(୫୩) ତମ୍ରବଣୋଇ—ରଥ ତିଆରିରେ ତମ୍ବା କାମ କରନ୍ତି ।

(୫୪) ଚିତ୍ରକାର ଓ ରୂପକାର—ଏମାନେ ରଥ ସକାଶେ ପ୍ରତିମା ତିଆରି କରନ୍ତି ଓ ଚିତ୍ର କରନ୍ତି ।

(୫୫) ଓଝା ମହାରଣା—ଏମାନେ କମାର କାର୍ଯ୍ୟ କରନ୍ତି ।

(୫୬) ରଥ ଡାହୁକ—ଏମାନେ ରଥ ଉପରେ ଗୀତ ବୋଲନ୍ତି ।

(୫୭) ବାଣୁଆ—ଆବଶ୍ୟକ ସମୟରେ ବାଣ ଯୋଗାନ୍ତି ।

(୫୮) ଚକା ଅପସର ସେବକ—ଏମାନେ ଦରଜିମାନଙ୍କଠାରୁ ପୋଷାକ ପତ୍ରର ଦାୟିତ୍ୱ ନିଅନ୍ତି ।

(୫୯) ମଣ୍ଡଣିଆ—ଦରକାରବେଳେ ଗୃନ୍ଦୁଆ ବାନ୍ଧନ୍ତି ।

(୬୦) କୋଠ ସୁଆଁସିଆ—ଏମାନେ ଯାତ୍ରା ସମୟରେ ଗୁଳଘର ଓ ଗୁମୁଣ୍ଡିଆ ତିଆରି କରନ୍ତି ।

(୬୧) ସୁନାଗୋସାଇଁ—ସ୍ନାନ-ପୂର୍ଣ୍ଣିମା ଦିନ ସୁନାକୁଅଁରୁ ପାଣି କାଢ଼ନ୍ତି ।

(୬୨) ଦରଜି—ଏମାନେ ଲୁଗା ସିଲେଇ କରନ୍ତି ଓ ଚକା ଅପସର ଆଦି ତିଆରି କରନ୍ତି ।

(୬୩) ପାଟରା—ଏମାନେ ପାଟ ଦଉଡ଼ି ଆଦି ତିଆରି କରନ୍ତି ।

(୬୪) ବଢ଼େଇ ବା ବିଶ୍ୱକର୍ମା—ଏମାନେ ରଥ ଓ ଗୃପ ତିଆରି କାମ କରନ୍ତି ।

(୬୫) ପାଣିକୁଣ୍ଡ ସେବକ—ଲୁଗାଧୁଆ ଓ ମହାଶେଠୀ ଠାକୁରଙ୍କର ଲୁଗାସଫେଇ କାମ କରନ୍ତି ।

(୬୬) ବଣିଆ—ଅଳଙ୍କାର ତିଆରି ଓ ମରାମତି କରନ୍ତି ।

(୬୭-୬୯) ବଡ଼ୁ, ଡାଟୁଆ, ଓ ପତରବନ୍ଧା—ଏମାନେ ସୁପରିଣ୍ଟେଣ୍ଡେଣ୍ଟଙ୍କ ନିକଟକୁ ଡାଟ ପଠାଇବା କାର୍ଯ୍ୟ କରନ୍ତି ।

(୭୦) ମୁଖପଖାଳ—ଏମାନେ ଠାକୁରଙ୍କର ଦାନ୍ତକାଠି ତିଆର କରନ୍ତି ।

(୭୧) ଖଟୁଲି ସେବକ—ଏମାନେ ଅବକାଶ ପୂଜା ନିମନ୍ତେ ଖଟୁଲି ରଖନ୍ତି ।

(୭୨) ଦର୍ପଣିଆ—ଏମାନେ ଦର୍ପଣ ଯୋଗାନ୍ତି ଓ ଠାକୁରଙ୍କର ବାସନ ସଫା କରନ୍ତି ।

(୭୩) ବୈଦ୍ୟ—ଅଣସର ସମୟରେ ଠାକୁରଙ୍କୁ ଔଷଧ ଦିଅନ୍ତି ।

(୭୪) ଜ୍ୟୋତିଷ ବା ଗଣକ—ଅବକାଶ ପୂଜା ସମୟରେ ଠାକୁରଙ୍କ ସମ୍ମୁଖରେ ତିଥିଆଦି ପାଠ କରନ୍ତି ।

(୭୫) ଚୂନରା—ଗରୁଡ଼ ସେବା କରନ୍ତି ।

(୭୬) ଲେଙ୍କା—ସେବକମାନଙ୍କୁ ଡାକନ୍ତି ।

(୭୭) ପ୍ରଧାନି—ପଣ୍ଡାମାନଙ୍କୁ ଡାକନ୍ତି ଓ ଅନ୍ୟାନ୍ୟ କାର୍ଯ୍ୟ କରନ୍ତି ଏବଂ ମୁକ୍ତିମଣ୍ଡପରେ ଖେଇ ବାଣ୍ଟନ୍ତି ।

(୭୮) ପାଇକ ଓ ସେମାନଙ୍କ ସର୍ଦ୍ଦାର ଦଳେଇ ଓ ଦଳବେହେରା—ଏମାନେ ଦିନରାତି ମନ୍ଦିର ଜଗନ୍ତି ଓ ମନ୍ଦିର କର୍ତ୍ତୃପକ୍ଷଙ୍କ ହୁକୁମ ତାମିଲ କରନ୍ତି ।

(୭୯) ମନ୍ଦିର ସିପାହୀ—ମନ୍ଦିର ଜଗନ୍ତି ।

(୮୦) ମହାସୁଆର—ଏମାନେ ପନ୍ତିକୁ ପ୍ରଥମ ଛେକ ନିଅନ୍ତି ।

(୮୧) ସୁଆର—ଏମାନଙ୍କର ବିଭିନ୍ନ ଶ୍ରେଣୀ ବିଭିନ୍ନ ନାମରେ ପରିଚିତ । ଏମାନେ ଭୋଗ ରାନ୍ଧନ୍ତି ଓ ପ୍ରସ୍ତୁତ କରନ୍ତି । ବଡ଼ୁ ସୁଆର, ପିଠାସୁଆର, ତୁଣସୁଆର, ଥାଳି ସୁଆର, ଅମାଲୁ ସୁଆର, ବନ୍ଧୁଆ, ପାଚୁଆ, ଅମାଲୁ ତୋଳା, ତୋଳା ବଡ଼ୁ, ଆଲୁଆ ଦେଖାଇବା ପାଇଁ ତୋଳା ବତୀ ପ୍ରଭୃତି ଅନେକ ସୁଆର ଅଛନ୍ତି ।

(୮୨) ବେଷ ଅମୀନ ଓ ବେଷା ପାଇକ—ବେଷ ଜଗନ୍ତି ଓ ତଦାରଖ କରନ୍ତି ।

(୮୩) ହାଣ୍ଡି ଯୋଗାଣିଆ—ଭୋଗ ପାଇଁ ହାଣ୍ଡି ଯୋଗାନ୍ତି ।

(୮୪) ବାହାର ଦେଉଳୀ ସୁଆର—ଲକ୍ଷ୍ମୀଙ୍କ ଭୋଷରେ ରାନ୍ଧନ୍ତି ।

(୮୫) ଭୋଗ କୋଠଭୋଗ ପାଣିଆ—ଏମାନେ ଭୋଗକୁ ପାଣି ଯୋଗାନ୍ତି ।

(୮୬) ପନକପଟା—ଏମାନେ ପରବା କାଟନ୍ତି ଓ ପନପରବା ସଜାଡ଼ନ୍ତି ।

(୮୭) ଭୋଗନକାପ—ଏମାନେ ଅଦା ପ୍ରଭୃତି ଗନ୍ଧଣ ଜିନିଷ ପ୍ରସ୍ତୁତ କରନ୍ତି ଓ କେତେକ ସେବକଙ୍କୁ ଘିଅ ବାଣ୍ଟନ୍ତି ।

(୮୮) ଗୁଡ଼ଲବଗ୍ଗ—ଏମାନେ ଭୋଗ ଗୃଡ଼ଲ ସଫା କରନ୍ତି ।

(୮୯—୯୧) ଚୂନାମୁଣ୍ଡସମର୍ଥା, ବଗମୁଣ୍ଡସମର୍ଥା, ବଗବୁହାସମର୍ଥ—ଏମାନେ ଚାଉଳ, ଅଟା, ବଟାବଗ ଯୋଗାନ୍ତି ଓ ବୋହିନଅନ୍ତି ।

(୯୨) ପନ୍ତିବଡ଼ୁ—ଏମାନେ ଛେକ ବୁହନ୍ତି ।

(୯୩) ବଡ଼ୁଆ—ଏମାନେ ମଥମଲ ବା ଛେକ ପ୍ରସ୍ତୁତ କରନ୍ତି ।

(୯୪)—୯୭) ଧୋପଖାଳିଆ, ଗୋବରପାଣିଆ, ଅଙ୍ଗାରୁଆ ଓ ରାବାଡ଼ିଆ —ଏମାନେ ଭୋଗ ଓ ଚୁଲି ଧୁଅନ୍ତି ଓ ସଫା କରନ୍ତି ଏବଂ ସେଥିନିମନ୍ତେ ପାଣି ଯୋଗାନ୍ତି ।

(୯୮) ସାବୁତନଯୋଗ—ଅମାବାସ୍ୟା ଦିନ ସ୍ୱର୍ଗଦ୍ୱାରଠାରେ ଏମାନଙ୍କର ସେବା ଥାଏ ।

(୯୯) ବେଣ୍ଟବନ୍ଧା ପାଇକ—ପଦ୍ମନାଭ ସମୟରେ ଏମାନଙ୍କର ସେବା ଥାଏ ।

(୧୦୦) ମୁଦ୍ରା—ମୁଦ ସମୟରେ ଏମାନେ ମନ୍ଦିରଦ୍ୱାରରେ ମୁଦ ଦିଅନ୍ତି ।

ଏମାର, ଓଡ଼ିଆ, ରାଘବଦାସ, ଶ୍ରୀରାମଦାସ, ପଞ୍ଜାବୀ ଆଦି ବିଭିନ୍ନ ମଠମାନଙ୍କର ଶ୍ରୀମନ୍ଦିରରେ ସ୍ୱତନ୍ତ୍ରଲିପିବଣ୍ଣିତ ନିର୍ଦ୍ଦିଷ୍ଟ କାର୍ଯ୍ୟ ଅଛି ।

ପରିଶେଷରେ ଅନେକ ଅନୁଷ୍ଠାନ ଓ ବ୍ୟକ୍ତିବିଶେଷଙ୍କର ଶ୍ରୀମନ୍ଦିରସେବା ଆଦି ସେବା କରିବା ବା ଖେଇପାଇବାର ବିଶେଷ ଅଧିକାର ଅଛି । ବାହୁଲ୍ୟ ଭୟରେ ସେମାନଙ୍କ ତାଲିକା ଦିଆଯାଉ ନାହିଁ ।" (୧୪୮)

୧୪୮ । ସ୍ପେଶାଲ୍ ଅଫିସରଙ୍କ ରିପୋର୍ଟ ।

## ଦେଢ଼ଶହ ବର୍ଷତଳର ସେବକ ସମ୍ପ୍ରଦାୟ—

ଖ୍ରୀ: ୧୮୦୮ ସନକେ ଦେଉଳ ସହିତ ସମ୍ପୃକ୍ତ ଥିବା ପ୍ରଧାନ ସେବକ ଓ ଅନ୍ୟାନ୍ୟ ପ୍ରଧାନ ବ୍ୟକ୍ତିମାନଙ୍କର ଏକ ତାଲିକା ପ୍ରାଚୀନ ସରକାରୀ ରିପୋର୍ଟମାନଙ୍କରୁ ମିଳୁଛି । କିଛି ଅଂଶ ଏଠାରେ ଦିଆଗଲା । (୧୪୯) (ସ୍ମା-ସ୍ମାର୍ତ୍ତ; ବୈ-ବୈଷ୍ଣବ) ।

**ପୂଜାରୀ**—ଗୋବିନ୍ଦ ମୁଦିରଥ (ବୈ), । ଆନନ୍ଦ ପଣ୍ଡା (ସ୍ମା), ହରିବନ୍ଧୁ ପଣ୍ଡା (ସ୍ମା), ଦାମ ପଣ୍ଡା (ବୈ) ବଳଭଦ୍ର ବଡ଼ପଣ୍ଡା (ସ୍ମା) ଜଗବନ୍ଧୁ ପଣ୍ଡା (ସ୍ମା), ପଶୁପାଳକ—ଗୋପୀନାଥ ତଳିଚ୍ଛୁ ମହାପାତ୍ର (ବୈ), ନନ୍ଦା ମହାପାତ୍ର ଭିତରଚ୍ଛୁ (ବୈ) ।

**ଛତିଶା ନିଯୋଗ ନାୟକ**—ପଦ୍ମଲଭ ପାଟଜ୍ୟୋଷୀ (ବୈ), କୃଷ୍ଣଚନ୍ଦ୍ର ମହାପାତ୍ର (ବୈ), ମଧୁସୂଦନ ମହାପାତ୍ର (ବୈ), ଦୀନବନ୍ଧୁ ପଶୁପାଳକ (ବୈ), ପରମେଶ୍ୱର ମହାପାତ୍ର (ବୈ) ଜଗନ୍ନାଥ ପଢ଼ି ମହାପାତ୍ର (ବୈ), ଯୋଗୀ ପତ୍ରି ମହାପାତ୍ର (ବୈ) ।

**ସୁଆର**—ହରିବନ୍ଧୁ ମହାପାତ୍ର ସୁଆର (ବୈ), ବୈରାଗୀ ମହାସୁଆର (ବୈ), ଆତ୍ରି ମହାପାତ୍ର (ବୈ), ଚିନ୍ତାମଣି ମହାପାତ୍ର (ବୈ), ବୈଦ୍ୟନାଥ ମହାପାତ୍ର (ବୈ) ।

**ପଡ଼ିହାରୀ**—ମଣି ମହାପାତ୍ର (ସ୍ମା), କୁଳମଣି ଖୁଣ୍ଟିଆ (ସ୍ମା), ସଦେଇ ଖୁଣ୍ଟିଆ (ସ୍ମା), ହଳଧର ଖୁଣ୍ଟିଆ (ସ୍ମା), କୁଳଖୁଣ୍ଟିଆ (ସ୍ମା), ହରିହର ଖୁଣ୍ଟିଆ (ସ୍ମା), ଜଗନ୍ନାଥ ମହାପାତ୍ର ପୁରୋହିତ (ସ୍ମା), ମୋହିର ପଣ୍ଡିତ (ବୈ), ଜଗନ୍ନାଥ ରାଜଗୁରୁ (ସ୍ମା), ସେବାଜୀ ଆଙ୍ଗ୍ରିସ୍ (ସ୍ମା), ।

ବ୍ରାହ୍ମଣ—ସନ୍ନ୍ୟାସୀ, ବ୍ରହ୍ମଗୃହୀ—ବିଶିଷ୍ଟ ବିଷୟ ଉପରେ ନିମ୍ନଲିଖିତ ବିଶିଷ୍ଟ ବ୍ରାହ୍ମଣମାନଙ୍କ ସହିତ ପରାମର୍ଶ କରାଯାଉଥିଲା । ସବୁ ନୂଆ ବ୍ୟବସ୍ଥା ସମ୍ବନ୍ଧରେ ଏମାନଙ୍କ ପରାମର୍ଶ ନିଆଯାଉଥିଲା ।

---

୧୪୯। ଜ:୧୮୦୭ ଖ୍ରୀଷ୍ଟାବ୍ଦରେ ଅର୍ଥାତ୍ ଇଂରେଜମାନେ ଓଡ଼ିଶା ଅଧିକାର କରିବା ଠିକ ଗୋଟିଏ ବର୍ଷ ଭିତରେ ସଂଗୃହୀତ ତଥ୍ୟ ପୁରୀ କଲେକ୍ଟରର ରିପୋର୍ଟ ଆକାରରେ ସରକାରଙ୍କୁ ଦେଇଥିଲେ । ଏହା ଅପ୍ରକାଶିତ ଅବସ୍ଥାରେ କଟକରେ ରେଭେନ୍ୟୁ ବୋର୍ଡ଼ କମିସନରଙ୍କ ଅଫିସରେ ଅଛି । (ଇଂରେଜୀ ଭାଷାରେ ଲିଖିତ) ।

ସନ୍ନ୍ୟାସୀ—ମଧୁସୂଦନ ତୀର୍ଥ, ଶଙ୍କରାନନ୍ଦ ସରସ୍ୱତୀ, ସଦାନନ୍ଦ ସରସ୍ୱତୀ, ଶିବତୀର୍ଥ, ରାମାନନ୍ଦ ତୀର୍ଥ ।

ବ୍ରହ୍ମଚାରୀ—ରାମପ୍ରକାଶ ବ୍ରହ୍ମଚାରୀ, ରାମକୃଷ୍ଣ ବ୍ରହ୍ମଚାରୀ ।

ବ୍ରାହ୍ମଣ—ଜଗନ୍ନାଥ ରାଜଗୁରୁ, ଗୋପୀନାଥ ବ୍ରହ୍ମା ଲୋକନାଥ ବ୍ରହ୍ମା, କୃଷ୍ଣଚନ୍ଦ୍ର ଗୋସାଇଁ, କବିଚନ୍ଦ, କବିରତ୍ନ ରାଜଗୁରୁ, ହରିରାୟ, ମୃତ୍ୟୁଞ୍ଜୟ ମିଶ୍ର, ଭଗବାନ ମିଶ୍ର, କୃଷ୍ଣ ମିଶ୍ର, ବାମଦେବ ଦୀକ୍ଷିତ ।

**ସେବକମଣ୍ଡଳୀ**—ଏହି ପ୍ରାଚୀନ ରିପୋର୍ଟରେ ୨୧୯ ସେବାର ନାମ ଦିଆଯାଇଛି ଏବଂ କେତେକ ସେବକଙ୍କର ନାମ ମଧ୍ୟ ଦିଆଯାଇଛି । ଏହା ବ୍ୟତୀତ ମନ୍ଦିର ସହିତ ସମ୍ପୃକ୍ତ ଥିବା ୧୩୧ ସେବାର ନାମ ମଧ୍ୟ ଅଛି । ମୋଟରେ ୩୫୦ ସେବାର ନାମ ଏଥିରେ ଅଛି ।

ବର୍ତ୍ତମାନ ମନ୍ଦିରର ଆୟବ୍ୟୟ, ସେବା, ନୀତି, ଭୋଗ, ଯାତ୍ରାଦି ଖର୍ଚ୍ଚ ବହୁ ପରିମାଣରେ ବୃଦ୍ଧି ପାଇଛି । ଏକ ଏକ ସେବା କୁଟୁମ୍ବ ନବରେ ବିଭକ୍ତ ହୋଇ ଏକାଧିକ ଲୋକଙ୍କ ଦ୍ୱାରା ନିର୍ବାହିତ ହେଉଛି । ଏହି କାରଣରୁ ସେବା ଓ ସେବକ ସଂଖ୍ୟା ବୃଦ୍ଧି ପାଇଛି ।

# ଦ୍ୱାଦଶ ପରିଚ୍ଛେଦ

## ରଥ ଯାତ୍ରା

ହିନ୍ଦୁମାନଙ୍କ ଉତ୍ସବ ଭିତରେ ପୁରୀର ରଥଯାତ୍ରା ଏକ ପ୍ରଧାନ ଉତ୍ସବ । ଲୋକ ସମାଗମ ଓ ପବିତ୍ରତା ଦୃଷ୍ଟିରୁ ଭାରତ କାହିଁକି ସମଗ୍ର ପୃଥିବୀରେ ମଧ୍ୟ ଅଦ୍ୱିତୀୟ କହିଲେ ଚଳେ । ଏକ ବାର୍ଷିକ ଉତ୍ସବରେ ଭାରତର ଅନ୍ୟ କୌଣସି ସ୍ଥାନରେ ପୁରୀ ଭଳି ଭାରତର ସବୁ ଅଞ୍ଚଳରୁ ଲକ୍ଷାଧିକ ଲୋକ ଖୁବ୍ କମ୍ ସମବେତ ହୁଅନ୍ତି । ରଥଯାତ୍ରା କହିଲେ ହିନ୍ଦୁ ଜଗତରେ ଓ ଭାରତ ବାହାରେ ପୁରୀର ରଥଯାତ୍ରାକୁହିଁ ବୁଝାଏ ।

ହିନ୍ଦୁ ଜଗତରେ ରଥର ବ୍ୟବହାର ବହୁ କାଳରୁ ପ୍ରଚଳିତ ଅଛି । ବୈଦିକ ଗ୍ରନ୍ଥମାନଙ୍କରେ ରଥର ଉଲ୍ଲେଖ ଅଛି ।

ଆତ୍ମାନଂ ରଥିନଂ ବିଦ୍ଧି ଶରୀରଂ ରଥମେବ ତୁ
ବୁଦ୍ଧିଂ ତୁ ସାରଥିଂ ବିଦ୍ଧି ମନଃ ପ୍ରଗ୍ରହମେବ ଚ ।

କଠୋପନିଷଦ । ୧ମଅ, ୩-୩

ଏଠାରେ ଶରୀରକୁ ରଥ ସହିତ ତୁଳନା କରାଯାଇଛି । ରଥର ଅସ୍ତିତ୍ୱ ଉପନିଷଦର ସମୟ ବା ପ୍ରାୟ ୫୦୦୦ ବର୍ଷ ପୂର୍ବରୁ ନ ଥିଲେ ଏହି ଉପନିଷଦରେ ଏହାର ଉଲ୍ଲେଖ ହୋଇନ ଥାଆନ୍ତା !

ସୂର୍ଯ୍ୟଙ୍କର ସପ୍ତାଶ୍ୱ ରଥ ଥିବା କଥା ବହୁ ପ୍ରାଚୀନ ଶାସ୍ତ୍ରରେ ଲେଖାଅଛି (୧୪୯ଖ) ଇନ୍ଦ୍ରଙ୍କର ଓ ବିଷ୍ଣୁଙ୍କର ରଥ ଥିବାର ମଧ୍ୟ ଜଣାଯାଏ । ଏସବୁ ବୌଦ୍ଧ ବା ଜୈନ ଯୁଗର ବହୁ ପୂର୍ବବର୍ତ୍ତୀ ବିଷୟ । ତା' ଛଡ଼ା ରାମାୟଣ, ମହାଭାରତ ଓ ଅନ୍ୟାନ୍ୟ ପ୍ରାଚୀନ ପୁରାଣମାନଙ୍କରେ ରଥର ବର୍ଣ୍ଣନା ବହୁ ସ୍ଥାନରେ ଦେଖାଯାଏ । କୃଷ୍ଣଙ୍କ ରଥର ନାମ ନନ୍ଦିଘୋଷ, ସୁଭଦ୍ରାଙ୍କ ରଥର ନାମ ଦେବଦଳନ, ବଳରାମଙ୍କ ରଥର ନାମ ତାଳଧ୍ୱଜ । ଇନ୍ଦ୍ରଙ୍କର ପୁଷ୍ପକ ବିମାନର ବର୍ଣ୍ଣନା ବହୁ ପୁରାଣରେ ଅଛି ।

---

୧୪୯ଖ-"ଆକୃଷ୍ଣେନ ସବିତା ରଥେନ ଦେବୋଯାତି ଭୁବନାନି ପଶ୍ୟନ୍
ବୈଦିକ ମନ୍ତ୍ର ।

ଦେବତାମାନେ ଓ ରାଜାମାନେ ପୂର୍ବେ ରଥର ବ୍ୟବହାର କରୁଥିଲେ। ଯୁଦ୍ଧରେ ରଥର ଆବଶ୍ୟକତା ବହୁତ ପରିମାଣରେ ରହୁଥିଲେ ମଧ୍ୟ ସାଧାରଣ ଯାତାୟାତ ପାଇଁ ରାଜାମାନେ ରଥ ବ୍ୟବହାର କରୁଥିଲେ ।

ଓଡ଼ିଶାରେ କୋଣାର୍କ ମନ୍ଦିର ସୂର୍ଯ୍ୟଙ୍କର ରଥ ଆକାରରେ ଗଠିତ । ଦାକ୍ଷିଣାତ୍ୟର ହାମ୍ପି ( ପ୍ରାଚୀନ ବିଜୟନଗର) ଠାରେ ରଥ ଆକାରରେ ଏକ ମନ୍ଦିର ଅଛି ।

ପୁରୀର ରଥଯାତ୍ରା ନଅ ଦିନ ହୁଏ । ବଡ଼ଦେଉଳରୁ ବଳଭଦ୍ର, ସୁଭଦ୍ରା, ଜଗନ୍ନାଥ ଓ ସୁଦର୍ଶନଙ୍କୁ ତିନି ରଥରେ ବସାଇ ଗୁଣ୍ଡିଚା ଘରକୁ ନେଇ ସେଠାରୁ ପୁଣି ଏକ ସପ୍ତାହ ପରେ ସେହି ରଥରେ ସେମାନଙ୍କୁ ଫେରାଇ ଅଣାଯାଏ ।

ଗୁଣ୍ଡିଚାବାଡ଼ି ବା ଗୁଣ୍ଡିଚା ମନ୍ଦିର ବଡ଼ଦେଉଳଠାରୁ ଉତ୍ତରକୁ ପ୍ରାୟ ଦେଢ଼-ମାଇଲ ଦୂରରେ ଅବସ୍ଥିତ । ବଡ଼ଦେଉଳଠାରୁ ବଡ଼ଦାଣ୍ଡ ସିଂହଦ୍ୱାର ଆରମ୍ଭ ହୋଇ ଗୁଣ୍ଡିଚା ମନ୍ଦିରଠାରେ ଶେଷ ହୋଇଛି । ଏହି ଗୁଣ୍ଡିଚା ମନ୍ଦିରକୁ ମହାବେଦୀ, ଯଜ୍ଞମଣ୍ଡପ, ଜନ୍ମସ୍ଥାନ, ଜନକପୁରୀ, ଗୁଣ୍ଡିଚାମଣ୍ଡପ ବୋଲି ମଧ୍ୟ କହନ୍ତି । ଇନ୍ଦ୍ରଦ୍ୟୁମ୍ନ ଏହିଠାରେ ବେଦୀ ନିର୍ମାଣ କରି ଅଶ୍ୱମେଧ ଯଜ୍ଞ କରିଥିଲେ ବୋଲି ଏହାର ନାମ ମହାବେଦୀ, ଏହି କାରଣରୁ ଏହାର ଅନ୍ୟ ନାମ ଯଜ୍ଞମଣ୍ଡପ । ଏହି ବେଦୀ ଉପରେ ଇନ୍ଦ୍ରଦ୍ୟୁମ୍ନ ପାଞ୍ଚଶତବର୍ଷ ଯାବତ୍ ବିଷ୍ଣୁ ପ୍ରୀତ୍ୟର୍ଥେ ଆହୁତି ପ୍ରଦାନ କରିଥିଲେ । ଠାକୁରମାନଙ୍କର ଏଠାରେ ଜନ୍ମ ହୋଇଥିଲା ବୋଲି ଏହାର ନାମ ଜନ୍ମସ୍ଥାନ, ଜନକପୁର ବା ଜନକପୁରୀ ମଧ୍ୟ । ଇନ୍ଦ୍ରଦ୍ୟୁମ୍ନ ମହାରାଜା ପ୍ରଥମେ ନୃସିଂହଙ୍କୁ ପ୍ରତିଷ୍ଠା କରି ପରେ ଯଜ୍ଞ କରିଥିବାରୁ ଗୁଣ୍ଡିଚାବାଡ଼ି ଓ ତନ୍ନିକଟସ୍ଥ ନୃସିଂହ ମନ୍ଦିର ନୃସିଂହ କ୍ଷେତ୍ର ନାମରେ ମଧ୍ୟ ପରିଚିତ ।

ଗୁଣ୍ଡିଚାମଣ୍ଡପଂ ନାମ ଯତ୍ରାହମଜନଂ ପୁରା
ଅଶ୍ୱମେଧସହସ୍ରସ୍ୟ ମହାବେଦୀ ତଦାଭବତ୍ ।
ଉ· ଖ· ୨୯ ଅ· । ୩୪

ମମୋଦ୍‌ଭବପ୍ରଦେଶସ୍ଥ ନିଳୟଂ ପ୍ରୀତିକୃନ୍ମମ ଶାଶ୍ୱତମ୍
ବହୁକାଳଂ ସ୍ଥିତଶ୍ଚାହଂ ମମାସ୍ମିନ୍ ପ୍ରୀତିରୁତ୍ତମା । ୩୮

ଏହି ଅବସରେ ସୁଭଦ୍ରା ଓ ବଳରାମଙ୍କ ସହ ମୋତେ ରଥରେ ବସାଇ ବ୍ରାହ୍ମଣମାନଙ୍କୁ ପ୍ରୀତ କରି ଓ ରଥଯାତ୍ରାରୂପ ମହୋତ୍ସବ ସମ୍ପାଦନ କରି "ଯେଉଁ ସ୍ଥାନରେ ମୁଁ ପୂର୍ବେ ଆବିର୍ଭୂତ ହୋଇଛି ଓ ଯେଉଁ ସ୍ଥାନରେ ତୁମର ସହସ୍ର ଅଶ୍ୱମେଧଯଜ୍ଞର

ବେଦୀ ବିଦ୍ୟମାନ, ସେହି ଗୁଣ୍ଡିଚା ମଣ୍ଡପକୁ ଆମକୁ ନେଇଯିବ । (୩୩୪) । ଏହା ମୋହର ଜନ୍ମସ୍ଥାନ ବୋଲି ଶାଶ୍ୱତ ପ୍ରୀତିପଦ । ଏହି ସ୍ଥାନରେ ମୁଁ ଚତୁର୍ଦ୍ଧାବ ଅଧିଷ୍ଠିତ ଥିଲି । ତେଣୁ ସେଠାରେ ମୋର ଅସୀମ ପ୍ରୀତି ରହିଛି । (୩୮)

ଏ ଗୁଣ୍ଡିଚାମଣ୍ଡପଆଦି ଦେବତା ନୃସିଂହଙ୍କ କ୍ଷେତ୍ର ଥିବାରୁ ଭଗବାନ ଏହି ସ୍ଥାନକୁ ନୃସିଂହକ୍ଷେତ୍ର ବୋଲି ସ୍ୱୀକାର କରିଛନ୍ତି ।

ଯଥାସ୍ତଂ ନୀଲଶିଖରୀ ପ୍ରାସାଦେନ ତବାଧୁନା
ଚତୁର୍ମୁଖାନୁରୋଧେନ ମହତ୍ ପ୍ରୀତିକରୋ ମମ ।
ତଥା ନୃସିଂହ କ୍ଷେତ୍ରଞ୍ଚ ମହାବେଦୀ ତବକ୍ରତୋଃ ।
୨୧ ଅ । ୩୭ ଶ୍ଳୋକ

"ତୁମ ଦ୍ୱାରା ପ୍ରତିଷ୍ଠିତ ଏହି ମନ୍ଦିର ଓ ବ୍ରହ୍ମାଙ୍କ ଅନୁରୋଧ ଯୋଗୁଁ ଏହି ନୀଳାଚଳ ଯେପରି ପରମ ପ୍ରୀତିପଦ ସ୍ଥାନ, ତୁମର ଅଶ୍ୱମେଧ ଯଜ୍ଞର ମହାବେଦୀ ନୃସିଂହକ୍ଷେତ୍ର ମଧ୍ୟ ମୋର ସେହିପରି ପ୍ରୀତିପଦ ସ୍ଥାନ ଜାଣିବ ।"

ଭଗବାନ ଜନ୍ମସ୍ଥାନକୁ ପ୍ରତିବର୍ଷ ଯିବା ସଙ୍ଗେ ସଙ୍ଗେ ଭକ୍ତ ଇନ୍ଦ୍ରଦ୍ୟୁମ୍ନଙ୍କ ସରୋବର କୂଳରେ ଏକ ସପ୍ତାହ ନିବାସ କରିବେ ବୋଲି ମଧ୍ୟ କହିଛନ୍ତି ।

ଦିନାନ୍ନ ନବଯାସ୍ୟାମି ତଥା ତସ୍ମାଦିହାଗତଃ

ତତ୍ରାସ୍ତି ତେ ମହାରାଜ ସର୍ବତୀର୍ଥମୟଂ ସରଃ । ୪୦
ଉ· ଖ· । ୨୧ ଅ·

ତତ୍ତୀରେ ସପ୍ତଦିବସାନ୍ ସ୍ଥାସ୍ୟାମାନୁଗ୍ରହଃ ପ୍ରିୟ
ତତ୍ର ସ୍ଥିତଂ ମାଂ ପଶ୍ୟନ୍ତୋ ଯାନ୍ତି ମର୍ତ୍ତ୍ୟା ମମାଲୟମ୍ । ୪୧

"ହେ ରାଜା, ମୁଁ ସେଠାକୁ ନବଦିନ ଗମନ କରିବି । ପୁଣି ସେଠାରୁ ଫେରିବି । ସେଠାରେ ନିଖିଳତୀର୍ଥମୟ ତୁମର ଯେଉଁ ସରୋବର (ଇନ୍ଦ୍ରଦ୍ୟୁମ୍ନ ସରୋବର) ଅଛି, ତୁମ ପ୍ରତି ଅନୁଗ୍ରହ ଦେଖାଇବାକୁ ସେହି ସରସୀକୂଳରେ "ମୁଁ ଏକସପ୍ତାହ ଅଧିଷ୍ଠାନ କରିବି । ···"

ନୀଳଗିରିସ୍ଥିତ ଦୋଳବସ୍ଥରୁ ନବଦିବସ ସକାଶେ ବହିର୍ଗତ ହୋଇ ପରମ-ପବିତ୍ର ଅଶ୍ୱମେଧଯଜ୍ଞସମ୍ଭୂତ ଇନ୍ଦ୍ରଦ୍ୟୁମ୍ନସରୋବରକୂଳସ୍ଥ ନୃସିଂହକ୍ଷେତ୍ରାନ୍ତର୍ଗତ ସ୍ୱ ଜନ୍ମସ୍ଥାନ ମହାବେଦୀରେ ଭଗବାନଙ୍କର ଏକସପ୍ତାହ ଅଧିଷ୍ଠାନ ହିଁ ଗୁଣ୍ଡିଚା ଯାତ୍ରା ।

ଏହି ଗୁଣ୍ଡିଚା ଯାତ୍ରାରେ ଠାକୁରମାନେ ରଥରେ ବିଜେ ହେଉଥିବାରୁ ଏହାକୁ ରଥଯାତ୍ରା କୁହାଯାଏ ।

ଆଷାଢ଼ ଶୁକ୍ଳ ଦ୍ୱିତୀୟା ଦିନ ମନ୍ଦିର ତ୍ୟାଗ, ଗୁଣ୍ଡିଚା ମନ୍ଦିରରେ ସାତଦିନ ଅବସ୍ଥାନ, ନବମଦିନ ମନ୍ଦିରକୁ ବାହୁଡ଼ା—ଏହି ନବମଦିନବ୍ୟାପୀ ଯାତ୍ରାକୁ ନବଦିନଯାତ୍ରା ମଧ୍ୟ କହନ୍ତି ।

ଜଗନ୍ନାଥ ମହାବେଦୀରେ ଏକ ସପ୍ତାହ ଅବସ୍ଥାନ କରିବା ଉଦ୍ଦେଶ୍ୟରେ ଏହି ଯାତ୍ରାର ଆଦେଶ ଦେଇଥିବାରୁ ଏହାକୁ ମହାବେଦୀ ଯାତ୍ରା ମଧ୍ୟ କହନ୍ତି ।

ସ୍କନ୍ଦପୁରାଣ ଅନ୍ତର୍ଗତ "ଉତ୍କଳ ଖଣ୍ଡର" ୩୩ଶ ଅଧ୍ୟାୟଠାରୁ ୩୫ଶ ଅଧ୍ୟାୟ ପର୍ଯ୍ୟନ୍ତ ରଥଯାତ୍ରାର ଯେଉଁ ବିବରଣ ଦିଆଯାଇଛି ତାର ସାରମର୍ମ ଏହିପରି—ବୈଶାଖ ଶୁକ୍ଳ ତୃତୀୟା ରୋହିଣୀନକ୍ଷତ୍ର ଦିନ ରାଜା ସଙ୍କଳ୍ପ କରିବେ । ଆଚାର୍ଯ୍ୟ ବରଣ କରିବେ । କାର୍ଯ୍ୟଦକ୍ଷ "ଅବଧୂତ" ଜଣେ ବା ତିନି ଜଣ ସୂତ୍ରଧରଙ୍କୁ ବନକୁ ଯିବା ପାଇଁ ବସନ, ଭୂଷଣ ଦେଇ ବରଣ କରିବେ । ଯେଉଁ ବନରେ ଅତ୍ୟୁତ୍ତମ ତରୁ ବିଦ୍ୟମାନ ସେଠାକୁ ଯାଇ ରାଜା ମନ୍ତ୍ର ଉଚ୍ଚାରଣ କରି ଅଗ୍ନି ସ୍ଥାପନ କରିବେ । ଆଜ୍ୟଧାରାଯୁକ୍ତ ଅଷ୍ଟୋତ୍ତର ଶତ ଆହୁତି ଦେବେ । ପ୍ରତି ବୃକ୍ଷ ମୂଳରେ ଆଜ୍ୟଧାରା ଦେବେ । ଦିଗପାଳମାନଙ୍କୁ ଯଥାଯଥ ବଳି ଦେବେ । କ୍ଷେତ୍ରପାଳମାନଙ୍କୁ ପଶୁବଳି ଦେବେ । ବୃକ୍ଷର ପ୍ରୀତି ପାଇଁ ଚରୁ ଦୁଗ୍ଧାନ୍ନ ଆହୁତି ଦେବେ । ଆଚାର୍ଯ୍ୟ ପତଗଧ୍ୱଜ ଭଗବାନଙ୍କୁ ଧ୍ୟାନ କରି କୁଠାର ଧରି ମନ୍ତ୍ର ଉଚ୍ଚାରଣ କରି ବୃକ୍ଷର ମୂଳକୁ ଅଳ୍ପ ଅଳ୍ପ କରି କାଟିବେ । ସେଠାରେ ମଙ୍ଗଳ ଧ୍ୱନି କରାଇବେ । ସୂତ୍ରଧରଙ୍କୁ ଗଛକଟା କାର୍ଯ୍ୟରେ ନିଯୁକ୍ତ କରି ଆଚାର୍ଯ୍ୟ ସ୍ୱଗୃହକୁ ଫେରିବେ । ଯଦି ରଥ ନିର୍ମାଣ ଉପଯୁକ୍ତ କାଠ ସ୍ୱଗୃହ ନିକଟରେ ମିଳିବ ତାହା ହେଲେ ବିଧାନ ଅନୁସାରେ କାଷ୍ଠସଂସ୍କାର କରିବେ ।

ଜଗନ୍ନାଥଙ୍କ ରଥର ଚକ୍ର ସଂଖ୍ୟା ୧୬ (ଷୋଳ), ବେଦୀ ଉପରୁ ରଥର ଉଚ୍ଚତା ୨୩ (ତେଇଶି) ହାତ, ଗୃବେଷ୍ଟି ତୋରଣ ହେବ । ଗରୁଡ଼ଧ୍ୱଜ ରକ୍ତଚନ୍ଦନ କାଠର ହେବ । ବଳଦେବଙ୍କ ରଥର ୧୪ (ଚଉଦ)ଟି ଚକ, ବେଦୀ ଉପରୁ ରଥର ଉଚ୍ଚତା ୨୨ (ବାଇଶି) ହାତ । ସୁଭଦ୍ରାଦେବୀଙ୍କ ରଥର ଚକ ସଂଖ୍ୟା ୧୨ (ବାର), ବେଦୀ ଉପରୁ ଉଚ୍ଚତା ୨୧ ହାତ ।

ଆଗେ ବିଘ୍ନବିନାଶନ ପାଇଁ ବିଘ୍ନରାଜ ଗଣପତିଙ୍କର ଉତ୍ସବ କରି ପରେ ରଥ କରିବ ।

ଜଗନ୍ନାଥ ରଥର ଲୌହମୟ ସୁଦୃଢ଼ ଷୋଡ଼ଶ ଚକ୍ର, ଷୋଡ଼ଶ ଅରକାଠ ଓ ଅକ୍ଷ ଏବଂ କୁବେର ଅତି ଦୃଢ଼ ହେବା କର୍ତ୍ତବ୍ୟ । ଏହା ଗୃହଆଜ୍ଞେ ବିଚିତ୍ର ଭାବେ ଗଠିତ କାଠ କୁଣ୍ଡେଇ କରିବ । ମନ୍ଦିରେ ଏକ ଉଚ୍ଚ ବେଦୀ କରିବ । ଏହାର ଚାରିଟା ସୁନ୍ଦର ତୋରଣ ଓ ଚାରିଟା ସୁନ୍ଦର ଦୁଆର ହେବ । ନାନାପ୍ରକାର କାରୁକାର୍ଯ୍ୟରେ ବିଭୂଷିତ କରିବ । ସୁନା ପଟାରେ ମଣ୍ଡିବ । ଉଚ୍ଚରେ ବାଇଗିହାତ କରିବ । ବହୁତ ପତାକା ଖଞ୍ଜିବ । ରକ୍ତଚନ୍ଦନ କାଠରେ ତିଆରି ଗରୁଡ଼ଧ୍ୱଜ ବସାଇବ । ଏହି ଗରୁଡ଼ଙ୍କ ଦେହ ସ୍ଥୂଳ ଓ ନାସିକା ଦୀର୍ଘ, କାନରେ କୁଣ୍ଡଳ; ସର୍ବାଙ୍ଗ ଅଳଙ୍କାରରେ ମଣ୍ଡିବ । ଥଣ୍ଟରେ ଗୋଟିଏ ସପ ଧରିଥିବ । ପକ୍ଷୀ ଦୁଇଟା ଏପରି ଭାବରେ ତିଆରି ହୋଇଥିବ ଯେ ଦେଖିଲେ ଭାବିବ, ଯେପରି ଏହା ଉଡ଼ୁଛି । ବଳରାମଙ୍କର ଚଉଦ ଚକ ଓ ସୁଭଦ୍ରାଙ୍କର ବାର ଚକରେ ରଥ ହେବ । ବଳରାମଙ୍କର ସପ୍ତଛଦମୟ ଲାଙ୍ଗୁଳ ଧ୍ୱଜ ଓ ସୁଭଦ୍ରାଙ୍କର ପଦ୍ମକାଠର ପଦ୍ମଧ୍ୱଜ ହେବ । ଏହି ତିନି ରଥକୁ ଯଥାବିଧି ପ୍ରତିଷ୍ଠା କରିବ । ଆଷାଢ଼ ମାସ ଶୁକ୍ଳପକ୍ଷ ପ୍ରତିପଦା ଦିନ ରଥମାନଙ୍କୁ ପ୍ରତିଷ୍ଠା କରିବ । ମନୁଷ୍ୟ, ପକ୍ଷୀ, ବିରାଡ଼ି ନେଉଳ କିମ୍ବା ଅନ୍ୟ କୌଣସି ଅଶୁଭ ପ୍ରାଣୀ ଯେପରି ରଥ ଉପରେ ନ ଚଢ଼େ, ସେଥିପ୍ରତି ଦୃଷ୍ଟି ଦେବ । ଠାକୁରଙ୍କ ପହଣ୍ଡି ବେଳେ ବାଟ ପରିଷ୍କାର କରିବ । ଦୁଇପଟ ସୁନ୍ଦର ଭାବରେ ଫୁଲ, ଫଳ ଗଛ ଓ ଲୁଗାଦ୍ୱାରା ସଜାଇବ । ଜଗନ୍ନାଥ ଦେବଙ୍କ ରଥ ଯିବା ବାଟରେ ପୁଷ୍ପବୃଷ୍ଟି ହେବାପାଇଁ ସ୍ଥାନେ ସ୍ଥାନେ ଫୁଲ ରହିବ । ଗାୟକ ଓ ନର୍ତ୍ତକୀମାନେ ଗୀତ ନୃତ୍ୟ କରିବେ । ବେଶ୍ୟାମାନେ ଛିଡ଼ା ହେବେ । ବାଦ୍ୟ ବାଜୁଥିବ, ବହୁତ ପତାକା ଉଡ଼ୁଥିବ । ସୁନ୍ଦର ସୁନ୍ଦର ଘୋଡ଼ା, ହାତୀ ସୁସଜ୍ଜିତ ହୋଇ ଛିଡ଼ା ହୋଇଥିବେ । ରାଜା ନିୟମପୂର୍ବକ ପବିତ୍ର ଭାବରେ ରହି ଏହି ରଥଉତ୍ସବ ସମାଧାନ କରିବେ । ଆଷାଢ଼ମାସ ଶୁକ୍ଳପକ୍ଷ ପୁଷ୍ୟାନକ୍ଷତ୍ରଯୁକ୍ତ ଦ୍ୱିତୀୟା ଦିନ ଅରୁଣୋଦୟ ସମୟରେ ଭଗବାନଙ୍କୁ ପ୍ରଥମେ ଅର୍ଚ୍ଚନା କରିବ । ଖେଚଡ଼ି ଭୋଗ କରିବ । ତା ପରେ ପ୍ରାର୍ଥନା କରିବ । ମହାପ୍ରଭୁଙ୍କୁ ପହଣ୍ଡି ବିଜେ କରାଇବ । ପହଣ୍ଡି ସମୟରେ ଗୀତ, ବାଦ୍ୟ, ପୁଷ୍ପବୃଷ୍ଟି, ନୃତ୍ୟ ପ୍ରଭୃତି ହେବ । ପ୍ରଥମେ ସୁଦର୍ଶନଙ୍କୁ ଆଣିବ ! ପରେ ବଳରାମ, ତା ପରେ ସୁଭଦ୍ରା ଓ ଶେଷରେ ଜଗନ୍ନାଥ ପହଣ୍ଡି ହେବେ । ଠାକୁରମାନଙ୍କୁ ରଥ ଉପରେ ବସାଇବ । ବ୍ରାହ୍ମଣମାନେ ଶାକୁନ ସୂକ୍ତ ପାଠ କରିବେ, ମଙ୍ଗଳଗାଥା ପାଠ, ଜୟୋଚ୍ଚାରଣ, କେହି କେହି 'ଜିତଂତେ' ପ୍ରଭୃତି ମନ୍ତ୍ର ପାଠ କରିବେ । ରଥରେ ବସ୍ତ୍ର ଓ ଅଳଙ୍କାର ଦ୍ୱାରା ଠାକୁରମାନଙ୍କୁ ବିଭୂଷିତ କରି ପୂଜା କରିବ । ରଥ ଟଣା ହେବା ସମୟରେ ବାଟରେ ସ୍ଥାନେ ସ୍ଥାନେ ପ୍ରଭୁଙ୍କର ବାଟ ଚାଲିବା କ୍ଳେଶ ନିବାରଣ ପାଇଁ ପଞ୍ଚାମୃତ, ଫୁଲ ଓ କର୍ପୂର ମିଶ୍ରିତ ଶୀତଳ ଜଳଦ୍ୱାରା ଦର୍ପଣରେ ଠାକୁରମାନଙ୍କୁ ଅଭିଷେକ କରିବ । ଚନ୍ଦନ ଓ କର୍ପୂରଦ୍ୱାରା ସର୍ବାଙ୍ଗଲଗି

କରିବ । ଚାମର ଓ ବିଞ୍ଚଣା ଦ୍ୱାରା ଠାକୁରମାନଙ୍କୁ ବିଞ୍ଚିବ । ତା ପରେ ଠାକୁର-ମାନଙ୍କୁ ଶାକର, ପଣା, ପିଠା, ଖଜୁରି, ନଡ଼ିଆ, କଦଳୀ, ତାଳ ଓ ବୃଚକର ଅନ୍ୟାନ୍ୟ ଫଳ, ଆଖୁ କ୍ଷିରରେ ତିଆରି ହୋଇଥିବା ବହୁପ୍ରକାର ସୁଖାଦ୍ୟ ବସ୍ତୁ, ସୁବାସିତ ଶୀତଳ ଜଳ, କର୍ପୂର ଲବଙ୍ଗାଦି ପକ୍ୱ ତାମ୍ବୁଲ ଦ୍ୱାରା ପୂଜା କରିବ । ଉପର ବେଳା ରଥ ଟଣା ହେବ । ଠାକୁରମାନେ ଗୁଣ୍ଡିଚା ବାଡ଼ିରେ ରଥ ପହଞ୍ଚିଲେ ସେମାନଙ୍କୁ ଗୁଣ୍ଡିଚା ମଣ୍ଡପରେ ବିଜେ କରାଇବ ।

ଇନ୍ଦ୍ରଦ୍ୟୁମ୍ନ ସରୋବର ତଟରେ ଭଗବାନ ସାତ ଦିନ ରହନ୍ତି । ଠାକୁରମାନେ ଗୁଣ୍ଡିଚା ମଣ୍ଡପରେ ବିଜେ ହେବା ପରେ ପ୍ରତିଦିନ ନିଜ ନିଜ ଧ୍ୟାନସ୍ଥିତ ଚିହ୍ନମୂର୍ତ୍ତିଙ୍କୁ ନାନାପ୍ରକାର ଉପଚାର ଦ୍ରବ୍ୟ ଓ ନୃତ୍ୟଗୀତାଦି ଦ୍ୱାରା ପୂଜା କରିବ । ପ୍ରତିଦିନ ଭୀଷଣ ଭୂତପ୍ରେତାଦି ଓ ଆକସ୍ମିକ ଦୁର୍ଘଟଣାଦ୍ୱାରା ଯେପରି ରଥର କୌଣସି କ୍ଷତି ନ ହୁଏ, ସେଥିପାଇଁ ଦିଗ୍‌ପାଳମାନଙ୍କୁ ପାୟସାନ୍ନ ଯଥାବିଧି ବଳି ଦେବ ଏବଂ ଭୂତ ପ୍ରେତ ଓ ପିଶାଚମାନଙ୍କୁ ସେମାନଙ୍କର ପ୍ରିୟ ବଳି ଦେବ । ରଥ ଉପରେ ଯେପରି କୌଣସି ଗ୍ରାମ୍ୟ ପଶୁ କମ୍ବା ଅଶୁଭ ପକ୍ଷୀ ନ ଚଢ଼େ, ତାର ବ୍ୟବସ୍ଥା କରିବ ।

ଅଷ୍ଟମଦିନ ତିନି ରଥକୁ ଦକ୍ଷିଣାଭିମୁଖ କରି ବସ୍ତ୍ର ମାଳ୍ୟ ପତାକା ଓ ଚାମର ଦ୍ୱାରା ସୁସଜ୍ଜିତ କରିବ । ଏହାକୁ ହେରାପଞ୍ଚମୀ, ଦକ୍ଷିଣମୂର୍ତ୍ତି ବୋଲି ମଧ୍ୟ କୁହାଯାଏ । ନବମୀ ତିଥିରେ ସକାଳବେଳା ଠାକୁରମାନଙ୍କୁ ରଥରେ ବସାଇବ । ସିଂହଦ୍ୱାରକୁ ରଥ ଟାଣିନେବ ।

ଯିବାଦିନ ଓ ଆସିବା ଦିନ ଛାଡ଼ି ଠାକୁରମାନେ ଗୁଣ୍ଡିଚା ମଣ୍ଡପରେ ସାତଦିନ ରହିବେ । ଏହି ଦିନମାନଙ୍କରେ ଠାକୁରମାନେ ଦଶାବତାର ବେଶ ହେବେ ।

ଗୁଣ୍ଡିଚା ବାଡ଼ିରେ ବଡ଼ଦେଉଳର ଯାବତୀୟ ନୀତି ଚାଲିବ । ମହାପ୍ରସାଦ ହେବ । ଠାକୁରମାନେ ଦଶାବତାର ବେଶ ହେବେ ।

ଏହି ରଥଯାତ୍ରାକୁ "ନବଦିନାତ୍ମିକା ଯାତ୍ରା" କୁହାଯାଏ । ଏହାର ତିନୋଟି ଅଙ୍ଗ । ପ୍ରଥମ ଅଙ୍ଗ—ପୂର୍ବଯାତ୍ରା; ଦ୍ୱିତୀୟ ଅଙ୍ଗ—ଗୁଣ୍ଡିଚା ମଣ୍ଡପରେ ଅବସ୍ଥାନ ବା ଆଡ଼ପ ; ତୃତୀୟ ଅଙ୍ଗ—ବାହୁଡ଼ାଯାତ୍ରା ।

ରଥ ଯିବା ବାଟରେ ମାଉସୀ ମାଆ (ଅର୍ଦ୍ଧାସନୀ ଦେବୀ)ଙ୍କ ମନ୍ଦିରଠାରେ ଠାକୁରମାନଙ୍କ ଭୋଗ ଦିଆଯିବ ।

ରଥ ଉପରେ ଠାକୁରମାନେ ଥିବା ପର୍ଯ୍ୟନ୍ତ ଦଇତାମାନଙ୍କର କର୍ତ୍ତୃତ୍ୱରେ ରହିବେ ।

ବାହୁଡ଼ା ଦିନ ଠାକୁରମାନେ ସିଂହଦ୍ୱାର ନିକଟରେ ପହଞ୍ଚିଲେ ଲକ୍ଷ୍ମୀ ଓ ନାରାୟଣଙ୍କ ଭେଟ ହେବ । ଜଗମୋହନ ଭିତରେ ଜଗନ୍ନାଥ ଓ ଲକ୍ଷ୍ମୀ ଠାକୁରାଣୀଙ୍କ ମଧ୍ୟରେ "ବଚନିକା" ହେବ । ପୂର୍ବରୁ ଜୟବିଜୟ ଦ୍ୱାର ବନ୍ଦ ଥିବ । ଲକ୍ଷ୍ମୀଠାକୁରାଣୀ କବାଟ ବନ୍ଦ ରଖିଥିବେ । ବଚନିକା ପରେ କବାଟ ଖୋଲା ହେବ । ଠାକୁରମାନଙ୍କୁ ସିଂହାସନ ଉପରକୁ ବିଜେ କରାହେବ ।

ଠାକୁରମାନେ ଗୁଣ୍ଡିଚା ମଣ୍ଡପ ଉପରେ ଥିବା ସମୟରେ ବନ ଜାଗରଣ ବ୍ରତ ପାଳନ କଲେ ମହାପୁଣ୍ୟ ହୁଏ । ଶୁକ୍ଳ ଦ୍ୱିତୀୟା ଦିନ ଇନ୍ଦ୍ରଦ୍ୟୁମ୍ନ ସରୋବରରେ ସ୍ନାନ ସାରି ନୃସିଂହଙ୍କଠାରେ ସଙ୍କଳ୍ପ ବ୍ରତ ଆରମ୍ଭ କରିବାକୁ ହେବ । ଏହାକୁ ମହାବେଦୀ ମହୋତ୍ସବ ବ୍ରତ ମଧ୍ୟ କୁହାଯାଏ । ଅଷ୍ଟମ ଦିବସରେ ଶେଷ ହୁଏ ।

ମହାବେଦୀରେ ଜଗନ୍ନାଥଙ୍କ ଅବସ୍ଥିତିକୁ ମହାବେଦୀ ଯୋଗ କୁହାଯାଏ । ଏହା ଅତି ପବିତ୍ର ସମୟ । ମଘାନକ୍ଷତ୍ରଯୁକ୍ତ ଶୁକ୍ଳ ପଞ୍ଚମୀ ଦିନ ଶ୍ରାଦ୍ଧ କଲେ ପିତୃମାନେ ପରମ ସନ୍ତୋଷ ଲଭ କରନ୍ତି । ଆଷାଢ଼ ଶୁକ୍ଳ ପଞ୍ଚମୀ ତିଥି, ମଘାନକ୍ଷତ୍ର, ଜଗନ୍ନାଥଙ୍କ ମହାବେଦୀ ସମାଗମ—ଏ ତିନି ମହାବେଦୀ ଯୋଗର ତ୍ରିପାଦସ୍ୱରୂପ । ଏହା ସହିତ ଇନ୍ଦ୍ରଦ୍ୟୁମ୍ନ ସରୋବର ମିଳିତ ହେଲେ ଚତୁଷ୍ପାଦ ଯୋଗ ହୁଏ । ଏହା ପୂର୍ଣ୍ଣଯୋଗ ଏବଂ ପିତୃମାନଙ୍କର ମୁକ୍ତିପଦ ।

ଓଡ଼ିଶାର ବିଭିନ୍ନ ସ୍ଥାନରେ ପୁରୀ ଅନୁକରଣରେ ଜଗନ୍ନାଥଙ୍କ ରଥଯାତ୍ରା ହୁଏ । ତା'ଛଡ଼ା ବିଭିନ୍ନ ଦେବଦେବୀମାନଙ୍କର ରଥଯାତ୍ରା ମଧ୍ୟ ହୁଏ । ରଥଯାତ୍ରାର ସମୟ ଉତ୍କଳଖଣ୍ଡରେ ଏପରି ଦିଆଯାଇଛି—

ଯସ୍ୟାଃ ସଙ୍କୀର୍ତ୍ତନା ଦେବ ନରଃ ପାପାତ୍ ପ୍ରମୁଚ୍ୟତେ
ମାଘ ମାସସ୍ୟ ପଞ୍ଚମ୍ୟା ମଷ୍ଟମ୍ୟାଂ ଚୈତ୍ର ଶୁକ୍ଳକେ । ୩୧
ଏତେ କାଳାଃ ପ୍ରଶସ୍ତାହି ଗୁଣ୍ଡିଚାଖ୍ୟ ମହୋତ୍ସବେ
ବିଶେଷାନ୍ମୋକ୍ଷଦାଷାଢ଼ ଦ୍ୱିତୀୟା ପୁଷ୍ୟସଂଯୁତା । ୩୨।୧ଅ.

"ଉକ୍ତ ମହାଯାତ୍ରା (ଗୁଣ୍ଡିଚା ମହୋତ୍ସବ)ର ନାମ ଉଲ୍ଲେଖ କଲେ ମଧ୍ୟ ଲୋକ ନିଷ୍ପାପ ହେବ । ମାଘ ମାସ ଶୁକ୍ଳ ପଞ୍ଚମୀ ଓ ଚୈତ୍ର ଶୁକ୍ଳ ଅଷ୍ଟମୀ ଦିନ ଗୁଣ୍ଡିଚା ଯାତ୍ରାର

ପ୍ରଶସ୍ତ ଦିନ । ପୁଷ୍ୟାନକ୍ଷତ୍ରଯୁକ୍ତ ଆଷାଢ଼ ଶୁକ୍ଳ ଦ୍ୱିତୀୟାରେ ଗୁଣ୍ଡିଚାଯାତ୍ରା ସର୍ବୋଂଶ ମୋକ୍ଷଦା ।”

## ଅନ୍ୟ ରଥଯାତ୍ରା

ମାଘ ଶୁକ୍ଳ ପଞ୍ଚମୀ (ଶ୍ରୀପଞ୍ଚମୀ) ଦିନ ବୋଧହୁଏ କୋଣାର୍କରେ ପୂର୍ବେ ସୂର୍ଯ୍ୟ-ଦେବଙ୍କର ରଥଯାତ୍ରା ହେଉଥିଲା । ଚୈତ୍ର ଶୁକ୍ଳ ଅଷ୍ଟମୀ (ଅଶୋକାଷ୍ଟମୀ) ଦିନ ଭୁବନେଶ୍ୱରରେ ଲିଙ୍ଗରାଜଙ୍କର ରଥଯାତ୍ରା ହୁଏ ।

ଖଣ୍ଡଗିରିରେ ମଧ୍ୟ ରଥ ଯାତ୍ରା ହେଉଥିବାର ଶୁଣାଯାଏ । ଅବଶ୍ୟ ଏହା ପ୍ରାଚୀନ କାଳରୁ ଚାଲି ଆସୁଛି କି ନାହିଁ ତାହା ଜାଣିବାର ଉପାୟ ନାହିଁ । “ଅନନ୍ତ ବାସୁଦେବ ଓ କଣେଶ୍ୱରଙ୍କ ବିଗ୍ରହଦ୍ୱୟ ଗିରି (ଖଣ୍ଡଗିରି) ଶିଖରରେ ବିରାଜମାନ କରିଥିଲେ । ଫଳ-ହାରୀ ନାମକ ଏକ ସନ୍ନ୍ୟାସୀ ଶ୍ରୀବିଗ୍ରହଙ୍କର ସେବା ପୂଜା କରୁଥିଲେ । ଆଷାଢ଼ ଶୁକ୍ଳ ଦ୍ୱିତୀୟାଠାରୁ ଦଶମୀ ପର୍ଯ୍ୟନ୍ତ ଏହାଙ୍କର ରଥଯାତ୍ରା ହେଉଥିଲା । ଶ୍ରୀବିଗ୍ରହ ରଥାରୋହଣ କରି ନିକଟବର୍ତ୍ତୀ ଜାଗମରା ଗ୍ରାମ ପର୍ଯ୍ୟନ୍ତ ଆସି ସେଠାରେ ଆଠଦିନ ରହି ଦଶମୀ ଦିନ ପ୍ରତ୍ୟାଗମନ କରୁଥିଲେ । ସନ୍ନ୍ୟାସୀଙ୍କ ଲୋକାନ୍ତେ ଗ୍ରାମବାସୀମାନେ ଶ୍ରୀବିଗ୍ରହଙ୍କୁ ଆଣି ଏକ ମଠରେ ରଖିଛନ୍ତି । ରଥଯାତ୍ରା ସମୟରେ ଦେବମୂର୍ତ୍ତିଦ୍ୱୟ ରଥାରୋହଣପୂର୍ବକ ଉଦୟଗିରି ପର୍ଯ୍ୟନ୍ତ ଯାତ୍ରା କରି ଉଦୟଗିରି ହରିଦାସ ନାମକ ଗୁହାରେ ଆଠଦିନ ରହି ପ୍ରତ୍ୟାଗମନ କରନ୍ତି । ଯାତ୍ରା ସମୟରେ ବହୁ ଲୋକଙ୍କ ସମାଗମ ହୁଏ । (୧୫୦)

ଅନନ୍ତ ବାସୁଦେବ ଓ କଣେଶ୍ୱରଙ୍କ ରଥଯାତ୍ରା ଜଗନ୍ନାଥଙ୍କ ରଥଯାତ୍ରା ପରି। ଭାରତର କେତେକ ସ୍ଥାନରେ ରଥଯାତ୍ରା ପ୍ରଚଳନ ଅଛି ।

## ନେପାଳରେ ରଥଯାତ୍ରା

ନେପାଳରେ ବିଭିନ୍ନ ସମ୍ପ୍ରଦାୟର ରଥଯାତ୍ରା ହୁଏ ।

ଭୈରବ ଓ ଲିଙ୍ଗଯାତ୍ରା—ନେପାଳ ରାଜଧାନୀରେ ଏହି ଯାତ୍ରା ବୈଶାଖ ୧ମ ଓ ୨ୟ ଦିନରେ ହୁଏ । ଦୁଇଟି ରଥରେ ଭୈରବ ଓ ଭୈରବୀଙ୍କୁ ବସାଇ ସହରର ନାନା ସ୍ଥାନ ବୁଲାଇ ରାଜପ୍ରାସାଦ ନିକଟକୁ ଅଣାଯାଏ । ଏଠାରୁ ଆଉ ଗୋଟିଏ ରଥରେ ଲିଙ୍ଗକୁ ବସାଇ ତିନିରଥକୁ ଟଣାଯାଏ । ଦୁଇରଥ ଟଣାକୁ ଭୈରବ ଯାତ୍ରା ଓ ତିନିରଥ ଟଣାକୁ ଲିଙ୍ଗଯାତ୍ରା କୁହାଯାଏ ।

---

୧୫୦ । ଭାରତତୀର୍ଥଦର୍ଶନ—(ସ୍ୱର୍ଗୀୟ) ମଦନମୋହନ ପଟ୍ଟନାୟକ, ପୃ ୩୮୨

ନେତାଦେବୀ ବା ଦେବୀଯାତ୍ରା—ବୈଶାଖ ଶୁକ୍ଳ ଚତୁର୍ଦ୍ଦଶୀରେ ନେତାଦେବୀ ବା ଦେବୀଙ୍କ ରଥଯାତ୍ରା ହୁଏ ।

କୁମାରୀ-ରଥଯାତ୍ରା—କେବଳ 'ରଥଯାତ୍ରା' ଆଖ୍ୟାରେ ନେପାଳର ସର୍ବତ୍ର ପ୍ରସିଦ୍ଧ । ଦେବଦେବୀଙ୍କର ପ୍ରତିମା ନେଇ ଏହି ରଥୋତ୍ସବ ଅନୁଷ୍ଠିତ ହୁଏ ନାହିଁ । ଏଥିରେ ଅଷ୍ଟମାତୃକାର ଅନ୍ୟତମ କୁମାରୀ ଏବଂ ଗଣେଶ ଓ କୁମାର ସ୍ୱରୂପ ଗୋଟିଏ ବାଳିକା ଓ ଦୁଇଟି ବାଳକ ରଥରେ ପୂଜା ପାଆନ୍ତି । ନେପାଳରେ ପ୍ରବାଦ ଅଛି ଯେ ରାଜା ଜୟପ୍ରକାଶ ମଲ୍ଲ ପ୍ରଥମେ କୁମାରୀଙ୍କୁ ଅବମାନନା କରି ତାଙ୍କର ଭୂସମ୍ପତ୍ତି କାଢ଼ି ନେଇଥିଲେ । ସେହିଦିନ ରାତ୍ରିରେ ତାଙ୍କର ରାଣୀ ମୂର୍ଚ୍ଛିତା ହୋଇଗଲେ ଏବଂ କୁମାରୀ ଆସି ତାଙ୍କଠାରେ ଅଧିଷ୍ଠିତ ହୋଇଥିଲେ, ଏହିଭଳି ଅଭିପ୍ରାୟ ପ୍ରକାଶ କରନ୍ତି । ରାଜା ଭୀତ ହୋଇ କୁମାରୀପୂଜାର ଆୟୋଜନ କଲେ । ଏବେ ମଧ୍ୟ ନେପାଳର ବାଆଡ଼ାମାନଙ୍କ ଭିତରୁ ସାତବର୍ଷର ଏକ କୁମାରୀ ଓ ଦୁଇଟି ବାଳକ ବାଛି ଆଣନ୍ତି । ଯେକୌଣସି କୁମାରୀ ହେଲେ ଚଳିବ ନାହିଁ । ଯାହାକୁ କୁମାରୀ କରାହେବ, ସେହି କନ୍ୟା ଓ ବାଳକ ଦୁଇଟିକୁ ଶୋଣିତସିକ୍ତ ବସ୍ତ୍ରରେ ସୁବୃହତ୍ ମହିଷଶୃଙ୍ଗସଜ୍ଜିତ ଗୋଟିଏ ଭୀତିପ୍ରଦ ଗୃହରେ ଆଣି ରାତ୍ରି ଦିଅନ୍ତି । ଯଦି ସେହି ଭୀଷଣ ଦୃଶ୍ୟରେ ସେମାନେ କିଛି ହେଲେ ବିଚଳିତ ନ ହୁଅନ୍ତି, ତାହାହେଲେ କନ୍ୟା ସ୍ୱୟଂ ଦେବୀଙ୍କ ଅବତାର ଓ ପୁତ୍ର ଦୁଇଟି ଗଣେଶ ଓ କାର୍ତ୍ତିକ ବୋଲି କୁହାଯାଏ ସମସ୍ତଙ୍କର ଭକ୍ତି ଆକର୍ଷଣ କରନ୍ତି । ସ୍ୱୟଂ ନେପାଳପତି ଆସି କନ୍ୟାଙ୍କର ପୂଜା କରନ୍ତି ଏବଂ ତାଙ୍କର ଖର୍ଚ୍ଚ ପାଇଁ ତିନିହଜାର ଟଙ୍କାର ଏବଂ ବାଳକମାନଙ୍କ ପାଇଁ ଦେଢ଼ହଜାର ଟଙ୍କା ଆୟର ଜାଗିର ଦିଆହୁଏ । ଏହି ତିନିଜଣ ଯେଉଁ ଗୃହରେ ରହିଥାଆନ୍ତି ତାହା "ଦେବତାର ମକାନ୍" ବୋଲି ଗଣ୍ୟ । ......ତିନି ଚାରିବର୍ଷ ପର୍ଯ୍ୟନ୍ତ ଏହି ତିନିଜଣଙ୍କର ପୂଜା ହୋଇଥାଏ, ତା ପରେ ଆଉ ନୂତନ ନୂତନ ବାଳକ ବାଳିକା ନିର୍ବାଚିତ ହୁଅନ୍ତି । ଏହି ତିନିଜଣଙ୍କୁ ସୁସଜ୍ଜିତ ମନ୍ଦିରାକାର ରଥରେ ସ୍ଥାପନ କରି ଯେତେବେଳେ ରଥଯାତ୍ରା ହୁଏ, ସେତେବେଳେ ନେପାଳ ରାଜା ସର୍ଦ୍ଦାରମାନଙ୍କ ଦ୍ୱାରା ପରିବୃତ ହୋଇ ସ୍ୱୟଂ ବାହାର ହୋଇ ପୂଜା ସମ୍ମାନ କରିଥାଆନ୍ତି । (୧୫୧)

ମତ୍ସେନ୍ଦ୍ର ଯାତ୍ରା—ଏହି ରଥଯାତ୍ରା ବୌଦ୍ଧମାନଙ୍କ ଦ୍ୱାରା ପ୍ରବର୍ତ୍ତିତ । ଏଥିରେ ହିନ୍ଦୁ ଓ ବୌଦ୍ଧ ସମସ୍ତେ ଯୋଗ ଦିଅନ୍ତି । ଚୈତ୍ର ମାସରେ ଏହି ଉତ୍ସବ ହୋଇଥାଏ ।

ନେପାଳରେ ରଥଯାତ୍ରାରେ ବୌଦ୍ଧ ଓ ହିନ୍ଦୁମାନଙ୍କର ବିଶେଷ ଉତ୍ସାହ ଦେଖାଯାଏ ।

---

୧୫୧ ବିଶ୍ୱକୋଷ (ବ) "ରଥଯାତ୍ରା" ବିଷୟ ।

ନେପାଳର ବୌଦ୍ଧ ରଥଯାତ୍ରା ସମ୍ବନ୍ଧରେ ଓଲ୍ଡଫିଲ୍ଡ଼ ଲେଖିଛନ୍ତି ଯେ ଏହା ପୁରୀର ଜଗନ୍ନାଥଙ୍କ ରଥଯାତ୍ରାର ଅନୁକରଣ ।

The Buddhist festival is evidently adopted from the Hindu festival of Jagannath and his brother Balaram, and the Kumari representing their sister Subhadra. (୧୫୬)

ମର୍ମ— ହିନ୍ଦୁମାନଙ୍କର ଜଗନ୍ନାଥ, ବଳଭଦ୍ର ଓ ସୁଭଦ୍ରାରୂପୀ କୁମାରୀଙ୍କର ରଥ-ଯାତ୍ରାର ଅନୁକରଣରେ ବୌଦ୍ଧମାନଙ୍କର ରଥଯାତ୍ରାର ପ୍ରଚଳନ ହୋଇଥିବା ସ୍ପଷ୍ଟ ଜଣାଯାଉଛି ।

ପ୍ରାଚୀନ କାଳରେ ପାଶ୍ଚାତ୍ୟ ଦେଶମାନଙ୍କରେ ମଧ୍ୟ ପୁରୀର ରଥଯାତ୍ରା ଭଳି ରଥଯାତ୍ରା ଥିବାର ଜଣାଯାଏ ।

ପୂର୍ବେ ସିସିଲ ଦ୍ୱୀପରେ ରଥଯାତ୍ରା ହେଉଥିଲା । ଜଣେ ପାଶ୍ଚାତ୍ୟ ମହିଳା ଏପରି ଏକ ବର୍ଣ୍ଣନା ପ୍ରକାଶ କରିଛନ୍ତି—

"A colossal car is dragged by a long team of buffaloes through the irregular and ill-paved streets. Upon this are erected a great variety of obiects such as Sun, Moon and principal planets set in rotary motion and diminishing proportionately in size as they approach the summit of the structure. This errection is in itself really imposing, sumptuously decorated and put in movement in honour of her who gave birth to the God of Charity. But its functions recall to mind the famed car of Jagannath." (୧୫୭)

---

୧୫୬। Sketches from Nepal Vol 2. P. 316. Oldfield.

୧୫୭। Memoirs of Heneriatta Caraciolo P 21.

ମର୍ମ—କଣ୍ଟୁ ଓ ଖାଲଚ୍ଛିପ ରାସ୍ତା ଉପରେ ଏକ ବଶାଳକାୟ ରଥ ପଲେ ମହୁଷୀଙ୍କଦ୍ୱାରା ଟଣାଯାଏ । ଏହି ରଥ ଉପରେ ବହୁ ରକମର ଚନ୍ଦ ଗଢ଼ା ଯାଇଥାଏ । ସୂର୍ଯ୍ୟ, ଚନ୍ଦ୍ର, ପ୍ରଧାନ ପ୍ରଧାନ ଗ୍ରହର ପ୍ରତିମା ବରାବର ଘୁରୁଥାନ୍ତି, ତଳକୁ ଉପରକୁ ହେଉଥାଆନ୍ତି । ତଳୁ ଶିଖର ଉପରକୁ ଗଲାବେଳେ କ୍ରମରେ ଶ୍ରେଷ୍ଠ ଶ୍ରେଷ୍ଠ ଦେଖାଯାଆନ୍ତି । ଏହି ଦୃଶ୍ୟ ଅତି ମନୋହର ଦେଖାଯାଏ ; ବହୁ ଚନ୍ଦଦ୍ୱାରା ଚନ୍ଦ୍ରିତ ଓ ସୁସଜ୍ଜିତ ହୋଇଥାଏ । ଦାନଦେବଙ୍କର ଜନ୍ମଦାତ୍ରୀଙ୍କ ପ୍ରୀତ୍ୟର୍ଥେ ଏହି ରଥଯାତ୍ରା ହୁଏ । କିନ୍ତୁ ଏହି ଉତ୍ସବଟି ପ୍ରସିଦ୍ଧ ଜଗନ୍ନାଥଙ୍କ ରଥଯାତ୍ରା ସ୍ମରଣ କରାଇ ଦିଏ ।

ଜୈନ ରଥଯାତ୍ରା—ଜୈନ ସମ୍ପ୍ରଦାୟରେ ରଥଯାତ୍ରାର ପ୍ରଚଳନ ବହୁ କାଳରୁ ଅଛି । ପୂର୍ବେ ଉଜ୍ଜୟିନୀ ନଗରରେ ସମ୍ପ୍ରତି ରାଜାଙ୍କ ରାଜତ୍ୱ ସମୟରେ ତୀର୍ଥଙ୍କର ଜୀବନ୍ତ ସ୍ୱାମୀଙ୍କ ମୂର୍ତ୍ତିକୁ ରଥରେ ବସାଇ ନଗର ପ୍ରଦକ୍ଷିଣ କରାଯାଉଥିଲା । ସମ୍ପ୍ରତି ସୁହସ୍ତିନ୍‌ଙ୍କ ଶିଷ୍ୟ । ସୁହସ୍ତିନ୍ ଓ ମହାଗିରି ଶିଷ୍ୟମଣ୍ଡଳୀ (ଗଚ୍ଛ) ସଙ୍ଗରେ ଧର ଅବନ୍ତୀଠାରୁ ଉଜ୍ଜୟିନୀକୁ ଚୈତ୍ୟ ପର୍ବ ଉପଲକ୍ଷରେ ଶୋଭାଯାତ୍ରା ବାହାର କରିବା ସମୟରେ ଆସୁଥିଲେ । ଚୈତ୍ୟ ପର୍ବର ଶେଷଭାଗରେ ରଥଯାତ୍ରା ଉତ୍ସବ ଆରମ୍ଭ ହୁଏ ।

"ଯାତ୍ରା ପର୍ବର ଶେଷଭାଗରେ ସମଗ୍ର ସଙ୍ଘକର୍ତ୍ତୃକ ଅନୁସୃତ ହୋଇ ରଥଯାତ୍ରା ଆରମ୍ଭ କରାଯାଏ, ଯେହେତୁ ରଥଯାତ୍ରା ବ୍ୟତୀତ ପର୍ବାଦି ସମ୍ବନ୍ଧୀୟ କୌଣସି ଶୋଭାଯାତ୍ରା ସମ୍ପୂର୍ଣ୍ଣ ବୋଲି ବିବେଚିତ ହେଉ ନ ଥିଲା । ରଥଶାଳାଠାରୁ ସୂର୍ଯ୍ୟଙ୍କ ରଥ ସଦୃଶ ସୁବର୍ଣ୍ଣ ଓ ମଣିରତ୍ନାଦିଖଚିତ ଏହି ରଥଟି ଅଣାହେଲେ ଏହାର ପ୍ରଭାରେ ଚତୁର୍ଦ୍ଦିଗ ଆଲୋକିତ ହୁଏ । ତା ପରେ ଶ୍ରାବକମାନେ ରଥରେ ଉପବିଷ୍ଟ ଅର୍ହତଙ୍କ ମୂର୍ତ୍ତି ବିଧିମତେ ସ୍ନାନ କରାଇ ପୂଜାଦି ଆରମ୍ଭ କରନ୍ତି । ସ୍ନାନ ଶେଷ ହେଲେ କେତେଜଣ ବ୍ୟକ୍ତି ସ୍ୱ ସ୍ୱ ମୁଖମଣ୍ଡଳ ବସ୍ତ୍ରାବୃତ କରି ବିଗ୍ରହଙ୍କ ଦେହକୁ ଗନ୍ଧଦ୍ରବ୍ୟରେ ଅନୁଲିପ୍ତ କରନ୍ତି ।

ମାଲତୀ ଓ ପଦ୍ମ ପୁଷ୍ପର ମାଲ୍ୟଦାମରେ ଅର୍ହତଙ୍କ ମୂର୍ତ୍ତି ଆବୃତ କରାହୁଏ । ପ୍ରଜ୍ୱଳିତ ଧୂପଶଳାକାରୁ ଉତ୍‌ଥିତ ଧୂମପୁଞ୍ଜରେ ଆବୃତ ହୋଇଥିବା ମୂର୍ତ୍ତିଙ୍କୁ ଦେଖି ମନେ ହେଉଥାଏ, ଯେପରି ସେ ନୀଳବସ୍ତ୍ରରେ ଶୋଭିତ ହୋଇଛନ୍ତି । ଭକ୍ତମାନେ ସମ୍ମୁଖରେ ପ୍ରଦୀପ ଆନ୍ଦୋଳିତ କରି ଏହି ଦେବଙ୍କର ଆରତିକ କ୍ରିୟା ସମ୍ପନ୍ନ କରନ୍ତି ।

ଧର୍ମପ୍ରାଣ ଭକ୍ତମାନେ ଅଶ୍ୱପରି ରଥର ସମ୍ମୁଖଭାଗରେ ରହି ଏବଂ ବାରମ୍ବାର ନମସ୍କାର କରି ଏହି ପରମପୂଜ୍ୟ ଅର୍ହତଙ୍କ ରଥ ସ୍ୱେଚ୍ଛାରେ ଟାଣିନେଇ ଯାଆନ୍ତି ।

ନଗରବାସିନୀ ରମଣୀମାନେ ବିଭିନ୍ନ ଦଳରେ ବିଭକ୍ତ ହୋଇ ଏହି ସୁନ୍ଦର ଦର୍ଶନ-ଯୋଗ୍ୟ ରଥର ସମ୍ମୁଖ ଭାଗରେ ପ୍ରାୟଶଃ ବହୁପ୍ରକାର ବିଭିନ୍ନ କରତାଳର ବାଦ୍ୟ ସହିତ ନୃତ୍ୟ ଆରମ୍ଭ କରନ୍ତି । ଭକ୍ତିମତୀ ରମଣୀମାନେ ଚତୁର୍ଦ୍ଦିଗରେ ଉଚ୍ଚ କଣ୍ଠରେ ମାଙ୍ଗଳ୍ୟ ଗୀତ ଗାନ କରୁଥାନ୍ତି ଏବଂ ନଗରର ବିଭିନ୍ନ ମନ୍ଦିର ଓ ବଜାରରେ ରଥଟି ନାନା-ରୂପ ପୂଜା ପାଏ । ରଥର ସମ୍ମୁଖଭାଗ କୁଙ୍କୁମ ଜଳରେ ରଞ୍ଜିତ ହୋଇଥିଲା । ଅବଶେଷରେ ରଥଟି ସମ୍ପ୍ରତି ରାଜାଙ୍କର ପ୍ରାସାଦରେ ଦ୍ୱାର ଦେଶରେ ଆସି ଉପସ୍ଥିତ ହେଲା । ରାଜା ଯେତେବେଳେ ପୂଜା କରିବା ପାଇଁ ଅଗ୍ରସର ହେଲେ ସେତେବେଳେ ତାଙ୍କର ଦେହର ରୋମରାଜି ପଣସ ଫଳପରି କଣ୍ଟକିତ ହୋଇଥିଲା । ରାଜା ରଥସ୍ଥିତ ମୂର୍ତ୍ତିଙ୍କୁ ଅଷ୍ଟପ୍ରକାର ପୂଜା ସମାଧା କଲେ ।" (୧୫୪)

ଉପସ୍ଥିତ ସାମନ୍ତ ରାଜାମାନେ ସମ୍ପ୍ରତିଙ୍କ ଅନୁରୋଧକ୍ରମେ ସ୍ୱେଚ୍ଛାରେ ତାଙ୍କ ମତରେ ଦୀକ୍ଷିତ ହେଲେ ଏବଂ ସ୍ୱ ସ୍ୱ ରାଜ୍ୟକୁ ପ୍ରତ୍ୟାବର୍ତ୍ତନ କରି "ତୀର୍ଥଙ୍କର ପୂଜା ଆରମ୍ଭ କଲେ ଏବଂ ସେମାନଙ୍କ ଚେଷ୍ଟାରେ ଚୈତ୍ୟପୂଜା, ଶୋଭାଯାତ୍ରାଦି ଅନୁଷ୍ଠାନ ଏବଂ ଯଥାନିୟମରେ ରଥଯାତ୍ରା ଓ ରଥର ସମ୍ମୁଖଭାଗରେ ପୁଷ୍ପବର୍ଷଣାଦି ପ୍ରଥା ସୀମାନ୍ତ ପ୍ରଦେଶାଦିରେ ପ୍ରବର୍ତ୍ତିତ ହେଲା ।"

ବୌଦ୍ଧ ରଥଯାତ୍ରା—କେତେକ ବୌଦ୍ଧ କ୍ଷେତ୍ରରେ ରଥଯାତ୍ରା ହେଉଥିବାର ଜଣାଯାଏ । ପ୍ରସିଦ୍ଧ ଚୈନିକ ପରିବ୍ରାଜକ ଫାହିଆନ୍ ୫ମ ଶତାବ୍ଦୀରେ ପାଟଳୀପୁତ୍ରର ରଥଯାତ୍ରାର ଯେଉଁ ବର୍ଣ୍ଣନା ଦେଇଛନ୍ତି ତାହା ଏହିପରି—"ପ୍ରତିବର୍ଷ ଦ୍ୱିତୀୟ ମାସର ୮ମ ଦିନରେ ସେମାନେ ମୂର୍ତ୍ତିମାନଙ୍କର ଏକ ଶୋଭାଯାତ୍ରା ବାହାର କରନ୍ତି । ଚାରି ଚକ ଥିବା ଏକ ରଥ ତିଆରି କରି ତା ଉପରେ ବାଉଁଶର ଏକ ପାଞ୍ଚତାଲା ଶାଳା କରନ୍ତି । ......ଚାରିପଟରେ ଚାରୋଟି ଗ୍ରେଟ ବୁଦ୍ଧମୂର୍ତ୍ତି ରଖନ୍ତି । ପ୍ରତ୍ୟେକ ମୂର୍ତ୍ତିର ଦୁଇପାଖରେ ପ୍ରାୟ ଦୁଇଟି ବୋଧିସତ୍ତ୍ୱର ମୂର୍ତ୍ତି ରଖନ୍ତି । ବିଭିନ୍ନ ଆକାରର କୋଡ଼ିଏଟି ରଥ କରନ୍ତି । ......ବ୍ରାହ୍ମଣମାନେ ସହର ଭିତରକୁ ବୌଦ୍ଧମାନଙ୍କୁ ନିମନ୍ତ୍ରଣ କରି ଆଣନ୍ତି । ସମସ୍ତ ରାତି ପ୍ରଦୀପ ଜାଳନ୍ତି, ସଙ୍ଗୀତାଲାପ ଓ ପୂଜାଦି କରନ୍ତି ।"(୧୫୫)ଏହି ଯାତ୍ରାର ବିଶେଷତ୍ୱ ହେଉଛି ଯେ ବ୍ରାହ୍ମଣମାନେ ବୌଦ୍ଧମାନଙ୍କୁ ଏହି ଉତ୍ସବକୁ ନିମନ୍ତ୍ରଣ କରି ଆଣନ୍ତି । ଅନ୍ୟ ରାଜ୍ୟରେ ମଧ୍ୟ ଏପରି ହେଉଛି ବୋଲି ଫାହିୟନ୍ ଲେଖିଛନ୍ତି, ସେଥିରୁ ଓଡ଼ିଶାରେ ମଧ୍ୟ ଏପରି ହେଉଛି ବୋଲି ଧରିନେବାର କିଛି କାରଣ ନାହିଁ ।

---

୧୫୪। ରତ୍ନମନ୍ଦିରେର କଥା (ବଂ): ଗୁରୁଦାସ ସରକାର ୧ମ ଭାଗ ପୃ. ୧୧୮-୯

୧୫୫। Lagge: Travels of Fahian.

ମଧ୍ୟ ଏସିଆର ଖୋଟାନ ଅଞ୍ଚଳରେ ପ୍ରସିଦ୍ଧ ଫାହିୟାନ୍ ବୌଦ୍ଧ ବିହାରର ଏକ ରଥଯାତ୍ରା ଦେଖିଥିଲେ । ସେ ଲେଖିଛନ୍ତି—

"At a distance of three to four li from the city they made a four-wheeled image car, more than thirty cubits high, which looked like the great hall moving along. The seven precious substances were gradually displayed about it, with silken streamers and canopies hanging all around. The (chief) image stood in the middle of the car, with two Bodisatwas attending on it."(୧୫୨)

ମର୍ମ—ସହରର ତିନି ଚାରି ଲି (ଲି = ପ୍ରାୟ ଏକ ତୃତୀୟାଂଶ ମାଇଲ) ଦୂରରେ ଚାରୋଟି ଚକ ଥିବା ତିରିଶହାତରୁ ବେଶି ଉଚ୍ଚର ଏକ ରଥ ତିଆରି କଲେ । ଏହି ରଥରେ ସପ୍ତରତ୍ନଙ୍କୁ ସ୍ଥାପିତ କଲେ । ରଥକୁ ସୁସଜ୍ଜିତ କଲେ । ପ୍ରଧାନ ପ୍ରତିମୂର୍ତ୍ତି ରଥର ମଧ୍ୟ ସ୍ଥାନରେ ଠିଆହୋଇ ରହିଲେ, ଦୁଇ ବୋଧିସତ୍ୱ ତାଙ୍କର ସେବାରେ ରହିଲା ପରି ଦେଖାଗଲେ ।

ସପ୍ତମ ଶତାବ୍ଦୀରେ ହୁଏନ୍‌ସାଂ କଙ୍ଗୋଦରେ ରଥଯାତ୍ରା ହେଉଥିବା କଥା ଲେଖିଛନ୍ତି । ଏସବୁ ଯେ ବୌଦ୍ଧ ରଥଯାତ୍ରାର ବିବରଣ ତାହା ନିଶ୍ଚିତଭାବରେ କହି ହେବ ନାହିଁ ।

ବର୍ତ୍ତମାନ ସୁଦ୍ଧା ସିଂହଳରେ ବୁଦ୍ଧଦେବଙ୍କର ଦନ୍ତର ରଥଯାତ୍ରା ପ୍ରତିବର୍ଷ ହେଉଛି ।

ଫାହିୟାନଙ୍କ ଲେଖାରୁ ଜଣାଯାଏ ଯେ ପାଟଳୀପୁତ୍ରର ରଥଯାତ୍ରା ବର୍ଷର ଦ୍ୱିତୀୟ ମାସର ଅଷ୍ଟମ ଦିବସରେ ଆରମ୍ଭ ହୁଏ ଏବଂ ଖୋଟାନ୍‌ର ରଥଯାତ୍ରା ଚତୁର୍ଥ ମାସର ଦ୍ୱିତୀୟ ଦିନ ଆରମ୍ଭ ହୋଇ ଚଉଦ ଦିନରେ ଶେଷ ହୁଏ । ପାଟଳୀପୁତ୍ରର ରଥଯାତ୍ରାର ଦିନକୁ ପେକିନ୍ (ଚିନ୍) ରାଜଦରବାରର ପଞ୍ଜିକାରେ "ବୁଦ୍ଧଙ୍କର ପବିତ୍ର ଜନ୍ମଦିନ" ବୋଲି ଲେଖାଅଛି । ଚିନ ଦେଶର ଗଣନାନୁସାରେ ପାଟଳୀପୁତ୍ରର ରଥଯାତ୍ରା ଚୈତ୍ର ଶୁକ୍ଳ ଅଷ୍ଟମୀ ଦିନ ଆରମ୍ଭ ଏବଂ ଖୋଟାନ୍‌ର ରଥଯାତ୍ରା ଜ୍ୟେଷ୍ଠ ଶୁକ୍ଳ ପ୍ରତିପଦା ଦିନ ଆରମ୍ଭ କିନ୍ତୁ ବୈଶାଖ ପୂର୍ଣ୍ଣିମୀଦିନ ବୁଦ୍ଧଦେବଙ୍କ ଜନ୍ମଦିବସ । ଏଥିରୁ ଜଣା-

୧୫୨। Ibid.

ଯାଉଛି ଯେ ବୌଦ୍ଧ ରଥଯାତ୍ରା ବୁଦ୍ଧଦେବଙ୍କ ଜନ୍ମଦିବସର ସ୍ମାରକସ୍ୱରୂପ ହେଉ ନାହିଁ। ବିଭିନ୍ନ ଦେଶରେ ବିଭିନ୍ନ ନୀତି ଅବଲମ୍ବନ କରି ବୌଦ୍ଧ ରଥଯାତ୍ରା ହେଉଥିବା ସମ୍ଭବ । ତା ନ ହେଲେ ରଥଯାତ୍ରାମାନଙ୍କର ଦିନରେ ଏତେ ପ୍ରଭେଦ ଦେଖାଯାଆନ୍ତା ନାହିଁ ।

ଫାହିୟାନ୍‌ଙ୍କ ବିବରଣୀ ଉପରେ ନିର୍ଭର କରି କେତେକ ଲେଖକ ପୁରୀ ରଥଯାତ୍ରାକୁ ଅନୁକରଣ ମାତ୍ର ବୋଲି ମତ ବ୍ୟକ୍ତ କରିଅଛନ୍ତି ।

ଫାହିୟାନଙ୍କ ଭ୍ରମଣ କାହାଣୀର ଅନୁବାଦକ ଲେଇଡ୍‌ଲେ ଲେଖିଛନ୍ତି—"The reader cannot fail to be struck with the very close resemblance betwix the Budhha procession here described, and that of Jagannath, of which, indeed, it requires no great stretch of the imagination to suppose it to be the model and prototype. The time of the year at which the ceremony took place corresponds very closely." ମର୍ମ—ଏଠାରେ ବର୍ଣ୍ଣିତ ହୋଇଥିବା ଶୋଭାଯାତ୍ରା ସହିତ ଜଗନ୍ନାଥଙ୍କ ରଥଯାତ୍ରାର ଘନିଷ୍ଠ ସାଦୃଶ୍ୟ ଥିବା ପାଠକର ମନକୁ ନ ଆସି ରହି ପାରେ ନାହିଁ । ଜଗନ୍ନାଥଙ୍କ ରଥଯାତ୍ରା ଯେ ବୌଦ୍ଧ ଶୋଭାଯାତ୍ରାର ଆଦର୍ଶ ଓ ଅନୁକରଣରେ କରାଯାଉଛି, ଏହା କହିବାକୁ ବେଶି ଚିନ୍ତା କରିବାକୁ ପଡ଼ିବ ନାହିଁ । ଖୋଟାନ୍ ରଥଯାତ୍ରାର ସମୟ ମଧ୍ୟ ଜଗନ୍ନାଥ ରଥଯାତ୍ରାର ସମୟ ସହିତ ମେଳ ହେଉଛି । ଲେଇଡ୍‌ଲେଙ୍କ ରଥଯାତ୍ରାର ସମୟ ନିର୍ଦ୍ଧାରଣ ଭୂଲ । ପୁରୀ ରଥଯାତ୍ରା ଆଷାଢ଼ ଶୁକ୍ଳ ଦ୍ୱିତୀୟାରେ ଆରମ୍ଭ ହୁଏ, କିନ୍ତୁ ଖୋଟାନ୍ ଯାତ୍ରା ଜ୍ୟେଷ୍ଠ ଶୁକ୍ଳ ପ୍ରତିପଦ ଦିନ ଆରମ୍ଭ ହୁଏ ।

ସାର୍ ଉଇଲିୟମ୍ ହଣ୍ଟର ରଥଯାତ୍ରା ସମ୍ବନ୍ଧରେ ଲେଖିଛନ୍ତି—"Car festival is probably a once conscious reproduction of the Tooth Festvial of the Buddhists, although its original significance has dropped out of sight.(୧୫୭)

ମର୍ମ—(ଜଗନ୍ନାଥଙ୍କ) ରଥଯାତ୍ରା ବୋଧହୁଏ ପୂର୍ବେ ବୌଦ୍ଧମାନଙ୍କ ଦନ୍ତ ଉତ୍ସବର ଏକ ସଚେତନ ଅନୁକୃତ ଥିଲା । ଅବଶ୍ୟ ପରେ ପ୍ରଥମର ଏହି ବିଶେଷତ୍ୱଟି

୧୫୭। Sir W. W. Hunter—The Indian Empire.

ଲେଖ ପାଇଯାଇଛୁ । ଦଣ୍ଟର ସାହେବ ଏହି ମତର ସମର୍ଥନରେ ବୌଦ୍ଧମାନଙ୍କର ଯାପାନରେ ଫିରକୁର ରଥଯାତ୍ରା ପ୍ରଚଳିତ ଥିବା ଉଲ୍ଲେଖ କରିଛନ୍ତି ଏବଂ ଜଗନ୍ନାଥଙ୍କ ପାଖରେ ଅନ୍ୟ ଦୁଇ ମୂର୍ତ୍ତି ଥିବା ସହିତ ବୁଦ୍ଧଦେବଙ୍କ ପାଖରେ ଦୁଇଟି ମୂର୍ତ୍ତି ଥିବା ଘଟଣାର ସାଦୃଶ୍ୟ ଦେଖାଇଛନ୍ତି । ଫାହିୟାନଙ୍କ ଦନ୍ତଉତ୍ସବ ବର୍ଣ୍ଣନା ସହିତ ଜଗନ୍ନାଥଙ୍କ ରଥଯାତ୍ରାର ମେଳ ଥିବା ପ୍ରସଙ୍ଗ ମଧ୍ୟ ଉତ୍ଥାପନ କରିଛନ୍ତି ।

ଫର୍ଗୁସନ ସାହେବ ଫାହିୟାନଙ୍କ ଦନ୍ତୋତ୍ସବ ବର୍ଣ୍ଣନା ସହିତ ଜଗନ୍ନାଥଙ୍କ ରଥଯାତ୍ରାର ପୂର୍ଣ୍ଣ ସାଦୃଶ୍ୟ ଥିବା ଅନୁମାନ କରି ଜଗନ୍ନାଥଙ୍କ ରଥଯାତ୍ରାକୁ ବୌଦ୍ଧ ଦନ୍ତ-ଉତ୍ସବର ଏକ ଅବିକଳ ନକଲ ବୋଲି ମତ ବ୍ୟକ୍ତ କରିଛନ୍ତି ।

ପ୍ରତିବର୍ଷ ବୁଦ୍ଧଦେବଙ୍କ ବୁଦ୍ଧତ୍ୱପ୍ରାପ୍ତି ଦିନ ( ପୂର୍ଣ୍ଣିମୀ ଦିନ ) ବୌଦ୍ଧମାନେ ବୁଦ୍ଧଦେବଙ୍କ ଦେହାବଶେଷକୁ ରଥରେ ରଖି ରଥଯାତ୍ରା କରନ୍ତି ବୋଲି ହୁଏନ୍‌ସାଂ ୭ମ ଶତାବ୍ଦୀରେ ଲେଖିଛନ୍ତି । ସେ ମଧ୍ୟ ଏ ରଥଯାତ୍ରା ଦେଖିଥିଲେ ।

ଡାକ୍ତର ରାଜେନ୍ଦ୍ରଲାଲ ମିତ୍ର ପୁରୀର ରଥଯାତ୍ରା ସମ୍ବନ୍ଧରେ ଆଲୋଚନା କରି ଲେଖିଛନ୍ତି—"These facts leave no room for doubt that Jagannath and some of his peculiar ceremonial observances are of Budhhist origin, that the Car-festival marks the anniversary of Budhha's birthday,..." (୧୫୮)

ମର୍ମ—ଏହିସବୁ ତଥ୍ୟରୁ ନିଃସନ୍ଦେହ ଭାବରେ କୁହାଯାଇ ପାରିବ ଯେ ଜଗନ୍ନାଥ ଓ ତାଙ୍କର କୌତୂହଳପୂର୍ଣ୍ଣ ପର୍ବପର୍ବାଣୀ ବୌଦ୍ଧଧର୍ମରୁ ଉତ୍ପନ୍ନ, ରଥଯାତ୍ରା ବୁଦ୍ଧଦେବଙ୍କ ଜନ୍ମଦିନ ପାଳନ ଛଡ଼ା ଅନ୍ୟ କିଛି ନୁହେଁ ।

ଇଞ୍ଜିନିୟର ଶ୍ରୀ ବମନ୍ ସ୍ୱରୂପ ତାଙ୍କର ଇଂରେଜ ଗ୍ରନ୍ଥ "କୋଣାର୍କ"ରେ କହିଛନ୍ତି ଯେ ବୁଦ୍ଧଦେବଙ୍କ ପ୍ରବ୍ରଜ୍ୟା ଘଟଣାର ସ୍ମାରକ ରୂପକ ରଥଯାତ୍ରାର ଆରମ୍ଭ । ତାଙ୍କ ମତରେ ହିନ୍ଦୁମାନଙ୍କର ସବୁ ରଥଯାତ୍ରା ଏହି ବୌଦ୍ଧ ରଥଯାତ୍ରାର ଅନୁକରଣ ମାତ୍ର । ବୁଦ୍ଧଦେବଙ୍କ ପ୍ରବ୍ରଜ୍ୟା (ପବଜ୍ଜା) ସମ୍ପର୍କରେ ବୌଦ୍ଧ ଜାତକରେ ଲେଖାଥିବା ଅଂଶର ସାର ଏହିପରି—ଦିନେ ସିଦ୍ଧାର୍ଥ ଉପବନକୁ ଭ୍ରମଣାର୍ଥେ ଯିବା ପାଇଁ ସାରଥିକୁ ରଥ ଆଣିବାକୁ କହିଲେ । ସାରଥି ରଥକୁ ସୁସଜ୍ଜିତ କରି ଶୁଭ୍ର ସୈନ୍ଧବ ଘୋଡ଼ା ଲଗାଇ ଆଣିଲା । ସିଦ୍ଧାର୍ଥ ରଥରେ ଚଢ଼ି ପ୍ରମୋଦ ଉପବନକୁ ଗଲେ । ସନ୍ଧ୍ୟା

୧୫୮। Antiquities of Orissa. Vol. II. P. 136

ସମୟରେ ସେଠାରେ ପ୍ରମୋଦ ସରୋବରରେ ସ୍ନାନ କରି ରାଜା ବିଶ୍ରାମଶିଳା ଉପରେ ବସିଲେ । ସେବକମାନେ ନାନାପ୍ରକାର ବସନଭୂଷଣ ଆଣି ରାଜକୁମାରଙ୍କ ବେଶ ପାଇଁ ଥୋଇଲେ । ସେହି ସମୟରେ ଶକ୍ର (ଇନ୍ଦ୍ର)ଙ୍କ ସିଂହାସନ ତପ୍ତ ବୋଧ ହେଲା । ସେ ଆସନ ଚ୍ୟୁତର ଆଶଙ୍କା କଲେ । ଧ୍ୟାନରେ ସେ ଜାଣି ପାରିଲେ ଯେ ଭବିଷ୍ୟତ ବୁଦ୍ଧଙ୍କର ଆବିର୍ଭାବର ସମୟ ଉପସ୍ଥିତ ହୋଇଗଲା । ବିଶ୍ୱକର୍ମାଙ୍କୁ ଡାକି ସେ ଆଦେଶ ଦେଲେ, "ଆଜି ଅର୍ଦ୍ଧରାତ୍ର ସମୟରେ ସିଦ୍ଧାର୍ଥ ପ୍ରବ୍ରଜ୍ୟା ଗ୍ରହଣ କରିବେ । ଏହି ବେଶହିଁ ତାଙ୍କର ଶେଷ ବେଶ । ତୁମେ ଶୀଘ୍ର ଯାଇ ଦିବ୍ୟ ବେଶଭୂଷାରେ ତାଙ୍କୁ ଭୂଷିତ କର ।" ବିଶ୍ୱକର୍ମା ତାଙ୍କର ଅଦ୍ଭୁତ ଶକ୍ତିବଳରେ ପ୍ରମୋଦ କାନନରେ ଉପସ୍ଥିତ ହେଲେ । ସେତେବେଳେ ଭଣ୍ଡାରୀ ସିଦ୍ଧାର୍ଥଙ୍କ ମୁଣ୍ଡରେ ପଗଡ଼ି ବାନ୍ଧି ଦେଉଥିଲା । ବିଶ୍ୱକର୍ମା ଭଣ୍ଡାରୀ ବେଶ ଧାରଣ କରି ଭଣ୍ଡାରୀଠାରୁ ଲୁଗାଟି ଆଣି ନିଜେ ସିଦ୍ଧାର୍ଥଙ୍କ ମୁଣ୍ଡରେ ପଗଡ଼ି ବାନ୍ଧିଲେ । ସିଦ୍ଧାର୍ଥ ବିଶ୍ୱକର୍ମାଙ୍କ କରସ୍ପର୍ଶ ଜାଣି ପାରିଲେ । ମୁଣ୍ଡରେ ଦଶଫେରା ଲୁଗା ବନ୍ଧା ହେଲା । ପ୍ରତ୍ୟେକ ଫେରାରେ ହଜାରେଖଣ୍ଡ ଲୁଗା ଲାଗିଲା । ଅତି ଚମତ୍କାର ଭାବରେ ବେଶ କରାଗଲା । ବେଶବିନ୍ୟାସ ପରେ ସିଦ୍ଧାର୍ଥ ରଥରେ ପୁନର୍ବାର ମହାସମାରୋହରେ ସହରକୁ ଫେରି ଆସିଲେ ।

ପ୍ରମୋଦକାନନରେ ଏହି ବେଶ ସିଦ୍ଧାର୍ଥଙ୍କର ପ୍ରବ୍ରଜ୍ୟାଗ୍ରହଣ ପୂର୍ବରୁ ଶେଷ ବେଶ ।

ଏହି ବର୍ଣ୍ଣନାକୁ ଲକ୍ଷ୍ୟକରି ବିଷନ୍ ସ୍ୱରୂପ ଲେଖିଛନ୍ତି—

"This description will convince anybody that the Rath Yatra festival was orginally meant to celebrate that most memorable day in the life of the Great Budhha, as well as the Budhhist world, the night of which the world, saw him leaving his kingdom, parents, wife and the new-born babe and all" (୧୫୯)

ମର୍ମ—ଜାତକର ଏହି ବର୍ଣ୍ଣନାରୁ ସ୍ପଷ୍ଟ ଧାରଣା ହେବ ଯେ ବୁଦ୍ଧଙ୍କର ଜୀବନର ଏହି ସ୍ମରଣୀୟ ଘଟଣା (ପ୍ରବ୍ରଜ୍ୟା)କୁ ଉତ୍ସବରୂପେ ପାଳନ କରିବା ପାଇଁ ଏହି ରଥଯାତ୍ରା ପ୍ରଥମେ ଆରମ୍ଭ ହୋଇଥିଲା ।

---

୧୫୯। Konarak. Bishen Swarup.

ହିନ୍ଦୁ ରଥଯାତ୍ରାକୁ ବୌଦ୍ଧ ରଥଯାତ୍ରାର ଅନୁକରଣ ବୋଲି ପ୍ରତିପାଦନ କରିବା ପାଇଁ ବିଷନ୍ ସ୍ୱରୂପ ଏଭଳି ବହୁତ ଅସଂଗତ କଥା କହିଛନ୍ତି । ବୌଦ୍ଧଧର୍ମର ପ୍ରଚାର ପୂର୍ବରୁ, ଏପରିକି ବୌଦ୍ଧଗଳ୍ପାଦି ରଚନାକାଳ ପୂର୍ବରୁ ମଧ୍ୟ, ହିନ୍ଦୁମାନଙ୍କ ଭିତରେ ରଥଯାତ୍ରାର ପ୍ରଚଳନ ନ ଥିଲା ବୋଲି ତାଙ୍କର ଏକ ଅସଂଗତ ଧାରଣା ଥିବା ପରି ତାଙ୍କ ଲେଖାରୁ ଅନୁମାନ ହେଉଛି । ଏହି ପ୍ରବ୍ରଜ୍ୟାର ସମୟ ଓ ଜଗନ୍ନାଥଙ୍କ ରଥଯାତ୍ରାର ସମୟକୁ ନେଇ ମଧ୍ୟ ସେ ଅସଙ୍ଗତ ଯୁକ୍ତି କରିଛନ୍ତି । ଜାତକରେ ଅଛି ଯେ "ଆସାଲହି" ପୂର୍ଣ୍ଣିମା ଦିନ ସିଦ୍ଧାର୍ଥ ପ୍ରବ୍ରଜ୍ୟା ନେଇଥିଲେ । ବିଶନ ସ୍ୱରୂପ (ତାଙ୍କ ଗ୍ରନ୍ଥର ୮୨ ପୃଷ୍ଠାରେ) ଏହି ଦିନଟି ଫାଲ୍‌ଗୁନ ପୂର୍ଣ୍ଣିମୀ ବା ଚୈତ୍ର ପୂର୍ଣ୍ଣିମୀ ହେବ ବୋଲି ଠିକ୍ କରିଛନ୍ତି । କିନ୍ତୁ ସେଦିନ ତ ଜଗନ୍ନାଥଙ୍କ ରଥଯାତ୍ରା ନୁହେଁ ! ଏହି ଧନ୍ଦାର ସମାଧାନ ଉଦ୍ଦେଶ୍ୟରେ ସେ ଲେଖିଛନ୍ତି—

"The Date of Rath Yatra at Puri does not correspond with any of the celebrated days in connection with Budhha, and it appears to me that the festival here was started much later than in other places, and the date was changed either by a mistake taking Ashalhi to mean Ashada or simply for the sake of change in the same way as the Chaldaean Sabbath was changed from Saturday to Sunday by the Jews and to Friday by the Mohammedans" (୧୭୦)

ମର୍ମ—ପୁରୀର ରଥଯାତ୍ରାର ସମୟ ସହିତ ବୁଦ୍ଧଙ୍କ ଜୀବନୀର କୌଣସି ସମୟ ମେଳ ହେଉ ନାହିଁ । ମୋର ମନେ ହେଉଛି, ଅନ୍ୟାନ୍ୟ ସ୍ଥାନରେ ରଥଯାତ୍ରାର ବହୁ ପରେ ଏଠାର ରଥଯାତ୍ରା ଆରମ୍ଭ ହୋଇଛି । ଏହି ଦିନର ପରିବର୍ତ୍ତନ ଏପରି ଭାବରେ ହୋଇଥାଇ ପାରେ— ଆସାଲହି ମାସକୁ ଭୁଲ୍‌କ୍ରମେ ଆଷାଢ଼ ମାସ ବୋଲି ଧରି ନିଆଯାଇଥିବ ଅଥବା କେବଳ ପରିବର୍ତ୍ତନ ସକାଶେ ଏପରି କରାଯାଇଥିବ, ଯେପରି କି କାଲଡ଼ୀୟ ସାବାଥ୍‌କୁ ଇହୁଦି (ଜିଉ)ମାନେ ସାଟାରଡ଼େ (ଶନିବାର) ଓ ମୁସଲମାନମାନେ ଫ୍ରାଇଡ଼େ (ଶୁକ୍ରବାର) କଲେ ।

ଗୌଡ଼ୀୟ ମିଶନ୍ ଦ୍ୱାରା ପ୍ରକାଶିତ (ବଙ୍ଗଳା) "ଶ୍ରୀକ୍ଷେତ୍ର" ବହିରେ ପୁରୀ ରଥଯାତ୍ରା ସମ୍ବନ୍ଧରେ ଏକ ସ୍ଥାନରେ ଲେଖାଅଛି—

---

୧୭୦। Konarak. Footnote P. 83

"ଖ୍ରୀଷ୍ଟୀୟ ତୃତୀୟ ଶତାବ୍ଦୀରେ ପ୍ରାଚୀନ ଦ୍ରାବିଡ଼ର ପୂର୍ବଦକ୍ଷିଣ ଅଂଶ—ପାଣ୍ଡ୍ୟ ଦେଶରେ 'ପାଣ୍ଡ୍ୟ ବିଜୟ' ବା 'ପାଣ୍ଡୁ ବିଜୟ' ନାମରେ ଏକ ମହାପରାକ୍ରାନ୍ତ ରାଜା ଥିଲେ । ପାଣ୍ଡୁ ବିଜୟ ରାଜାଙ୍କର ଆବିର୍ଭାବ କାଳରେ ବୌଦ୍ଧ ବିପ୍ଳବରେ ବୈଷ୍ଣବ ଧର୍ମର ପ୍ରଚାର କ୍ଷୀଣପ୍ରଭ ହୋଇଥିଲା । ପାଣ୍ଡ୍ୟ ବିଜୟଙ୍କର ଏକ ବିଷ୍ଣୁଭକ୍ତ ପୁରୋହିତ ଥିଲେ, ତାଙ୍କର ନାମ ଶ୍ରୀ ଦେବେଶ୍ୱର । ଦେବେଶ୍ୱରଙ୍କ ମନ୍ତ୍ରଣାରେ ପାଣ୍ଡ୍ୟବିଜୟ ରାଜା ବୌଦ୍ଧ ବିପ୍ଳବରେ ବିପର୍ଯ୍ୟସ୍ତ ସନାତନ ଧର୍ମାବଲମ୍ବୀମାନଙ୍କ ଆଚାର ଓ ଅନୁଷ୍ଠାନର ପୁନଃ ପ୍ରବର୍ତ୍ତନ କରନ୍ତି । ଯେତେବେଳେ ବୌଦ୍ଧ ରାଜାମାନେ ନୀଳାଚଳ ଅଧିକାର କଲେ, ସେତେବେଳେ ଶ୍ରୀ ନୀଳମାଧବ ମୂର୍ତ୍ତି ସହ ଶ୍ରୀ ବଳଭଦ୍ର ଓ ଶ୍ରୀ ସୁଭଦ୍ରା ବୌଦ୍ଧ-ମାନଙ୍କଦ୍ୱାରା ବୁଦ୍ଧ, ଧର୍ମ ଓ ସଂଘ ନାମରେ ଆଖ୍ୟାତ ହେଲେ । ବୈଷ୍ଣବରାଜ ପାଣ୍ଡ୍ୟବିଜୟ ସେହି ତିନୋଟି ମୂର୍ତ୍ତିଙ୍କୁ ପୁନରୁଦ୍ଧାର କରି ଏବଂ ସେମାନଙ୍କୁ ରଥରେ ଆରୋହଣ କରାଇ ପୁରୀର ପୂର୍ବୋତ୍ତର ଭାଗରେ ସୁନ୍ଦରାଚଳ ନାମକ କାନ୍ତନ ଉପବନରେ ସଂରକ୍ଷଣ କଲେ । ରାଜା ସୁନ୍ଦର ପାଣ୍ଡ୍ୟଙ୍କ ସମୟରେ ଏହି ସ୍ଥାନର ନାମ ସୁନ୍ଦରାଚଳ ହୋଇଥିଲା । ରାଜା ପାଣ୍ଡ୍ୟବିଜୟ ଏହି ସମୟରେ ବୌଦ୍ଧମାନଙ୍କର ବିଗ୍ରହ ନ୍ୟୂନାଧିକ ପରିବର୍ତ୍ତନ କରିଥିଲେ ଏବଂ କିଛିଦିନ ପରେ ସେହି ତିନୋଟି ଶ୍ରୀବିଗ୍ରହଙ୍କୁ ପୁନର୍ବାର ଶ୍ରୀନୀଳାଚଳର ଶ୍ରୀମନ୍ଦିରକୁ ଆଣି ସ୍ଥାପନ କରିଥିଲେ । ଏବେ ମଧ୍ୟ ରଥଯାତ୍ରା ଦିନ ଶ୍ରୀଜଗନ୍ନାଥ, ଶ୍ରୀବଳରାମ ଓ ଶ୍ରୀସୁଭଦ୍ରାଙ୍କ ରଥାରୋହଣ କାର୍ଯ୍ୟକୁ ପାଣ୍ଡ୍ୟ ବିଜୟର ନାମାନୁସାରେ "ପହଣ୍ଡି" ବା "ପାଣ୍ଡୁ ବିଜୟ" କହୁଥାଆନ୍ତି । କେହି କେହି କହନ୍ତି, ପାଣ୍ଡ୍ୟ ବିଜୟଙ୍କ ପୁରୋହିତଙ୍କ ନାମରୁ ଶ୍ରୀଜଗନ୍ନାଥଙ୍କ ସେବାଧିକାରୀମାନେ "ପାଣ୍ଡା" ନାମରେ ଖ୍ୟାତ ହୋଇଛନ୍ତି । ଏହା ଶଙ୍କରାଚାର୍ଯ୍ୟଙ୍କ ଅଭ୍ୟୁଦୟର ବହୁ ଶତ ବର୍ଷର ପୂର୍ବର କଥା ।" (ଅନୁବାଦିତ) (୧୬୧)

ଏଥିରୁ ଅନୁମିତ ହେବ ଯେ ଖ୍ରୀଷ୍ଟୀୟ ତୃତୀୟ ଶତାବ୍ଦୀଠାରୁ ପୁରୀର ରଥଯାତ୍ରା ଆରମ୍ଭ ହୋଇଛି ଏବଂ ଏହା ପାଣ୍ଡ୍ୟଦେଶର ରାଜା ପାଣ୍ଡ୍ୟବିଜୟଙ୍କ ତ୍ରିମୂର୍ତ୍ତି ଉଦ୍ଧାରର ସ୍ମାରକ ସ୍ୱରୂପ ରହିଛି । ଖ୍ରୀଷ୍ଟୀୟ ତୃତୀୟ ଶତାବ୍ଦୀରେ ପାଣ୍ଡ୍ୟ ଦେଶର କୌଣସି ରାଜା ଓଡ଼ିଶାରେ ରାଜତ୍ୱ କରିଥିବାର ପ୍ରମାଣ ନାହିଁ । "ପାଣ୍ଡ୍ୟ ବିଜୟ"ରୁ "ପହଣ୍ଡି ବିଜେ"ର ଉତ୍ପତ୍ତି ହୋଇଛି ବୋଲି ଅନୁମାନ କରିବା ଠିକ୍ ନୁହେଁ । ଓଡ଼ିଆରେ ପଦଖଣ୍ଡରୁ ପହଣ୍ଡି ହୋଇଛି ଏବଂ ଠାକୁର ଓ ରାଜାମାନଙ୍କର ଗମନକୁ ବିଜେ ବୋଲି ଓଡ଼ିଆରେ କହନ୍ତି । ଏହି ପହଣ୍ଡି ଓ ବିଜେ (ବିଜୟ) ଏହି ଦୁଇଟି ଶବ୍ଦରୁ ପହଣ୍ଡି ବିଜେ ହୋଇଛି । ଠାକୁରଙ୍କର ଧୀରେ ଧୀରେ ପହଣ୍ଡିପକା ବା ଚାଲିକୁ "ପହଣ୍ଡି ବିଜେ" କୁହାଯାଏ । ପାଣ୍ଡ୍ୟଦେଶର ପାଣ୍ଡ୍ୟବିଜୟଙ୍କ ସହିତ ଶ୍ରୀମୂର୍ତ୍ତି ଉଦ୍ଧାର ବା ପହଣ୍ଡି ବିଜେର କୌଣସି ସମ୍ପର୍କ ବା ସଙ୍ଗତି ନାହିଁ ।

---

୧୬୧ । ଶ୍ରୀକ୍ଷେତ୍ର—ପୃ ୧୩୦-୧୩୧

ପାଲ "ଦାଠ ବଂଶ" (ଦନ୍ତବଂଶ)ରେ ମଗଧର ରାଜା ପଣ୍ଡୁଙ୍କ ରାଜତ୍ୱ ସମୟରେ ଅର୍ଥାତ୍ ଖ୍ରୀଷ୍ଟୀୟ ତୃତୀୟ ଶତାବ୍ଦୀର ଶେଷଆଡ଼କୁ କିମ୍ବା ଚତୁର୍ଥ ଶତାବ୍ଦୀର ପ୍ରଥମ ପାଦରେ କଳିଙ୍ଗ ରାଜଧାନୀ ଦନ୍ତପୁରରେ କଳିଙ୍ଗରାଜ ଗୁହଶିବ ବୁଦ୍ଧଦେବଙ୍କ ପବିତ୍ର ଦନ୍ତକୁ ଆରାଧନା କରୁଥିବା ଅଭିଯୋଗ ବ୍ରାହ୍ମଣମାନେ କରିଥିଲେ। ପଣ୍ଡୁ ବ୍ରାହ୍ମଣ-ଧର୍ମାବଲମ୍ବୀ ଥିଲେ। ପଣ୍ଡୁ ବ୍ରାହ୍ମଣମାନଙ୍କ ଅଭିଯୋଗର ତଦନ୍ତ କରିବା ପାଇଁ ସାମନ୍ତରାଜା ଚିତ୍ରଯାନଙ୍କୁ ଦନ୍ତପୁର ପଠାଇଲେ। ଗୁହଶିବ ମହାସମାରୋହରେ ଶୋଭାଯାତ୍ରା କରି ଦନ୍ତକୁ ରଥ ଉପରେ ବସାଇ ଦନ୍ତପୁରଠାରୁ ପାଟଳିପୁତ୍ର ପର୍ଯ୍ୟନ୍ତ ନେଇ ଯାଇଥିଲେ। ପାଟଳୀପୁତ୍ରରେ ଦନ୍ତର ଅଲୌକିକ ମହିମା ଦେଖି ପଣ୍ଡୁ ଗୁହଶିବଙ୍କ ମତାବଲମ୍ବୀ ହେଲେ ଏବଂ ଦନ୍ତକୁ ପୁନର୍ବାର ଦନ୍ତପୁରକୁ ନେଇଯିବା ପାଇଁ ଅନୁମତି ଦେଲେ। ଗୁହଶିବ ଦନ୍ତକୁ ଫେରାଇ ଆଣି ପୁନର୍ବାର ଦନ୍ତପୁରରେ ପୂଜା କଲେ। ସେତେବେଳକୁ କଳିଙ୍ଗ ମଗଧର ସାମନ୍ତ ରାଜ୍ୟ ଥିଲା। ଗୁହଶିବଙ୍କ ରାଜତ୍ୱର ଶେଷ ସମୟରେ ଖ୍ରୀ: ୩୧୦ରେ ଦନ୍ତକୁମାର ସେହି ଦନ୍ତକୁ କଳିଙ୍ଗରୁ ସିଂହଳକୁ ନେଇଥିଲେ। ପଣ୍ଡୁ କଳିଙ୍ଗ ରାଜଧାନୀ ଦନ୍ତପୁରରେ ଦନ୍ତପୂଜାର ପରିବର୍ତ୍ତନ କରି ନ ଥିଲେ। ଏହାକ୍ୟତୀତ ଦନ୍ତପୁର ମଧ୍ୟ ପୁରୀ ନୁହେଁ।

ପୂର୍ବେ ମାଉସୀମା'ଙ୍କ ମନ୍ଦିର ଓ ଗୁଣ୍ଡିଚା ମନ୍ଦିରର ମଧ୍ୟ ଭାଗରେ ବାଙ୍କିମୁହାଣ ନଦୀ ପ୍ରବାହିତ ହେଉଥିଲା। ପୂର୍ବେ ସେଥିପାଇଁ ଛଅଟି ରଥ ତିଆରି ହେଉଥିଲା। କିନ୍ତୁ ନଦୀଟି ପୋତା ହୋଇଯିବା ପରେ ତିନୋଟି ରଥ ହୋଇ ଆସୁଅଛି।

ଉତ୍କଳ ଖଣ୍ଡରେ (ସ୍କନ୍ଦ ପୁରାଣରେ) ପୁରୁଷୋତ୍ତମ କ୍ଷେତ୍ରକୁ ଦଶାବତାର କ୍ଷେତ୍ର ବୋଲି ମଧ୍ୟ କୁହାଯାଇଛି। ଏହିକ୍ଷେତ୍ରର ଜଗନ୍ନାଥଙ୍କଠାରୁ ସବୁଅବତାର ଉଦ୍ଭବ ହୋଇଛି, ଏହି ଅର୍ଥରେ ଏହାକୁ ଦଶାବତାର କ୍ଷେତ୍ର ବୋଲି କୁହାଯାଉଥିବା ସମ୍ଭବପର। ଗୁଣ୍ଡିଚା ଯାତ୍ରା ବେଳେ ଗୁଣ୍ଡିଚା ବାଡ଼ରେ ଠାକୁରମାନଙ୍କର ଅବସ୍ଥିତିକୁ ଆଡ଼ପ ମଧ୍ୟ କହନ୍ତି। ଏହି ଆଡ଼ପ ଉତ୍ସବରେ ଗୁଣ୍ଡିଚା ମନ୍ଦିରରେ ବଳଭଦ୍ର ଓ ଜଗନ୍ନାଥ ଦଶଅବତାର ବେଶ ହୁଅନ୍ତି। ବୌଦ୍ଧ ଓ କଲ୍କି ଅବତାର ଦିନ କାଞ୍ଚିବିଜୟର ଚିତ୍ର ଦିଆଯାଏ। ବଳଭଦ୍ର ଧଳା ଘୋଡ଼ାରେ ଓ ଜଗନ୍ନାଥ କଳା ଘୋଡ଼ାରେ ଚଢ଼ିଥାଆନ୍ତି; ମାଣିକ ଗଉଡ଼ୁଣୀର ମୂର୍ତ୍ତି ମଧ୍ୟ ସେଠାରେ ରଖାଯାଇଥାଏ।

କେହି କେହି କହନ୍ତି "ଗୁଡ଼ସା" ଶବ୍ଦରୁ ଗୁଣ୍ଡିଚା ହୋଇଛି। (୧୭୬) ଗୁଡ଼ସା ଶବ୍ଦର ଅର୍ଥ କାଠ। ଗୁଣ୍ଡିଚାଯାତ୍ରା ଅର୍ଥାତ୍ କାଠଯାତ୍ରା। ଜଗନ୍ନାଥାଦି ଠାକୁରମାନେ କାଠର ମୂର୍ତ୍ତି ଥିବାରୁ ଦାରୁମୂର୍ତ୍ତିଯାତ୍ରା ହେବା ସମ୍ଭବ ବୋଲି

୧୭୬। ପୁରୀ ଗେଜେଟିଅର୍

ଯେମାନେ କହନ୍ତି । ଗୁଡ଼ିଯା ଶବ୍ଦ ଓଡ଼ିଶାରେ ଗୁଣ୍ଡିଚା ଶବ୍ଦରେ ପରିଣତ ହୋଇଛି । ଦାକ୍ଷିଣାତ୍ୟରେ ଗ୍ରାମଦେବୀମାନଙ୍କର ରଥଯାତ୍ରା ସାମୂହିକ ଭାବରେ ହୁଏ । ଗ୍ରାମକୁ ବିପଦ-ଆପଦ ପଡ଼ିଲେ ଗ୍ରାମବାସୀମାନେ ଦେବୀଙ୍କୁ ଅର୍ଚ୍ଚନା କରି ରଥରେ ଚଢ଼ାଇ ଗ୍ରାମ ସୀମାରେ ଛାଡ଼ି ଦିଅନ୍ତି । ବହୁ ଗ୍ରାମରେ ଦେବୀଙ୍କ ପ୍ରତିମା କାଠର ହୋଇଥାଏ । ଏହିସବୁ କାରଣରୁ ହୁଏତ ଏହି ଯାତ୍ରାକୁ ଗୁଡ଼ିଆ ଯାତ୍ରା ବା କାଠଯାତ୍ରା ବା ଦାରୁଯାତ୍ରା ବୋଲି କହୁଥିବେ । ଜଗନ୍ନାଥାଦି ଠାକୁରମାନେ ଯେ ଅତି ପ୍ରାଚୀନ କାଳର ସେଥିରେ ସନ୍ଦେହ ନାହିଁ । ପ୍ରଥମେ ଶବରମାନେ ହିଁ ଜଗନ୍ନାଥଙ୍କ ପୂର୍ବରୂପ ନୀଳମାଧବଙ୍କୁ ପୂଜା କରୁଥିଲେ । ଦାକ୍ଷିଣାତ୍ୟର ଗ୍ରାମଦେବୀ ପୂଜା ଓ ଯାତ୍ରା ମଧ୍ୟ ସେହି ପ୍ରାଚୀନ ଆଦିବାସୀ ସଭ୍ୟତାର ପ୍ରତୀକ ।

ଦାକ୍ଷିଣାତ୍ୟରେ 'ଗୁଣ୍ଡିଚି ପ୍ରତିପଦା' ଦିନ ଖଣ୍ଡେ କାଠକୁ ପୂଜା କରାଯାଉଥିବାର କେହି କେହି କହନ୍ତି । କେତେକ ସ୍ଥାନରେ ଇନ୍ଦ୍ରଦ୍ୟୁମ୍ନ ପୂଜା ମଧ୍ୟ ହୁଏ । ଜଗନ୍ନାଥ ଦାରୁବ୍ରହ୍ମ ଥିବାରୁ ପୁରୀର ରଥଯାତ୍ରା ଅନୁକରଣରେ ଏହି ଉତ୍ସବର ପ୍ରଚଳନ ହୋଇଥିବାର ଅନୁମାନ କରାଯାଉଛି । ଭାରତବର୍ଷର ବହୁ ସ୍ଥାନରେ ଜଗନ୍ନାଥଙ୍କ ରଥଯାତ୍ରାର ଅନୁକରଣରେ ରଥଯାତ୍ରା ହେଉଛି । ଦାକ୍ଷିଣାତ୍ୟର ଏହି ଉତ୍ସବକୁ ଇନ୍ଦ୍ରଦ୍ୟୁମ୍ନ ମହୋତ୍ସବ ମଧ୍ୟ କହନ୍ତି । ଏଥିରେ ମଧ୍ୟ ଖଣ୍ଡେ କାଠକୁ ଖଣ୍ଡେ ଦୂର ବୋହିନେବା ପ୍ରଥା ଥିବା ଶୁଣାଯାଏ ।

ଓଡ଼ିଶାରେ ପ୍ରଚଳିତ କିମ୍ବଦନ୍ତୀ ଅନୁସାରେ ମହାରାଜା ଇନ୍ଦ୍ରଦ୍ୟୁମ୍ନଙ୍କ ସ୍ତ୍ରୀଙ୍କ ନାମ ଗୁଣ୍ଡିଚାଦେବୀ ଏବଂ ଏହି ରଥଯାତ୍ରାଟି ଗୁଣ୍ଡିଚାଦେବୀଙ୍କ ନାମ ଅନୁସାରେ ହୋଇଛି ।

## ମିସନାରିଙ୍କ କୁତ୍ସାରଟନା

ଭାରତ ବର୍ଷରେ ହିନ୍ଦୁ ପର୍ବ ଭିତରେ ପୁରୀର ରଥଯାତ୍ରା ପୃଥିବୀର ବିଭିନ୍ନ ଦେଶର ପଣ୍ଡିତମାନଙ୍କର ଦୃଷ୍ଟି ବିଶେଷଭାବରେ ଆକର୍ଷଣ କରିପାରିଛି । ରଥଯାତ୍ରା ସମୟରେ ବିପୁଳ ଲୋକସମାଗମ ଓ ଉତ୍ସର୍ଗୀୟ ସାମୂହିକ ଦୁର୍ଘଟଣା ବିଶେଷଭାବରେ ୟୁରୋପୀୟ ଦର୍ଶକମାନଙ୍କର ମନକୁ ଆନ୍ଦୋଳିତ କରିଛି । ଗତ ଶତାବ୍ଦୀର ପ୍ରାରମ୍ଭରେ ଓଡ଼ିଶାରେ ଇଂରେଜ ରାଜତ୍ୱ ପ୍ରତିଷ୍ଠା ହେବା ପରେ ଇଂରେଜ ଶାସକମାନେ ପୁରୀ ମନ୍ଦିରର ପରିଚାଳନା ସହିତ ଘନିଷ୍ଠଭାବରେ ସମ୍ପୃକ୍ତ ରହିଲେ । ଗତ ଶତାବ୍ଦୀର ପ୍ରଥମାର୍ଦ୍ଧରେ ଇଂରେଜ ଶାସକମାନଙ୍କ ପ୍ରତ୍ୟକ୍ଷ ତତ୍ତ୍ୱାବଧାନରେ ରଥଯାତ୍ରା କାର୍ଯ୍ୟ ନିର୍ବାହ ହେଉଥିବାରୁ ୟୁରୋପୀୟ ଦର୍ଶକ, ବିଶେଷତଃ ୟୁରୋପୀୟ ଖ୍ରୀଷ୍ଟିଆନ ମିଶନାରୀମାନେ, ରଥଯାତ୍ରା ଦେଖିବାକୁ ବେଶୀ ସଂଖ୍ୟାରେ ଆସୁଥିଲେ । ଧର୍ମ ଭାବରେ

ପ୍ରଣୋଦିତ ହୋଇ ଅନ୍ୟ ଧର୍ମର ମହତ୍ତ୍ୱ ଉପଲବ୍‌ଧି କରିବା ଉଦ୍ଦେଶ୍ୟ ସେମାନଙ୍କ ଭିତରେ କେତେ ଜଣଙ୍କର ନ ଥିଲା; "ଦୋଷ" ଦେଖି ଏହାକୁ ହୀନ ପ୍ରତିପାଦିତ କରିବା ପାଇଁ ସେମାନେ ବ୍ୟଗ୍ର ଥିଲେ । ରଥଯାତ୍ରା ସମୟରେ ଅତିରିକ୍ତ ଭିଡ଼ରେ ବେଳେ ବେଳେ ରଥଚକ୍ର ତଳେ ପଡ଼ି ଯାତ୍ରୀମାନଙ୍କ ଭିତରୁ କେତେଜଣ ପ୍ରାଣ ହରାଉଥିଲେ । ଏହାକୁ ଲକ୍ଷ୍ୟ କରି ସେତେବେଳେ ୟୁରୋପ ଓ ଅନ୍ୟାନ୍ୟ ପାଶ୍ଚାତ୍ୟ ଦେଶରେ ମିଶନାରୀମାନେ ପ୍ରଚାର କରୁଥିଲେ ଯେ ଜଗନ୍ନାଥ ରଥ ଘୋର ଗର୍ଜନ କରି, କୌଣସି ବାଧାବିଘ୍ନ ନ ମାନି, ତାର ଗନ୍ତବ୍ୟ ପଥରେ ଚଳେ ଏବଂ ତାର ଚକତଳେ ଯେ ପଡ଼ିଲା ସେ ମଲା । ଏହି କଥାଟି ସେତେବେଳେ ଏତେଦୂର ପ୍ରଚାର ଲାଭ କଲା ଯେ ୟୁରୋପରେ, ବିଶେଷତଃ ଇଂଲଣ୍ଡରେ, "The Car of Juggernauth" (ଜଗନ୍ନାଥଙ୍କ ରଥ) ଇଂରେଜ ଭାଷା ଭିତରେ ଏକ ବିଶେଷ ସ୍ଥାନ ଅଧିକାର କଲା । କୌଣସି ବାଧାବିଘ୍ନ ନ ମାନି ନିର୍ମମ ଭାବରେ ନିଜ ଚକତଳେ ସବୁ ମାଡ଼ି ଧ୍ୱଂସ କରି ଅବିରାମ ଗତି କରିବା ଭାବକୁ "rolling like the Car of Juggernaut" ବୋଲି ଇଂରେଜମାନେ କହନ୍ତି । ଏହି କୁଧାରଣାର ପ୍ରଭାବ ଇଂଲଣ୍ଡରୁ ଯାଇ ଇଂରେଜୀ ଭାଷା ଜରିଆରେ ଆମେରିକାରେ ପହଞ୍ଚିଲା । ସେଠାରେ ତାହା ଏତେଦୂର ପ୍ରସାର ଲାଭ କଲା ଯେ ଗତ ଦ୍ୱିତୀୟ ବିଶ୍ୱଯୁଦ୍ଧ ସମୟରେ ଆମେରିକାର ପ୍ରେସିଡେଣ୍ଟ ରୁଜ୍‌ଭେଲ୍‌ଟ ତାଙ୍କ ଦେଶରେ ଯୁଦ୍ଧସାମଗ୍ରୀ ତିଆରି ଯୋଜନା କିପରି ଦ୍ରୁତଗତିରେ ଅବିରାମ ଅବାଧ ଗତିରେ ଚାଲିଛି ତାକୁ ବୁଝେଇବାକୁ ଯାଇ "Our machines roll like the Car of Juggernaut" (ଆମର କଳଗୁଡ଼ିକ ଜଗନ୍ନାଥଙ୍କ ରଥ ଭଳି ଗଡ଼ି ଚାଲିଛି) ବୋଲି କହିଥିଲେ । ପବିତ୍ର ଜଗନ୍ନାଥକ୍ଷେତ୍ରର ରଥଯାତ୍ରାରେ ମାନବହତ୍ୟାର ଅବତାରଣା କରି ଲୋକଚକ୍ଷୁରେ ଏହାକୁ ହୀନ ପ୍ରତିପାଦିତ କରିବା ପ୍ରଚେଷ୍ଟା କେତେକଙ୍କ ମନରେ ଏହା ସତ୍ୟ ବୋଲି ବିଶ୍ୱାସ ଜନ୍ମାଇଥିଲା । ପ୍ରେସିଡେଣ୍ଟ ରୁଜ୍‌ଭେଲ୍‌ଟଙ୍କ ଏହି ଉକ୍ତିର ପ୍ରତିବାଦ ସେତେବେଳେ କରାଯାଇଥିଲା ଏବଂ ଭାରତ ଓ ବିଦେଶରେ ଖବର କାଗଜମାନଙ୍କରେ ଏହାର ପ୍ରତିବାଦ ମଧ୍ୟ ପ୍ରକାଶିତ ହୋଇଥିଲା । ଗତ ଶତାବ୍ଦୀରେ ରଥତଳେ ପଡ଼ି ମରିବା ଲୋକଙ୍କ ସଂଖ୍ୟା ବେଶୀ ନୁହେଁ, ଏବଂ ଏହା ମଧ୍ୟ ଇଚ୍ଛାକୃତ ଆତ୍ମହତ୍ୟା ନୁହେଁ, ଏହା ଦୁର୍ଘଟଣା, ଏହି ବିଷୟ ବହୁ ଇଂରେଜ ହାକିମ ପ୍ରମାଣିତ କରିଥିଲେ ମଧ୍ୟ ସେହି କୁପ୍ରଚାରଟିର ଦୁର୍ଗନ୍ଧ ଅଦ୍ୟାପି ରହିଛି ।

# ତ୍ରୟୋଦଶ ପରିଚ୍ଛେଦ

## ଜଗନ୍ନାଥ ମନ୍ଦିର ନିର୍ମାଣ ସମୟ

ପୁରୀରେ ବଡ଼ଦେଉଳ ନିର୍ମାଣ କାଳ ସମ୍ବନ୍ଧରେ ପ୍ରାୟ ଦେଢ଼ ଶହ ବର୍ଷ ହେଲା ବିଭିନ୍ନ ଐତିହାସିକମାନେ ବିଭିନ୍ନ ମତ ବ୍ୟକ୍ତ କରି ଆସିଛନ୍ତି । ଷ୍ଟର୍ଲିଂ ସାହେବ ତାଙ୍କର "ଓଡ଼ିଶା ଇତିହାସ" (୧୬୩) ବହିରେ "ରାଜବଂଶାବଳୀ" ନାମକ ଏକ ସଂସ୍କୃତ ଗ୍ରନ୍ଥ ଓ ମାଦଳାପାଞ୍ଜିର ଲେଖା ଉପରେ ନିର୍ଭର କରି ଲେଖିଛନ୍ତି ଯେ, ବର୍ତ୍ତମାନର ଜଗନ୍ନାଥମନ୍ଦିର ଖ୍ରୀ· ୧୧୯୬ରେ ଅନଙ୍ଗଭୀମ ଦେବଙ୍କ ଦ୍ୱାରା ନିର୍ମିତ ହୋଇଥିଲା । ଫର୍ଗୁସନଙ୍କ ମତରେ (୧୬୪) ମନ୍ଦିର ନିର୍ମାଣକାଳ ଖ୍ରୀ· ୧୦୯୮ । ଭିନ୍‌ସେଣ୍ଟ ସ୍ମିଥ୍‌ଙ୍କ ମତରେ ମନ୍ଦିରଟି ଖ୍ରୀ·୧୧୦୦ରେ ନିର୍ମିତ ହୋଇଥିଲା । ମନମୋହନ ଚକ୍ରବର୍ତ୍ତୀ କହନ୍ତି ଯେ ମନ୍ଦିରଟି ଖ୍ରୀ·୧୦୮୫-୯୦ ଭିତରେ ତିଆରି ହୋଇଥିଲା । (୧୬୫)

ଓଡ଼ିଶାରେ ଜନସାଧାରଣଙ୍କ ଭିତରେ ଧାରଣା ରହିଛି ଯେ, ଗଙ୍ଗବଂଶୀୟ ଅନଙ୍ଗଭୀମ ଦେବଙ୍କଦ୍ୱାରା ଏହି ମନ୍ଦିରଟି ନିର୍ମିତ ହୋଇଛି । ଏହି ଧାରଣା ପାଇଁ ଜନଶ୍ରୁତି, ମାଦଳାପାଞ୍ଜି ଓ ବଡ଼ଦେଉଳର ତଥାକଥିତ ଏକ ଶ୍ଳୋକ ଦାୟୀ । ଜନଶ୍ରୁତି ଅନୁସାରେ ଅନଙ୍ଗଭୀମ ଦେବ ହିଁ ମନ୍ଦିରର ନିର୍ମାତା ଏବଂ ସେ ଯେଉଁ ସବୁ ନୀତି ନିୟମ ପ୍ରଚଳନ କରିଯାଇଥିଲେ ଆଜି ପର୍ଯ୍ୟନ୍ତ ସେଗୁଡ଼ିକ ଅକ୍ଷୁର୍ଣ୍ଣ ଭାବରେ ଚାଲି ଆସୁଅଛି ।

ମାଦଳାପାଞ୍ଜି ଉପଯୁକ୍ତ ଭାବରେ ସଙ୍କଳିତ ହୋଇ ନ ଥିବାରୁ ଐତିହାସିକ ଦୃଷ୍ଟିରୁ ଦେଖିଲେ ସେଥିରେ ବର୍ଣ୍ଣିତ ବିଷୟ ଅନେକ ସ୍ଥଳରେ କପୋଳକଳ୍ପିତ ବୋଲି ଜଣା ପଡ଼େ । ତେବେ ଐତିହାସିକ ଉପାଦାନ ସଂଗ୍ରହରେ ମାଦଳାପାଞ୍ଜି ଯେ ବହୁତ ସାହାଯ୍ୟ କରିବ ଏଥିରେ କୌଣସି ସନ୍ଦେହ ନାହିଁ । ବଡ଼ଦେଉଳ ନିର୍ମାଣ

---

୧୬୩। Sterling: An account of Orissa Proper or Cuttack.

୧୬୪। Fergusson: History of Architecture, VOL: 2 P. 592.

୧୬୫। M. M. Chakravarti, Journal of Asiatic Society of Bengal. 1898. P. 328.

ସମ୍ବନ୍ଧରେ ମାଦଳାପାଞ୍ଜିର ଲେଖା ଜନଶ୍ରୁତିଠାରୁ ଭିନ୍ନ ନୁହେଁ । ଯଯାତିକେଶରୀ ପ୍ରଥମେ ତିନୋଟି ମନ୍ଦିର ନିର୍ମାଣ କରି ତିନି ଦେବତାଙ୍କୁ ବସାଇଥିଲେ ଏବଂ ଏହି ମନ୍ଦିର ତିନୋଟି ଜୀର୍ଣ୍ଣ ହୋଇଯିବାରୁ ଅନଙ୍ଗଭୀମ ଦେବ ନୂତନ ମନ୍ଦିର ନିର୍ମାଣ କଲେ ବୋଲି ମୁଦ୍ରିତ ମାଦଳାପାଞ୍ଜିରେ ଲେଖାଅଛି । ଚୋଡ଼ଗଙ୍ଗ ଦେବଙ୍କ ଦ୍ୱାରା ନିର୍ମିତ ମନ୍ଦିରର ଉଲ୍ଲେଖ ସୁଦ୍ଧା ପାଞ୍ଜିରେ ନାହିଁ । କିନ୍ତୁ ଗଙ୍ଗବଂଶୀୟ ନରସିଂହ ତାମ୍ର ଶାସନରେ ଚୋଡ଼ଗଙ୍ଗ ଦେବ ଜଗନ୍ନାଥଙ୍କ ପାଇଁ ମନ୍ଦିର ନିର୍ମାଣ କରିଥିଲେ ବୋଲି ଲେଖାଅଛି । ଏହି ତଥ୍ୟଟି ପାଞ୍ଜିରେ ଦିଆଯାଇ ନ ଥିବାରୁ ପାଞ୍ଜି ଉପରେ ବିଶେଷ ଆସ୍ଥା ରଖିବା ପାଇଁ କାରଣ ଦର୍ଶି ନ ପାରେ । ତେବେ ଅନଙ୍ଗଭୀମ ଦେବ ମନ୍ଦିର ନିର୍ମାଣ କରିଛନ୍ତି ବୋଲି ଯେଉଁ ଜନଶ୍ରୁତି ଅଛି, ତାହା ସମର୍ଥିତ ହେଲା ଭଳି ଯେଉଁ ସବୁ ବିଷୟ ମାଦଳା-ପାଞ୍ଜିରେ ମିଳୁଛି, ତାକୁ ବ୍ୟବହାର କଲେ କିଛି ଦୋଷାବହ ହେବ ନାହିଁ ।

ମାଦଳାପାଞ୍ଜିରେ ମନ୍ଦିର ନିର୍ମାଣ ବିଷୟରେ "ଅନଙ୍ଗଭୀମ ଦେବ" ପରିଚ୍ଛେଦରେ ଲେଖାଅଛି "···ଏ ଆମ୍ଭର ଅରଜିତ ପଦାର୍ଥ । ଏଥିଁ ଅମ୍ଭେ ଥୋକାଏ ପ୍ରମେଶ୍ୱରଙ୍କ ଆଡ଼ତିରେ ଲଗାଇବାକୁ ଏଥକୁ ଅମ୍ଭେମାନେ ଏମନ୍ତ କଳ୍ପନା କରିଅଛୁ । ଯଯାତି ରାଜା ଯେଉଁ ପୋଟଳ ତୋଳାଇ ପରମେଶ୍ୱରଙ୍କୁ ବିଜେ କରାଇଅଛନ୍ତି, ସେ ପୋଟଳ ତିନି ଗୋଟି ଅତି ବଇସମ ହୋଇଲା । ଏହା ଭଙ୍ଗି ୧୦୦ ହାତ ଉଚ୍ଚେ ପ୍ରାସାଦ ଗୋଟିଏ ତୋଳାଇବା । ପରମେଶ୍ୱରଙ୍କ ଅଯୁତନ ଭିତରେ ଦେବତାମାନଙ୍କର ଦେଉଳ ଗୋଟାମାନ ଆନ କରି ତୋଳାଇବା । ଏଥକୁ ଥୋକାଏ ସୁନା ଦବା । ପରମେଶ୍ୱରଙ୍କ ଉଡ଼ାଉମାନ ଝଟଣି ଯୋଗାଡ଼ମାନଙ୍କୁ ମଧ୍ଯ କରି ଥୋକାଏ ସୁନା ଥୋକାଏ ରତନ ଦବା । ଏମନ୍ତ ଅମ୍ଭେ ବିଚାରିଅଛୁ । ଏଥକୁ ପାତ୍ରମାନେ ଜଣାଇଲେ, ଦେଓ, ଏମନ୍ତ ଯେବେ ବିଚାରିବା ହୋଇଅଛ, ଏତେ ହୋଇ ତ କଥା ନାହିଁ; ଏଥକୁ ବଡ଼ ବେଗ ଅବଧାନ ହେଉ । ଧର୍ମସ୍ୟ ତ୍ୱରିତୋ ଗତି, ଧର୍ମ ବିଚାରିଲେ ବଡ଼ ବେଗ କରି । ଏତେ କେବଳ ଜଣାଯାଉଅଛୁ ପ୍ରାସାଦ ଯେ ୧୦୦ ହାତ ଉଚ୍ଚ କରିବ ବୋଲି ବିଚାର କରିବା ହୋଇଅଛ । ଶରୀର ନିତ୍ୟ ନୋହନ୍ତି । ଅନିତ୍ୟ ଦେହ । ଏ ବହୁତ କାଳ ଲଗିବ । ଏଥୁ ଦଶହାତ ଊଣା କରି ନବେହାତ ହୋଇ ପ୍ରାସାଦ ହୋଇଲେ ବଡ଼ ବେଗ ହୋଇବ । ଏଥକୁ ରାଜା ଏ ଆଜ୍ଞା ଦେଲେ ବିଚାରିବାରରୁ ଊଣିଲେ ଦୋଷ ହେବ ପରା । ଏଥକୁ ପାତ୍ରମାନେ ଜଣାଇଲେ, ଦେଓ, ବିଘ୍ନ ହୋଇ ରହିଲେ ସେସବୁହିଁ ଅପାର ହୋଇବ । ଏଥକୁ ଠାକୁରେ ଆଜ୍ଞାଦେଲେ, ହେଉ, ନବେହାତ ଉଚ୍ଚେ ପ୍ରାସାଦ ହେଉ । ଏମନ୍ତକୁ ଶିଳ୍ପ ଶାସ୍ତ୍ରମାନ ଦେଖ । କଉଁ ପ୍ରାସାଦ କଲେ ବିଷ୍ଣୁ ଯୋଗ୍ୟ । ଏଥକୁ ଭଣ୍ଡମିଶ୍ରମାନେ କହିଲେ, ପ୍ରାସାଦ ଯେ ଛତିଶି ପ୍ରକାରେ । ଏଥିନ୍ତୁ କୋଡ଼ିଏ ପ୍ରକାରେ ପ୍ରାସାଦ ଶ୍ରେଷ୍ଠ । ଏଥିଭିତରୁ ଶ୍ରୀବତ୍ସ ଝଣ୍ଟଶାଳ ହୋଇ ଯଉଁ

ପ୍ରାସାଦ ସେ ପ୍ରାସାଦ ହତରେ ବଡ଼ ପ୍ରିୟ । ଏହା ଶୁଣି ରଜାଏ ଅଜ୍ଞାଦେଲେ ଏହି ପ୍ରାସାଦ ଊଳ କରାଇବା ।······" ଏହା ପରେ ମନ୍ଦିର ନିର୍ମାଣ ପାଇଁ କ କ ବ୍ୟବସ୍ଥା ହେଲା ତାର ବିବରଣୀ ଅଛି । ପାଞ୍ଜିରେ ଲେଖାଅଛି ଯେ ଅନଙ୍ଗଭୀମଙ୍କ ଅଂଙ୍କରେ ଫଗୁଣ ଶୁକ୍ଳ ଦଶମୀ-ଏକାଦଶୀ ଗୁରୁବାରେ ଏହି ସଭା ହୋଇଥିଲା । ଏହାଛଡ଼ା କେତେ ବର୍ଷରେ ମନ୍ଦିର ନିର୍ମାଣ ଶେଷ ହେଲା ଏବଂ କେଉଁ ବର୍ଷ ପ୍ରତିଷ୍ଠା ହେଲା ତାର ଉଲ୍ଲେଖ ନାହିଁ । "ମାଦଳାପାଞ୍ଜି" (୧୭୭)ର ଦ୍ୱିତୀୟ ପାଞ୍ଜି ମତରେ "ଏ ରଜାଙ୍କ ଅ ୧୮ଙ୍କ କୁମ୍ଭ ଦ ୬ ନେ ଏ ଦେଉଳ ଶ୍ରୀବତ୍ସ ଖଣ୍ଡଶାଳ ଘଟଣା ଶୁକ୍ଳପକ୍ଷ ଦଶମୀ ଗୁରୁବାରେ ବଡ଼ଦେଉଳକୁ ମଧୁପୁରପାଟଣା ଚୂଡ଼ଙ୍ଗସାହିରୁ ବିଜେ କରାଇଲେ ।" ଏଥିରୁ ଜଣାଯାଉଛି ଯେ ଛନବର୍ଷରେ ଦେଉଳ ନିର୍ମାଣକାର୍ଯ୍ୟ ଶେଷ ହୋଇ ପ୍ରତିଷ୍ଠା ହୋଇଛି ।

ମାଦଳାପାଞ୍ଜି ଅନୁସାରେ ଅନଙ୍ଗଭୀମଦେବ ୬୭ ବର୍ଷ ରାଜତ୍ୱ କରିଥିଲେ କିନ୍ତୁ ରାଜତ୍ୱ କେବେ ଆରମ୍ଭ ହୋଇଥିଲା, ତାହା ନିର୍ଣ୍ଣୟ କରିବା ସମ୍ଭବ ହୋଇପାରୁ ନାହିଁ । ବିଭିନ୍ନ ପାଞ୍ଜିରେ ରାଜତ୍ୱର ସମୟ ବିଭିନ୍ନ ପ୍ରକାର ଥିବା ଦେଖାଯାଉଛି ।

| | ୧ମ ପାଞ୍ଜି | ୨ୟ ପାଞ୍ଜି | ୩ୟ ପାଞ୍ଜି |
|---|---|---|---|
| | ବର୍ଷ | ବର୍ଷ | ବର୍ଷ |
| ଚୂଡ଼ଙ୍ଗଦେବ— | ୭୧ | ୨୪ | ୨୦ |
| ଗଙ୍ଗେଶ୍ୱରଦେବ— | ୯ | ୧୨ | ୧୪ |
| ଏକଜଟା କାମଦେବ— | ୭ | ୧୨ | ୫ |
| ମଦନ ମହାଦେବ— | ୧୫ | ୨୨ | ୪ |
| ଅନଙ୍ଗ ଭୀମଦେବ— | ୬୭ | ୬୭ | ୬୭ |

ଏହି ତାଲିକାରୁ ତିନୋଟି ପାଞ୍ଜିରେ ଏତେ ପ୍ରଭେଦ ଦେଖାଯାଉଥିବାରୁ ଏଥିରୁ ରାଜତ୍ୱ ସମୟ ନିର୍ଣ୍ଣୟ କରିବା ଏକାବେଳେକେ ଅସମ୍ଭବ ।

ବଡ଼ଦେଉଳ ଭିତରେ ସିଂହାସନ ଉପରେ ନିମ୍ନଲିଖିତ ଶ୍ଳୋକଟି ଖୋଳା ହୋଇଥିବାର ଶୁଣାଯାଏ ।

---

୧୭୭ ମାଦଳାପାଞ୍ଜି: ପ୍ରାଚୀସମିତି ପ୍ରକାଶିତ ।

ଶାକାବ୍ଦେ ରନ୍ଧ୍ରଶୁଭ୍ରାଂଶୁ ରୂପ ନକ୍ଷତ୍ର ନାୟକେ

ପ୍ରାସାଦଂ କାରୟାମାସଽନଙ୍ଗଭୀମେନ ଧୀମତା ।

ରନ୍ଧ୍ର—୯, ଶୁଭ୍ରାଂଶୁ (ଚନ୍ଦ୍ର)—୧, ରୂପ—୧, ନକ୍ଷତ୍ରନାୟକ (ଚନ୍ଦ୍ର)—୧ । "ଅଙ୍କସ୍ୟ ବାମାଗତିଃ" ନିୟମ ଅନୁସାରେ ୧୧୧୯ ଶକାବ୍ଦରେ ବା ୧୧୯୭ ଖ୍ରୀଷ୍ଟାବ୍ଦରେ ଅନଙ୍ଗଭୀମଦେବ ଏହି ମନ୍ଦିର ନିର୍ମାଣ କରିଥିଲେ । ପୁରୀର ସ୍ୱର୍ଗତ ମହାମହୋପାଧ୍ୟାୟ ସଦାଶିବ କାବ୍ୟକଣ୍ଠ ଲେଖିଛନ୍ତି ଯେ (୧୬୭) ଏହି ଶ୍ଳୋକଟି ମନ୍ଦିରର ଊର୍ଦ୍ଧ୍ୱଭାଗରେ ଅଛି । ଅନ୍ୟ କେହି କେହି କହନ୍ତି, ରତ୍ନସିଂହାସନର ପଶ୍ଚାଦ୍‌ଭାଗରେ ଏହି ଶ୍ଳୋକଟି ଖୋଦିତ ହୋଇଛି ।

ଏହି ଶ୍ଳୋକଟିର ପ୍ରତିଲିପି ଏପର୍ଯ୍ୟନ୍ତ ପ୍ରକାଶିତ ହୋଇ ନ ଥିବାରୁ ଏହା ଉପରେ ହୁଏତ କେହି କେହି ବେଶି ଗୁରୁତ୍ୱ ଆରୋପ କରିବାପାଇଁ କୁଣ୍ଠାବୋଧ କରିବେ । ବଡ଼ଦେଉଳରେ ବହୁତ ଲିପି ଅଛି, କିନ୍ତୁ ଏପର୍ଯ୍ୟନ୍ତ ପ୍ରତିଲିପି ବାହାର କରିବାପାଇଁ ବିଧିବଦ୍ଧ ଭାବରେ ଚେଷ୍ଟା ହୋଇ ନାହିଁ । ଜୟ ବିଜୟ ଦ୍ୱାରର ୧୨ଟି ଲିପିର ପାଠ ସ୍ୱର୍ଗତ ଡାକ୍ତର ରାଜେନ୍ଦ୍ରଲାଲ ମିତ୍ର ତାଙ୍କର ଓଡ଼ିଶାର ପୁରାତତ୍ତ୍ୱ ଗ୍ରନ୍ଥରେ ପ୍ରକାଶ କରିଛନ୍ତି (୧୬୮) । ପାତାଳେଶ୍ୱର ମନ୍ଦିରର କେତୋଟି ଲିପି ମନମୋହନ ଚକ୍ରବର୍ତ୍ତୀଙ୍କ ଦ୍ୱାରା ପଠିତ ହୋଇ ପ୍ରକାଶିତ ହୋଇଛି । ବଡ଼ଦେଉଳ ଭିତରେ ବହୁସ୍ଥାନରେ ଲିପି (୧୬୯) ରହିଛି । ବଡ଼ଦେଉଳ ଓ ଜଗମୋହନ ଭିତର କାନ୍ଥମାନଙ୍କରେ ବହୁ ପରିମାଣରେ ଚୂନ ବୋଳା ହୋଇଥିବାରୁ ପଥର ଉପରେ ଥିବା ଲିପିଗୁଡ଼ିକ ଦିଶୁ ନାହିଁ । ମୂଳ ମନ୍ଦିରର ଦ୍ୱାରର ଉଭୟପଟରେ ଲିପି ଥିବାର ଦେଖାଯାଉଛି । ହୁଏତ ଏହି ଲିପିମାନଙ୍କ ଭିତରେ ଏହି ଶ୍ଳୋକଟି ଥିବ । କେବଳ ଏହି ଶ୍ଳୋକଟି ଉପରେ ନିର୍ଭର କରି ବର୍ତ୍ତମାନର ଦେଉଳର ନିର୍ମାଣ ସମୟ ନିରୂପଣ କରାଯାଇ ପାରେ ।

ବାସୁଦେବ ରଥ ସୋମଯାଜୀଙ୍କ କୃତ ଚମ୍ପୂ ଗ୍ରନ୍ଥରେ (୧୭୦)ରେ ଗଙ୍ଗବଂଶୀୟ ରାଜାମାନଙ୍କର କିଛି କିଛି ଚରିତ ବର୍ଣ୍ଣିତ ହୋଇଛି ଏବଂ ଅନଙ୍ଗଭୀମଦେବ ଶକାବ୍ଦ ୧୧୧୯ (ବା ୧୧୯୭ ଖ୍ରୀଷ୍ଟାବ୍ଦରେ) ଜଗନ୍ନାଥଙ୍କ ମନ୍ଦିର ନିର୍ମାଣ କରିଥିବା ଲେଖାଅଛି । ଚମ୍ପୂର ଶ୍ଳୋକଟି ହେଉଛି—

---

୧୬୭। ଶ୍ରୀ ଜଗନ୍ନାଥ ମନ୍ଦିର (ବଙ୍ଗଳା)

୧୬୮। Antiquities of Orissa. VOI. II.

୧୬୯। M. M. Chakravarti. J.A.S.B.

୧୭୦। ଗଙ୍ଗବଂଶାନୁଚରିତମ୍ ଚମ୍ପୂ। (ସଂସ୍କୃତ), ଅପ୍ରକାଶିତ ।

ଅଙ୍କ କ୍ଷୌଣୀ ଶଶାଙ୍କେନ୍ଦୁ ସମିତେ ଶକବତ୍ସରେ

ଅନଙ୍ଗଭୀମଦେବେନ ପ୍ରାସାଦ ଶ୍ରୀପତେ କୃତଃ ।

ଅନଙ୍ଗଭୀମଦେବ ଶ୍ରୀପତିଙ୍କ ମନ୍ଦିର ଶତାବ୍ଦ ୧୧୧୯ (ବା ଖ୍ରୀ ୧୧୯୭ରେ) ନିର୍ମାଣ କରିଥିଲେ । ଅଙ୍କ—୯, କ୍ଷୌଣୀ—୧, ଶଶାଙ୍କ—୧, ଇନ୍ଦୁ—୧ ।

ବାସୁଦେବ ରଥ ପାଞ୍ଚଶହ ବର୍ଷ ପରେ ଘଟଣାବଳୀ ଲିପିବଦ୍ଧ କରିଥିବାରୁ ପ୍ରକୃତ ସମସ୍ୟା ନିର୍ଣ୍ଣୟ କରିବା ସମ୍ଭବ ନୁହେଁ । ତେବେ ତାଙ୍କର ଲେଖା ଜନଶ୍ରୁତି ଓ ମାଦଳାପାଞ୍ଜିକୁ ସମର୍ଥନ କରି ଦେଉଛି ଅନଙ୍ଗଭୀମଦେବ ନିର୍ମାଣ କରିଥିଲେ ବୋଲି ଘୋଷଣା କରୁଛି । ଦେଉଳର ତଥାକଥିତ ଶ୍ଳୋକର ସମସ୍ୟା ସହିତ ମଧ୍ୟ ଗ୍ରନ୍ଥଙ୍କର ସମସ୍ୟା ନିର୍ଣ୍ଣୟ ଅଭିନ୍ନ ହେଉଛି ।

ଅନଙ୍ଗଭୀମଦେବ ମନ୍ଦିରଟି ନିର୍ମାଣ କରିଛନ୍ତି ବୋଲି ଯେଉଁ ଜନଶ୍ରୁତି ଓ ଲେଖା ମିଳୁଛି, ତାକୁ ସମର୍ଥନ କରି ସମସାମୟିକ କୌଣସି ଅଭିଲେଖ ବର୍ତ୍ତମାନ ମୁଦ୍ଧା ମିଳି ନାହିଁ । ଏ ପର୍ଯ୍ୟନ୍ତ ପ୍ରକାଶ ପାଇଥିବା ଗଙ୍ଗବଂଶ ତାମ୍ରଶାସନମାନଙ୍କରେ ଅନଙ୍ଗ-ଭୀମଦେବ ମନ୍ଦିରଟି ନିର୍ମାଣ କରିଥିବାର ଉଲ୍ଲେଖ ନାହିଁ । ଏହି ରାଜା ଅନେକଗୁଡ଼ିଏ ଜୀର୍ଣ୍ଣ ମନ୍ଦିର ସଂସ୍କାର କରିଥିଲେ ବୋଲି ମେଘେଶ୍ୱର ଲିପିରେ ଅଛି; କିନ୍ତୁ ଜଗନ୍ନାଥ ମନ୍ଦିରର ନିର୍ମାଣ ସମ୍ବନ୍ଧରେ ସ୍ପଷ୍ଟ ଉଲ୍ଲେଖ ନାହିଁ । କଟକ ନିକଟସ୍ଥ 'ନଗରୀ ଗ୍ରାମ'ରୁ ପ୍ରାପ୍ତ ଏକ ତାମ୍ରଶାସନରେ (୧୭୧) ଅନଙ୍ଗଭୀମଦେବ ମନ୍ଦିରକୁ ପ୍ରତିଷ୍ଠା କରିଥିବା ଲେଖାଅଛି ।

ଦ୍ୱିତୀୟ ନରସିଂହଦେବଙ୍କ ତାମ୍ରଶାସନରେ (୧୭୨) ଚୋଡ଼ଗଙ୍ଗଙ୍କ ବିଷୟରେ ଏହି କେତୋଟି ପଂକ୍ତି ଲେଖାଅଛି—

ନିର୍ମାଣୋଲ୍ଲୋଲରାଜସିନ୍ଧୁମପରଂ ଗଙ୍ଗେଶ୍ୱରଃ ପ୍ରାପ୍ତବାନ୍
ଏକଃ କୀର୍ତ୍ତିସୁଧାକରଂ ପୁରୁଷୋତ୍ତମଂ ଲକ୍ଷ୍ମୀସ୍ୱରୂପ୍ୟାସନଂ ।
ମାଦ୍ୟାଦନ୍ତସହସ୍ରମଶ୍ୱନିଯୁତଂ ରତ୍ନାନ୍ୟ ସଂଖ୍ୟାନିବା
ତତ୍ତ୍ୱସିନ୍ଧୋଃ କମିମଂ ପ୍ରକର୍ଷମଥବା ବୃମସ୍ତନ୍ନୁନ୍ନାଥିନଃ ।
ପାଦୌ ଯସ୍ୟ ଧରାନ୍ତରୀକ୍ଷମଖିଳଂ ନାଭିଶ୍ଚ ସର୍ବାଦଶଃ
ଶ୍ରୋତ୍ରେ ନେତ୍ର ଯୁଗଂ ରବୀନ୍ଦୁ ଯୁଗଳଂ ମୂର୍ଦ୍ଧାପିଚଦ୍ୟୌରସୌ ।

୧୭୧। ନଗରୀ ତାମ୍ରଶାସନ । Epigraphica Indica, Vol 28 No-40
୧୭୨। ଦ୍ୱିତୀୟ ନରସିଂହଙ୍କ କେନ୍ଦୁପାଟଣା ତାମ୍ରଶାସନ । J.A.S.B., Vol. 65

ପ୍ରାସାଦଂ ପୁରୁଷୋତ୍ତମସ୍ୟ ନୃପତଃ କୋନାମ କର୍ତ୍ତୁଂକ୍ଷମ
ସ୍ତସ୍ୟେତ୍ୟାଦାନୃପୈରୁପେକ୍ଷିତମୟଂ ଚକ୍ରେଽଥ ଗଙ୍ଗେଶ୍ୱରଃ ।
(୨୬-୨୭ ଶ୍ଳୋକ)

"ଗଙ୍ଗେଶ୍ୱର ଚୋଡ଼ଗଙ୍ଗ ଉତ୍କଳରାଜସିନ୍ଧୁକୁ ମନ୍ଥନ କରି କୀର୍ତ୍ତିରୂପଚନ୍ଦ୍ର, ପୃଥ୍ୱୀସ୍ୱରୂପା ରାଜଲକ୍ଷ୍ମୀ, ମଦମତ୍ତ ସହସ୍ର ହସ୍ତୀ, ଦଶହଜାର ଅଶ୍ୱ ଓ ଅସଂଖ୍ୟ ରତ୍ନ ଲାଭ କରିଥିଲେ । ଏହି ଭୂମିଖଣ୍ଡ ଯାହାଙ୍କ ଚରଣ, ଅନ୍ତରୀକ୍ଷ ଯାହାଙ୍କ ନାଭି, ଦଶଦିଗ ଯାହାଙ୍କ କର୍ଣ୍ଣ, ସୂର୍ଯ୍ୟ ଓ ଚନ୍ଦ୍ର ଯାହାଙ୍କ ନୟନଯୁଗଳ ଏବଂ ସ୍ୱର୍ଗଲୋକ ଯାହାଙ୍କ ମସ୍ତକ ସେହି ତ୍ରିଲୋକବ୍ୟାପୀ ପରମେଶ୍ୱର ପୁରୁଷୋତ୍ତମଙ୍କର ବାସଯୋଗ୍ୟ ମନ୍ଦିର ନିର୍ମାଣ କରିବାକୁ କେଉଁ ବ୍ୟକ୍ତି ସମର୍ଥ ହେବ ?, ଏହା ଭାବି ପୂର୍ବର ନରପତିମାନେ ପୁରୁଷୋତ୍ତମଙ୍କର ମନ୍ଦିର ନିର୍ମାଣରେ ଉପେକ୍ଷା କରିଥିବ ଗଙ୍ଗେଶ୍ୱର ଚୋଡ଼ଗଙ୍ଗ ସେପରି ଉପେକ୍ଷା ନ କରି ଏହି ମହାମନ୍ଦିର ନିର୍ମାଣ କରାଇ ଦେଲେ ।"

ନରସିଂହ ତାମ୍ର ଶାସନର ଶ୍ଳୋକ ଉପରେ ନିର୍ଭର କରି ଅନେକ ପଣ୍ଡିତ ଅନଙ୍ଗଭୀମଦେବ ମନ୍ଦିର ନିର୍ମାଣ କରିଥିବା କଥାକୁ ଅସ୍ୱୀକାର କରିଛନ୍ତି । ନଗେନ୍ଦ୍ରନାଥ ବସୁ ବିଶ୍ୱକୋଷ (ବଙ୍ଗଳା) ଗ୍ରନ୍ଥରେ ଲେଖିଛନ୍ତି (ଭାବାନୁବାଦ)—"ତାମ୍ର ଶାସନରେ ଉକ୍ତ ବିବରଣୀଦ୍ୱାରା ବୋଧ ହେଉଛି ଯେ ଯଯାତି ଯେଉଁ ମନ୍ଦିରର ସଂସ୍କାର କରି ଦ୍ୱିତୀୟ ଇନ୍ଦ୍ରଦ୍ୟୁମ୍ନ ଉପାଧି ଲାଭ କରିଥିଲେ, ସମୟକ୍ରମେ ମନ୍ଦିର ବିଧ୍ୱସ୍ତ ଅଥବା ଭଗ୍ନ ହୋଇଥିଲା । ଯଯାତି ବଂଶୀୟ କୌଣସି ରାଜା ତାର ସଂସ୍କାର ଅଥବା ନୂତନ କରି ନିର୍ମାଣ କରିଦେଇ ନ ଥିଲେ, ସେମାନେ ଶିବ ମନ୍ଦିର ନିର୍ମାଣରେ ହିଁ ବ୍ୟସ୍ତ ଥିଲେ; କିନ୍ତୁ ମହାରାଜ ଚୋଡ଼ଗଙ୍ଗ ପୁରୁଷୋତ୍ତମଙ୍କ ମହାମନ୍ଦିର ନିର୍ମାଣ କରି ବୈଷ୍ଣବମାନଙ୍କର ଆନନ୍ଦବର୍ଦ୍ଧନ କରିଥିଲେ !"

"ଭୁବନେଶ୍ୱରର ନିକଟବର୍ତ୍ତୀ କେଦାରେଶ୍ୱର ଦ୍ୱାରରେ ଉତ୍କୀର୍ଣ୍ଣ ଶିଳାଲିପିପାଠରୁ ଜଣାଯାଏ ଯେ ୧୦୦୪ ଶକାବ୍ଦରେ ଚୋଡ଼ଗଙ୍ଗଙ୍କ କାଳରେ କେଦାରେଶ୍ୱର ମନ୍ଦିର ନିର୍ମିତ ହୁଏ । ବୋଧହୁଏ ଏହି ସମୟରେ ବା ତାର କିଛି ପୂର୍ବରେ ଜଗନ୍ନାଥଙ୍କ ମହାମନ୍ଦିର ନିର୍ମିତ ହୋଇଥିବ । ଉତ୍କଳର ସବୁ ଐତିହାସିକ ଲେଖିଛନ୍ତି ଯେ ଅନଙ୍ଗ ଭୀମଦେବ ପରମହଂସ ବାଜପେୟୀଙ୍କ ତତ୍ତ୍ୱାବଧାନରେ ଟଙ୍କା ଖରଚ କରି ୧୧୯୭ ଖ୍ରୀଷ୍ଟାବ୍ଦରେ ଏହି ମହାମନ୍ଦିର ନିର୍ମାଣ କରିଥିଲେ । କିନ୍ତୁ ଏ କଥା କେତେଦୂର ସତ୍ୟ ତାହା ସ୍ଥିର କରିପାରିଲି ନାହିଁ । ଗଙ୍ଗବଂଶୀ ରାଜାମାନଙ୍କ ସମୟର ପଞ୍ଚାଶ ଯାଠିଏ ଖୋଦିତ ଶିଳାଫଳକ ଓ ତାମ୍ରଶାସନ ମିଳିଛି । ସେଥିରେ କୌଣସିଠାରେ ଅନଙ୍ଗ ଭୀମଦେବ କର୍ତ୍ତୃକ ମହାମନ୍ଦିର ନିର୍ମାଣର କଥା

ଆଦୌ ନାହିଁ, କିନ୍ତୁ ଉତ୍କଳୀୟ ଅପରାପର ଶତ ଶତ ମନ୍ଦିର-ନିର୍ମାଣ ପ୍ରସଙ୍ଗ ବର୍ଣ୍ଣିତ ଥିବାରୁ ସ୍ୱୀକାର କରିବାକୁ ହେବ ଯେ ଅନଙ୍ଗ ଭୀମଦେବ ଉକ୍ତ ମହାମନ୍ଦିର ନିର୍ମାଣ କରି ନାହାନ୍ତି । ଚୂଡେଶ୍ୱରଙ୍କ ଶିଳାଫଳକରେ ଉତ୍କଳୀୟ ପ୍ରାଚୀନ ମନ୍ଦିର ସଂସ୍କାର କଥା ଲିଖିତ ଥିବାରୁ ଅନୁମାନ ହୁଏ ଯେ ତାଙ୍କ ସମୟରେ ଉକ୍ତ ମହାମନ୍ଦିରର ସଂସ୍କାର ହୋଇଥାଇପାରେ ।(୧୭୩)

ଗୁରୁଦାସ ସରକାର ଲେଖିଛନ୍ତି (୧୭୪) "ଖୋଦିତ ଲିପି ପ୍ରଭୃତିର ବର୍ଣ୍ଣନାରୁ ଅବଗତ ହୁଏ ଯେ ଗଙ୍ଗବଂଶ ରାଜା ଚୋଡଗଙ୍ଗଦେବ ସମ୍ଭବତଃ ଖ୍ରୀଷ୍ଟୀୟ ଦ୍ୱାଦଶ ଶତାବ୍ଦୀର ପ୍ରଥମ ପାଦରେ ବା ଏହାର କିଞ୍ଚିତ୍ ପୂର୍ବରେ ବର୍ତ୍ତମାନର ମନ୍ଦିର ପ୍ରତିଷ୍ଠା କରିଥିଲେ ।···ସୁତରାଂ ଏରୂପ ବୈଜ୍ଞାନିକ ପ୍ରମାଣ ବର୍ତ୍ତିମାନେ କେବଳ ମାଦଳାପାଞ୍ଜିର ଉକ୍ତିରେ ଆସ୍ଥା ସ୍ଥାପନ କରି କେଶରୀରାଜ ଯଯାତି କିମ୍ବା "ଅନିୟଙ୍କ" ଭୀମଦେବଙ୍କୁ ମନ୍ଦିର ନିର୍ମାତା ବୋଲି ସ୍ୱୀକାର କରିବା ଯୁକ୍ତିଯୁକ୍ତ ବୋଧ ହୁଏ ନାହିଁ । ସମ୍ଭବତଃ ଅନଙ୍ଗ ଭୀମଦେବ ଉତ୍ତରକାଳରେ ପ୍ରାଚୀର ଓ ପାର୍ଶ୍ୱସ୍ଥିତ ମନ୍ଦିର ପ୍ରଭୃତି ନିର୍ମାଣ କରି ମନ୍ଦିରର ଉନ୍ନତି ସାଧନ କରିଥିଲେ ବୋଲି ତାଙ୍କ ନାମ ସହିତ ପ୍ରଖ୍ୟାତି ବିଜଡ଼ିତ ହୋଇଥିବ । ବିଗ୍ରହର ପୂଜା ଓ ସେବାପଦ୍ଧତି ମଧ୍ୟ ସମ୍ଭବତଃ ତାଙ୍କ ଅମଳରେ ଯଥାରୀତି ପ୍ରଣାଳୀବଦ୍ଧ ହୋଇଥିଲା ।" (ଅନୁବାଦ) ।

"ପ୍ରାଚୀନ ଉତ୍କଳ"ରେ ଜଗବନ୍ଧୁ ସିଂହ ଲେଖିଛନ୍ତି (୧୭୫)—ଅନଙ୍ଗ ଭୀମଦେବ ବଡ଼ଦେଉଳ ନିର୍ମାଣ କାର୍ଯ୍ୟ ଶେଷ କରି ଦିଅଁଙ୍କୁ ଦେଉଳରେ ବିଜେ କରାଇବା ପରେ ଧନରତ୍ନ ଓ ଭୂସମ୍ପତ୍ତି ଜଗନ୍ନାଥଦେବଙ୍କୁ ଦାନ କରି ପରମହଂସ ବାଜପେୟୀଙ୍କୁ ପ୍ରଭୁଙ୍କର ଭୋଗ ନିଯୋଗ କରି ସମସ୍ତ ଆଡ଼ତି ଭିଆଣ କରିବା ଲାଗି ଆଦେଶ ଦେଇ-ଥିଲେ । ଦେଉଳ ତୋଳାଇବା ଭାର ମଧ୍ୟ ତାଙ୍କ ହସ୍ତରେ ନ୍ୟସ୍ତ ଥିଲା । ଯଯାତି-କେଶରୀଙ୍କ ଦେଉଳ ବଇସମ ହୋଇଥିବାରୁ ଚୋଡ଼ଗଙ୍ଗଦେବଙ୍କ ଅମଳରୁ ନୂତନ ଦେଉଳ ତୋଳାକାର୍ଯ୍ୟ ଆରମ୍ଭ ହୋଇଥିଲା । ପ୍ରଥମେ ସ୍ଥିର ହୋଇଥିଲା ଯେ ଦେଉଳର ଉଚ୍ଚତା ୧୦୦ ହାତ ହେବ । ଅନଙ୍ଗଭୀମଦେବ ରାଜସିଂହାସନରେ ଅଭିଷିକ୍ତ ହେଲାବେଳକୁ ଦେଉଳ ନିର୍ମାଣ କାର୍ଯ୍ୟ ଶେଷ ହୋଇ ନ ଥିଲା । ଶହେ ହାତ ଦେଉଳ ତୋଳିବା ବହୁକାଳ ସାପେକ୍ଷ ଥିବାର ଶ୍ରୀ ଦେଉଳର ଉଚ୍ଚତା ୯୦ (ନବେ)ହାତ

୧୭୩ । ବିଶ୍ୱକୋଷ : 'ଜଗନ୍ନାଥ' ପର୍ଯ୍ୟାୟ । (ବଙ୍ଗଳା) : ନଗେନ୍ଦ୍ରନାଥ ବସୁ ।

୧୭୪ । ଗୁରୁଦାସ ସରକାର : ମନ୍ଦିରେର କଥା (ବଙ୍ଗଳା): ୧ମ ଖଣ୍ଡ ପୃ; ୧୪୨-୧୪୩ ।

୧୭୫। ପ୍ରାଚୀନଉତ୍କଳ ଜଗବନ୍ଧୁ ସିଂହ । ପୃ·୧୪୯-୫୦ ।

ହେବାର ସ୍ଥିର ହେଲା । ଶ୍ରୀବତ୍ସଖଣ୍ଡଶାଳ ପ୍ରାସାଦ ବିଷ୍ଣୁଙ୍କର ପ୍ରିୟ ଥିବା ହେତୁ ସେହିପ୍ରକାର ଦେଉଳ ହେଲା ।"

ମହାମହୋପାଧ୍ୟାୟ ସଦାଶିବ କାବ୍ୟକଣ୍ଠ ଲେଖିଛନ୍ତି "ଏହି ଅନଙ୍ଗ ଭୀମଦେବ ମହାରାଜାଙ୍କ ସମୟରେ ଶ୍ରୀ ଜଗନ୍ନାଥ ଦେବଙ୍କର ବର୍ତ୍ତମାନ ମନ୍ଦିର ନିର୍ମିତ ହେଲା । ୧୧୧୯ ଶକାବ୍ଦରେ ପରମହଂସ ବାଜପେୟୀଙ୍କ ହସ୍ତରେ ଏହାର ନିର୍ମାଣଭାର ଅର୍ପିତ ହେଲା । ଏହି ସମୟର ସ୍ଥିରତା ପ୍ରତିପାଦନାର୍ଥ ଏହି ମନ୍ଦିରର ଊର୍ଦ୍ଧ୍ୱଭାଗସ୍ଥ ପ୍ରସ୍ତରରେ ସ୍ପଷ୍ଟଭାବରେ ଯେଉଁ ପଦ୍ୟ ପ୍ରଦତ୍ତ ହୋଇଛି ତାହା ଏହି ସ୍ଥଳରେ ଉଦ୍ଧୃତ ହେଲା, ଯଥା—

"ଶାକାବ୍ଦେ ରନ୍ଧ୍ର ଶୁଭ୍ରାଂଶୁ ରୂପ ନକ୍ଷତ୍ରନାୟକେ ।
ପ୍ରାସାଦ କାରତୋନଙ୍ଗ ଭୀମଦେବେନ ଧୀମତା ।" (୧୭୭) (ଅନୁବାଦ)

ଶେଷ ଚରଣର ପାଠ ଅନ୍ୟ ରୂପରେ ମଧ୍ୟ କେହି କେହି ଲିପିବଦ୍ଧ କରିଛନ୍ତି—

ପ୍ରାସାଦଂ କାରୟାମାସଂ ନଙ୍ଗଭୀମେନ ଧୀମତା ।

ଉପରେ ଯେଉଁ ସବୁ ମତ ଉଦ୍ଧାର କରାଗଲା, ସେଥିରୁ ଜଣାଯାଉଛି ଯେ (୧) ଦଳେ ନରସିଂହ ତାମ୍ରଶାସନର ଶ୍ଳୋକ ଉପରେ ନିର୍ଭର କରି ବର୍ତ୍ତମାନର ମନ୍ଦିର ଚୋଡ଼ଗଙ୍ଗଙ୍କ ଦ୍ୱାରା ନିର୍ମିତ ହୋଇଥିଲା ବୋଲି କହୁଛନ୍ତି; ଅନଙ୍ଗଦେବଙ୍କ ଦ୍ୱାରା ମନ୍ଦିର ନିର୍ମିତ ହୋଇଥିଲା ବୋଲି ଯେଉଁ ପ୍ରବାଦ ଶୁଣାଯାଏ ତାହା ଅମୂଳକ, ଏହା ପ୍ରତିପାଦନ କରୁଛନ୍ତି ।

(୨)ଆଉ ଦଳେ ଅନଙ୍ଗଭୀମଦେବ ଏ ମନ୍ଦିର ନିର୍ମାଣ କରିଛନ୍ତି ବୋଲି ପ୍ରତିପାଦନ କରୁଛନ୍ତି ଏବଂ ଚୋଡ଼ଗଙ୍ଗଙ୍କ କଥା ସେମାନେ ଏ ସମ୍ପର୍କରେ ଆଦୌ ଉଠାଉ ନାହାନ୍ତି । ଏମାନେ ମାଦଳାପାଞ୍ଜି ଓ "ଶାକାବ୍ଦେ ରନ୍ଧ୍ର ଶୁଭ୍ରାଂଶୁ" ଇତ୍ୟାଦି ଶ୍ଳୋକ ଉପରେ ନିର୍ଭର କରୁଛନ୍ତି ।

(୩) ଆଉ ଦଳେ କହୁଛନ୍ତି ଯେ ଚୋଡ଼ଗଙ୍ଗ ଦେବ ମନ୍ଦିର ନିର୍ମାଣ ଆରମ୍ଭ କରିଥିଲେ ମାତ୍ର ଏବଂ ଅନଙ୍ଗଭୀମଦେବ ତାହାକୁ ସମ୍ପୂର୍ଣ୍ଣ କରିଥିଲେ । ଏମାନେ ନରସିଂହ ତାମ୍ରଶାସନ ଓ ମାଦଳାପାଞ୍ଜି ଉଭୟ ଉପରେ ନିର୍ଭର କରୁଛନ୍ତି ।

(୪) ଆଉ କେହି କେହି କହୁଛନ୍ତି ଯେ ଚୋଡ଼ଗଙ୍ଗଦେବ ମନ୍ଦିର ନିର୍ମାଣ କାର୍ଯ୍ୟ ଶେଷ କରିଥିଲେ, କିନ୍ତୁ ପ୍ରତିଷ୍ଠା କରିପାରି ନ ଥିଲେ, ଅନଙ୍ଗ ଭୀମଦେବ ମନ୍ଦିରର ଜୀର୍ଣ୍ଣ

୧୭୭। ଶ୍ରୀ ଜଗନ୍ନାଥ ମନ୍ଦିର (ବଙ୍ଗଳା) ମଃ ମଃ ସଦାଶିବ କାବ୍ୟକଣ୍ଠ । ପୃ: ୪୮ ।

ସଂସ୍କାରକରି ପ୍ରତିଷ୍ଠା କରିଥିଲେ । ଏମାନେ ନରସିଂହ ତାମ୍ରଶାସନ ଶ୍ଳୋକର କେତେକାଂଶ ଗ୍ରହଣ କରି ଚୋଡ଼ଗଙ୍ଗଦେବ କେବଳ ମନ୍ଦିର ନିର୍ମାଣ କରିଥିଲେ; କିନ୍ତୁ ପ୍ରତିଷ୍ଠା କରି ନ ଥିଲେ ବୋଲି ପ୍ରତିପାଦନ କରନ୍ତି । ମନ୍ଦିର ନିର୍ମାଣ ସମ୍ପର୍କୀୟ "ଶାକାବେ ରନ୍ଧ୍ର ଶୁଭ୍ରାଂଶୁ" ଶ୍ଳୋକକୁ ନିର୍ମାଣ ସ୍ଥଳରେ ପ୍ରତିଷ୍ଠା କରିଥିଲେ ବୋଲି ଅର୍ଥ କରୁଛନ୍ତି ।

ନରସିଂହ ତାମ୍ରଶାସନର ଶ୍ଳୋକରୁ ଜଣାଯାଉଛି ଯେ ଜଗନ୍ନାଥ ଲକ୍ଷ୍ମୀଙ୍କ ପିତାଙ୍କ ଆଳୟରେ ବା ଶ୍ୱଶୁରାଳୟରେ ଅର୍ଥାତ୍ କ୍ଷୀରସାଗର ବା (ମହୋଦଧିରେ) ନିବାସ କରୁଥିଲେ । ଏହା ଜଗନ୍ନାଥଙ୍କ ପକ୍ଷରେ ଅପମାନଜନକ ହେଉଥିଲା । ପୂର୍ବର ରାଜା-ମାନେ କେହି ଜଗନ୍ନାଥଙ୍କ ପାଇଁ ମନ୍ଦିର ନିର୍ମାଣ ନ କରିଥିବାରୁ ଚୋଡ଼ଗଙ୍ଗଦେବ ମନ୍ଦିରଟି ନିର୍ମାଣ କଲେ । ଏଥିରୁ ସ୍ପଷ୍ଟ ହେଉଛି ଯେ ଚୋଡ଼ଗଙ୍ଗ ମନ୍ଦିରଟି ନିର୍ମାଣ କରିବା ପୂର୍ବରୁ ଜଗନ୍ନାଥ ନୀଳାଚଳରେ କେତେକ ସମୟ ନ ଥିଲେ । ହୁଏତ ଚିଲିକା ଭିତରେ ବା କୂଳଙ୍କ ପାଖରେ କୌଣସି ଦ୍ୱୀପରେ ତାଙ୍କୁ ବିଧର୍ମୀମାନଙ୍କର ଅତ୍ୟାଚାରରୁ ରକ୍ଷା କରିବା ପାଇଁ ଲୁଚାଇ ରଖାଯାଇଥିଲା । ଦ୍ୱୀପ ଭିତରେ ରହିଥିବା ଯୋଗୁଁ ସେ ଶ୍ୱଶୁରାଳୟରେ ରହିଲା ଭଳି ଭାବୁଥିଲେ । ଏ ଅପମାନ ଦୂର କରିବା ପାଇଁ ଚୋଡ଼ଗଙ୍ଗଦେବ ନୀଳାଚଳରେ ଏକ ମନ୍ଦିର ନିର୍ମାଣ କଲେ । ଯେତେବେଳେ ଅପମାନ ଦୂର ହେଲା ବୋଲି ଶ୍ଳୋକରେ କୁହାଯାଇଛି, ସେତେବେଳେ ଜଗନ୍ନାଥ ମନ୍ଦିରରେ ନିଶ୍ଚୟ ବିଜେ ହୋଇଥିବେ । ବିଜେ ହେଲେ ନିଶ୍ଚୟ ପ୍ରତିଷ୍ଠା ହୋଇଥିବେ । ଚୋଡ଼ଗଙ୍ଗ ନିର୍ମାଣ କରିଥିବା ମନ୍ଦିରଟି ଯେ ବର୍ତ୍ତମାନର ମନ୍ଦିର, ତାହା ଦୃଢ଼ଭାବରେ କୁହାଯାଇ ପାରିବ ନାହିଁ ।

ଚୋଡ଼ଗଙ୍ଗଙ୍କ ମନ୍ଦିର କାଳକ୍ରମରେ ଜୀର୍ଣ୍ଣ ହୋଇଯିବାରୁ ବା ମନ୍ଦିରଟି ଛୋଟ ହୋଇଥିବାରୁ ଅନଙ୍ଗଭୀମଦେବ ବଡ଼ ଆକାରରେ ନୂତନ ମନ୍ଦିରଟିଏ ନିର୍ମାଣ କରିଥିବା ସମ୍ଭବ । କାରଣ ସେ ନିଜେ ମନ୍ଦିର ନିର୍ମାଣ କରି ନ ଥିଲେ ନିଜକୁ ନିର୍ମାତା ବୋଲି କେବେ (ଶ୍ଳୋକ ଦ୍ୱାରା) ପ୍ରଚାର କରି ନ ଥାଆନ୍ତେ । "ଶାକାବେ ରନ୍ଧ୍ରଶୁଭ୍ରାଂଶୁ" ଶ୍ଳୋକଟିର ଅସ୍ତିତ୍ୱ ଅସ୍ୱୀକାର ନ ହୋଇଥିବା ପର୍ଯ୍ୟନ୍ତ ଏହି ଧାରଣା ହିଁ ଯୁକ୍ତିଯୁକ୍ତ ମନେ ହେବ ।

ଚୋଡ଼ଗଙ୍ଗଦେବ ଯେଉଁ ମନ୍ଦିରଟି ନିର୍ମାଣ କରିଥିଲେ ତାହା ହୁଏତ ଜୀର୍ଣ୍ଣ ହୋଇଯାଇଥିବ ନତୁବା ଛୋଟ ହୋଇଥିବାରୁ ଅନଙ୍ଗଭୀମ ତାକୁ ବଡ଼ ଆକାରରେ ତିଆରି କରିଥିବେ । ନତୁବା ଚୋଡ଼ଗଙ୍ଗ ଯେଉଁ ମନ୍ଦିର ନିର୍ମାଣ କରୁଥିଲେ ତାହା ଅସମ୍ପୂର୍ଣ୍ଣ ରହିଯିବାରୁ ଅନଙ୍ଗଭୀମ ଶେଷରେ ଅଦଳବଦଳ କରି ମନ୍ଦିରକୁ ସମ୍ପୂର୍ଣ୍ଣ କରି ପ୍ରତିଷ୍ଠା

କରିଥିବେ । ନତୁବା ଚୋଡ଼ଗଙ୍ଗଦେବ ଯେଉଁ ସ୍ଥାନରେ ଜଗନ୍ନାଥଙ୍କ ପାଇଁ ମନ୍ଦିର ନିର୍ମାଣ କରିଥିଲେ, ତାର କିଛି ଦୂରରେ ଅନଙ୍ଗଭୀମ ଏହି ମନ୍ଦିର ନିର୍ମାଣ କରିଥିଲେ । ଯେ ଭାବରେ ହେଉ ମନ୍ଦିର ନିର୍ମାଣ ସହିତ ଅନଙ୍ଗ ଭୀମଦେବଙ୍କ ସମ୍ପର୍କ ରହିଥିଲା ବୋଲି ଅନୁମାନ କରିବା ହିଁ ଯୁକ୍ତିଯୁକ୍ତ ।

# ଚତୁର୍ଦ୍ଦଶ ପରିଚ୍ଛେଦ

## ବଡ଼ଦେଉଳର ବେଢ଼ାପରିକ୍ରମା

ମାଦଳାପାଞ୍ଜି ଅନୁସାରେ ଗଙ୍ଗବଂଶର ଅନଙ୍ଗଭୀମଦେବ ପ୍ରଥମେ ଶଙ୍ଖଦ୍ୱାର ଉପରେ ଏକ ଦେଉଳ ନିର୍ମାଣ କରିଥିବା ସଂକଳ୍ପ କରିଥିଲେ । କିନ୍ତୁ ପରେ ପାତ୍ରମନ୍ତ୍ରୀ ଓ ଅନ୍ୟାନ୍ୟ ଭଦ୍ରବ୍ୟକ୍ତିମାନଙ୍କ ପରାମର୍ଶ ଅନୁସାରେ ଅଳ୍ପ ସମୟରେ ନିର୍ମାଣ କାର୍ଯ୍ୟ ଶେଷ କରିବା ଉଦ୍ଦେଶ୍ୟରେ ନବେଦ୍ୱାର ଉପରେ ଦେଉଳ ତିଆରି କରିବା ସ୍ଥିର କଲେ । "ଏଥିକୁ ଭକ୍ତିମିଶ୍ରମାନେ କହିଲେ ପ୍ରାସାଦ ଯେ ଛତିଶ ପ୍ରକାର । ଏଥିକୁ କୋଡ଼ିଏ ପ୍ରକାରେ ପ୍ରାସାଦ ଶ୍ରେଷ୍ଠ । ଏଥିକୁ ଶ୍ରୀବତ୍ସ ଖଣ୍ଡଶାଳ ହୋଇ ଯେଉଁ ପ୍ରାସାଦ, ସେ ପ୍ରାସାଦ ହରିଙ୍କ ବଡ଼ ପ୍ରିୟ । ଏହା ଶୁଣି ରାଜାଏ ଆଜ୍ଞା ଦେଲେ ଏହି ପ୍ରାସାଦ ଉଜ କରାଇବା ।" "ଶ୍ରୀବତ୍ସ ଖଣ୍ଡଶାଳ" ଦେଉଳ ହରିଙ୍କର "ବଡ଼ ପ୍ରିୟ ଥିବାରୁ ସେହି ଦେଉଳର ଭାଗମାପ ଅନୁସାରେ ଦେଉଳ ହେଲା ।

ଅଗ୍ନିପୁରାଣ ମତରେ "ଶ୍ରୀବତ୍ସ" ପ୍ରାସାଦ "ବୈରାଜ" ପ୍ରାସାଦ ଶ୍ରେଣୀଭୁକ୍ତ । ବୈରାଜ, ପୁଷ୍ପକ, ମାଳକ, କୈଳାସ ଓ ତ୍ରିପିଷ୍ଟକ—ଏପରି ପାଞ୍ଚପ୍ରକାର ଦେବମନ୍ଦିର । ବୈରାଜ ମନ୍ଦିରର ବାସ୍ତୁ ସମଚତୁରସ୍ର, ପୁଷ୍ପ ଅଷ୍ଟାସ୍ର, କୈଳାସ ବୃତ୍ତାକାର, ମାଳକ ବୃତ୍ତାୟତ ଏବଂ ତ୍ରିପିଷ୍ଟକ ଅଷ୍ଟାସ୍ର । ଏହି ପାଞ୍ଚପ୍ରକାର ପ୍ରାସାଦ ମଧ୍ୟରେ ଅନ୍ୟପ୍ରକାର ପ୍ରାସାଦ ମଧ୍ୟ ଅଛି ।

ବୈରାଜଶ୍ରେଣୀ—ମେରୁ, ମନ୍ଦର, ବିଧାନ, ଭଦ୍ରକ, ସର୍ବତୋଭଦ୍ର, ରୁଚକ, ନନ୍ଦନ, ନନ୍ଦିବର୍ଦ୍ଧନ, ଶ୍ରୀବତ୍ସ । (୯ଟି)

ପୁଷ୍ପକ—ବଡ଼ଭୀ, ଗୃହରାଜ, ଶାଳାଗୃହ, ମନ୍ଦିର, ବିମାନ, ବ୍ରହ୍ମମନ୍ଦିର, ଭବନ, ଉତ୍ତମ୍ଭ, ଶିବିକାବେଶ୍ମ । (୯ଟି)

କୈଳାସ—ବଳୟ, ଦୁନ୍ଦୁଭି, ପଦ୍ମ, ମହାପଦ୍ମ, ମୁକୁଳୀ, ଉଷ୍ଣୀଷୀ, ଶଙ୍ଖ, କଳସ ଓ ଗୁବାରକ୍ଷ । (୯ଟି)

ମାଳକ—ଗଜ, ବୃଷଭ, ହଂସ, ଗରୁଡ଼, ସିଂହ, ଭୂମୁଖ, ଭୂଧର, ଶ୍ରୀଜୟ, ପୃଥ୍ୱୀଧର । (୯ଟି)

ତ୍ରିପିଷ୍ଟକ—ବଜ୍ର, ମାଳଚନ୍ଦ୍ର, ମୁଷ୍ଟିକ, ବଭ୍ରୁ, ବନ୍ଦ, ସ୍ୱସ୍ତିକ, ଖଡ଼୍ଗ, ଗଦା, ଶ୍ରୀବୃକ୍ଷ, ବଜ୍ରୟ, ଶ୍ୱେତ ।

ଓଡ଼ିଶାରେ (କ)ରେଖ ଓ ପୀଢ଼ ଭେଦରେ ମଧ୍ୟ ମୋଟାମୋଟି ଭାବରେ ମନ୍ଦିର-ବିଭାଗ କରାଯାଏ ଏବଂ (ଖ) ରଥକ ଦୃଷ୍ଟିରୁ ମଧ୍ୟ ଏକରଥ, ତ୍ରିରଥ, ପଞ୍ଚରଥ, ସପ୍ତରଥ ଓ ନବରଥ ଏପରି ଭାବରେ ମନ୍ଦିର ବିଭାଗ କରାଯାଏ । ଯେକୌଣସି ଶ୍ରେଣୀର ମନ୍ଦିର ହେଉ ମନ୍ଦିରର ବିଭିନ୍ନ ଅଂଶର ଭାଗମାପ ପ୍ରାୟ ସମାନ ଥାଏ ।

ଅରୁଣସ୍ତମ୍ଭ—ସିଂହଦ୍ୱାରର ଆଗକୁ ପୂର୍ବ ଦିଗରେ କମନୀୟ କାରୁକାର୍ଯ୍ୟ ବିଶିଷ୍ଟ ଅରୁଣ ସ୍ତମ୍ଭଟିଏ ଅଛି । ଗୋଟିଏ ମୁଗୁନି ପଥରରେ ଖମ୍ବଟି ଗଢ଼ା । ଅରୁଣଙ୍କର ଏକ ସୁନ୍ଦର ମୂର୍ତ୍ତି ଏହି ଖମ୍ବ ଉପରେ ଅଛି । ଖମ୍ବଟିର ଷୋଳଟି କୋଣ (ମୁହଁ; ପଗ, ପାଗ) ଅଛି । ପାଗଗୁଡ଼ିକ ଓସାର ସମାନ । ୭ଫୁଟ ୯ଇଞ୍ଚ (ସାତଫୁଟ ନଅଇଞ୍ଚ) ଲମ୍ବ, ସେହି ଓସାର ଓ ୬ (ଛଅ) ଫୁଟ ଉଚ୍ଚର ଏକ ପୀଠ ଉପରେ ଖମ୍ବଟି ଥୁଆ ହୋଇଛି । ପୀଠଟି ମଧ୍ୟ ଗୋଟିଏ ମୁଗୁନି ପଥରରେ ଗଢ଼ା । ଖମ୍ବର ବ୍ୟାସ ଦୁଇଫୁଟ ଏବଂ ଗୋଲେଇ ୬ଫୁଟ ୩½ ଇଞ୍ଚ । ପୀଠର ଉପରଠାରୁ ଅରୁଣର ପାଦ ପର୍ଯ୍ୟନ୍ତ ୨୫ଫୁଟ ୨ଇଞ୍ଚ । ପୀଠର ପତ୍ତନଠାରୁ ଅରୁଣଙ୍କ ଶିଖା ପର୍ଯ୍ୟନ୍ତ ଖମ୍ବର ଉଚ୍ଚତା ୩୩ଫୁଟ ୮ଇଞ୍ଚ । ଡାକ୍ତର ରାଜେନ୍ଦ୍ରଲାଲ ମିତ୍ର ଓ ମନମୋହନ ଗାଙ୍ଗୁଲିଙ୍କ ମତରେ ଖମ୍ବ ଉପରେ ବସିବା ଅବସ୍ଥାର ଏକ ମାଙ୍କଡ଼ର ମୂର୍ତ୍ତି ଅଛି । କିନ୍ତୁ ଏହା ଭୁଲ୍ । ଏ ମୂର୍ତ୍ତି ଅରୁଣଙ୍କର । ପୀଠଟି ଅତି ଉଚ୍ଚ ଧରଣର କାରୁକାର୍ଯ୍ୟରେ ମଣ୍ଡିତ ହୋଇଛି । ମରହଟ୍ଟାମାନଙ୍କ ଅମଳରେ ଅଷ୍ଟାଦଶ ଶତାବ୍ଦୀର ଶେଷ ଭାଗରେ ଦିବ୍ୟସିଂହଦେବ ଏହି ଖମ୍ବଟିକୁ କୋଣାର୍କରୁ ଆଣି ଏଠାରେ ରଖିଥିଲେ । ଖମ୍ବର ପୀଠ ଗାତ୍ରରେ ଅତି ସୁନ୍ଦର ମୂର୍ତ୍ତିଗୁଡ଼ିଏ ଖୋଳା ହୋଇଛି । କାରୁକାର୍ଯ୍ୟ ଉଚ୍ଚ ଧରଣର ।

ଦୁଇବେଢ଼ା—ଅରୁଣଖମ୍ବ ପରେ ସିଂହଦ୍ୱାର । ମେଘନାଦ ପାଚେରି ପରେ କୂର୍ମ ପାଚେରି । ଏ ଦୁଇ ପାଚେରି ଭିତରେ ଥିବା ସ୍ଥାନକୁ ବାହାର ବେଢ଼ା କୁହାଯାଏ । ଦୁଇଟିଯାକ ପାଚେରିରେ ଚାରିଦିଗକୁ ଚାରି ଦ୍ୱାର ଅଛି । ଦ୍ୱାରଗୁଡ଼ିକ ଠିକ୍ ସାମନାସାମନି ହୋଇ ରହି ନାହିଁ । ମେଘନାଦ ପାଚେରି ଓ କୂର୍ମପାଚେରି ଭିତରେ ଦୂରତା ସବୁ ସ୍ଥାନରେ ସମାନ ନାହିଁ । ପୂର୍ବ, ଦକ୍ଷିଣ ଓ ଉତ୍ତରଆଡ଼ ଅପେକ୍ଷା ପଶ୍ଚିମଆଡ଼ର ଦୂରତା କମ୍, ପ୍ରାୟ ଅଧେ କହିଲେ ଚଳେ ।

ମେଘନାଦ ପାଚେରି—ବଡ଼ଦେଉଳର ବାହାର ପଟର ଚାରିଆଡ଼େ ଯେଉଁ ପଥରକାନ୍ଥ ଅଛି ତାକୁ ମେଘନାଦ ପାଚେରି କହନ୍ତି । ଏହି ପାଚେରିର ଚାରି କାନ୍ଥରେ ଚାରି ଦ୍ୱାର ଅଛି—ସିଂହଦ୍ୱାର, ହାତୀଦ୍ୱାର, ଘୋଡ଼ାଦ୍ୱାର, ଖଞ୍ଜାଦ୍ୱାର । ଏହି କାନ୍ଥର ଚାରିପଟରେ ବାହାର ଆଡ଼କୁ ଯେଉଁ ରାସ୍ତା ଅଛି, ସେହି ରାସ୍ତା ଉପରୁ ଏ କାନ୍ଥ ଉଠିଛି । ଏହି ମେଘନାଦ ପାଚେରିକୁ ବାହାରବେଢ଼ା କାନ୍ଥ ମଧ୍ୟ କହନ୍ତି । ଏହି କାନ୍ଥର ଆକାର ଚତୁରସ୍ର । ବାହାରଆଡ଼ୁ ପୂର୍ବ କାନ୍ଥର ଲମ୍ବା ୬୪୦ ଫୁଟ, ଦକ୍ଷିଣ କାନ୍ଥର ଲମ୍ବା ୬୬୫ଫୁଟ । ରାସ୍ତା ଉପରୁ ଉଚ୍ଚତା ୨୦ଫୁଟ ଠାରୁ ୨୪ଫୁଟ ପର୍ଯ୍ୟନ୍ତ; ଅଧିକାଂଶ ସ୍ଥାନରେ ୨୨ଫୁଟ । ରାସ୍ତାର ପତନ ଅନୁସାରେ ଏହି ଉଚ୍ଚତାର ବିଭିନ୍ନତା ଦେଖାଯାଏ । କାନ୍ଥର ଉପରଟା ସମତଳ । କଟାପଥରରେ କାନ୍ଥ ଗଢ଼ା ହୋଇଛି । ଉପରେ ଟାଙ୍ଗଲି (ବାହାର ଆଡ଼କୁ କାନ୍ଥକୁ ଲଗେଇ) ସମଗ୍ର କାନ୍ଥରେ ବସା ହୋଇଛି । ଟାଙ୍ଗଲି ଗୁଡ଼ିକର ଉଚ୍ଚତା ପ୍ରାୟ ୨୨ଇଞ୍ଚ । ପୂର୍ବ ଓ ଦକ୍ଷିଣ କାନ୍ଥର ଟାଙ୍ଗଲିଗୁଡ଼ିକ ଆକାରରେ ପଶ୍ଚିମ ଓ ଉତ୍ତର କାନ୍ଥର ଟାଙ୍ଗଲିଠାରୁ ଟିକିଏ ଶ୍ରେଷ୍ଠ । ମାଦଳାପାଞ୍ଜି ଅନୁସାରେ ଏହି ମେଘନାଦ ପ୍ରାଚୀର ସୂର୍ଯ୍ୟବଂଶୀ କପିଳେନ୍ଦ୍ରଦେବ ଖ୍ରୀ୧୪୪୮ରେ (ପନ୍ଦର ଅଙ୍କରେ) ନିର୍ମାଣ କରିଥିଲେ ।

ଏହାଙ୍କ ପୂର୍ବରୁ ଦେଉଳ ଉପରେ କେତେକ ମୁସଲମାନ ଶାସକଙ୍କ କୁଦୃଷ୍ଟି ପଡ଼ିଥିଲା । ମନ୍ଦିରକୁ ଶତ୍ରୁର ଆକ୍ରମଣରୁ ରକ୍ଷା କରିବା ପାଇଁ ଏହି ବିରାଟ ପ୍ରାଚୀର ନିର୍ମିତ ହୋଇଥିବା ସମ୍ଭବ । ମେଘନାଦ ପାଚେରିର ଚାରି ଦିଗରେ ଯେଉଁ ଚାରୋଟି ଦ୍ୱାର ଅଛି ସେଥିଭିତରୁ ପୂର୍ବଆଡ଼ର ଦ୍ୱାରଟି ପ୍ରଧାନ । ଏହି ଦ୍ୱାରର ନାମ ସିଂହଦ୍ୱାର । ମନ୍ଦିର ଭିତରକୁ ଯିବାପାଇଁ ଏହି ସିଂହଦ୍ୱାର ମୁଖ୍ୟ ଦ୍ୱାର । ଓଡ଼ିଶାର ସବୁ ମନ୍ଦିରରେ ମୁଖ୍ୟଦ୍ୱାରର ନାମ ସିଂହଦ୍ୱାର । ଏହି ଦ୍ୱାରରେ ପୀଢ଼ ଦେଉଳଟିଏ (ଗୁମୁଟ) ଗଢ଼ା ହୋଇଛି । ଦେଉଳ ଉପରେ ବିଭିନ୍ନ ଆକୃତିର ମୂର୍ତ୍ତି ମଧ୍ୟ ଅଛି । ଦ୍ୱାର ଆଗରେ ଦୁଇ ଆଡ଼କୁ ଦୁଇଟା ବିରାଟକାୟ ସିଂହ (ବସିବା ଅବସ୍ଥାରେ)ର ମୂର୍ତ୍ତି ରହିଛି । ଦେଉଳର ଦ୍ୱାରବନ୍ଧରେ ଜୟ ବିଜୟଙ୍କ ବଳିଷ୍ଠମୂର୍ତ୍ତି ରହିଛି । ଏ ଦୁଇଟି ସିଂହ ଏ ଦ୍ୱାରକୁ ରକ୍ଷା କରୁଥିବାରୁ ଦ୍ୱାରର ନାମ ସିଂହଦ୍ୱାର । ଜୟ ବିଜୟ ମଧ୍ୟ ଦ୍ୱାରପାଳ ରୂପରେ ଏଠାରେ ଅଛନ୍ତି ।

ସିଂହଦ୍ୱାର—ସିଂହଦ୍ୱାର ଭିତରେ ରାସ୍ତାର ଦୁଇକଡ଼ରେ ପୀଠ ଉପରେ କେତେକ ଦେବ ଦେବୀ ଅଛନ୍ତି । ଉତ୍ତର ପୀଠରେ ପଶ୍ଚିମ କାନ୍ଥକୁ ଲାଗି ଜଗନ୍ନାଥଙ୍କ ଏକ ମୂର୍ତ୍ତି ଅଛନ୍ତି । ଏହାଙ୍କୁ ପତିତପାବନ କୁହାଯାଏ । ସିଂହଦ୍ୱାର ଆଗରେ ଠିଆ ହୋଇ ଏହି ଠାକୁରଙ୍କୁ ଦର୍ଶନ କଲେ ଭକ୍ତକୁ ମନ୍ଦିର ଭିତରକୁ ନ ଯାଇ ଜଗନ୍ନାଥଙ୍କୁ ଦର୍ଶନ କରିବା ଫଳ ମଧ୍ୟ ମିଳେ । ଅସୁବିଧା ବେଳରେ କିମ୍ବା ଯେଉଁ-

ମାନେ ମନ୍ଦିର ଭିତରକୁ ଯାଇ ପାରିବେ ନାହିଁ, ସେମାନଙ୍କ ଦେବଦର୍ଶନ ଆକାଂକ୍ଷା ପତିତପାବନ ଦର୍ଶନରେ ପୂର୍ଣ୍ଣ ହୁଏ । ଖୋର୍ଦ୍ଧା ରାଜା ରାମଚନ୍ଦ୍ର ଦେବ ( ୧୭୩୨-୪୩ ) ମୁସଲମାନ ଧର୍ମ ଅବଲମ୍ବନ କରି ହାଫିଜ୍ କାଦର ନାମ ଧାରଣ କରିଥିଲେ । କିନ୍ତୁ ତାଙ୍କର ଜଗନ୍ନାଥଙ୍କଠାରେ ଭକ୍ତି ପୂର୍ବବତ୍ ରହିଥିବାରୁ ଜଗନ୍ନାଥଙ୍କ ଏକ ମୂର୍ତ୍ତି ଏଠାରେ ବସାଇ ତାଙ୍କୁ ଦର୍ଶନ କରୁଥିଲେ ବୋଲି କେହି କେହି କହନ୍ତି ।

ପତିତପାବନଙ୍କ ପୂର୍ବକୁ ଷୋଳପୁଅ ମା' ଠାକୁରାଣୀ । ଦକ୍ଷିଣ, ଉତ୍ତର ଓ ପଶ୍ଚିମ ଦ୍ୱାର ରାସ୍ତା ଭିତରେ କୌଣସି ଦେବଦେବୀ ନାହାନ୍ତି । ମେଘନାଦ ପ୍ରାଚୀରରେ ଦକ୍ଷିଣ-ପଶ୍ଚିମ (ନୈଋତ) କୋଣରେ ବାହାର ଆଡ଼କୁ ଯିବା ପାଇଁ ଏକ କାଠର ନିଶୁଣି ଲାଗିଛି । ପଶ୍ଚିମ ଦ୍ୱାରଟି ମେଘନାଦ ପାଚେରୀ ତିଆରି ହେବାବେଳେ ନ ଥିଲା ଖୋର୍ଦ୍ଧାରାଜା ଦ୍ୱିତୀୟ ବୀରକିଶୋରଦେବ ଅଷ୍ଟାଦଶ ଶତାବ୍ଦୀର ଶେଷଭାଗରେ ଏହି, ଦ୍ୱାରଟି ଫିଟାଇଲେ ।

**ବଡ଼ଦେଉଳ**—ବଡ଼ଦେଉଳଟି ଚାରିଗୋଟି ଦେଉଳରେ ବିଭକ୍ତ । ବିମାନଟି ସବୁଠାରୁ ଉଚ୍ଚ । ବିମାନକୁ ଲାଗି ମୁଖଶାଳା ବା ଜଗମୋହନ । ଜଗମୋହନକୁ ଲାଗି ନାଟମନ୍ଦିର । ନାଟମନ୍ଦିରକୁ ଲାଗି ଭୋଗମଣ୍ଡପ । ବଡ଼ଦେଉଳ ପୂର୍ବମୁହାଁ ବିମାନର ଦ୍ୱାର ପୂର୍ବଆଡ଼କୁ ଫିଟିଛି, ଠାକୁରମାନେ ପୂର୍ବଆଡ଼କୁ ମୁହଁ କରି ସିଂହାସନରେ ବସିଛନ୍ତି ।

**ବିମାନ**—ବିମାନଟି ପଞ୍ଚରଥ ଦେଉଳ । ରାସ୍ତା ଉପରୁ ବିମାନର ଖପୁରି ପର୍ଯ୍ୟନ୍ତ ଉଚ୍ଚତା ୨୧୪ ଫୁଟ । ବୈରାଜ ଶ୍ରେଣୀର । ସମଚତୁରସ୍ର ବାଡ଼ ଉପରେ ନିର୍ମିତ । ତାହାର ବାହାର ମାପ (ତୃତୀୟକୋଣରୁ) ୮୦ ଫୁଟ ଲମ୍ବ । ଓସାର ଲମ୍ବର ସମାନ (୮୦ ଫୁଟ) । ୨ଟି କୋଣକ ପାଗ (ପଗ)—ପ୍ରତ୍ୟେକଟି ୧୬ଫୁଟ ଓସାର । ୨ଟି ଅଣରଥ ପାଗ—ପ୍ରତ୍ୟେକଟି ୧୦ ଫୁଟ ଲମ୍ବ । ରାହାପାଗଟି ୨୪ଫୁଟ ଓସାର । ତାହାର ଓସାର କୋଣକ(କଣ) ପାଗର ଲମ୍ବ ସଙ୍ଗେ ସମାନ ବା ୧୨ଫୁଟ । କୋଣକଭାଗରେ ନଅଟି ଭୂମି ଅଛି । ବିମାନ ୫ଫୁଟ ୨ଇଞ୍ଚ (ପାଞ୍ଚଫୁଟ ଦୁଇଇଞ୍ଚ) ଉଚ୍ଚ ପୀଠ ଉପରେ ଠିଆ ହୋଇଛି । ଏହି ପୀଠର ଚାରିଆଡ଼େ ଦେଉଳର ପାଗ ଅନୁସାରେ ପାଗ ମଧ୍ୟ ତିଆରି ହୋଇଛି । ପୀଠଟି ସିମେଣ୍ଟବୋଳା ହୋଇଥିବାରୁ ପ୍ରକୃତ ଭାଗମାପ ହିସାବକରି ହେଉନାହିଁ । ଜଙ୍ଘାର ଉଚ୍ଚତା ୧୧ଫୁଟ ୬ଇଞ୍ଚ (ଏଗାରଫୁଟ ଛଅଇଞ୍ଚ) । ଜଙ୍ଘା ଓ ବାଡ଼ରେ ପ୍ରତ୍ୟେକଟିରେ ପାଞ୍ଚଭାଗ ଅଛି । ବାଡ଼ର ତଳ ବରାଣ୍ଡିରେ ଦିକ୍‌ପତିମାନଙ୍କ ପାଇଁ କାନ୍ଥକୋରା ବା ଭଣ୍ଡି ଅଛି । କୋଣକ ଓ ଅନର୍ଥପାଗ (ଅଣରଥ) ମଝିରେ ଗଜସିଂହ ମୂର୍ତ୍ତି ଅଛି । ଅନର୍ଥ ଓ ରାହାପାଗ ମଝିରେ ମଧ୍ୟ ଓଲଟା ଗଜସିଂହ ମୂର୍ତ୍ତି ଅଛି । ପଥରମୂର୍ତ୍ତି ଛଡ଼ା ବାଡ଼



ନକ୍ସା-ପରିଚୟ : ୧ଇଞ୍ଚ = ୨୦୦ଫୁଟ

୧ ଭୋଗମଣ୍ଡପ
୨ ନାଟମନ୍ଦିର
୩ ଜଗମୋହନ
୪ ବଡ଼ଦେଉଳ
୫ ମୁକ୍ତିମଣ୍ଡପ
୬ ବିମଳାମନ୍ଦିର
୭ ଲକ୍ଷ୍ମୀମନ୍ଦିର
୮ ସୂର୍ଯ୍ୟନାରାୟଣ ମନ୍ଦିର
୯ ପାତାଳେଶ୍ୱର ମହାଦେବ ମନ୍ଦିର
୧୦ ଆନନ୍ଦ ବଜାର
୧୧ ସ୍ନାନବେଦୀ
୧୨ ଘୋଷେଇଘର
୧୩ ବାଇଶି ପାହାଚ
୧୪ ସିଂହଦ୍ୱାର
୧୫ ଅରୁଣସ୍ତମ୍ଭ
୧୬ କୋଇଲିବୈକୁଣ୍ଠ

ଉପରେ ଚୂନର ମଧ୍ୟ କେତେକ ମୂର୍ତ୍ତି ଦେଖଯାଏ । ବାଡ଼ର ପଶ୍ଚିମ ଉତ୍ତର କୋଣରେ କୋଣକ ଓ ଅନର୍ଥ ପାଗରେ ପଥରର ସୁନ୍ଦର ଦୁଇଟି ମୂର୍ତ୍ତି ଅଛି । ଚୂନ ଖୋଲା ହୋଇ ଏହି ଦୁଇଟି ମୂର୍ତ୍ତିକୁ ବାହାର କରାଯାଇଛି । ଏଥିରୁ ଅନୁମାନ ହେଉଛି ଯେ ବାଡ଼, ଜଙ୍ଘା ପ୍ରଭୃତି ଅଂଶରେ ପଥରର ସୁନ୍ଦର ସୁନ୍ଦର ମୂର୍ତ୍ତି ଅଛି । କିନ୍ତୁ ପ୍ରାୟ ଛଅଇଞ୍ଚ ବହଳର ଚୂନ ବୋଳ ହୋଇଥିବାରୁ ପଥରର କାରୁକାର୍ଯ୍ୟ କିଛି ଦିଶୁନାହିଁ । ବାଡ଼ର ରାହାପଗମାନଙ୍କରେ ଦକ୍ଷିଣ, ପଶ୍ଚିମ ଓ ଉତ୍ତର ଏହି ତିନି ଦିଗରେ ଯେଉଁ ତିନୋଟି ଭଣ୍ଡି ଅଛି, ସେଥିରୁ ଯଥାକ୍ରମେ ବାମନ, ନୃସିଂହ ଓ ବରାହଙ୍କ ସୁନ୍ଦର ବଡ଼ ବଡ଼ ମୂର୍ତ୍ତି ଅଛି । ମୂର୍ତ୍ତିମାନଙ୍କ ପାଇଁ ଦ୍ୱିତଳ ପ୍ରାସାଦ ନିର୍ମିତ ହୋଇଛି । ପ୍ରଥମ ତଳର ଉଚ୍ଚତା ୧୧ଫୁଟ ୭ଇଞ୍ଚ । ଏହି ତିନୋଟି ମୂର୍ତ୍ତିର କାରୁକାର୍ଯ୍ୟ ଦେଖିଲେ ଆଶ୍ଚର୍ଯ୍ୟ ହେବାକୁ ହୁଏ ।

ଦେଉଳର ସ୍ଥାନ—ପୁରାଣ ଓ କିମ୍ବଦନ୍ତୀ ଅନୁସାରେ ନୀଳଗିରି ଉପରେ ବଡ଼ଦେଉଳ ତିଆରି ହୋଇଛି । ଅବଶ୍ୟ ବର୍ତ୍ତମାନ ନୀଳଗିରିର କିଛି ଚିହ୍ନ ସ୍ପଷ୍ଟଭାବରେ ଜଣା ଯାଉ ନ ଥିଲେ ମଧ୍ୟ ବାଲି ସ୍ତୂପରୁ ପାହାଡ଼ର ଆଭାସ ମିଳିପାରେ । ଇନ୍ଦ୍ରଦ୍ୟୁମ୍ନ ପ୍ରଥମେ ଏହିଠାରେ ଜଗନ୍ନାଥଙ୍କ ପାଇଁ ଦେଉଳ ନିର୍ମାଣ କରିଥିଲେ । ପରବର୍ତ୍ତୀ ସମୟରେ ସେ ଦେଉଳର ବହୁ ପରିବର୍ତ୍ତନ ହୋଇଛି ଏବଂ ଗଙ୍ଗବଂଶ ରାଜତ୍ୱରେ ବର୍ତ୍ତମାନର ଦେଉଳ ନୂତନ ହୋଇ ଗଠିତ ହୋଇଛି । ଦେଉଳର ଅବସ୍ଥିତିରୁ ପରିଷ୍କାର ଜଣାପଡ଼ୁଛି ଯେ ଦେଉଳର ସ୍ଥାନଟି ପୂର୍ବେ ଉଚ୍ଚ ଥିଲା । ଦେଉଳର ସିଂହଦ୍ୱାର ଗଡ଼ାଣିଆ; ସିଂହଦ୍ୱାର ରାସ୍ତା ଉପରୁ ଦେଖିଲେ ସ୍ଥାନଟିର ଆକାର କୂର୍ମ ପିଠି ପରି ଦେଖାଯାଏ । ଭିତର ବେଢ଼ାର ପଥର ମଧ୍ୟ କୂର୍ମପାତେଶ୍ୱର-ଆଡ଼କୁ ଗଡ଼ାଣିଆ; ଉତ୍ତରଆଡ଼କୁ ଗଡ଼ାଣି ଟିକିଏ ବେଶୀ । ବାହାରବେଢ଼ା ଭିତରେ ଈଶାନକୋଣରେ ମାଟି ଭର୍ତ୍ତି କରି ସମତଳ କରାଯାଇଛି, ବାହାର ଦ୍ୱାର-ମାନଙ୍କଠାରୁ ଭିତର ଦ୍ୱାର ପର୍ଯ୍ୟନ୍ତ ସବୁ ଅଞ୍ଚଳ ଗଡ଼ାଣିଆ ।

**ଜଗମୋହନ**—ଜଗମୋହନଟି ପଞ୍ଚରଥ ପୀଢ଼ ଦେଉଳ । ବୋଳା ହୋଇଥିବା ଚୂନର ପରିମାଣ ଏତେ ବେଶୀ ଯେ ପୁରୁଣା କାରୁକାର୍ଯ୍ୟର କୌଣସି ଚିହ୍ନବର୍ତ୍ତି ଦିଶୁ ନାହିଁ । ତାହା ଛଡ଼ା ପାଗମାନଙ୍କର ମାପ ଜାଣିବା ମଧ୍ୟ ସମ୍ଭବ ନୁହେଁ । ୬ଫୁଟ ୩ଇଞ୍ଚ ଉଚ୍ଚର ଏକ ପୀଠ ଉପରେ ଜଗମୋହନ ନିର୍ମିତ ହୋଇଛି । ତଳ ଜଂଘାର ଉଚ୍ଚତା ପ୍ରାୟ ୮ଫୁଟ । କୂର୍ମବେଢ଼ାର ଚଟାଣ ଉପରୁ ଜଗମୋହନର ଉଚ୍ଚତା ପ୍ରାୟ ୧୦୦ଫୁଟ । ଜଗମୋହନର ଲମ୍ବ ଓ ଓସାର ପ୍ରତ୍ୟେକେ ୮୦ଫୁଟ । ଏହି ଦେଉଳରେ ତିନୋଟି ଦ୍ୱାର ଅଛି । ଦକ୍ଷିଣ ଦ୍ୱାରଟି ମୁକ୍ତିମଣ୍ଡପ ଆଡ଼କୁ ଅଛି ।

ଉତ୍ତର ଦ୍ୱାର ଭଣ୍ଡାରଘର ଭିତରକୁ ଅଛି । ପୂର୍ବ ଦ୍ୱାରର ନାମ ଜୟ ବିଜୟ ଦ୍ୱାର ଏବଂ ନାଟମନ୍ଦିର ଏହାର ବାଟ । ଜୟ ବିଜୟ ଦ୍ୱାରରେ ଅତି ସୁନ୍ଦର କାରୁକାର୍ଯ୍ୟ ଅଛି । ଦୁଇ ପାଖରେ ବହୁତ ଲିପି ଖୋଦିତ ହୋଇ ରହିଛି । ଦେଉଳର ବାଡ଼ରେ ବାହାର ପାଗମାନଙ୍କ ଭିତରେ ଚୂନର କେତେକ ଅଶ୍ଳୀଳ ମୂର୍ତ୍ତି ଅଛି ।

**ନାଟମନ୍ଦିର**—ଜଗମୋହନକୁ ଲାଗି ନାଟମନ୍ଦିର । ଏହି ନାଟମନ୍ଦିର ଗୃହଧାଡ଼ରେ ଷୋଳଟି ଖମ୍ବ ଅଛି । ଏହି ଖମ୍ବ ଉପରେ ପୀଢ଼ ଗୁନ୍ଥ ହୋଇଛି । ନାଟମନ୍ଦିରର ପୂର୍ବ-ପଶ୍ଚିମ ଲମ୍ବ ପ୍ରାୟ ୬୨ଫୁଟ; ଦକ୍ଷିଣ-ଉତ୍ତର ମଧ୍ୟ ସେହି ଲମ୍ବ । ଭୋଗମଣ୍ଡପର ପଶ୍ଚିମ ଦ୍ୱାରଠାରୁ ଜଗମୋହନର ପୂର୍ବଦ୍ୱାର ପର୍ଯ୍ୟନ୍ତ ରାସ୍ତାରେ ଖମ୍ବ ନାହିଁ । ଖମ୍ବଗୁଡ଼ିକରେ ବହୁତ ଚୂନ ବୋଳା ହୋଇଥିବାରୁ ପଥରର ମାପ ଠିକ୍ ଭାବରେ ଜଣାଯାଉ ନାହିଁ । ଗୃହକୋଣର ଖମ୍ବମାନଙ୍କର ଓସାର ୬ (ଛଅ)ଫୁଟ, ମଝିର ଓସାର ପ୍ରାୟ ୪ଫୁଟ ୨ଇଞ୍ଚ । ଦକ୍ଷିଣ ଓ ଉତ୍ତରକୁ ଦୁଇଟି ଦ୍ୱାର ଅଛି । ଏହି ଦ୍ୱାରମାନଙ୍କୁ ଲାଗି ପାହାଚ ଅଛି । ଦକ୍ଷିଣ-ପୂର୍ବ ଓ ଦକ୍ଷିଣ-ପଶ୍ଚିମରେ ମଧ୍ୟ ଦୁଇଟି ଦ୍ୱାର ଅଛି । ଦକ୍ଷିଣ-ପୂର୍ବ ଦ୍ୱାରବାଟେ ରୋଷଘରକୁ ରାସ୍ତା । ଭୋଗ ପାଇଁ ରୋଷଘରୁ ଭୋଗସାମଗ୍ରୀ ଏହି ବାଟେ ମନ୍ଦିର ଭିତରକୁ ଯାଏ । ନାଟମନ୍ଦିରରୁ ଭୋଗମଣ୍ଡପକୁ ଯିବା ପାଇଁ ପୂର୍ବଆଡ଼କୁ ଯେଉଁ ରାସ୍ତାଟି ଅଛି, ତା ଆଗରେ ଗରୁଡ଼ ଖମ୍ବ ରହିଛି । ଏହି ନାଟମନ୍ଦିରରେ ଅନ୍ନ ଭୋଗ ହୁଏ ନାହିଁ । ବାଲଭୋଗ, ନଡ଼ିଆ ପ୍ରଭୃତି ଠାକୁରମାନଙ୍କୁ ଭୋଗ ହୁଏ । ଏହିଠାରେ ଦେବଦାସୀ ନୃତ୍ୟ, କୀର୍ତ୍ତନ, ଜପତପ ପ୍ରଭୃତି ହୁଏ । ଗରୁଡ଼ ଖମ୍ବ ପାଖରେ ଦୀପ ଦିଆ ହୁଏ । ନାଟମନ୍ଦିରର ଭିତର କାନ୍ଥରେ ଓ ଭିତର ଗୁନ୍ଥରେ ନାନାବର୍ଣ୍ଣର ଚିତ୍ର ଅଙ୍କା ଯାଇଛି । ଗରୁଡ଼ଙ୍କ ଦକ୍ଷିଣକୁ ପୂର୍ବ କାନ୍ଥ "କାଞ୍ଚି-ଯାତ୍ରା"ର କେତୋଟି ମୂର୍ତ୍ତି ଚୂନରେ ତିଆରି ହୋଇଛି । ଧଳା ଘୋଡ଼ାରେ ବଲଭଦ୍ର ଜଗନ୍ନାଥ କଳା ଘୋଡ଼ାରେ ଚଢ଼ି କାଞ୍ଚି ଅଭିଯାନ ବେଳେ ଯାଉଥିବା ବାଟରେ ମୁଦି ବନ୍ଧା ଦେଇ ମାଣିକ ଗଉଡୁଣୀଠାରୁ ଦହି ଖାଇବା ଦୃଶ୍ୟ ଏଥିରେ ଦିଆଯାଇଛି ।

**ଭୋଗମଣ୍ଡପ**—ଭୋଗମଣ୍ଡପଟି ପଞ୍ଚରଥ ପୀଢ଼ ଦେଉଳ । ଅନର୍ଥ ପାଗଗୁଡ଼ିକ ସ୍ପଷ୍ଟଭାବରେ ଦେଖାଯାଉ ନ ଥିବାରୁ ତ୍ରିରଥ ଦେଉଳ ହେବାର ସନ୍ଦେହ ହୁଏ । ଏହି ମନ୍ଦିରର ବାଡ଼ରେ ଅତି ସୁନ୍ଦର ପଥର ମୂର୍ତ୍ତିଗୁଡ଼ିଏ ଅଛି । ଜାଲି କାମ ମଧ୍ୟ ଅଛି । ଜଂଘା, ବରଣ୍ଡି ଓ ପାକର ନାନା ଧରଣର ମୂର୍ତ୍ତିରେ ଶୋଭା ପାଉଛି । ନାଗଖମ୍ବ, ଶାର୍ଦ୍ଦୂଳ, ଦୋପିଚ୍ଛ ଶାର୍ଦ୍ଦୂଳ, ହାତୀଧାଡ଼ି, କୀର୍ତ୍ତିମୁଖ, ହଂସ ପ୍ରଭୃତିର ମୂର୍ତ୍ତି ଓ ମିଥୁନଚିତ୍ରର ମୂର୍ତ୍ତି ମଧ୍ୟ ରହିଛି । ବରଣ୍ଡିର ଭଣ୍ଡିମାନଙ୍କରେ ମଧ୍ୟ ମିଥୁନଚିତ୍ର ଦେଖାଯାଏ । ପୂର୍ବଆଡ଼ର ବରଣ୍ଡିର ବାଡ଼ରେ

କେତେକ ପୌରାଣିକ ଚିତ୍ର (ମୂର୍ତ୍ତି)ରହିଛି । କୃଷ୍ଣଙ୍କ ଦୋଳଯାତ୍ରା ଚିତ୍ରଟି ବଡ଼ ସୁନ୍ଦର ହୋଇଛି । ବୃଷଭ ଉପରେ ଶିବ ବସିଥିବା ଚିତ୍ର, ଶ୍ରୀକୃଷ୍ଣ ଗୋରୁ ଚରେଇବା ଚିତ୍ର, ଶ୍ରୀରାମଙ୍କ ରାଜ୍ୟାଭିଷେକ, ନୌକାରେ ଶ୍ରୀକୃଷ୍ଣ ବସିଥିବା ଓ ଗୋପୀମାନେ ନୌକା ଚଳାଉଥିବା ଦୃଶ୍ୟ ଅତି ମନୋହର ହୋଇଛି । କାରୁକାର୍ଯ୍ୟ ଦୃଷ୍ଟିରୁ ଏଗୁଡ଼ିକ କୋଣାର୍କ ଚିତ୍ରମାନଙ୍କର ସମକକ୍ଷ ନ ହେଲେ ମଧ୍ୟ ଚିତ୍ରଗୁଡ଼ିକ ଯେ ଉଚ୍ଚ ଧରଣର ଏଥିରେ ସନ୍ଦେହ ନାହିଁ । ଦକ୍ଷିଣ, ପୂର୍ବ ଓ ଉତ୍ତରଆଡ଼କୁ ଦ୍ୱାର ଅଛି । ଭିତରକୁ ଯିବା ପାଇଁ ପାହାଚ ମଧ୍ୟ ଅଛି । ଦକ୍ଷିଣ ଦ୍ୱାରର ସମ୍ମୁଖ ଭାଗଟି ଏକ ନୂଆ ଛାତ ଦ୍ୱାରା ଆବୃତ ହୋଇଛି । ଭୋଗଘରୁ ନାଟମନ୍ଦିରକୁ ଏହି ଛାତ ତଳେ ରାସ୍ତା ଅଛି । ମନ୍ଦିର ଭିତରେ ଚାରୋଟି ଖମ୍ବ ଅଛି । ପୂର୍ବ ଦ୍ୱାରରେ ଓ ଭିତରେ କେତୋଟି ଖମ୍ବରେ ଶିଳାଲିପି ଅଛି । ଏହି ମନ୍ଦିରଟି ବାଲିଆ ପଥରରେ ତିଆରି । ନାଲି ରଙ୍ଗରେ ପଥରଗୁଡ଼ିକ ଚିତ୍ରିତ ହୋଇଛି । ଭିତ୍ତିମାନଙ୍କରେ ଯେଉଁ ସବୁ ସୁନ୍ଦର ମୂର୍ତ୍ତି ତିଆରି ଅଛି ସେସବୁ ମୁଗୁନି ପଥରର । ଭୋଗମଣ୍ଡପରେ ସକାଳ ଧୂପ ପରେ "ଭଅଣ୍ଡ" ବା ଛତ୍ର ଭୋଗ ହୁଏ । ଏହା ଛଡ଼ା ଅନ୍ୟ ଭୋଗ ହୁଏ ନାହିଁ । ଏହି ଭୋଗଟି ଅନ୍ୟ ଭୋଗମାନଙ୍କ ଅପେକ୍ଷା ବଡ଼ । ବହୁତ ମହାପ୍ରସାଦ ଭୋଗ ହୁଏ ।

ଭୋଗମଣ୍ଡପର ଦକ୍ଷିଣ ବାଡ଼ରେ ବରଣ୍ଡିର ଭିତ୍ତିରେ ପୂର୍ବଆଡ଼କୁ କଳା ମୁଗୁନିପଥରରେ ଖୁଣ୍ଟା ହୋଇଥିବା ଗୋଟିଏ ସୁନ୍ଦର ଚିତ୍ର ଅଛି । ସିଂହାସନ (ଖଟୁଲି) ଉପରେ ଜଗନ୍ନାଥ, ଶକ୍ତିଯୁକ୍ତ ଶିବଲିଙ୍ଗ, ଓ ଚତୁର୍ଭୁଜା ମହିଷାସୁରମର୍ଦ୍ଦିନୀ ରହିଛନ୍ତି । ମହିଷାସୁରମର୍ଦ୍ଦିନୀ ଠିଆହୋଇ ରହିଛନ୍ତି । ଜଗନ୍ନାଥଙ୍କ ରୂପ ବର୍ତ୍ତମାନ ଦେଉଳରେ ଯେଉଁ ରୂପ ଦେଖାଯାଉଛି ଠିକ୍ ସେହିପରି । ଲିଙ୍ଗଙ୍କ ଆକାର ଅନ୍ୟ ଦୁଇ ମୂର୍ତ୍ତି ତୁଳନାରେ ଶ୍ରେଷ୍ଠ । ମଧ୍ୟରେ ଶିବଲିଙ୍ଗ, ଲିଙ୍ଗଙ୍କ ଦକ୍ଷିଣ ଭାଗରେ ଜଗନ୍ନାଥ ଓ ପଶ୍ଚିମ ଭାଗରେ ମହିଷାସୁରମର୍ଦ୍ଦିନୀ । ସିଂହାସନ ଉପରକୁ ଦୁଇଟି ପିଢ଼ାରେ ଗ୍ରଥିତ ହୋଇଛି । ସିଂହାସନର ଉପରକୁ ପ୍ରାୟ ଛାତ ପର୍ଯ୍ୟନ୍ତ ଜଗନ୍ନାଥ ଓ ମହିଷାସୁରମର୍ଦ୍ଦିନୀଙ୍କର ଛତ୍ର ଉଠିଛି । ସିଂହାସନ (ଖଟୁଲି)ର ତଳେ ଏକଯୋଡ଼ା ପାଦୁକା ଥୁଆ ହୋଇଛି । ପଥରଟିର ପ୍ରାୟ ଏକ ତୃତୀୟାଂଶ ସ୍ଥାନରେ ଠାକୁରମାନେ ରହିଛନ୍ତି । ସିଂହାସନ ଆଗକୁ ଜଣେ ଲୋକ (ପୁରୁଷ) ହାତରେ ଫୁଲମାଳ ଧରିଛି । ତା ଆଗକୁ ଜଣେ ପୁରୁଷ ହାତଯୋଡ଼ି ଠିଆହୋଇଛି । ଆଉ ତିନିଜଣ ଲୋକ ଏହା ପଛରେ ଅଛନ୍ତି । ଜଣେ ଚାମର, ଜଣେ ଛତ୍ର ଓ ଆଉ ଜଣେ ବସ୍ତ୍ର ଧରିଛି । ସିଂହାସନପାଖରେ ଠିଆହୋଇଥିବା ଲୋକଟି ଜଣେ ସେବକ ହୋଇଥିବା ସମ୍ଭବ । ଆଉ ସେ ଯାହାଙ୍କୁ ଫୁଲମାଳ ଧରି ଅଭ୍ୟର୍ଥନା କରୁଛନ୍ତି ସେ ରାଜା ହୋଇଥିବା ସମ୍ଭବ । ଅନ୍ୟ ତିନିଜଣ ରାଜସେବକ । ସିଂହାସନ ତଳକୁ କିଛି ଚିତ୍ର ନାହିଁ ।

କୋଣାର୍କରେ ଯାଦୁଘରେ ଜଗନ୍ନାଥଙ୍କର ଦୁଇଟି ମୂର୍ତ୍ତି ଅଛି । ଦୁଇଟିରେ ଜଗନ୍ନାଥ, ଶକ୍ତିଯୁକ୍ତ ଶିବଲିଙ୍ଗ ଓ ମହିଷାସୁରମର୍ଦ୍ଦିନୀ ପୀଠ ଉପରେ ବସିଛନ୍ତି । ଏହି ଦୁଇଟି ଚିତ୍ର ଜଗନ୍ନାଥ ମନ୍ଦିରର ଚିତ୍ରସାଙ୍ଗରେ ମୂଳତଃ ପ୍ରାୟ ସମାନ । ଏ ଦୁଇଟି ଭିତରୁ ଗୋଟିଏ ଚିତ୍ରରେ ମଝିରେ ଜଗନ୍ନାଥ, ତାଙ୍କ ଡାହାଣକୁ ଶିବଲିଙ୍ଗ ଓ ବାଁକୁ ମହିଷାସୁରମର୍ଦ୍ଦିନୀ ଦୁର୍ଗା । ସିଂହାସନ ଆଗରେ ମୁଣ୍ଡିତମସ୍ତକ ପୂଜକ ଓ ଆଉ ଜଣେ ରାଜା । ସିଂହାସନ ତଳ ଅଂଶରେ କେତେକ ରାଜସେବକ ଅଛନ୍ତି । ଦ୍ୱିତୀୟ ଫଳକଟିରେ ଜଗନ୍ନାଥଙ୍କ ଦକ୍ଷିଣକୁ ମହିଷାସୁରମର୍ଦ୍ଦିନୀ ଓ ବାମକୁ ଶକ୍ତିଯୁକ୍ତ ଶିବଲିଙ୍ଗ ଅଛନ୍ତି । ସିଂହାସନ ଆଗକୁ ଦୁଇଜଣ ସେବକ, ସେମାନଙ୍କ ଆଗକୁ ରାଜା । ଦେଉଳର ପୀଠରେ ଉପର ଜଂଘାରେ ଏହିଭଳି ଆଉ ଏକ ଚିତ୍ର ଥିବାର ଦେଖାଯାଏ । ଜଗନ୍ନାଥଙ୍କ ମୂର୍ତ୍ତିର ରୂପ ଏହି ଚିତ୍ରମାନଙ୍କରୁ ସ୍ପଷ୍ଟଭାବରେ ଜଣାପଡ଼େ । ପୁରାଣମାନଙ୍କରେ ଜଗନ୍ନାଥଙ୍କ ରୂପର ଯେଉଁ ବର୍ଣ୍ଣନା ଦିଆଯାଇଛି, ତାହା ସହିତ ବର୍ତ୍ତମାନ ଦେଖାଯାଉଥିବା ରୂପର କୌଣସି ସାମଞ୍ଜସ୍ୟ ନାହିଁ । ଏଥିରୁ କେହି କେହି ଅନୁମାନ କରି ପାରନ୍ତି ଯେ ପୁରାଣ ଲେଖା ବେଳକୁ ହୁଏତ ଭିନ୍ନ ରୂପ ଥିଲା ଏବଂ ପରବର୍ତ୍ତୀ ଯୁଗରେ ସେହି ରୂପର ପରିବର୍ତ୍ତନ ହୋଇଛି । ଅନ୍ତତଃପକ୍ଷେ ପୁରୀ ମନ୍ଦିରର ଭୋଗମଣ୍ଡପ ତିଆରି ବେଳକୁ ଓ କୋଣାର୍କ ଦେଉଳ ତିଆରି ବେଳକୁ ଅର୍ଥାତ୍ ତ୍ରୟୋଦଶ ଶତାବ୍ଦୀ ବେଳକୁ ଯେ ଜଗନ୍ନାଥଙ୍କର ବର୍ତ୍ତମାନର ରୂପ ପରି ରୂପ ଥିଲା ତାହା ଏହି ଚିତ୍ରମାନଙ୍କରୁ ସ୍ପଷ୍ଟ ପ୍ରତୀୟମାନ ହେଉଛି । ଏହି ତ୍ରିମୂର୍ତ୍ତିକୁ ଅବଲମ୍ବନ କରି ଜଗନ୍ନାଥଙ୍କ ସମ୍ବନ୍ଧରେ ଗବେଷକମାନଙ୍କ ଭିତରେ ବିଭିନ୍ନ ମତ ଥିବାର ଦେଖାଯାଏ । ବ୍ଲକ୍ ସାହେବ କୋଣାର୍କ ଦେଉଳର ତ୍ରିମୂର୍ତ୍ତି ଚିତ୍ରଟି ଦେଖି ଅନୁମାନ କରିଛନ୍ତି ଯେ ପୂର୍ବେ ଜଗନ୍ନାଥ ଦେଉଳରେ ଜଗନ୍ନାଥଙ୍କ ସଙ୍ଗେ ଶିବ ଓ ମହିଷାସୁରମର୍ଦ୍ଦିନୀ ପୂଜା ପାଉଥିଲେ, ପରେ ଚୈତନ୍ୟଦେବଙ୍କ ସମୟରେ ଶିବଙ୍କ ବଦଳରେ ବଳଭଦ୍ର ଓ ମହିଷାସୁରମର୍ଦ୍ଦିନୀଙ୍କ ବଦଳରେ ସୁଭଦ୍ରା ପୂଜା ପାଇଲେ । ଏ ଯୁକ୍ତି ଗ୍ରହଣଯୋଗ୍ୟ ନୁହେଁ । କାରଣ ଚୈତନ୍ୟ ଦେବଙ୍କ ଓଡ଼ିଶା ଆଗମନ ଓ ଅବସ୍ଥାନ ସମୟ ( ଷୋଡ଼ଶ ଶତାବ୍ଦୀର ପ୍ରଥମ ଭାଗ )ର ବହୁ ପୂର୍ବରୁ ଶାରଳାଦାସ ( ଚତୁର୍ଦ୍ଦଶ ଶତାବ୍ଦୀ ) "ମହାଭାରତ"ରେ ବଳଭଦ୍ର, ସୁଭଦ୍ରା ଓ ଜଗନ୍ନାଥଙ୍କ ପ୍ରସଙ୍ଗ ବିସ୍ତୃତ ଭାବରେ ବହୁ ସ୍ଥାନରେ ଲେଖିଛନ୍ତି । ସଂସ୍କୃତ ପୁରାଣଗୁଡ଼ିକ ଚୈତନ୍ୟଦେବଙ୍କ ଆବିର୍ଭାବର ବହୁ ପୂର୍ବରୁ ଲେଖା । ଏ ଗ୍ରନ୍ଥମାନଙ୍କରେ ବଳଭଦ୍ର, ସୁଭଦ୍ରା ଓ ଜଗନ୍ନାଥଙ୍କ ବର୍ଣ୍ଣନା ସୁସ୍ପଷ୍ଟ ଭାବରେ ଦେଖାଯାଏ । ତା ଛଡ଼ା, ଚୈତନ୍ୟଦେବଙ୍କ ସମସାମୟିକ କବି ଓ ଲେଖକମାନଙ୍କର ଚୈତନ୍ୟଚରିତ ବର୍ଣ୍ଣନା ସମ୍ବଳିତ କୌଣସି ଲେଖାରେ ଏ ବିଷୟର ଉଲ୍ଲେଖ ନାହିଁ । ଏହି ମୂର୍ତ୍ତିର ସାହାଯ୍ୟରେ ଜଗନ୍ନାଥଙ୍କ ସମ୍ପର୍କରେ କୈଫିୟତ ଏହିପରି ଭାବରେ ଦିଆଯାଇ ପାରେ । ମହାରାଜ ଇନ୍ଦ୍ରଦ୍ୟୁମ୍ନ ଯେତେବେଳେ ଓଡ଼ିଶାକୁ ଆସିଲେ, ସେତେବେଳେ ସେ

ପ୍ରଥମେ ଚର୍ଚ୍ଚିକାଙ୍କୁ ଦର୍ଶନ କରିଥିଲେ । ସେହିଠାରେ ଉତ୍କଳରାଜ ଇନ୍ଦ୍ରଦ୍ୟୁମ୍ନଙ୍କୁ ଭେଟି ଅଭ୍ୟର୍ଥନା କରିଥିଲେ । ଚର୍ଚ୍ଚିକାଙ୍କ ଦର୍ଶନ ପରେ ଏକାମ୍ର କାନନରେ ଲିଙ୍ଗ-ରାଜଙ୍କୁ ଦର୍ଶନ କରିଥିଲେ । ତାପରେ ନୀଳଗିରିକୁ ଆସି ଜଗନ୍ନାଥଙ୍କ ଦର୍ଶନ ଲଭ କରିଥିଲେ । ଏ ତିନି ଦେବଦେବୀହିଁ ଇନ୍ଦ୍ରଦ୍ୟୁମ୍ନ ଦେଖିଥିବା ଦେବଦେବୀଙ୍କ ଭିତରେ ଶ୍ରେଷ୍ଠ । ଅନ୍ୟମାନେ ଏମାନଙ୍କର ଅନ୍ୟରୂପ ମାତ୍ର । ଯେଉଁ ରାଜା ସ୍ୱଜନ-ପରିବୃତ ହୋଇ ଦେବତାମାନଙ୍କୁ ଦର୍ଶନ କରୁଛନ୍ତି ସେ ଇନ୍ଦ୍ରଦ୍ୟୁମ୍ନ ହେବା ସମ୍ଭବ । ଓଡ଼ିଶାରେ ତ୍ରିମୂର୍ତ୍ତି—ଶିବ, ଦୁର୍ଗା, ବିଷ୍ଣୁ—ପୂଜାର ସମନ୍ୱୟର ପ୍ରକାଶ ହିଁ ଏହି ଚିତ୍ରଟିର ଉଦ୍ଦେଶ୍ୟ ବୋଲି ମନେ ହୁଏ ।

କୂର୍ମପ୍ରାଚୀର—ବଡ଼ଦେଉଳର ଚାରିପାଖକୁ ବେଢ଼ିଯେଉଁ ବିରାଟ ପ୍ରାଚୀର ରହିଛି, ତାରନାମ କୂର୍ମପ୍ରାଚୀର । ବେଢ଼ାର ନାମ କୂର୍ମବେଢ଼ା ବା ଭିତର ବେଢ଼ା । ବଡଦାଣ୍ଡଠାରୁ ଭିତର ବେଢ଼ାର ଚଟାଣ ପ୍ରାୟ କୋଡ଼ିଏ ଫୁଟ ଉଚ୍ଚ । ପାଚେରୀର ଉଚ୍ଚତା ପ୍ରାୟ କୋଡ଼ିଏ ଫୁଟ । ଭିତର ବେଢ଼ାର ଚଟାଣ ପଥରରେ ତିଆରି ହୋଇଛି । ପାଚେରୀର ପୂର୍ବ ଓ ପଶ୍ଚିମ କାନ୍ଥର ଲମ୍ବ ୩୧୫ ଫୁଟ ଓ ଦକ୍ଷିଣ, ଉତ୍ତର କାନ୍ଥର ଲମ୍ବ ୪୨୦ ଫୁଟ । ଏହି ପାଚେରୀର ଛଅଟା ଦ୍ୱାର ଅଛି । ମେଘନାଦ ପାଚେରୀର ଚାରି ଦ୍ୱାର ଭଳି ପ୍ରାୟ ସିଧାରେ ଚାରି ଦ୍ୱାର; ପୂର୍ବ କାନ୍ଥରେ ଈଶାନ୍ୟ କୋଣ ତରଫକୁ ଏକ ଦ୍ୱାର, ଆଗ୍ନେୟକୋଣ ଆଡ଼କୁ ଏକ ଦ୍ୱାର । ଈଶାନ୍ୟକୋଣ ଦ୍ୱାରବାଟେ ଠାକୁରମାନେ ସ୍ନାନପୂର୍ଣ୍ଣିମୀରେ ସ୍ନାନ ମଣ୍ଡପକୁ ବିଜେ ହୁଅନ୍ତି । ଅନ୍ୟ ପର୍ବଦିନମାନଙ୍କରେ ମଧ୍ୟ ଚଳନ୍ତି ପ୍ରତିମା ଏହି ଦ୍ୱାର ବାଟେ ବାହାର ବେଢ଼ାକୁ ଯାଆନ୍ତି । ଆଗ୍ନେୟକୋଣ ଦ୍ୱାର-ବାଟେ ରୋଷେଇ ଘରକୁ ଯିବାକୁ ହୁଏ । ମେଘନାଦ ପାଚେରୀ ଓ କୂରୁମ ପାଚେରୀ ଭିତର ଦୂରତା ପ୍ରାୟ ଦେଢ଼ଶହ ଫୁଟ । କୂରୁମ ପାଚେରୀଠାରୁ ଦେଉଳର ସୀମା ଭିତରର ଦୂରତା ପ୍ରାୟ ଏକଶହ ଫୁଟ । ଚାରିଆଡ଼େ ଏହି ଦୂରତା ସମାନ ନ ଥିଲେ ମଧ୍ୟ ପ୍ରଭେଦ ବେଶୀ ନୁହେଁ । ଏହି ପାଚେରୀର ଉପରେ ମଧ୍ୟ ସମ ଆକାରର କାଙ୍ଗୁରାଗୁଡ଼ିଏ ଅଛି । ମେଘନାଦ ପାଚେରୀର ଚାରିଦ୍ୱାର ମଧ୍ୟର ଭୂମି ଗଡ଼ାଣିଆ ଥିବାରୁ ବାହାର ଦ୍ୱାରଠାରୁ ଭିତର ଦ୍ୱାର ପର୍ଯ୍ୟନ୍ତ ରାସ୍ତାରେ ପାହାଚ ତିଆରି ହୋଇଛି । ସିଂହଦ୍ୱାରଠାରୁ କୂର୍ମବେଢ଼ା ଦ୍ୱାର ପର୍ଯ୍ୟନ୍ତ ୨୦ଟି ପାହାଚ ଅଛି । କୂର୍ମପାଚେରୀର ପୂର୍ବ ଦ୍ୱାର (ସିଂହ-ଦ୍ୱାର)ର କାରୁକାର୍ଯ୍ୟ ଅତି ରମଣୀୟ—ଭୋଗମଣ୍ଡପର ଶିଳ୍ପକଳାର ସମକକ୍ଷ । ଖ୍ରୀ: ୧୪୭୦ରେ ମହାରାଜା ପୁରୁଷୋତ୍ତମ ଦେବ ( ସାତ ଅଙ୍କରେ ) କୂର୍ମବେଢ଼ା ତୋଳାଇଥିବା ଜଣାଯାଏ ।

## ବାହାର ବେଢ଼ା

**ବାଇଶି ପାହାଚ**—ବାଇଶି ପାହାଚ ବୋଲି ଲୋକ-ସାଧାରଣରେ ପରିଚିତ ହେଉଥିଲେ ମଧ୍ୟ କେତେକ ସମୟରେ ମରାମତି ଯୋଗୁଁ ସଂଖ୍ୟାରେ ପ୍ରଭେଦ ଥିବାର

ଲକ୍ଷିତ ହୁଏ । ଡାକ୍ତର ରାଜେନ୍ଦ୍ରଲାଲ ମିତ୍ର (ଖ୍ରୀ: ୧୮୮୦) ପାବଚ୍ଛଶ୍ରେଣୀକୁ "ବାଇଶି ପଉଚ" ବୋଲି ଲେଖିଛନ୍ତି ଏବଂ ନିଜ ଗ୍ରନ୍ଥରେ ଦିଆଯାଇଥିବା ନକସାରେ ନକସାକାରର ଭୁଲକ୍ରମେ ୧୭ଟି ପାହାଚ ଦେଖା ହୋଇଛି ବୋଲି ସ୍ୱୀକାର କରିଛନ୍ତି । ମନମୋହନ ଗାଙ୍ଗୁଲି (ଖ୍ରୀ: ୧୯୧୬) ୧୬ଟି ପାହାଚ ଥିବାର ଲେଖିଛନ୍ତି । ପ୍ରତ୍ୟେକ ପାହାଚର ଓସାର ପ୍ରାୟ ୬ଫୁଟ, ଉଚ୍ଚ ୬ଇଞ୍ଚ, ଲମ୍ବ ପ୍ରାୟ ୭୦ (ସତୁରି) ଫୁଟ । ଏହି ପାହାଚ ଉପରେ ମହାଳୟା ଅମାବାସ୍ୟା ଦିନ ଲୋକେ ଶ୍ରାଦ୍ଧ ଓ ଦୀପଦାନ କରନ୍ତି । ମାନସିକ ଅନୁସାରେ ଭକ୍ତମାନେ ମହାପ୍ରସାଦ ସେବା କରନ୍ତି । ଭକ୍ତମାନଙ୍କ ପଦରଜ ପାଇ ଦୀର୍ଘଜୀବୀ କରିବା ଆଶାରେ ପୂର୍ବ ମାନସିକ ଅନୁସାରେ ବାପ ମା'ମାନେ ପିଲାଙ୍କୁ ବାଇଶିପାହାଚରେ ଗଡ଼େଇ ଗଡ଼େଇ ଉପରୁ ତଳକୁ ସିଂହଦ୍ୱାର ପର୍ଯ୍ୟନ୍ତ ଆଣନ୍ତି ।

ବାଇଶି ପାବଚ୍ଛର ଦୁଇ ପଟରେ ଦକ୍ଷିଣ ଓ ଉତ୍ତରକୁ ଦୁଇଟି ପାଚେରି ଅଛି । ବାଇଶି ପାଉଛର ଏହି ଦୁଇ ପଟରେ ପାଚେରୀର ଉପରଠାରୁ ସମତଳ ହୋଇଛି । ଉତ୍ତରଆଡ଼କୁ ଆନନ୍ଦ ବଜାର; ସ୍ନାନବେଦୀ ପ୍ରଭୃତି ଓ ଦକ୍ଷିଣଆଡ଼କୁ ଗୃହାଣୀ-ମଣ୍ଡପ, ରୋଷ (ରୋଷେଇଘର, ପାକଗୃହ) ପ୍ରଭୃତି ଅଛି ।

**ପତିତପାବନ**—ସିଂହଦ୍ୱାର ଗୁମୁଟ ଭିତରେ ବାଟର ଉତ୍ତର ପିଣ୍ଡା ଉପରେ ପୂର୍ବାଭିମୁଖରେ ପତିତପାବନମୂର୍ତ୍ତି ବିଜେ ହୋଇଛନ୍ତି । ପୂର୍ବେ ହରିଜନଶ୍ରେଣୀର ଲୋକେ ମନ୍ଦିର ଭିତରେ ପ୍ରବେଶ କରିପାରୁ ନ ଥିଲେ । ସିଂହଦ୍ୱାରଠାରେ ଏହି ମୂର୍ତ୍ତିଙ୍କୁ ଦର୍ଶନ କରି ସନ୍ତୋଷଲାଭ କରୁଥିଲେ ।

**କାଶୀ ବିଶେଶ୍ୱର**—ବାଇଶିପାଉଛ ଉପରେ ଦକ୍ଷିଣ ଭାଗରେ ସିଂହଦ୍ୱାର ରାସ୍ତାକୁ ଲାଗି କାଶୀ ବିଶ୍ୱେଶ୍ୱରଙ୍କ ମନ୍ଦିର । ମନ୍ଦିରଟି ଅତି ଛୋଟ । ଲିଙ୍ଗ ମର୍ମର ପ୍ରସ୍ତରର । ଆକାରରେ ମଧ୍ୟ ଛୋଟ ।

**ଭିତର ସିଂହଦ୍ୱାର**—ବାଇଶି ପାଉଛର ପଶ୍ଚିମରେ ପାଉଛର ଉତ୍ତର ଆଡ଼କୁ ଆନନ୍ଦବଜାରକୁ ଯିବାପାଇଁ ଏକ ରାସ୍ତା ଅଛି । ଠାକୁରମାନେ ଯାତ୍ରାବେଳେ ଭିତର ବେଢ଼ାରୁ ବାହାରି ଏହି ବାଟେ ବାଇଶି ପାଉଛକୁ ଆସନ୍ତି । ଅନୁମାନ ହୁଏ, ପୂର୍ବେ ଭିତର ବେଢ଼ାର ପୂର୍ବ ଦ୍ୱାରଟି (କାରୁକାର୍ଯ୍ୟ ମଣ୍ଡିତ ଦ୍ୱାରଟି ) ନ ଥିଲା, ପରେ ନିର୍ମିତ ହୋଇଛି । ସେହିହେତୁ ପୂର୍ବ ରୀତି ଅନୁସାରେ ଠାକୁରମାନେ କୂର୍ମବେଢ଼ାର ଈଶାନ୍ୟ-କୋଣ ଦ୍ୱାର ବାଟେ ଆସି ଏହି ସିଂହଦ୍ୱାର ବାଟରେ ଯାଇ ବାଇଶି ପାଉଛକୁ ଆସନ୍ତି । ସିଂହ ଦୁଇଟି ଆକାରରେ ବଡ଼ ଦେଖାଯାଉଛି । ବେଶୀ ପରିମାଣରେ ଚୂନ ଦିଆ

ହୋଇଯାଇଥିବାରୁ ଭିତରେ ପ୍ରକୃତରେ କି ଧରଣର କାରୁକାର୍ଯ୍ୟ ଥିଲା ତାହା ଜଣାଯାଉ ନାହିଁ ।

**ଆନନ୍ଦ ବଜାର**—ଏହି ଭିତର ସିଂହଦ୍ୱାର ପରେ ଆନନ୍ଦ ବଜାର । ଏଠାରେ ଦୁଇଶ୍ରେଣୀ ଦୋକାନ । ମହାପ୍ରସାଦ ବିକ୍ରୀ ହୁଏ । ଭକ୍ତମାନେ ଏହି ନିକଟରେ ଥିବା ସ୍ଥାନମାନଙ୍କରେ ମହାପ୍ରସାଦ ସେବା କରନ୍ତି । ରାଜାଙ୍କର ଖେଇବା ଭାଗର ଭୋଗ ବିକ୍ରୀ ହେବା ପାଇଁ ସ୍ୱତନ୍ତ୍ର ଦୋକାନଟିଏ ଅଛି ।

**ସ୍ନାନବେଦୀ**—ଆନନ୍ଦ ବଜାରର ଉତ୍ତର ପୂର୍ବରେ ମେଘନାଦ ପାଚେରୀଆଡ଼କୁ ସ୍ନାନବେଦୀ । ବେଦୀଟି ପଥରରେ ଗଢ଼ା । ଲମ୍ବ ଓ ଓସାର ପ୍ରତ୍ୟେକ ପ୍ରାୟ ୭୫ ଫୁଟ । ବେଦୀର ପଶ୍ଚିମ ଭାଗରେ ମଧ୍ୟସ୍ଥଳକୁ ପଥରର ସିଂହାସନ । ବେଦୀ ଉପରୁ ସିଂହାସନକୁ ଯିବା ପାଇଁ ପାଉଛ ଅଛି । ଏହି ସିଂହାସନ ଉପରେ ବଳଭଦ୍ର, ସୁଭଦ୍ରା, ଜଗନ୍ନାଥ ଓ ସୁଦର୍ଶନ ସ୍ନାନଯାତ୍ରା ଦିନ ବିଜେ ହୁଅନ୍ତି । ବେଦୀର ଉତ୍ତରକୁ ଓ ଦକ୍ଷିଣକୁ ଦୁଇଧାଡ଼ି ପାହାଚ ଅଛି ।

**ଚାହାଣୀମଣ୍ଡପ**—ବାଇଶି ପାଉଛର ଦକ୍ଷିଣକୁ ଚାହାଣୀମଣ୍ଡପ । ଏହି ମଣ୍ଡପରେ ରଥଯାତ୍ରାର ବାହୁଡ଼ା ବା ଶେଷଦିନ ରଥରେ ବସିଥିବା ବେଳେ ନାରାୟଣଙ୍କୁ ଲକ୍ଷ୍ମୀ ଦେଖନ୍ତି । ସେହିହେତୁ ଏ ମଣ୍ଡପର ନାମ ଚାହାଣୀମଣ୍ଡପ । ସ୍ନାନବେଦୀର ଦକ୍ଷିଣକୁ ମଧ୍ୟ ଆଉ ଏକ ଚାହାଣୀମଣ୍ଡପ ଅଛି । ସପ୍ତଦଶ ଶତାବ୍ଦୀର ଶେଷଆଡ଼କୁ ଖୋଜା ବେଣୁ ଡ୍ରେଟରାୟ ଏହି ମଣ୍ଡପଟି ନିର୍ମାଣ କରିଥିଲେ ।

**ରୋଷେଇଘର**—ଏହି ରୋଷେଇ ଘରେ ଭୋଗ ରନ୍ଧା ହୁଏ । ଏଠାରେ ବହୁ ଚୁଲି ଅଛି । ଚୁଲିର ଆକାର ଓ ପ୍ରକାର ବିଚିତ୍ର ଧରଣର । ଏକାଥରକେ ଲକ୍ଷେ ଲୋକଙ୍କ ପାଇଁ ରୋଷେଇ ହେବାର ବ୍ୟବସ୍ଥା ଏଠାରେ ଅତି ସହଜରେ ହୋଇପାରିବ । ଏପରି ଏକ ସମୟରେ ଏକ ସ୍ଥାନରେ ଏତେ ଲୋକଙ୍କ ପାଇଁ ରନ୍ଧନ ବ୍ୟବସ୍ଥା ପୃଥିବୀର କୌଣସି ସ୍ଥାନରେ ନାହିଁ । ଏହା ଏକ ଦର୍ଶନୀୟ ଜିନିଷ । ଚୁଲିର ଆକାର ଖୁବ୍ ବଡ଼ । ଏଥିରେ ବହୁତଗୁଡ଼ିଏ ଖମ୍ଭା (କଣା) ଥାଏ । ଏହି କଣାରେ ବିଭିନ୍ନ ଆକାରର ହାଣ୍ଡି (କୁଡ଼ୁଆ) ବସେ । ପାଣି ଚାଉଳ ଏକାଥରକେ ବସେ । ତରକାରୀ (ତୁଣ) ମଧ୍ୟ ଏକାଥରକେ ବସେ । ବଘରି ହୁଏ ନାହିଁ । ଅନ୍ନ ସିଦ୍ଧ ହେବା ପରେ ହାଣ୍ଡିରେ ତଳ ଆଡ଼କୁ ଏକ ଛୋଟ ଛିଦ୍ର କରି ଦିଆଯାଏ । ସେହି ବାଟେ ପେଜ ଗଳିଯାଏ । ପ୍ରତିଦିନ ପ୍ରାୟ ପଚିଶ (୨୫) ମହଣ ଚାଉଳ (ସାଧାରଣ ଦିନ

ମାନଙ୍କରେ) ରୋଷେଇ ହୁଏ । ରୋଷେଇ ଘରୁ ମେଘନାଦ ପାଚେରୀ ଭିତରେ ଏକ ନଳା ବାଟେ ପେଜ ବୋହିଯାଇ ଦକ୍ଷିଣ ରାସ୍ତାର ଏକ ଲମ୍ବା କୁଣ୍ଡରେ ଜମା ହୁଏ । ଏହି ପେଜ ପ୍ରତିଦିନ ଶହ ଶହ ଗାଈଗୋରୁ ପ୍ରଭୃତି ପିଅନ୍ତି । ସ୍ଥାନୀୟ ଲୋକମାନେ ମଧ୍ୟ ଗାଈଗୋରୁଙ୍କ ପାଇଁ ପେଜ ନେଇଯାଆନ୍ତି । ରୋଷଘରେ ଶତାଧିକ ଚୂଲି ଅଛି । କେତେକ ମଠବାଡ଼ିର ଚୂଲି ଅଛି । ଶୁଣାଯାଏ,ଚୂଲିର ସ୍ୱତ୍ୱ ଖରଦ ବିକ୍ରୀ ହୁଏ । ସୁଆର ମାନେ ପକ୍କା ସୂତ୍ରରେ ମଧ୍ୟ ନେଇଆଆନ୍ତି । ରୋଷେଇଘର ପାଖରେ ପଥରବନ୍ଧା କୂଅଟିଏ ଅଛି । କୂଅ ଭିତରକୁ ଯିବା ପାଇଁ ପାଉଞ୍ଚ ଅଛି । ରୋଷେଇ ପାଇଁ ପାଣି ଏଠାରୁ ଯାଏ । ପୂର୍ବେ ରୋଷେଇଘର ଭିତରବେଢ଼ାରେ ଆଗ୍ନେୟ କୋଣରେ ଥିଲା । ସେତେବେଳକୁ ରୋଷେଇ ମଧ୍ୟ କମ୍ ପରିମାଣରେ ହେଉଥିଲା । ପରେ ପରିମାଣ ବଢ଼ିଯିବାରୁ ବର୍ତ୍ତମାନର ରୋଷେଇ ଘରକୁ ସେ ରୋଷେଇ ଘର ଉଠି ଯାଇଛି । ରୋଷ ଘରଠାରୁ ନାଟମନ୍ଦିର ପର୍ଯ୍ୟନ୍ତ ଛାତ ଥିବା ଶ୍ରେଣୀ ନାଳ ଘର ଅଛି । ପାଣି ପବନରୁ ଭୋଗାନ୍ନକୁ ରକ୍ଷା କରିବା ପାଇଁ ଏପରି କରାଯାଇଛି । ପୂର୍ବେ ଏହି ଘର ନ ଥିଲା । ଭୋଗମଣ୍ଡପର ଦକ୍ଷିଣ ଦ୍ୱାର ନାଟମନ୍ଦିରର ଭୋଗ ଯିବା ରାସ୍ତାଟିକୁ ଦେଖିଲେ ଏହା ପରବର୍ତ୍ତୀ ସମୟର ବୃଦ୍ଧି ବୋଲି ସ୍ପଷ୍ଟ ଭାବରେ ଜଣା ପଡ଼ିବ । ରୋଷେଇଘର ଦ୍ୱାରମୁହଁ ଆଡ଼କୁ ଗଣେଶଙ୍କ ଏକ ମୂର୍ତ୍ତି ପୂଜା ପାଉଛନ୍ତି । ଏହି ଗଣେଶ ଭଣ୍ଡାର ଓ ପାକଶାଳାର ରକ୍ଷକ ବୋଲି ପରିଚିତ । ଖୋର୍ଦ୍ଧା ରାଜା ଦିବ୍ୟସିଂହଦେବ (ଖ୍ରୀ· ୧୬୮୮-୧୭୧୩)ଙ୍କ ସମୟରେ ଏହି ନୂତନ ପାକଶାଳ ନିର୍ମିତ ହୋଇଥିଲା । ଦିବ୍ୟସିଂହଦେବଙ୍କ ପ୍ରଧାନ ମନ୍ତ୍ରୀ ଗୋବିନ୍ଦଙ୍କ ତତ୍ତ୍ୱାବଧାନରେ କଟକ ଜିଲ୍ଲାର ଶ୍ରୀ ରାଜେନ୍ଦ୍ର ରାୟ ଏହି ଗୃହଟି ନିଜ ବ୍ୟୟରେ ନିର୍ମାଣ କରିଥିଲେ । ହରେକୃଷ୍ଣଦେବଙ୍କ ସମୟରେ (ଖ୍ରୀ· ୧୭୨୦-୨୫) ରୋଷଘରଠାରୁ ନାଟମନ୍ଦିର ପର୍ଯ୍ୟନ୍ତ ଥିବା ବାଟଟି ଅଠୁଣ୍ଡା ପଥରରେ ଏ ରାଜାଙ୍କ ମନ୍ତ୍ରୀ ଭଗବାନ ଭ୍ରମରବର ଗଡ଼ାଇଥିଲେ ।

**ଈଶାନେଶ୍ୱର ମହାଦେବ**—ଭିତରବେଢ଼ା ହସ୍ତୀଦ୍ୱାରର ବାହାର ପଟେ ପୂର୍ବକୁ ଈଶାନେଶ୍ୱର ମହାଦେବଙ୍କ ମନ୍ଦିର । ଗର୍ତ୍ତ ଭିତରେ ଏ ମନ୍ଦିରଟି ନିର୍ମିତ ହୋଇଛି । ଗର୍ତ୍ତ ଭିତରକୁ ଯିବା ପାଇଁ ପଥରର ପାହାଚ ଅଛି । ମନ୍ଦିରଟି ଗ୍ରେଟ । ଉପରକୁ ମନ୍ଦିରର ଗଣ୍ଡିର କିଛି ଅଂଶ ଓ ଚୂଡ଼ା କେବଳ ଦେଖିବାକୁ ମିଳୁଛି । ଏ ଗଣ୍ଡି କି ଚୂଡ଼ାର ଭାଗମାପ ଅନୁସାରେ ମନ୍ଦିର ତିଆରି ହୋଇନାହିଁ, କେବଳ ମନ୍ଦିର ବୋଲି ପରିଚୟ ଦେବାପାଇଁ ଏ ବ୍ୟବସ୍ଥା କରାଯାଇଛି ।

**କୋଇଲି ବୈକୁଣ୍ଠ**—ବାହାରବେଢ଼ାରେ ଉତ୍ତରଦ୍ୱାରର କୋଇଲି ବୈକୁଣ୍ଠ ନାମକ ପଶ୍ଚିମକୁ ପ୍ରସିଦ୍ଧ ସ୍ଥାନ ଅଛି । ଏଠାରେ ଆଟିକା ବନ୍ଧନ ହୁଏ । ଭକ୍ତମାନେ

ଜଗନ୍ନାଥଙ୍କ ଭୋଗ ପାଇଁ ଖଞ୍ଜା କରନ୍ତି । ଏହି ଖଞ୍ଜାକୁ ଅଟିକା କହନ୍ତି । କେହି କେହି କହନ୍ତି, ଏହି ସ୍ଥାନରେ ଶ୍ରୀକୃଷ୍ଣ ରାଧାଙ୍କୁ କୋଇଲି ରୂପରେ ଦେଖା ଦେଇଥିବାରୁ ଏହି ସ୍ଥାନର ନାମ କୋଇଲି ବୈକୁଣ୍ଠ ହୋଇଛି । ଆଉ କେତେକଙ୍କ ମତରେ "କୋଇଲି" ଶବ୍ଦଟି କୋଇଲି ପକ୍ଷୀକୁ ବୁଝାଉ ନାହିଁ । ଦାକ୍ଷିଣାତ୍ୟରେ ଦେଉଳକୁ 'କୋଇଲ' ବା କୋବିଲ୍ ବୋଲି କହନ୍ତି, ସେହି କୋଇଲରୁ କୋଇଲି ହୋଇଛି; ଏ ଦେଖିଲେ ଏହି ସ୍ଥାନଟି "ମନ୍ଦିର ବୈକୁଣ୍ଠ" ବା ବୈକୁଣ୍ଠ ମନ୍ଦିର ହେବ । ଏହି ସ୍ଥାନଟି ନୀଳଗିରିର ସର୍ବ ପ୍ରାଚୀନ ସ୍ଥାନ ଏବଂ ଜଗନ୍ନାଥଙ୍କ ଏହିଠାରେ ଆବିର୍ଭାବ ହୋଇଥିଲି ବୋଲି ମନେ ହୁଏ । ଏହା ନିକଟରେ ପଶ୍ଚିମକୁ ଜନ୍ମକୁଣ୍ଡ ।

**ସୁନାକୂଅ**—ଉତ୍ତର ଦ୍ୱାର ପଶ୍ଚିମ ଭାଗରେ ସୁନାକୂଅ । ସ୍ନାନଯାତ୍ରା ଦିନ ଏହି କୂଅର ପାଣିରେ ଠାକୁରମାନଙ୍କର ସ୍ନାନ ହୁଏ ।

**ଜନମକୁଣ୍ଡ**—ବୈକୁଣ୍ଠ କୋଇଲିକୁ ଲଗି ପଶ୍ଚିମକୁ ଜନମକୁଣ୍ଡ । ପ୍ରାୟ ଦଶହାତ ଓସାର, ଦଶହାତ ଲମ୍ବା ଓ ପାଞ୍ଚ ଛଅହାତ ଗଭୀରର ଏକ ଗାତ ଏଠାରେ ଅଛି । ଏହି ଗାତର ଚାରିପଟରେ ନାନା ବୃକ୍ଷ ଲତା ଲାଗିଛି । ଏହି ଗାତ ଭିତରେ ନବକଳେବରବେଳେ ଠାକୁରମାନଙ୍କର ପୁରୁଣା କଳେବରକୁ ରଖାଯାଇ ପୋତା ଯାଏ । ଏଠାରେ ଠାକୁରମାନଙ୍କର ନୂତନ କଳେବର ହୁଏ ବୋଲି ଏହି କୁଣ୍ଡର ନାମ ଜନମକୁଣ୍ଡ ।

**ବଗିଚା**—ଜନମକୁଣ୍ଡଠାରୁ ଆରମ୍ଭ କରି ପଶ୍ଚିମ ଦ୍ୱାର ପର୍ଯ୍ୟନ୍ତ ହରିଠାକୁରଙ୍କର ବଗିଚା । ପଶ୍ଚିମ ଦ୍ୱାରଠାରୁ ଦକ୍ଷିଣଦ୍ୱାର ପର୍ଯ୍ୟନ୍ତ ମଧ୍ୟ ବଗିଚା ଲାଗି ରହିଛି । ବଗିଚା । ଦୁଇ ପାଚେରି ଭିତରେ ଅଛି । ବଟେଶ୍ୱର, ଚନ୍ଦନାରାୟଣ ପ୍ରଭୃତି ମନ୍ଦିର ଏହାଭିତରେ ଅଛି ।

**ମହାବୀର**—ପଶ୍ଚିମଦ୍ୱାର ପାହାଚ ଉପରେ ଉତ୍ତର ଆଡ଼କୁ ମହାବୀର ଅଛନ୍ତି ।

**ଗୌରାଙ୍ଗ**—ଦକ୍ଷିଣ ଦ୍ୱାରର ପୂର୍ବ ଭାଗରେ ଗୌରାଙ୍ଗଙ୍କ ମନ୍ଦିର ।

## ଭିତର ବେଢ଼ା

ଭିତର ବେଢ଼ାର ମଝିରେ ବଡ଼ଦେଉଳ ଠିଆହୋଇଛି । ବଡ଼ଦେଉଳର ଚାରିପାଖରେ ଅନେକଗୁଡ଼ିଏ ଛୋଟ ଛୋଟ ଦେଉଳ ଅଛି । ଏହା ଛଡ଼ା କଳ୍ପବଟ, ମୁକ୍ତିମଣ୍ଡପ, ରୋହିଣୀକୁଣ୍ଡ, ଚନ୍ଦନମଣ୍ଡପ ପ୍ରଭୃତି ମଧ୍ୟ ଅଛି ।

**ଅଗ୍ନୀଶ୍ୱର ମହାଦେବ ବା (ଆଗ୍ନେୟେଶ୍ୱର)**—ଭୋଗମଣ୍ଡପଠାରୁ ପାକଶାଳା ପର୍ଯ୍ୟନ୍ତ ଯେଉଁ ରାସ୍ତା ଅଛି, ତା ପାଖରେ ଆଗ୍ନେୟ କୋଣରେ । ଅଗ୍ନିଶ୍ୱର ମହାଦେବ ଅଛନ୍ତି । ଭୂମି ଭିତରେ ଲିଙ୍ଗ ବର୍ତ୍ତମାନ ହୋଇଛନ୍ତି । ଆଗ୍ନେୟକୋଣ ଏହି ମହାଦେବ ରକ୍ଷା କରୁଥିବାରୁ ଏହାଙ୍କୁ ଆଗ୍ନେୟେଶ୍ୱର ମହାଦେବ ବୋଲି କହନ୍ତି । ପାକଶାଳାର ଅଗ୍ନି ଏ ମହାଦେବ ରକ୍ଷା କରୁଥିବାରୁ ଏହାଙ୍କ ନାମ ଅଗ୍ନୀଶ୍ୱର ବୋଲି ମଧ୍ୟ କୁହାଯାଏ ।

**ସତ୍ୟନାରାୟଣ**—ଅଗ୍ନେଶ୍ୱର ମହାଦେବଙ୍କ ଉତ୍ତରକୁ ମୁଗୁନି ପଥରର ସତ୍ୟନାରାୟଣ ମୂର୍ତ୍ତି । ଏ ଚତୁର୍ଭୁଜ ଜନାର୍ଦ୍ଦନ ମୂର୍ତ୍ତି । ଉଚ୍ଚତା—ପୀଠକୁ ମିଶାଇ ପାଞ୍ଚଫୁଟ ହେବ । ଏତେ ସୁନ୍ଦର ମୂର୍ତ୍ତି ଖୁବ୍ ଦେଖାଯାଏ । ଉପର ଡାହାଣ ହାତରେ ଚକ୍ର, ଉପର ବାଁ ହାତରେ ଶଙ୍ଖ, ତଳ ଡାହାଣ ହାତ ଅଭୟମୁଦ୍ରା ଓ ତଳ ବାଁ ହାତରେ ଗଦା । କର୍ଣ୍ଣରେ କୁଣ୍ଡଳ । ହାର ଅଛି । ପ୍ରତ୍ୟେକ ହାତରେ ଦୁଇଟା ଯୋଡ଼ା ହୋଇଥିବା ଖଡ଼ୁ ଅଛି । ସତ୍ୟନାରାୟଣଙ୍କ ଦୁଇ ପାଖରେ ଜୟା, ବିଜୟା ଅଛନ୍ତି । ପୀଠଟି ମଧ୍ୟ ବଡ଼ ସୁନ୍ଦର କାମ ହୋଇଛି । ନତଜାନୁ ହୋଇ ଗରୁଡ଼ ଦକ୍ଷିଣ ଆଡ଼କୁ ପାଦତଳେ ଅଛନ୍ତି । ଉପରେ ଅପ୍‌ସରା ଓ କିନ୍ନରଙ୍କ ଚିତ୍ର । ଏ ସବୁଗୁଡ଼ିକ ଗୋଟିଏ ପଥରରେ ଖୋଦା ହୋଇଛି । ମନ୍ଦିରଟି ପଞ୍ଚରଥ; ମଣ୍ଡପ ଭଳି ଗୋଟିଏ ମୁଖଶାଳୀ ଅଛି । ମାଙ୍କଡ଼ା ପଥରର ମନ୍ଦିର । ମନ୍ଦିରର ମୁହଁ ଉତ୍ତର ଆଡ଼କୁ ।

**ପୁରୁଣା ରୋଷେଇଘର**—ସତ୍ୟନାରାୟଣଙ୍କ ମନ୍ଦିରର ପଛଆଡ଼କୁ (ଦକ୍ଷିଣକୁ) ଖଣ୍ଡିଏ ଲମ୍ବା (ଉତ୍ତର-ଦକ୍ଷିଣ ହୋଇ) ପଥର ଗମ୍ଭୀରା, ଆଗକୁ ବାରଣ୍ଡା ଭଳି ଏକ ଲମ୍ବା ଗମ୍ଭୀରା—ଏହି ଗୃହ ଗମ୍ଭୀରା ପୂର୍ବେ ରୋଷେଇଘର ରୂପେ ବ୍ୟବହୃତ ହେଉଥିଲା । ପୂର୍ବେ ଖୋଲାଚୁଲିରେ ରୋଷେଇ ହେଉଥିଲା । ପରିମାଣ ମଧ୍ୟ ଅଳ୍ପ ଥିଲା । ପରେ ରୋଷେଇର ପରିମାଣ ବୃଦ୍ଧି ପାଇବାରୁ ଏଠାରୁ ରୋଷେଇଶାଳ ଉଠିଗଲା ।

**କୃଷ୍ଣ**—ସତ୍ୟନାରାୟଣଙ୍କ ପଶ୍ଚିମକୁ କୃଷ୍ଣଙ୍କର ଛୋଟ ମନ୍ଦିର । ମନ୍ଦିର ଉତ୍ତର ମୁହାଁ । କୃଷ୍ଣ ପ୍ରସ୍ତରର ମୂର୍ତ୍ତି ।

**ରାଧାକୃଷ୍ଣ**—କୃଷ୍ଣ ମନ୍ଦିରର ପଶ୍ଚିମକୁ ପୂର୍ବ ଆଡ଼ର ବଟଗଛମୂଳେ ଉତ୍ତର ମୁହାଁ ରାଧାକୃଷ୍ଣ ମନ୍ଦିର । କୃଷ୍ଣ ପ୍ରସ୍ତରର ମୂର୍ତ୍ତି । ରାଧା ଅଷ୍ଟଧାତୁର ମୂର୍ତ୍ତି । କେହି କେହି ଭୁଲ୍‌ରେ ବ୍ୟବସାୟ ଦୃଷ୍ଟିରୁ ଯାତ୍ରୀମାନଙ୍କୁ ଭୁଲାଇବା ପାଇଁ ବଟକୃଷ୍ଣ ମୂର୍ତ୍ତି ବୋଲି କହୁଛନ୍ତି । ରାଧାଙ୍କ ମୂର୍ତ୍ତି ପରବର୍ତ୍ତୀ କାଳରେ କୃଷ୍ଣମୂର୍ତ୍ତିଙ୍କ ପାଖରେ ବସାଇ ଦିଆଯାଇଛି ।

**ହରି ସହଦେବ**—ପୂର୍ବ ଆଡ଼ର ବଟର ଉତ୍ତରକୁ ହରି ସହଦେବ (ଶିବଲିଙ୍ଗ)ଙ୍କ ଶ୍ରେଷ୍ଠ ମନ୍ଦିର । ଲିଙ୍ଗର ଉଚ୍ଚତା ପ୍ରାୟ ଏକଫୁଟ ହେବ । ପରିଧି ମଧ୍ୟ ଶ୍ରେଷ୍ଠ । ଲିଙ୍ଗଙ୍କ ଠିକ୍ ସମ୍ମୁଖ ଭାଗରେ ବୃଷଭ ନାହାନ୍ତି ତାହାଙ୍କୁ ଠିଆ ହୋଇଛନ୍ତି । ବୃଷଭର ଠାଣି ମନୋହର । ବୃଷଭର ଆକାର ମଧ୍ୟ ଶ୍ରେଷ୍ଠ । ହରି ସହଦେବ ଜଗନ୍ନାଥଙ୍କ ଗୋଧନର ମାଲିକ ।

**କଳ୍ପବଟ**—ମୁକ୍ତିମଣ୍ଡପଠାରୁ ସତ୍ୟନାରାୟଣଙ୍କ ପର୍ଯ୍ୟନ୍ତ ଜାଗା ଭିତରେ ତିନୋଟି ବଟଗଛ ଅଛି । କାହାର ସହିତ କାହାର ସମ୍ପର୍କ ନାହିଁ । ସତ୍ୟନାରାୟଙ୍କ ପଶ୍ଚିମକୁ ଓ ହରି ସହଦେବଙ୍କ ଉତ୍ତରକୁ ଯେଉଁ ବଟଗଛ ଅଛି, ସେ ପ୍ରକୃତରେ କଳ୍ପବଟର ଏକ ଶାଖା ମାତ୍ର । କିନ୍ତୁ ବର୍ତ୍ତମାନର ଅବସ୍ଥା ଦେଖିଲେ ସ୍ୱତନ୍ତ୍ର ବୃକ୍ଷ ବୋଲି ଜଣାପଡ଼ିବ । ଏହି ବୃକ୍ଷର ପଶ୍ଚିମକୁ ଯେଉଁ ବଟବୃକ୍ଷ ଅଛି ସେ କଳ୍ପବଟ । ଏହାର ପଶ୍ଚିମକୁ ଆଉ ଏକ ବଟବୃକ୍ଷ ଅଛି । କଳ୍ପବଟର ମୂଳକୁ ପଥର ଓ ମାଟି ଦେଇ ବନ୍ଧା ହୋଇ ଉଚ୍ଚ ବୃନ୍ଦାବନୀ ତିଆରି ହୋଇଛି । ବଟମୂଳ ବୃଣ୍ଟପାଖ ବୁଲିବାକୁ ରାସ୍ତା ଅଛି । କଳ୍ପବଟର ଶିଅ ଲାଗି ଗଛ ହେବା ଦେଖାଯାଉ ନାହିଁ । ବୋଧହୁଏ ଶିଅଗୁଡ଼ିକ କାଟି ଦିଆଯାଉଥିବାରୁ ଗଛର ଆୟତନ ବୃଦ୍ଧି ପାଉନାହିଁ । ଏହି କଳ୍ପବଟ ମହାପ୍ରଳୟ କାଳରେ ଜଳରେ ବୁଡ଼ି ନ ଥିଲା । ଏହି କଳ୍ପବଟଠାରେ ପ୍ରଳୟ ଜଳରେ ଜନାର୍ଦ୍ଦନ ଏକ ବଟପତ୍ର ଉପରେ ଶୋଇଥିଲେ । ମାର୍କଣ୍ଡେୟମୁନି ଆଶ୍ରୟ ନ ପାଇ ଏହିଠାରେ ଜନାର୍ଦ୍ଦନଙ୍କ ନିର୍ଦ୍ଦେଶ ମତେ ତାଙ୍କ (ଜନାର୍ଦ୍ଦନଙ୍କ) ଉଦର ମଧ୍ୟରେ ପ୍ରବେଶ କରି ଆଶ୍ରୟ ଲାଭ କରିଥିଲେ । ଏହି କଳ୍ପବଟ ଉପରୁ କାକ ରୋହିଣୀକୁଣ୍ଡକୁ ଖସି ପଡ଼ିବାରୁ ଚତୁର୍ଭୁଜ ହୋଇଗଲା । ନୀଳାଚଳର ପ୍ରାଚୀନତମ ବସ୍ତୁମାନଙ୍କ ଭିତରୁ କଳ୍ପବଟ ଏକ, ସର୍ବପ୍ରାଚୀନ ମଧ୍ୟ କୁହାଯାଇପାରେ । କାରଣ ପ୍ରାଚୀନତମ ବସ୍ତୁମାନଙ୍କ ଭିତରୁ ନୀଳମାଧବ ଅନ୍ତର୍ଦ୍ଧାନ ହୋଇଯାଇଛନ୍ତି ଏବଂ ରୋହିଣୀକୁଣ୍ଡର ଅସ୍ତିତ୍ୱ ବର୍ତ୍ତମାନ ସ୍ପଷ୍ଟଭାବରେ ଦେଖା ଯାଉ ନାହିଁ । ପୂର୍ବର ଆକାର ବର୍ତ୍ତମାନର ଆକାରଠାରୁ ଖୁବ୍ ବଡ଼ ଥିଲା । ପୁରାଣମାନଙ୍କରେ ରୋହିଣୀକୁଣ୍ଡ ଏକ ଗର୍ତ୍ତ ଥିବା ବର୍ଣ୍ଣିତ ହୋଇଛି ।

**ବଟକୃଷ୍ଣ**—କଳ୍ପବଟ ମୂଳରେ ଶ୍ରେଷ୍ଠ ମନ୍ଦିର ଭିତରେ ବଟକୃଷ୍ଣ ବିରାଜମାନ ହୋଇଛନ୍ତି । ମନ୍ଦିରଟି ପୂର୍ବମୁହାଁ । ବଟଆଡ଼କୁ ବାଟ ନାହିଁ । ମନ୍ଦିର ସମ୍ମୁଖକୁ ମୁଖଶାଳୀ ଭଳି ଗୋଟିଏ ଘର ତିଆରି ହୋଇଛି । । ଏହି ଘର ଭିତରୁ ଦେଖିଲେ ବଟକୃଷ୍ଣ ଏ ଘରର ପଶ୍ଚିମ କାନ୍ଥରେ ଏକ ଖୋପ ଭିତରେ ରହିଥିଲା ପରି ଦିଶନ୍ତି । ବଟକୃଷ୍ଣ କଳା ପଥରର ମୂର୍ତ୍ତି । ପ୍ରାୟ ଏକଫୁଟ ଲମ୍ବ ହେବ । ଦକ୍ଷିଣ ଆଡ଼କୁ ମୁଣ୍ଡ କରି ଚିତ୍ ହୋଇ ଅର୍ଦ୍ଧ୍ୱାକାରର ଏକ ପଥରକୁଣ୍ଡ ଭିତରେ ଶୟନ କରିଛନ୍ତି । ଏହି

କୁଣ୍ଡଟି ମଧ୍ୟ ଶ୍ରେଷ୍ଠ, କେବଳ ମୂର୍ତ୍ତିକୁ ଧଉଳାଭଳା କରାଯାଇଛି । ଏହି କୁଣ୍ଡଟି ବଟପତ୍ର ଏବଂ ବଟପତ୍ରର ଆକାରରେ ଗଠିତ ।

**ବଟ ଗଣେଶ**—କଳ୍ପବଟ ତଳକୁ ଦକ୍ଷିଣକୁ ମୁଖ କରି ବଟ ଗଣେଶଙ୍କ ମନ୍ଦିର । ଆଗରେ ଜଗମୋହନରେ ମୂଷିକ ଅବସ୍ଥାନ କରୁଛନ୍ତି ।

**ବଟମଙ୍ଗଳା**—କଳ୍ପବଟ ତଳେ ବଟମଙ୍ଗଳାଙ୍କ ମନ୍ଦିର । ବିମାନ ଓ ଜଗମୋହନ ଅଛି ।

**ଇନ୍ଦ୍ର**—ନାଟମନ୍ଦିର ଦକ୍ଷିଣ ଦ୍ୱାର ପାବଛି ପାଖରେ ଇନ୍ଦ୍ରଙ୍କର ଶ୍ରେଷ୍ଠ ମନ୍ଦିର ଅଛି । ମନ୍ଦିରଟି ଦକ୍ଷିଣ ମୁହାଁ ।

**ବଟବିହାରୀ ଜଗନ୍ନାଥ ବା ବଟ ଅବକାଶ**—ବଟ ଗଣେଶଙ୍କ ଦକ୍ଷିଣକୁ କୂର୍ମବେଢ଼ା ପ୍ରାଚୀରକୁ ଲାଗି ଉତ୍ତରମୁହାଁ ହୋଇ ବଟବିହାରୀ ଜଗନ୍ନାଥଙ୍କ ମନ୍ଦିର । ପୂର୍ବ ପଶ୍ଚିମ ହୋଇ ଏକ ଲମ୍ବା ପଥର ଘର ଭିତରେ ସିଂହାସନ ଉପରେ ଜଗନ୍ନାଥ ବସେ ହୋଇଛନ୍ତି । ମୂର୍ତ୍ତିଙ୍କ ଆକାର ବଡ଼ଦେଉଳର ଜଗନ୍ନାଥଙ୍କଠାରୁ ବହୁତ ସାନ । ଉଚ୍ଚ ପ୍ରାୟ ୪ଫୁଟ ହେବ । ଅନ୍ୟ ଚଳନ୍ତିମୂର୍ତ୍ତି ଏଠାରେ ନାହାନ୍ତି । ଜଗନ୍ନାଥଙ୍କ ବାମଭାଗକୁ ଲକ୍ଷ୍ମୀଙ୍କର ଏକ ମୂର୍ତ୍ତି ଅଛି । ଏହିଠାରେ ବଡ଼ଦେଉଳର ଜଗନ୍ନାଥଙ୍କ ପୁରାଣ ପାଠ ହୁଏ । ସିଂହାସନ ପାଖକୁ ଏକ ପଥରକୁଣ୍ଡ ଅଛି । ଏଥିରେ ବଡ଼ଦେଉଳର ଗୃହଠାକୁରଙ୍କ ଲୁଗା ସଫା ହୁଏ । ମନ୍ଦିରର ବାରଣ୍ଡାରେ ପଶ୍ଚିମ କୋଣକୁ ଏକ ପଥରକୁଣ୍ଡରେ ସବୁବେଳେ ପାଣି ଥାଏ । ଛତିଶା ନିଯୋଗର ଲୋକେ ଏଠାରେ ଗୋଡ଼ ଧୋଇ ଜଗନ୍ନାଥଙ୍କ ସେବା ଚଳାଇବା ନିମନ୍ତେ ବଡ଼ଦେଉଳକୁ ଯାଆନ୍ତି ।

**ଅନନ୍ତ ବାସୁଦେବ**—ଅନନ୍ତ ବାସୁଦେବଙ୍କ ମନ୍ଦିର ବହୁ ପ୍ରାଚୀନ ବୋଲି ମନେ ହୁଏ । କୂର୍ମପ୍ରାଚୀରର ଦକ୍ଷିଣ ଦ୍ୱାରର ପଶ୍ଚିମରେ ଏହି ମନ୍ଦିର । ବିମାନଟି ଶ୍ରେଷ୍ଠ । ମୁଖଶାଳୀଟି ବଡ । ଏହିଯୋଗୁଁ ଏହି ମନ୍ଦିରକୁ ଲକ୍ଷ୍ୟ କରି ଲୋକେ କହନ୍ତି, "ମନ୍ଦିରଠୁଁ ମୁଖ ଶାଳୀ ବଢ଼ିଗଲା ।" ଅନନ୍ତ ବାସୁଦେବଙ୍କ ମୂର୍ତ୍ତି ଶ୍ରେଷ୍ଠ । ବିମାନର ମୁଖ ପଶ୍ଚିମକୁ ।

**ଦିକ୍‌ପାଳ**—ଅନନ୍ତ ବାସୁଦେବଙ୍କ ମନ୍ଦିରର ପଶ୍ଚିମକୁ ଦିଗ୍‌ପାଳ ମନ୍ଦିର । ଦକ୍ଷିଣ ଆଡ଼କୁ ମୁହଁ ।

**ସୂର୍ଯ୍ୟନାରାୟଣ**—ଦିକ୍‌ପାଳ ମନ୍ଦିରର ଉତ୍ତର ଭାଗରେ ମୁକ୍ତିମଣ୍ଡପର (ଐଶାନ୍ୟକୋଣ ଆଡ଼କୁ) ସୂର୍ଯ୍ୟନାରାୟଣଙ୍କର ଶ୍ରେଷ୍ଠ ମନ୍ଦିର । ପକାଳେ ୪୦.ରେ ପୂଜା ହୁଏ ।

**କୁତ୍ରାମଚଣ୍ଡି**—ଅନନ୍ତ ବାସୁଦେବ ମନ୍ଦିରର ପଶ୍ଚିମକୁ କୁତ୍ରାମଚଣ୍ଡିଙ୍କ ସ୍ଥାନ । କୁକୁରର ପ୍ରତିମୂର୍ତ୍ତି କାନ୍ଥରେ ଅଛି ।

**ମୁକ୍ତିମଣ୍ଡପ**—ବଡ଼ଦେଉଳର ଜଗମୋହନର ଦକ୍ଷିଣ ଦ୍ୱାର ଆଗରେ ମୁକ୍ତିମଣ୍ଡପ । ମଣ୍ଡପର ଲମ୍ବ ୩୮ ଫୁଟ, ଓସାର ୩୮ ଫୁଟ । ଷୋଳଟି ଖମ୍ବ ଉପରେ ପୀଠ ଗୁଡ଼ିକ ଗଢ଼ା ହୋଇଛି । ଏହି ମଣ୍ଡପରେ ବ୍ରାହ୍ମଣମାନେ ସଭା କରି ବ୍ୟବସ୍ଥା ଦେଉଥିଲେ । ପ୍ରତାପରୁଦ୍ରଙ୍କ ଅମଳରେ (ଷୋଡ଼ଶ ଶତାବ୍ଦୀରେ) ଏହି ମଣ୍ଡପଟି ତିଆରି ହୋଇଥିବାର ଜଣାଯାଏ । ମାଦଳାପାଞ୍ଜିରେ ଲେଖା ଅଛି, "ରାମଚନ୍ଦ୍ରଦେବ (ଭୋଇ ବଂଶ)ଙ୍କ ଅଂକରେ ମାନସିଂହଙ୍କ ଭାର୍ଯ୍ୟା ଗୌରାରାଣୀ ବଡ଼ଦେଉଳ ମୁକ୍ତି ମୋଣ୍ଡପ ଗଢ଼ାଇଲେ ।" ରାଜା ମାନସିଂହ ଦିଲ୍ଲୀ ସମ୍ରାଟ ଆକବରଙ୍କର ମନ୍ତ୍ରୀ ଥିଲେ, ସେ ଓଡ଼ିଶାକୁ ଆସି ଖୋର୍ଦ୍ଧା ସିଂହାସନ ସମ୍ପର୍କରେ ଯେଉଁ ବିବାଦ ହୋଇଥିଲା ତାହାର ନିଷ୍ପତ୍ତି କରିଥିଲେ । ଭୋଇ ବଂଶର ରାମଚନ୍ଦ୍ରଦେବଙ୍କୁ ରାଜା ବୋଲି ଘୋଷଣା କରିଥିଲେ । ଖ୍ରୀ: ୧୫୮୦ରେ ଏହି ମଣ୍ଡପ ତିଆରି ହୋଇଥିଲା । ପୁରୁଣା ମଣ୍ଡପ ଜୀର୍ଣ୍ଣ ହୋଇଯାଇଥିବାରୁ ନୂଆ ମଣ୍ଡପ ନିର୍ମାଣ କରିଥିଲେ । ଏହିଠାରେ ଠାକୁରଙ୍କର ଝୁଲଣଯାତ୍ରା ହୁଏ ।

**ନୃସିଂହ**—ମୁକ୍ତିମଣ୍ଡପର ପଶ୍ଚିମକୁ ନୃସିଂହ ମନ୍ଦିର । ମନ୍ଦିରର ମୁଖ ପୂର୍ବ ଦିଗକୁ । ଦ୍ୱାରର ପଶ୍ଚିମ ଭାଗରେ ଏକ ଶିଳାଲିପି ଅଛି । ଏହି ଠାକୁର ବହୁ ପ୍ରାଚୀନ କାଳରୁ ଅଛନ୍ତି । ଜଗନ୍ନାଥଙ୍କ ଆବିର୍ଭାବ ସମୟକୁ ମଧ୍ୟ ଥିଲେ ବୋଲି ଉତ୍କଳଖଣ୍ଡରୁ ଜଣାଯାଏ ।

**ମଦନମୋହନ**—ବଡ଼ଦେଉଳ ଜଗମୋହନର ଦକ୍ଷିଣ ଦ୍ୱାରର ପଶ୍ଚିମ ଦିଗରେ ମନ୍ଦିରକୁ ଲାଗି ମଦନମୋହନଙ୍କ ମନ୍ଦିର । ମଦନମୋହନ ଜଗନ୍ନାଥଙ୍କ ଚଳନ୍ତି ପ୍ରତିମା ।

**ଜଳକ୍ରୀଡ଼ା ମଣ୍ଡପ**—ନୃସିଂହଙ୍କ ମନ୍ଦିରର ପଶ୍ଚିମକୁ ଜଳକ୍ରୀଡ଼ା ମଣ୍ଡପ । ନରେନ୍ଦ୍ର ସରୋବରରେ ଚନ୍ଦନଯାତ୍ରା ସରିବା ପରେ ଏହିଠାରେ ଠାକୁରମାନଙ୍କର ଚନ୍ଦନଯାତ୍ରା ହୁଏ । ଏହାକୁ ଭିତର ଚନ୍ଦନ କହନ୍ତି । ସପ୍ତଦଶ ଶତାବ୍ଦୀର ମଧ୍ୟ ଭାଗରେ ମୁକୁନ୍ଦଦେବଙ୍କ ଅମଳରେ ଏ ମଣ୍ଡପ ତିଆରି ହୋଇଥିଲା ।

**ରୋହିଣୀକୁଣ୍ଡ**—ଜଳକ୍ରୀଡ଼ା ମଣ୍ଡପ ପାଖରେ ବିମଳାଙ୍କ ମନ୍ଦିରର ସମ୍ମୁଖଭାଗରେ ରୋହିଣୀକୁଣ୍ଡ । ଏଠାରେ ପର୍ବର କୁଣ୍ଡ ନାହିଁ । ଗୋଟିଏ ଗ୍ରେଟ କୁଣ୍ଡ ଚଟାଣ ଉପରେ ଥୁଆଯାଇ ହୋଇଛି ଚତୁର୍ଭୁଜ କାକର ଗ୍ରେଟ ମୂର୍ତ୍ତିଟିଏ ତଳେ ପଡ଼ିଥିବା ଅବସ୍ଥାରେ ରଖା ହୋଇଛି । ପଣ୍ଡାମାନେ ପ୍ରତିଦିନ ସେଥିରେ ଟିକିଏ ପାଣିପକାଇ କୁଣ୍ଡର କାରଣବାରି ବୋଲି ଭକ୍ତମାନଙ୍କୁ ଦିଅନ୍ତି । ପୁରାଣ ଅନୁସାରେ ଶଙ୍ଖାକୃତି କ୍ଷେତ୍ରର ନାଭିଦେଶରେ ଏହି କୁଣ୍ଡ ବିରାଜମାନ । କୁଣ୍ଡ କାରଣବାରିରେ ପରିପୂର୍ଣ୍ଣ ହୋଇଥାଏ । ଏହି ଜଳସ୍ପର୍ଶ ମାତ୍ରେ ମାନବମାନେ ମୋକ୍ଷ ଲାଭ କରନ୍ତି । ପ୍ରଳୟ କାଳରେ ଏହି କୁଣ୍ଡରୁ ଜଳ ବାହାରି, ବୃଦ୍ଧିପ୍ରାପ୍ତ ହୋଇ ପୁଣି ଏଥିରେ ଲୀନ ହୋଇଯାଏ । ଏହିହେତୁ ଏହାର ନାମ ରୋହଣ କୁଣ୍ଡ (ବା ରୋହିଣୀ କୁଣ୍ଡ) ହେଲା । ସତ୍ୟଯୁଗରେ ଏକ ତୃଷାର୍ତ୍ତ କାକ ଏହି କୁଣ୍ଡର କାରଣବାରିରେ ବୁଡ଼ି ମୋକ୍ଷଲାଭ କରିଥିଲା ଏବଂ ଚତୁର୍ଭୁଜ ହୋଇଥିଲା । (ଉତ୍କଳଖଣ୍ଡ—ସ୍କନ୍ଦ ପୁରାଣ) । ବ୍ରହ୍ମପୁରାଣ ମତରେ ଏହି କୁଣ୍ଡ ଭିତରକୁ ଯିବା ଜନ୍ମନ୍ତେ ପାବଚ୍ଛଶ୍ରେଣୀ ଥିଲା । ଅନ୍ୟ ପୁରାଣ ମତରେ ପ୍ରଥମେ ଦାରୁଙ୍କର ଏହି କୁଣ୍ଡରେ ଆବିର୍ଭାବ ହୋଇଥିଲା ।

**ଗଣେଶ**—(ବିମଳାଙ୍କ ସାମନା)—ଏହି ଠାକୁର ବଡ଼ଦେଉଳ ଥୁଆଯାଇ ଅମଳରୁ ଅଛନ୍ତି । କଳାମୁଗୁନି ପଥରର ସୁନ୍ଦର ମୂର୍ତ୍ତି । ପୀଠର ଉଚ୍ଚ ପ୍ରାୟ ଏକଫୁଟ । ମୂର୍ତ୍ତିର ଫଳକ ପ୍ରାୟ ୬ଫୁଟ X ୩ଫୁଟ । ଗଣେଶ ମୂଷିକ ଉପରେ ଠିଆହୋଇ ନୃତ୍ୟ କରୁଛନ୍ତି । ଗଣେଶଙ୍କର ଆଠହାତ । ଉପର ଦୁଇ ହାତରେ ସର୍ପ । ସର୍ପ ମସ୍ତକ ଉପରେ ଭଙ୍ଗା ହୋଇଛି । ଡାହାଣ ହାତରେ ଫଣା ରହିଛି । ଅନ୍ୟ ଦୁଇ ଡାହାଣ ହାତରେ (ଉପରୁ ତଳକୁ ହିସାବରେ) ମାଳା, ଦନ୍ତ । ଦୁଇହାତ ମୁଦ୍ରା । ବାଁର ଗୋଟିଏ ହାତରେ ଅଙ୍କୁଶ, ଆଉ ଗୋଟିଏ ହାତରେ ଲଡ଼ୁ, ଲଡ଼ୁ ଉପରେ ଶୁଣ୍ଢ ।

**ବିମଳା**—ଭିତର ବେଢ଼ାର ନୈଋତ କୋଣରେ ରୋହିଣୀକୁଣ୍ଡର ପଶ୍ଚିମକୁ ବିମଳାଙ୍କ ମନ୍ଦିର । ଏହି ମନ୍ଦିର ଅତି ପ୍ରାଚୀନ ପରି ଜଣାଯାଏ । ବିମାନ, ଜଗମୋହନ ନାଟମନ୍ଦିର ଓ ଭୋଗମଣ୍ଡପ—ଏହି ଭାଗ ଅଛି । ବିମାନ ବେଶୀ ଉଚ୍ଚ ନୁହେଁ । ନାଟମନ୍ଦିରର ପ୍ରାଚୀର ଦେହରେ ପଥରର ଯୋଗାସନରେ ଉପବିଷ୍ଟା ଉଲଗ୍ନ ଭୈରବୀ-ମୂର୍ତ୍ତି ଦେଖାଯାଏ । ମତ୍ସ୍ୟପୁରାଣ, କପିଳସଂହିତା, ସ୍କନ୍ଦପୁରାଣ ପ୍ରଭୃତି ଗ୍ରନ୍ଥରେ ବିମଳାଙ୍କ ଉଲ୍ଲେଖ ଅଛି । ଏହାଙ୍କ ଯୋଗୁଁ ପୁରୁଷୋତ୍ତମ କ୍ଷେତ୍ର ଏକ ପ୍ରସିଦ୍ଧ ଶାକ୍ତ କ୍ଷେତ୍ରରୂପେ ପରିଚିତ । ବଡ଼ଦେଉଳରେ ଅନ୍ନଭୋଗ ସରିବା ପରେ ବିମଳାଙ୍କୁ ସମର୍ପଣ କରାଯାଏ ।

ଶାକ୍ତମାନଙ୍କ ମତରେ ବିମଳାଙ୍କୁ ସମର୍ପଣ ନ ହେଲେ ମହାପ୍ରସାଦ ହୋଇପାରିବ ନାହିଁ । ଜଗନ୍ନାଥ ବିମଳାଙ୍କ ଭୈରବ, ଏହା ମଧ୍ୟ ଶାକ୍ତମାନେ ପ୍ରତିପାଦନ କରନ୍ତି । ଦଶହରା ବେଳେ ବିମଳାଙ୍କ ଷୋଳପୂଜା ହୁଏ । ଗୋପନରେ ପଶୁ ବଳି ମଧ୍ୟ ହୁଏ । ଜଗନ୍ନାଥଙ୍କ ମାଛ ସରିବା ପରେ ବିମଳାଙ୍କ ପାଖରେ ଏହି ବଳି ପଡ଼େ । ଆମିଷ ରନ୍ଧା ହୋଇ ଭୋଗ ହୁଏ । ଦିବ୍ୟସିଂହଦେବ (୧୬୯୮-୧୭୨୦)ଙ୍କ ଅମଳରେ ଗଡ଼ମଙ୍ଗଳା ତରଳାର ରାଜା ବିମଳାଙ୍କ ଭୋଗମଣ୍ଡପ ନିର୍ମାଣ କରିଥିଲେ ।

**ଭଣ୍ଡ ଗଣେଶ**—କୂର୍ମପ୍ରାଚୀରର ପଶ୍ଚିମ ଦ୍ୱାରର ଦକ୍ଷିଣ ଭାଗକୁ ଭଣ୍ଡ ଗଣେଶଙ୍କ ମନ୍ଦିର । କଳା ମୁଗୁନିପଥରର ଗଣେଶ ମୂର୍ତ୍ତିଟି ବଡ଼ ସୁନ୍ଦର ଦେଖାଯାଉଛି । ଗଣେଶ ଚତୁର୍ବାହୁ । ସ୍ୱସ୍ତିକ ସହିତ ନବଦ୍ୱାର ରୋଧ କରି ସମାଧି ଅବସ୍ଥାରେ ଅଛନ୍ତି । ଶକ୍ତିଙ୍କ ଉପରେ ଶୁଣ୍ଢ ଉପରି ହୋଇ ରହିଥିବା ଯୋଗୁଁ ଲୋକେ ଏହି ମୂର୍ତ୍ତିଙ୍କୁ ଭଣ୍ଡ ଗଣେଶ କହନ୍ତି । ସୂର୍ଯ୍ୟବଂଶର ପୁରୁଷୋତ୍ତମଦେବ କାଞ୍ଚିରୁ ଏହି ମୂର୍ତ୍ତିଙ୍କୁ ଆଣିଥିବା ଜଣାଯାଏ ।

**ସରସ୍ୱତୀ**—କୂର୍ମବେଢ଼ାର ପଶ୍ଚିମ ଦ୍ୱାରର ଉତ୍ତର ଭାଗକୁ ସରସ୍ୱତୀ ମନ୍ଦିର ।

**ଭଦ୍ରକାଳୀ**—ନୀଳମାଧବଙ୍କ ଉତ୍ତରକୁ ଭଦ୍ରକାଳୀଙ୍କ ମନ୍ଦିର । ଭଦ୍ରକାଳୀ ମନ୍ଦିର ରକ୍ଷା କରୁଛନ୍ତି । ଭଦ୍ରକାଳୀ ଦ୍ୱିଭୁଜା । ଦକ୍ଷିଣ ହସ୍ତରେ ଖଡ୍‌ଗ, ବାମ ହସ୍ତରେ ଖର୍ପର । ମୁଣ୍ଡମାଳିନୀ । ମୂର୍ତ୍ତିର ଉଚ୍ଚତା ପ୍ରାୟ ୩ଫୁଟ ହେବ । କେତେକ କହନ୍ତି ଏ ମୂର୍ତ୍ତି ସ୍ଥାପନା ମୂର୍ତ୍ତି । ଏହାଙ୍କ ପଛପଟେ ପ୍ରକୃତ ମୂର୍ତ୍ତି ଅଛନ୍ତି । ପୂର୍ବେ ମନ୍ଦିର ଗୃହପଛ ଅରଣ୍ୟରେ ମୂର୍ତ୍ତି ଥିଲା । କାଳୀଙ୍କ ପ୍ରତାପରେ ବହୁ ଲୋକ ଭୟଭୀତ ହେଲେ, କେତେ ମଧ୍ୟ ମଲେ । ଭୟରେ ଲୋକେ ଏହି କାଳୀମନ୍ଦିର ବାଟେ ଯିବା ଆସିବା ବନ୍ଦ କଲେ । ମରହଟ୍ଟା ରାଜତ୍ୱରେ ବାବା ବ୍ରହ୍ମଗିରିଙ୍କ ତତ୍ତ୍ୱାବଧାନରେ କାଳୀଙ୍କୁ ମନ୍ଦିର ଭିତରେ ବନ୍ଦ କରାଗଲା ଏବଂ ତାଙ୍କ ଆଗରେ ଏ ମୂର୍ତ୍ତିଙ୍କୁ ରଖାଗଲା । ପୁରୁଣା ମନ୍ଦିରଟି ବର୍ତ୍ତମାନ ସୁଦ୍ଧା ଦେଖା ଯାଉଛି । ବର୍ତ୍ତମାନର ମୂର୍ତ୍ତିଙ୍କ ଡାହାଣ ହାତ ପାଖକୁ ଏକ ରନ୍ଧ୍ର ଅଛି । ଏହି ରନ୍ଧ୍ର ବାଟେ ପ୍ରତିଦିନ ଫୁଲଚନ୍ଦନ ଦିଆଯାଇ ଭିତର ଥିବା ଦେବୀଙ୍କୁ ଅର୍ଚ୍ଚନା କରାଯାଏ । ଏହି ରନ୍ଧ୍ର ବାଟେ ବନ୍ଦହୋଇ ଥିବା ମନ୍ଦିରକୁ ପବନ ଯା'ଆସ କରୁଥିବାରୁ ପବନର ଗତି ଟିକିଏ ବୃଦ୍ଧି ପାଇଲେ ବଂଶୀର ସ୍ୱର ଭଳି ଏକପ୍ରକାର ଶବ୍ଦ ଶୁଣାଯାଏ । ଏ ସ୍ଥାପନା ମୂର୍ତ୍ତି ଦାରୁର ମୂର୍ତ୍ତି ।

**ନୀଳମାଧବ**—ସରସ୍ୱତୀଙ୍କ ଉତ୍ତରକୁ ନୀଳମାଧବଙ୍କ ମୂର୍ତ୍ତି । ଏକଖଣ୍ଡ କଳା ମୁଗୁନିପଥରରେ ମୂର୍ତ୍ତି ଗଠିତ । ପଥରର ଲମ୍ବା ପ୍ରାୟ ଅଢ଼େଇଫୁଟ ଓ ଓସାର

ପ୍ରାୟ ଦେଢ଼ଫୁଟ ହେବ । ଅଗ୍ନିକୋଣର ସତ୍ୟନାରାୟଣଙ୍କ ମୂର୍ତ୍ତି ପରି ମୂର୍ତ୍ତି । କାରୁକାର୍ଯ୍ୟ ମଧ୍ୟ ସେହିପରି ସୁନ୍ଦର । ମୂର୍ତ୍ତିଟି ଏକ ସିଂହାସନ ଉପରେ ବସିଛନ୍ତି । ମାଧବଙ୍କ ବାମ ଭାଗକୁ ଟିକିଏ ଦୂରରେ ଜଗନ୍ନାଥଙ୍କ ଏକ ଶ୍ରେଷ୍ଠ ମୂର୍ତ୍ତି ଅଛନ୍ତି । ଏହି ମୂର୍ତ୍ତି ପ୍ରାୟ ତିନିଫୁଟ ଉଚ୍ଚ ହେବ । ଦକ୍ଷିଣ ଭାଗକୁ କୃଷ୍ଣଙ୍କର ଏକ ପ୍ରସ୍ତରର ମୂର୍ତ୍ତି ଅଛି । ପ୍ରାୟ ଏକଫୁଟ ଉଚ୍ଚ ହେବ । ନୀଳମାଧବ ମନ୍ଦିରର ଦ୍ୱାରବନ୍ଧ ଉପର ଭାଗରେ ଏକ ନବଗ୍ରହ ପାଟକ ଅଛି । ମନ୍ଦିର ବେଶୀ ଉଚ୍ଚ ନୁହେଁ । ଇନ୍ଦ୍ରଦ୍ୟୁମ୍ନ ମହାରାଜ ଜଗନ୍ନାଥଙ୍କ ପାଇଁ ନୀଳାଚଳରେ ମନ୍ଦିର ନିର୍ମାଣ କରି ସାରି ପ୍ରତିଷ୍ଠା କରାଇବା ଉଦ୍ଦେଶ୍ୟରେ ବ୍ରହ୍ମାଙ୍କୁ ଆଣିବା ପାଇଁ ସ୍ୱର୍ଗକୁ ଗଲେ । ବ୍ରହ୍ମା ସନ୍ଧ୍ୟା-ଜପରେ ବସିଥିଲେ । ସନ୍ଧ୍ୟାଜପ ସରିବା ପରେ ବ୍ରହ୍ମାଙ୍କୁ ଧରି ରାଜା ଭୂଲୋକକୁ ଆସିଲାବେଳକୁ ପରାର୍ଦ୍ଧ ସମୟ ଗତ ହୋଇ ଯାଇଥିଲା । ଇନ୍ଦ୍ରଦ୍ୟୁମ୍ନଙ୍କ ମନ୍ଦିର ବାଲିରେ ପୋତି ହୋଇ ଯାଇଥିଲା । ଉତ୍କଳର ଗାଲ ନାମକ ରାଜା ମନ୍ଦିରକୁ ବାଲିରୁ କାଢ଼ି ନୀଳମାଧବଙ୍କୁ ସେଥିରେ ବସାଇ ସ୍ଥାପନା କରି ପୂଜା କରୁଥିଲେ । ଇନ୍ଦ୍ରଦ୍ୟୁମ୍ନ ଆସିବା ପରେ ମନ୍ଦିରର ପ୍ରଭୁତ୍ୱ ନେଇ ଗାଲରାଜା ଓ ଇନ୍ଦ୍ରଦ୍ୟୁମ୍ନଙ୍କ ଭିତରେ ବିବାଦ ଉପୁଜିଲା । ପରେ ଏହାର ସମାଧାନ ହେଲା । ଇନ୍ଦ୍ରଦ୍ୟୁମ୍ନ ଏହାକୁ ନିର୍ମାଣ କରିଥିଲେ ବୋଲି ପ୍ରମାଣିତ ହେବାରୁ ଗାଲ ପୂଜା କରୁଥିବା ମାଧବଙ୍କୁ ସେଠାରୁ ବାହାର କରି ନିଆଗଲା ଏବଂ ଇନ୍ଦ୍ରଦ୍ୟୁମ୍ନ ଚତୁର୍ଦ୍ଧାମୂର୍ତ୍ତିଙ୍କୁ ସେଠାରେ ପ୍ରତିଷ୍ଠା କରାଇ ସେବା ପୂଜାର ବ୍ୟବସ୍ଥା କଲେ । ମାଧବମୂର୍ତ୍ତିଙ୍କୁ ଏହିଠାରେ ରଖି ସେବା ପୂଜା କରାଗଲା । ଇନ୍ଦ୍ରଦ୍ୟୁମ୍ନଙ୍କ ସମୟରୁ ଏହି ନୀଳମାଧବ ଏହିଠାରେ ପୂଜା ପାଉଛନ୍ତି ।

**ଲକ୍ଷ୍ମୀ ମନ୍ଦିର**— ଭିତର ବେଢ଼ାର ବାୟୁ କୋଣରେ ଲକ୍ଷ୍ମୀଙ୍କ ମନ୍ଦିର । ବିମାନ, ଜଗମୋହନ, ନାଟମନ୍ଦିର, ଭୋଗ ମନ୍ଦିର—ଏହି ଗୃହଭାଗ ଅଛି । ବିମାନ ଓ ନାଟମନ୍ଦିରର କାରୁକାର୍ଯ୍ୟ ଅତି ଉଚ୍ଚ ଧରଣର । ମନ୍ଦିରଟି ଅତି ପୁରୁଣା ହୋଇ ଯାଇଥିବାରୁ ତାହାର ମୂର୍ତ୍ତିଗୁଡ଼ିକ ଅନେକ ସ୍ଥାନରେ ଘସି ହୋଇଗଲାଣି, କେତେକ ସ୍ଥାନରେ ଭାଙ୍ଗିଗଲାଣି ମଧ୍ୟ । ନାଟମନ୍ଦିରର ଦକ୍ଷିଣ ଓ ଉତ୍ତର ଦ୍ୱାରରେ ପଥରର ଝରକା ଅଛି । ଏହି ଝରକା ବାଡ଼ରେ ବହୁ ସୁନ୍ଦର ସୁନ୍ଦର ମୂର୍ତ୍ତି ଖୋଦା ହୋଇଛି । ବଡ଼ଦେଉଳର ଭୋଗମଣ୍ଡପ ଛାଡ଼ିଦେଲେ ଅନ୍ୟ କୌଣସି ମନ୍ଦିରରେ ଏତେ କାରୁକାର୍ଯ୍ୟ ଦେଖାଯାଏ ନାହିଁ । ବେଢ଼ାଭିତରେ ଏହି ମନ୍ଦିରଟି ଅତି ପ୍ରାଚୀନ । ଚୋଡ଼ଗଙ୍ଗଦେବଙ୍କ ସମୟରେ ନିର୍ମିତ ବୋଲି କେହି କେହି କହନ୍ତି । ପାଣି ପବନ ମାଡ଼ରେ ତାହାର ମୂର୍ତ୍ତିଗୁଡ଼ିକ ଯେପରି ଅବସ୍ଥା ଧାରଣ କରିଛି, ସେଥିରୁ ଏହି ମନ୍ଦିରଟି ଅତି ପ୍ରାଚୀନ ଥିବା ସହଜରେ ଅନୁମାନ କରାଯାଇ ପାରେ । ମାଦଳାପାଞ୍ଜିରେ ଲେଖାଅଛି, ମୁକୁନ୍ଦ-

ଦେବ (ଖ୍ରୀ ୧୭୫୫-୧୭୯୩)ଙ୍କ ପାତ୍ର ପିତାମ୍ବର ବିଦ୍ୟାଧର ମହାପାତ୍ର ଲକ୍ଷ୍ମୀଙ୍କ ଜଗମୋହନ ନିର୍ମାଣ କରିଥିଲେ ।

**ନବଗ୍ରହ**—ଲକ୍ଷ୍ମୀଙ୍କ ନାଟମନ୍ଦିରର ଉତ୍ତରକୁ ନବଗ୍ରହଙ୍କର ମନ୍ଦିର ।

**ସୂର୍ଯ୍ୟନାରାୟଣ ମନ୍ଦିର**—ଲକ୍ଷ୍ମୀ ମନ୍ଦିରର ପୂର୍ବକୁ କୂର୍ମପ୍ରାଚୀର ନିକଟରେ ସୂର୍ଯ୍ୟନାରାୟଣଙ୍କ ମନ୍ଦିର । ବିମାନ, ଜଗମୋହନ, ନାଟମନ୍ଦିର—ଏହି ତିନି ଭାଗ ଅଛି । ବିମାନର ଉଚ୍ଚତା ମଧ୍ୟ ତେତେ କମ୍ ନୁହେଁ । ମନ୍ଦିରର ଭିତରେ କି ବାହାରେ ଉତ୍କୃଷ୍ଟ କାରୁକାର୍ଯ୍ୟର ନିଦର୍ଶନ ନାହିଁ । ବିମାନ ଭିତରେ ଏକ ସିଂହାସନ ଉପରେ ପଥରର ସୂର୍ଯ୍ୟନାରାୟଣ ମୂର୍ତ୍ତି ପୂଜା ପାଉଛନ୍ତି । ମୂର୍ତ୍ତିରେ ସପ୍ତାଶ୍ବ ଅଛନ୍ତି । ଏହି ମୂର୍ତ୍ତିର ପଛକୁ ଲାଗି ଅତି ସୁନ୍ଦର ବୁଦ୍ଧମୂର୍ତ୍ତି ପଶ୍ଚିମମୁଖ ହୋଇ ସିଂହାସନ ଉପରେ ବସିଛନ୍ତି । ତାଙ୍କୁ ପୂଜା ହେଉନାହିଁ । ଦୀପ ଆଲୋକରେ ଦେଖିଲେ ମୂର୍ତ୍ତି ଦେଖା ଯାଉଛି । ସୂର୍ଯ୍ୟନାରାୟଣଙ୍କ ମୂର୍ତ୍ତି ଅପେକ୍ଷା ବୁଦ୍ଧମୂର୍ତ୍ତି ଆକାରରେ ବଡ଼ । ମୂର୍ତ୍ତିର ଗଢ଼ଣ ମଧ୍ୟ ସୁନ୍ଦର । ସୂର୍ଯ୍ୟନାରାୟଣ ମୂର୍ତ୍ତି କୋଣାର୍କରୁ ଅଣାଯାଇ ଏଠାରେ ରଖାଯାଇଥିବା ଶୁଣାଯାଏ । ବୌଦ୍ଧମୂର୍ତ୍ତି ସମ୍ବନ୍ଧରେ କିଛି ଜଣାଯାଉନାହିଁ । ପଣ୍ଡା-ମାନଙ୍କୁ ପଚାରିଲେ ଏ ଇନ୍ଦ୍ର ମୂର୍ତ୍ତି ବୋଲି କହୁଛନ୍ତି । ଏହି ବୌଦ୍ଧମୂର୍ତ୍ତି ହୁଏତ ବେଢ଼ା ଭିତରେ ପୂଜା ପାଉଥିଲେ । ପରବର୍ତ୍ତୀ ସମୟରେ ଏହାଙ୍କୁ ବାହାର କରି ଏଠାକୁ ଅଣା ଯାଇଛି । ଭୋଇ ବଂଶର ନରସିଂହଦେବ(ଖ୍ରୀ:୧୬୨୨-୧୬୪୬) କଣରେଖା କ୍ଷେତ୍ରରୁ ଚନ୍ଦ୍ର ସୂର୍ଯ୍ୟଙ୍କୁ ଆଣି ଦେଉଳ ଭିତରେ ଇନ୍ଦ୍ରଙ୍କ ଦେଉଳ ବାସାକଲେ ।" (ମାଦଳାପାଞ୍ଜି)

**ପାତାଳେଶ୍ବର**—କୂର୍ମପ୍ରାଚୀର ଉତ୍ତର ଦ୍ୱାର ନିକଟରେ ପଶ୍ଚିମ ଭାଗକୁ ପାତାଳେଶ୍ବର ମହାଦେବଙ୍କ ମନ୍ଦିର । ମନ୍ଦିରଟି ଅଧେ ପୋତା ହେଲା ପରି ବାହାରକୁ ଦିଶୁଛି । ଗହ୍ବର ଭିତରେ ଶିବଲିଙ୍ଗ ପୂଜା ପାଉଛନ୍ତି । ଲିଙ୍ଗଙ୍କ-ଠାକୁ ଯିବାପାଇଁ ପାବଚ୍ଛଶ୍ରେଣୀ ଅଛି । ପୂର୍ବ ଆଡ଼କୁ ଦ୍ୱାର ଅଛି । ଏହି ଦ୍ୱାର ଛଡ଼ା ଅନ୍ୟକାଟେ ଭିତରକୁ ଆଲୁଅ କି ପବନ ଯିବାର ବାଟ ନାହିଁ । ଶିବଲିଙ୍ଗ ଗହ୍ବର ଭିତରେ କୂର୍ମବେଢ଼ା ଚଟାଣଠାରୁ ପ୍ରାୟ କୋଡ଼ିଏ ଫୁଟ ତଳକୁ ଅଛନ୍ତି । ବିମାନର ଏକ ଦ୍ୱାର ଅଛି । ଏହି ଦ୍ୱାର କାଛର ଉଭୟ ପଟରେ କେତୋଟି ପ୍ରାଚୀନ ଶିଳାଲିପି ଅଛି ।

**ପାଦପଦ୍ମ**—ଏହି ଦ୍ୱାର ପାଖରେ ପୂର୍ବ ଆଡ଼କୁ ଚୈତନ୍ୟଙ୍କ ପାଦପଦ୍ମ । ଏହି ସ୍ତମ୍ଭ ପାଖରେ ଠିଆହୋଇ ନୀଳଚକ୍ରକୁ ଦର୍ଶନ କରିବା ବିଧି ଅଛି ।

**ଏକାଦଶୀ ଦେବୀ**—ଦେଉଳର ପଶ୍ଚିମ କାନ୍ଥ ବାହାର ପଟରେ ନିଶା ପାଖରେ ଚଟାଣକୁ ଲାଗି ଶ୍ରେଷ୍ଠ ମନ୍ଦିରଟିଏ ଅଛି । ଲମ୍ବ, ଓସାର, ଉଚ୍ଚ ଗ୍ଳଖଣ୍ଡକରୁ କମ୍ ହେବ । ଭିତରେ ଏକାଦଶୀ ଦେବୀ । ମନ୍ଦିରରେ ଏକାଦଶୀ ବ୍ରତ ନିରାହାର ରହି ପାଳନ କରିବା ନିୟମର ପ୍ରଚଳନ ନାହିଁ । ମହାପ୍ରସାଦ ସେବାକରି ବ୍ରତ କରିବା ନିୟମ ଅଛି । ଏକାଦଶୀ ଦେବୀଙ୍କୁ ଜଗନ୍ନାଥ ଏଠାରେ ବାନ୍ଧି ରଖିଛନ୍ତି ବୋଲି ଲୋକେ କହନ୍ତି । ଏକାଦଶୀ ଦିନ ଲୋକେ ଏକାଦଶୀ ଦେବୀଙ୍କୁ ଦର୍ଶନ କରି ବ୍ରତ କରନ୍ତି । ସେଦିନ ବଡ଼ଦେଉଳର ଗୃଣଦେଉଳ ଉପରେ ରାତିରେ ବଡ଼ସିଂହାର ପରେ ଦୀପ ଉଠେ । "ରାଜା ଇନ୍ଦ୍ରଦ୍ୟୁମ୍ନଙ୍କ ଜୟ ହେଉ" ବୋଲି ଦୀପଜାଳିବା ସେବକ ମନ୍ଦିର ଶିଖର ଉପରୁ ଡାକ ଦିଏ । ଇନ୍ଦ୍ରଦ୍ୟୁମ୍ନ ମହାରାଜା ପ୍ରଥମେ ମନ୍ଦିର ପ୍ରତିଷ୍ଠା କରିଥିବାରୁ ତାଙ୍କର ନାମର ରକ୍ଷା ପାଇ ଏପରି ଜୟଡାକ ପ୍ରତି ଏକାଦଶୀ ଦିନ ହୁଏ ।

# ପଞ୍ଚଦଶ ପରିଚ୍ଛେଦ

## କ୍ଷେତ୍ର ପରିକ୍ରମା

ପୁରୀର ଅଧିକାଂଶ ମଠବାଡ଼ି, ତୀର୍ଥସ୍ଥାନର ଶ୍ରୀ ଜଗନ୍ନାଥ ମନ୍ଦିର ସହିତ ସମ୍ପର୍କ ରହିଛି ।

**ସହର**—ପ୍ରାଚୀନ ସରକାରୀ କାଗଜପତ୍ରରୁ ଜଣାଯାଏ ଯେ ସମଗ୍ର ପୁରୀ ସହରର ଜମି ଶ୍ରୀ ଜଗନ୍ନାଥଙ୍କର ଏବଂ ଏଠାରେ ନିବାସ କରୁଥିବା ପ୍ରତ୍ୟେକ ଲୋକ ଜଗନ୍ନାଥଙ୍କ ରଥଯାତ୍ରା ସମୟରେ ରଥଟଣାରେ ଯୋଗ ଦେବାପାଇଁ ବାଧ୍ୟ ।

**ମଠ** —ଜଗନ୍ନାଥଙ୍କ ଦର୍ଶନ ନିମନ୍ତେ ଦେଶ ବିଦେଶରୁ ଯେଉଁ ଯାତ୍ରୀମାନେ ଆସନ୍ତି, ସେମାନଙ୍କୁ ବାସ ଦେଇ ଅତିଥି ସତ୍କାର କରିବା ଉଦ୍ଦେଶ୍ୟରେ ଅଧିକାଂଶ ମଠ ପ୍ରତିଷ୍ଠିତ ହୋଇଛି ।

**ଯାଗାଘର**—ପୁରୀରେ ବିଭିନ୍ନ ସାହିରେ ପ୍ରାୟ ଶହେରୁ ଅଧିକ ଯାଗାଘର (ବା ବୈଠକ ଘର, କ୍ଲବ) ଅଛି ଏବଂ ଏହି ସ୍ଥାନମାନଙ୍କରେ ସାହିର ମାଲି ମକଦ୍ଦମା ବିଚାର ଓ ଅନ୍ୟାନ୍ୟ ବିଷୟ ବିଚାର ସଙ୍ଗେ କୁସ୍ତି କସରତ୍, ସଙ୍ଗୀତ ଚର୍ଚ୍ଚା ମଧ୍ୟ ହୁଏ। ଠାକୁରଙ୍କ ରାମନବମୀ ଉତ୍ସବରେ ଏହି ଯାଗାଘରମାନଙ୍କରୁ "ସାହିଯାତ" ବାହାରେ; ନାନାପ୍ରକାର ଖେଳ, ଖଣ୍ଡାବୁଲା କୁସ୍ତି କସରତ୍ ପ୍ରଭୃତି ପ୍ରଦର୍ଶିତ ହୁଏ ।

**ସେବକସଂପ୍ରଦାୟ**—ବଡ଼ଦେଉଳରେ ବହୁ ପ୍ରକାର ସେବା ଅଛି । ସାଧାରଣତଃ ଛତିଶ ନିଯୋଗ (ନିୟୋଗ) ବୋଲି କୁହାଯାଉଥିଲେ ମଧ୍ୟ ଏହାଠାରୁ ବେଶି ସେବା ଥିବା ଦେଖାଯାଏ । କେତେକ ମୁଖ୍ୟ ସେବାର ନାମ ଦିଆଗଲା:—

| | | |
|---|---|---|
| ରାଜା | ଭିତର ଗରାବଡ଼ୁ | ବନ୍ଧାଣୀ |
| ଭଣ୍ଡାର କରଣ | ବାହାର ଗରାବଡ଼ୁ | ଚନ୍ଦରା |
| ଦେଉଳ କରଣ | ହଡ଼ପ ନାୟକ | ସିପୁଟି ମହାରଣା |
| ପରିଛା | କଟୁରିଆ ମୁଦୁଲି | ମାଦେଳିଆ |
| ଦଇତା ପଶୁପାଳକ | କର୍ପୁରଚନ୍ଦନ ଘଟୁଆରୀ | ମହୁରିଆ |
| ପାଣିଛଡ଼ା ପଣ୍ଡା | ବଇଠା ପାଳିଆ | ଶଙ୍ଖୁଆ |
| ଗ୍ରୁମୁ ଖୁଣ୍ଟିଆ | ସିଂହଦ୍ୱାର ପ୍ରତିହାରୀ | ଚନ୍ଦକାର |
| ଗୁଙ୍ଗଡ଼ାମେକାପ | ପଟ୍ଟସାଖା ପ୍ରତିହାରୀ | ଗୃପଦଲାଇ |
| ଅଖଣ୍ଡ ମେକାପ | ସୁନାନେନ୍ତ ସେବକ | ହଡ଼ପ ନାୟକ |
| ସୁଆରବଡ଼ୁ | ପୁରାଣ ପଣ୍ଡା ସେବକ | ବିମାନ ବଡ଼ୁ |
| ପନ୍ତି ବଡ଼ୁ | ମଣ୍ଡଣୀ ଖୁଣ୍ଟିଆ | ଦରପଣିଆ ସେବକ |
| ଶେଜଘର ମେକାପ | ହାନ୍ଦୋଳା ଆପଟ | ଯୋଗାଡ଼ମଜାସେବକ |
| ପାହାଡ଼ାଘର ମେକାପ | ଆଳଟି ସେବକ | ନାଚୁଣୀ |
| ସୁଦୁ ସୁଆର | ମହାଭୋଇ | ଘାଟ ସେବକ |

ଏହିସବୁ ନିଯୋଗକୁ ମୁଖ୍ୟଭାବରେ ଏହି କେତୋଟି ଶ୍ରେଣୀରେ ବିଭକ୍ତ କରାଯାଇଥାଏ ।

| | | |
|---|---|---|
| ପଣ୍ଡା | ପ୍ରତିହାରୀ | ତଡ଼ାଉ |
| ପଶୁପାଳକ | ବିମାନବଡ଼ୁ | ଦେଉଳକରଣ |
| ସୁପକାର (ସୁଆର) | ଦଇତା | ରାଜା |
| ଖୁଣ୍ଟିଆ | ଭିତର ଛେଉ | ମୁଦିରଥ |
| ଗରାବଡ଼ୁ | ମେକାପ | ଗରାବଡ଼ୁ |

**ପଞ୍ଚତୀର୍ଥ**—"ଜ୍ୟେଷ୍ଠ ଶୁକ୍ଳ ଦଶମୀ ଦିନ ପଞ୍ଚତୀର୍ଥ ବ୍ରତର ସଂକଳ୍ପ କରିବ । ପ୍ରଥମେ ମାର୍କଣ୍ଡ ପୋଖରୀରେ ଆଚମନ କରିବ । ମାର୍କଣ୍ଡେଶ୍ୱରଙ୍କୁ ନମସ୍କାର କରି ତୀର୍ଥସ୍ନାନର ଅନୁଜ୍ଞା ମାଗିବ । ତା ପରେ ବେଦୋକ୍ତ ପଞ୍ଚବାରୁଣ ମନ୍ତ୍ର ଏବଂ ପାଦ ରାବୃତ ଅଘମର୍ଷଣ ସୁକ୍ତ ଦ୍ୱାରା ସ୍ନାନକରି ତା'ପରେ ଜଳରୁ ଆସି ଧୌତବସ୍ତ୍ର ଓ ତିଳକ ପରିଧାନ

କରିବା ପରେ ମାର୍କଣ୍ଡେଶ୍ୱରଙ୍କୁ ନମସ୍କାର କରିବ । ତା'ପରେ ମାର୍କଣ୍ଡର ଦକ୍ଷିଣରେ ଥିବା ଅକ୍ଷୟବଟବୃକ୍ଷ ପାଖକୁ ଯିବ । ଅକ୍ଷୟବଟଙ୍କୁ ପ୍ରଦକ୍ଷିଣ କରି ନମସ୍କାର କରିବ । ତା ମୂଳରେ ଥିବା ଭଗବାନ ଜନାର୍ଦ୍ଦନଙ୍କୁ ପୂଜା କରିବ । ନାରାୟଣଙ୍କ ଆଗରେ ଥିବା ଗରୁଡ଼ଙ୍କୁ ନମସ୍କାର କରିବ । ମନ୍ଦିର ଭିତରେ ପଶି ତିନି ଥର ଭଗବାନଙ୍କୁ ପ୍ରଦକ୍ଷିଣ କରିବ । ଭଗବାନଙ୍କୁ ପୂଜା କରିବା । ତିନି ଠାକୁରଙ୍କୁ ପ୍ରଣାମ କରି ସାଗର ସ୍ନାନ ପାଇଁ ଜଗନ୍ନାଥଙ୍କଠାରେ ପ୍ରାର୍ଥନା କରିବ । ତା'ପରେ ଠାକୁରଙ୍କ ପାଖରେ ଥିବା ଉଗ୍ରସେନଙ୍କୁ ପ୍ରାର୍ଥନା କରିବ । ତା'ପରେ ସାଗର ଆଡ଼କୁ ଯିବ । ତୀର୍ଥରାଜ ପାଖରେ ଠିଆହୋଇ ପ୍ରାର୍ଥନା କରିବ । ତା' ପରେ ହାତ ପାଦ ଧୋଇ ଆଚମନ କରିବ । ପୂର୍ବମୁଖ ହୋଇ କୁଶାସନରେ ବସିବ । ଆଗରେ ଚାରିକୋଣରେ ଏକ ମଣ୍ଡଳ କାଟିବ । ଚାରି ଦ୍ୱାର କରିବ । ଏଦ୍ୱାର ଚାରିକୋଣରେ ଚାରିଟା ସ୍ୱସ୍ତିକ, ମଝିରେ ସୁନ୍ଦର ଅଷ୍ଟଦଳ ପଦ୍ମ ଲେଖିବ । ଅଙ୍ଗନ୍ୟାସ, କରନ୍ୟାସ ପ୍ରଭୃତି କରି ମୂଳମନ୍ତ୍ରରେ ପଚିଶି ଥର ପ୍ରାଣାୟାମଇତ୍ୟ କରିବ । ତାପରେ ଦିବ୍ୟ କବଚ ବନ୍ଧନ କରିବ । ଷୋଡ଼ଶ ଉପଚାରରେ ଭଗବାନଙ୍କୁ ପୂଜା କରି ମଣ୍ଡଳ ଭିତରେ ତାଙ୍କୁ ଆବାହନ କରି ଅର୍ଚ୍ଚନା କରିବ । ସୁଦର୍ଶନଙ୍କୁ ପୂଜା କରିବ । ସମୁଦ୍ର ପାଣି ପାଖକୁ ଯାଇ ତଳେ ଦୁଇଜାନୁ ପକାଇ ତୀର୍ଥରାଜଙ୍କୁ ପ୍ରାର୍ଥନା କରିବ । ତା'ପରେ ଜଳଭିତରେ ପଶିବ । ତୀର୍ଥରାଜଙ୍କୁ ପଞ୍ଚାମୃତ ପାଦ୍ୟାଦି ସମ୍ବୃତ୍ତ ବରୁଣ ମନ୍ତ୍ରରେ ଆବାହନ କରିବ । ଅନ୍ତଃଶୁଦ୍ଧି ପାଇଁ ମନ୍ତ୍ରପୂତ ଜଳ ପାନ କରି ଆଚମନ କରିବ । ବାହ୍ୟ ଶୁଦ୍ଧି ପାଇଁ କୁଶ ପାଣିରେ ଗାତ୍ର ମାର୍ଜନା କରିବ । ଅନ୍ତର୍ବହିଃ ଶୁଦ୍ଧି ପାଇଁ ମନ୍ତ୍ରପୂତ ତିନିଅଞ୍ଜୁଳି ପାଣି ମୁଣ୍ଡରେ ସିଞ୍ଚିବ । ସିନ୍ଧୁ ସ୍ନାନରେ ଜଳ ଭିତରେ ଜପ କରିବା ନିଷେଧ । ତା' ପରେ ତିନି ଥର ଜଳରେ ବୁଡ଼ିବ । ଜଳରୁ ଉଠି ଆଚମନ କରିବ । ତୀର୍ଥରାଜଙ୍କୁ ନମସ୍କାର କରିବ । ଆଉ ଥରେ ଆଚମନ କରି ଉପରକୁ ଆସିବ । ମୌନ ଭାବରେ ଶୁଖିଲା ଲୁଗା ପିନ୍ଧିବ । ତିଳକ କରିବ । ଦେବତା ପିତୃଗଣଙ୍କୁ ତର୍ପଣ କରିବ । ତା'ପରେ ଉତ୍ତରକୁ ମୁଖ କରି ପୂର୍ବ ପରି ମଣ୍ଡଳ କାଟି ଭଗବାନଙ୍କୁ ପୂଜା କରିବ । ଭଗବାନଙ୍କୁ ଧୂପ, ଦୀପ, ଚନ୍ଦନ, ଫୁଲ ଅର୍ପଣ କରିବ । ପୂଜା କରିବ । ତା'ପରେ ଶହେ ଆଠ ମୂଳମନ୍ତ୍ର ସ୍ତବ ପାଠ ପ୍ରଦକ୍ଷିଣ କରି ଭଗବାନଙ୍କୁ ପ୍ରାର୍ଥନା କରିବ । ସମୁଦ୍ର-ଠାରୁ ଇନ୍ଦ୍ରଦ୍ୟୁମ୍ନ ଆଡ଼କୁ ଯିବ । ସେପାଖରେ ଥିବା ନୃସିଂହ ନାଥଙ୍କୁ ଅନୁଜ୍ଞା ମାଗିବ । ପୋଖରୀତଟକୁ ଯାଇ ଆଚମନ କରିବ । ଶୌଚକ୍ରିୟା କରିବ । ଇନ୍ଦ୍ରଦ୍ୟୁମ୍ନ ସରୋବରକୁ ପ୍ରାର୍ଥନା କରିବ । ତା'ପରେ ଜଳରେ ପଶି ପଞ୍ଚବାରଣ ମନ୍ତ୍ର ପାଠ କରି କରି ସ୍ନାନ କରିବ ଜଳ ଭିତରେ ରହି ତିନିଥର ଅଘମର୍ଷଣ ସୂକ୍ତ ପାଠ କରିବ । ତିନିଥର ମୁଣ୍ଡ ବୁଡ଼ାଇବ । ବିଷ୍ଣୁ ଗାୟତ୍ରୀ ଜପ କରିବ । ନରସିଂହ ଆକୃତି ଭଗବାନ ବିଷ୍ଣୁଙ୍କୁ ସ୍ମରଣ କରିବ । ଦେବତା, ଋଷି ଓ ପିତୃମାନଙ୍କ ଉଦ୍ଦେଶ୍ୟରେ ତର୍ପଣ କରିବ । ସେଠାରୁ ନୃସିଂହମନ୍ଦିରକୁ ଯିବ । ଆଥର୍ବଣ ମନ୍ତ୍ରରେ ଠାକୁରଙ୍କୁ ଅର୍ଚ୍ଚନା କରିବ । ନାନାପ୍ରକାର ଉପଚାର ସୁବାସ

ଫୁଲ ଓ ଯବାଫୁଲ ଦ୍ୱାରା ପୂଜା କରିବ । କର୍ପୂର ଗୋଳା ଚନ୍ଦନ ସର୍ବାଙ୍ଗରେ ଲଗି କରିବ । ନାନାପ୍ରକାର ପିଠା, ଫଳ, ଶାକର ଓ ଦହି ମିଶା ଶାଳିଅନ୍ନ ପୂଜା କରିବ ।

ପାଞ୍ଚଦିନରେ ପଞ୍ଚତୀର୍ଥ ଶେଷ କରିବ । ପୂର୍ଣ୍ଣିମା ଦିନ ସ୍ନାନଯାତ୍ରା ଦର୍ଶନ କରିବ ।

(୧) ମାର୍କଣ୍ଡେୟ ପୋଖରୀରେ ସ୍ନାନ ଓ ମାର୍କଣ୍ଡେୟ ମହାଦେବଙ୍କ ଦର୍ଶନ । (୨) ଅକ୍ଷୟବଟ ଓ ତା ମୂଳରେ ଥିବା ବଟେଶ୍ୱରଙ୍କୁ ଦର୍ଶନ । (୩) ମନ୍ଦିର ଭିତରେ ଗରୁଡ଼ ଓ ଠାକୁରମାନଙ୍କୁ ଦର୍ଶନ । (୪) ଉଗ୍ରସେନ ଦର୍ଶନ କରି ସାଗର ସ୍ନାନ । (୫) ଇନ୍ଦ୍ରଦ୍ୟୁମ୍ନ ସ୍ନାନ ଓ ନୃସିଂହ ଦର୍ଶନ ଏହି ପାଞ୍ଚଟିକୁ ପଞ୍ଚତୀର୍ଥ କହନ୍ତି ।

ବ୍ରହ୍ମପୁରାଣରେ ଏହି ସମ୍ବନ୍ଧରେ ଲେଖାଅଛି ।

ମାର୍କଣ୍ଡେୟାଽବଟକୃଷ୍ଣୋ ରୌହିଣେୟୋ ମହୋଦଧିଃ
ଇନ୍ଦ୍ରଦ୍ୟୁମ୍ନ ସରଶ୍ଚୈବ ପଞ୍ଚତୀର୍ଥ ବିଧି ସ୍ମୃତଃ ।

୧ । ମାର୍କଣ୍ଡେୟ ଋଷିଙ୍କ ଦ୍ୱାରା ଖୋଳା ହୋଇଥିବା ଅବଟ ବା (ଗାଡ଼)ରେ ସ୍ନାନ । ୨ । କୃଷ୍ଣ ଅର୍ଥାତ୍ ଅକ୍ଷୟବଟ ନ୍ୟଗ୍ରୋଧାକୃତି ବିଷ୍ଣୁ ଅର୍ଥାତ୍ ଜଗନ୍ନାଥ । ୩। ରୋହିଣେୟ ଅର୍ଥାତ୍ ବଳରାମ । ୪ । ସମୁଦ୍ର । (୫) ଇନ୍ଦ୍ରଦ୍ୟୁମ୍ନ ପୁଷ୍କରିଣୀରେ ସ୍ନାନ ।

ଦ୍ୱୌ ଦେବୌ ତ୍ରିଣି ତୀର୍ଥାନି ପଞ୍ଚତୀର୍ଥ ଇତି ସ୍ମୃତଃ ।

ଜଗନ୍ନାଥ, ବଳଭଦ୍ର ଦର୍ଶନ ; ମାର୍କଣ୍ଡେୟ ପୁଷ୍କରିଣୀ, ସମୁଦ୍ର ଓ ଇନ୍ଦ୍ରଦ୍ୟୁମ୍ନ ପୁଷ୍କରିଣୀରେ ସ୍ନାନ ।

ହଲଧରକୃତ ସ୍ମୃତି ଦର୍ପଣରେ ଲେଖାଅଛି—

ମାର୍କଣ୍ଡେୟା-ବଟେଽକୃଷ୍ଣେ ରୋହିଣ୍ୟାଂ ଚ ମହୋର୍ଦଧୌ
ଇନ୍ଦ୍ରଦ୍ୟୁମ୍ନସରେଃ ସ୍ନାତ୍ୱା ପୁନର୍ଜନ୍ମ ନ ବିଦ୍ୟତେ ।

(୧) ମାର୍କଣ୍ଡେୟ ପୋଖରୀରେ ସ୍ନାନ । (୨) ଅକୃଷ୍ଣେ, ଅର୍ଥାତ୍ ଶ୍ୱେତ ଗଙ୍ଗାରେ ସ୍ନାନ । (୩) ରୋହିଣୀକୁଣ୍ଡରେ ସ୍ନାନ । (୪) ସମୁଦ୍ର । (୫) ଇନ୍ଦ୍ରଦ୍ୟୁମ୍ନ ପୁଷ୍କରିଣୀରେ ସ୍ନାନ ।

# ପଞ୍ଚଦ୍ୱାରପାଳ(ମହାଦେବ)

ଶ୍ରୀ ମଦନମୋହନଙ୍କ ସହିତ ଯାତ୍ରାବେଳେ ଲୋକନାଥ, ମାର୍କଣ୍ଡେଶ୍ୱର, ଯମେଶ୍ୱର, କପାଳମୋଚନ, ନୀଳକଣ୍ଠ—ଏ ପାଞ୍ଚ ମହାଦେବଙ୍କ ବିଜେ ମୂର୍ତ୍ତି ବିଜେ କରନ୍ତି ।

**ଲୋକନାଥ—** ସୀତାଙ୍କୁ ଉଦ୍ଧାର କରିବାପାଇଁ ରାମଚନ୍ଦ୍ର ଲଙ୍କାକୁ ଯିବା ବାଟରେ ଓଡ଼ିଶାକୁ ଆସିଥିଲେ । ସେ ନୀଳାଚଳର ପଶ୍ଚିମରେ ଥିବା ଶବରପଲ୍ଲୀରେ ରହିଥିଲେ । ରାମଚନ୍ଦ୍ର ପ୍ରତିଦିନ ଶିବଲିଙ୍ଗ ପୂଜା କରନ୍ତି । ଏଠାରେ ଶିବଲିଙ୍ଗ ନ ମିଳିବାରୁ ଶବରମାନେ ଦେଇଥିବା ଗୋଟିଏ ଲାଉକୁ ଶିବଲିଙ୍ଗ ଜ୍ଞାନ କରି ପୂଜା କରୁଥିଲେ । ଲାଉଦ୍ୱାରା ଶିବଲିଙ୍ଗପୂଜା ନିର୍ବାହ ହୋଇଥିଲା ବୋଲି ଲୋକେ ଏ ମହାଦେବଙ୍କୁ ଲାଉକନାଥ ବା ଲୋକନାଥ କହନ୍ତି । ଶିବରାତ୍ରି ଦିନ ଏଠାରେ ବଡ଼ମେଳା ହୁଏ । ବଡ଼ଦେଉଳଠାରୁ ପଶ୍ଚିମକୁ ପ୍ରାୟ ଦୁଇ ମାଇଲ ଦୂରରେ ଲୋକନାଥ ମନ୍ଦିର ଅଛି । ଶଙ୍କରାନନ୍ଦ ମଠର ସନ୍ନ୍ୟାସୀଙ୍କ ତତ୍ତ୍ୱାବଧାନରେ ମନ୍ଦିର ପରିଚାଳିତ ହେଉଅଛି ।

**ମାର୍କଣ୍ଡେଶ୍ୱର—** ଯେତେବେଳେ ଜଗତ ପ୍ରଳୟଜଳରେ ଲୀନ ହେଲା, ସେତେବେଳେ ମାର୍କଣ୍ଡେୟ ମୁନି ପ୍ରଳୟ ଜଳରେ ଭାସିବାକୁ ଲାଗିଲେ । ବହୁତ ସମୟ ଏହି ସମୁଦ୍ର ଜଳରେ ଭାସି ଭାସି କୌଣସି ଆଶ୍ରୟ ପାଇଲେ ନାହିଁ । ଶେଷରେ ଶ୍ରୀପୁରୁଷୋତ୍ତମ କ୍ଷେତ୍ରରେ ସେ ଏକ ବଟ ବୃକ୍ଷ ଦେଖିଲେ । ସେହି ବଟବୃକ୍ଷ ମୂଳକୁ ଯିବାପାଇଁ ସେ ଚେଷ୍ଟା କରୁଥିବା ବେଳେ ବଟବୃକ୍ଷ ମୂଳରେ ଜଣେ ବାଳକ ଶୋଇଥିବା ଦେଖିଲେ । ସେ ବାଳକ ମାର୍କଣ୍ଡେୟ ମୁନିଙ୍କୁ ଦେଖି କହିଲେ—"ହେ ମାର୍କଣ୍ଡେୟ ! ତୁମେ ମୋ ପାଖକୁ ଆସି ସବୁ ଦୁଃଖ ଦୂର କର" । ଶ୍ରୀଭଗବାନ୍ ଶଙ୍ଖ, ଚକ୍ର, ଗଦା, ପାଣି ହୋଇ ବୃକ୍ଷ ମୂଳରେ ବାଳକ ରୂପରେ ଅବସ୍ଥାନ କରିଥିଲେ । ନାରାୟଣଙ୍କୁ ମାର୍କଣ୍ଡେୟ ମୁନି ପ୍ରାର୍ଥନା କଲେ । ସେତେବେଳେ କଳ୍ପବଟର ଊର୍ଦ୍ଧ୍ୱଦେଶରେ ଗୋଟିଏ ପତ୍ର ଉପରେ ସଂସାରର କାଳାତ୍ମା ଭଗବାନ୍ ବାଳକ ସଦୃଶ୍ୟ ଶୟନ କରିଥିଲେ । ସେତେବେଳେ ଭଗବାନଙ୍କର ମୁଖ ବିସ୍ତୃତ ଥିଲା । ବାଳକଙ୍କର ବଚନ ଶୁଣି ପାରି ମାର୍କଣ୍ଡେୟ ବଟଗଛ ମୂଳକୁ ଯାଇ ଗଛରେ ଚଢ଼ିଲେ । ଉପରେ ବାଳକଙ୍କ ମୁଖ ଦର୍ଶନ କରି ତାଙ୍କର ମୁଖ ଭିତରେ ପ୍ରବେଶ କଲେ । ଚତୁର୍ଦ୍ଦଶ ଭୁବନ, ଦେବ, ରାକ୍ଷସ, ବ୍ରହ୍ମା ଓ ଋଷି ପ୍ରଭୃତି ସମସ୍ତ ବ୍ରହ୍ମାଣ୍ଡର ଜନକ ମାର୍କଣ୍ଡେୟ ମୁନି ବାଳକ କୁକ୍ଷି ଭିତରେ ଦର୍ଶନ କଲେ । ମୁନି ପ୍ରଭୁଙ୍କର କୁକ୍ଷି ଭିତରେ ଥାଇ ଚଉଦବ୍ରହ୍ମାଣ୍ଡ ଦେଖିଥିଲେ ମଧ୍ୟ ଅନ୍ତ ଦର୍ଶନ କରିପାରିଲେ ନାହିଁ । ତା'ପରେ କୁକ୍ଷିରୁ ବାହାର ହୋଇ ଆଉଥରେ ଭଗବାନଙ୍କୁ ଦର୍ଶନ କଲେ ।

ମୁନି ନାରାୟଣଙ୍କୁ ପ୍ରଣାମକରି କହିଲେ—"ମହାପ୍ରଳୟ କାଳରେ ସୃଷ୍ଟି ଆପଣଙ୍କ କୁକ୍ଷି ଦେଶରେ ଅବସ୍ଥାନକରେ ତୁମ୍ଭର ମାୟା ଦୁର୍ଭେଦ୍ୟ । ତାହା ମୁଁ କିପରି ଜାଣିବି ?" ଭଗବାନ କହିଲେ, "ଏହି କ୍ଷେତ୍ର ମୋର ଅତି ପ୍ରିୟ । ଏଠାରେ ସୃଷ୍ଟି ପ୍ରଳୟ ଓ ସଂସୃତି ନାହିଁ । ଯେଉଁ ବ୍ୟକ୍ତି ଏହି ପୁରୁଷୋତ୍ତମ କ୍ଷେତ୍ରରେ ବାସ କରେ, ତାହାର ପୁନର୍ଜନ୍ମ ଲଭ ନାହିଁ । ଭଗବାନଙ୍କଠାରୁ ଏକଥା ଶୁଣି ମାର୍କଣ୍ଡେୟ ମୁନି ପୁରୁଷୋତ୍ତମ କ୍ଷେତ୍ରରେ ବାସ କରିବା ସ୍ଥିର କଲେ । ଭଗବାନ ପୁଣି କହିଲେ, ମହାପ୍ରଳୟ ପର୍ଯ୍ୟନ୍ତ ମୁଁ ଏହି ମୁକ୍ତିସାଧକ କ୍ଷେତ୍ରରେ ରହିଥିବି । ମହାପ୍ରଳୟ ପରେ ତୁମ୍ଭ ପାଇଁ ଗୋଟିଏ ନିତ୍ୟତୀର୍ଥ ରଚନା କରିବି । ଏହି ତୀର୍ଥର ତୀରରେ ତପସ୍ୟା କରି ଯେ ମୋର ଦ୍ୱିତୀୟତନୁ ଯେ ଶିବ ତାଙ୍କୁ ଆରାଧନା କରିବ. ସେ ନିଶ୍ଚୟ ମୃତ୍ୟୁକୁ ଜୟ କରିବ ।" ଏହି ବର ଭଗବାନଙ୍କଠାରୁ ପାଇ ବଟବୃକ୍ଷର ବାୟୁ କୋଣରେ ହରିଙ୍କର ଗୋଟିଏ ଗର୍ତ୍ତ ତିଆରି କଲେ । ସେ ପାଖରେ ରହି ମହାଦେବଙ୍କୁ ପୂଜା କଲେ । ଏହାଦ୍ୱାରା ମାର୍କଣ୍ଡେୟ ମୁନି ମୃତ୍ୟୁକୁ ଜୟକରିଥିଲେ । ଏହି ଗର୍ତ୍ତ ମାର୍କଣ୍ଡେୟ ପୁଷ୍କରଣୀ ନାମରେ ଖ୍ୟାତ । ଏଠାରେ ସ୍ନାନ କରି ମହାଦେବଙ୍କୁ ଦର୍ଶନ କଲେ ଅଶ୍ୱମେଧ ଯଜ୍ଞର ଫଳ ପ୍ରାପ୍ତ ହୁଏ ।

**କପାଳମୋଚନ**—ଥରେ କ୍ରୋଧରେ ଶିବ ବ୍ରହ୍ମାଙ୍କର ପଞ୍ଚମ ମୁଣ୍ଡ ଛେଦନ କଲେ । ସେ ମୁଣ୍ଡ ତାଙ୍କ ହାତରୁ ଖସିଲା ନାହିଁ । ଶିବ ଅତି ବ୍ୟସ୍ତ ହେଲେ । ସେ ମୁଣ୍ଡକୁ ହାତରେ ଧରି ସେ ସମସ୍ତ ବ୍ରହ୍ମାଣ୍ଡ ବୁଲିଲେ । ମହାଦେବ ଶ୍ରୀକ୍ଷେତ୍ର ଆସିବାକ୍ଷଣି ତାଙ୍କ ହାତରୁ ମୁଣ୍ଡଟି ଖସି ପଡ଼ିଲା । ସେହିଦିନଠାରୁ ମହାଦେବ କପାଳମୋଚନ ନାମରେ ଏଠାରେ ରହିଲେ । ଶଙ୍ଖର ଦ୍ୱିତୀୟାବର୍ତ୍ତରେ କପାଳମୋଚନ ମନ୍ଦିର ଅଛି ।

**ଯମେଶ୍ୱର**—ପୁରୁଷୋତ୍ତମ କ୍ଷେତ୍ରରେ ଯମଙ୍କର ଆଧିପତ୍ୟ ନାହିଁ । ଯମଙ୍କ ପ୍ରଭାବରୁ ଯମେଶ୍ୱର ମହାଦେବ କ୍ଷେତ୍ରକୁ ରକ୍ଷା କରୁଛନ୍ତି ।

**ନୀଳକଣ୍ଠେଶ୍ୱର**—ନୀଳକଣ୍ଠେଶ୍ୱର ମହାଦେବ ମନ୍ଦିର ଇନ୍ଦ୍ରଦ୍ୟୁମ୍ନ ପୁଷ୍କରଣୀ କୂଳରେ ଅବସ୍ଥିତ । ଶଙ୍ଖକ୍ଷେତ୍ର (ବା ପୁରୀକ୍ଷେତ୍ରର) ଅଗ୍ରଭାଗରେ ନୀଳକଣ୍ଠ ଅବସ୍ଥାନ କରୁଛନ୍ତି ।

**ଅନ୍ତର୍ବେଦୀ**—ସମୁଦ୍ର କୂଳଠାରୁ ଅକ୍ଷୟବଟର ମୂଳ ପର୍ଯ୍ୟନ୍ତ ଏହି ସ୍ଥାନକୁ ଭଗବାନଙ୍କର ଅନ୍ତର୍ବେଦୀ ବୋଲଯାଏ । ଅନ୍ତର୍ବେଦୀ ଭିତରେ ଯେ କୌଣସି ସ୍ଥାନରେ ମୃତ୍ୟୁ ହେଲେ ଲୋକ ସ୍ୱର୍ଗ ଲାଭ କରେ ।

**ମାଉସୀମା ବା ଅର୍ଦ୍ଧଶନୀ ଦେବୀ**—ମାଉସୀମାଙ୍କୁ ଅର୍ଦ୍ଧଶନୀ ଦେବୀ ବୋଲିକହନ୍ତି । ଗୁଣ୍ଡିଚାବାଡ଼ି ଓ ବଡ଼ଦେଉଳ ମଝିରେ ବଡ଼ଦାଣ୍ଡର ପୂର୍ବ କଡ଼ରେ

ମାଉସୀମାଆଙ୍କ କ୍ଷୁଦ୍ର ଦେଉଳଟି ଅବସ୍ଥିତ । ମହାପ୍ରଳୟକାଳରେ ପ୍ରଳୟର ଅର୍ଦ୍ଧାଂଶ ଜଳ ଏହି ଦେବୀ ଅଶନ (ଭକ୍ଷ) କରିଥିବା ହେତୁ ଏହାଙ୍କ ନାମ ଅର୍ଦ୍ଧାଶନୀ ହୋଇଛି । ରଥଯାତ୍ରା ସମୟରେ ଠାକୁରମାନେ ଗୁଣ୍ଡିଚାବାଡ଼ିକି ବିଜେ ହେଲାବେଳେ ଏହି ମନ୍ଦିର ଆଗରେ କିଛି ସମୟ ରହନ୍ତି । ଏଠାରେ ପୋଡ଼ପିଠା ପ୍ରଭୃତି ଭୋଗ ହୁଏ । ଠାକୁରମାନେ ବାଟରେ ମଉସୀମାଆଙ୍କ ଘରେ ବିଶ୍ରାମ ନେଇ ଜଳପାନ କରି ପୁଣି ଯାତ୍ରା ଆରମ୍ଭ କରନ୍ତି । ଏହି ଜନଶ୍ରୁତି ଅନୁସାରେ ଏହି ଭୋଗ ହୁଏ ।

**ଗୁଣ୍ଡିଚା ମନ୍ଦିର**—ଗୁଣ୍ଡିଚା ମନ୍ଦିରରେ ରଥଯାତ୍ରା ସମୟରେ ଠାକୁରମାନେ ସାତଦିନ ଅବସ୍ଥାନ କରନ୍ତି । ପୂର୍ବେ ଏହି ସ୍ଥାନରେ ଚତୁର୍ଦ୍ଧାମୂର୍ତ୍ତିଙ୍କର ଆବିର୍ଭାବ ହୋଇଥିଲା । କେହି କେହି କହନ୍ତି, ଇନ୍ଦ୍ରଦ୍ୟୁମ୍ନଙ୍କ ରାଣୀ ଗୁଣ୍ଡିଚା-ଦେବୀଙ୍କ ନାମାନୁସାରେ ରଥଯାତ୍ରାର ନାମ ଗୁଣ୍ଡିଚାଯାତ୍ରା ହୋଇଛି । ଏହି ମନ୍ଦିରରେ ଚାରୋଟି ଭାଗ ଅଛି; ବିମାନ, ଜଗମୋହନ, ନାଟମନ୍ଦିର, ଭୋଗମଣ୍ଡପ । ରଥଯାତ୍ରା ସମୟରେ ଏଠାରେ ଠାକୁରମାନଙ୍କର ଭୋଗ ରନ୍ଧା ହୁଏ । ମନ୍ଦିରର ଚାରିଆଡ଼େ ବଡ଼ ପଥର ପାଚେରି ଅଛି ।

ପୂର୍ବେ ଶାସନୀ ବ୍ରାହ୍ମଣମାନେ ଗୁଣ୍ଡିଚାବାଡ଼ିରେ ରନ୍ଧାହେଉଥିବା ଭୋଗକୁ ମହାପ୍ରସାଦ ବୋଲି ଗ୍ରହଣ କରୁ ନ ଥିଲେ । ଠାକୁରମାନେ ବଡ଼ଦେଉଳରେ ରତ୍ନସିଂହାସନ ଉପରେ ବସିଥିବା ସମୟରେ ଭୋଗ ବିମଳାଙ୍କୁ ସମର୍ପଣ କଲା ପରେ ଏହି ଭୋଗ ମହାପ୍ରସାଦ ହୁଏ, ଅନ୍ୟଥା ନୁହେଁ । ଏହି ଯୁକ୍ତି ଏଠାରେ ଅବତାରଣା କରାଯାଏ । ବର୍ତ୍ତମାନ ଆଉ ସେ ଆପତ୍ତି ଦେଖାଯାଉ ନାହିଁ ।

**ଇନ୍ଦ୍ରଦ୍ୟୁମ୍ନ ପୁଷ୍କରିଣୀ**—ଗୁଣ୍ଡିଚା ମନ୍ଦିରର ଉତ୍ତରକୁ ପ୍ରାୟ ପାଞ୍ଚ ଏକର ଜମି ଉପରେ ଏହି ପ୍ରାଚୀନ ପୁଷ୍କରିଣୀଟି ଅବସ୍ଥିତ । ଇନ୍ଦ୍ରଦ୍ୟୁମ୍ନ ସହସ୍ରେ ଅଶ୍ୱମେଧ ଯଜ୍ଞ କରିବା ପରେ ଅସଂଖ୍ୟ ଗୋଦାନ କରିଥିଲେ । ଏହି ଗୋରୁ-ମାନଙ୍କର ଖୁରା ବାଜି ଭୂମି ଖୋଲା ହୋଇଯିବାରୁ ଏହି ପୁଷ୍କରିଣୀଟି ହୋଇଗଲା । ମନ୍ଦିର ନିର୍ମାଣ କରିବା ସମୟରେ ଇନ୍ଦ୍ରଦ୍ୟୁମ୍ନ ମହାରାଜା ବଡ଼ ପଥର ବିଭିନ୍ନ ସ୍ଥାନରୁ ଅଣାଇଥିଲେ । ଯେଉଁସବୁ ଲୋକ ପିଠିରେ ପଥରଗୁଡ଼ିକ ଆଣିଥିଲେ, ସେମାନେ କୂର୍ମ ପାଲଟି ଗଲେ ଏବଂ ସେମାନେ ଏହି ପୋଖରୀ ଭିତରେ ରହିଛନ୍ତି । ପୃଥିବୀରେ ଏମାନେ ସର୍ବପ୍ରାଚୀନ ଜୀବ ଥିବାର ମହାଭାରତର ବନପର୍ବରୁ ଜଣାଯାଏ । ଏହି କୂର୍ମମାନେ ଇନ୍ଦ୍ରଦ୍ୟୁମ୍ନଙ୍କୁ ଚିହ୍ନିବାରୁ ଇନ୍ଦ୍ରଦ୍ୟୁମ୍ନ ସ୍ୱଦେହରେ ସ୍ୱର୍ଗକୁ ଗମନ କରିଥିଲେ ।

ମାଉସୀମାଆଙ୍କ କ୍ଷୁଦ୍ର ଦେଉଳଟି ଅବସ୍ଥିତ । ମହାପ୍ରଳୟକାଳରେ ପ୍ରଳୟର ଅର୍ଦ୍ଧାଂଶ ଜଳ ଏହି ଦେବୀ ଅଶନ (ଭକ୍ଷ) କରିଥିବା ହେତୁ ଏହାଙ୍କ ନାମ ଅର୍ଦ୍ଧାଶନୀ ହୋଇଛି । ରଥଯାତ୍ରା ସମୟରେ ଠାକୁରମାନେ ଗୁଣ୍ଡିଚାବାଡ଼ିକି ବିଜେ ହେଲାବେଳେ ଏହି ମନ୍ଦିର ଆଗରେ କିଛି ସମୟ ରହନ୍ତି । ଏଠାରେ ପୋଡ଼ପିଠା ପ୍ରଭୃତି ଭୋଗ ହୁଏ । ଠାକୁରମାନେ ବାହୁଡ଼ାରେ ମାଉସୀମାଆଙ୍କ ଘରେ ବିଶ୍ରାମ ନେଇ ଜଳପାନ କରି ପୁଣି ଯାତ୍ରା ଆରମ୍ଭ କରନ୍ତି । ଏହି ଜନଶ୍ରୁତି ଅନୁସାରେ ଏହି ଭୋଗ ହୁଏ ।

**ଗୁଣ୍ଡିଚା ମନ୍ଦିର**—ଗୁଣ୍ଡିଚା ମନ୍ଦିରରେ ରଥଯାତ୍ରା ସମୟରେ ଠାକୁରମାନେ ସାତଦିନ ଅବସ୍ଥାନ କରନ୍ତି । ପୂର୍ବେ ଏହି ସ୍ଥାନରେ ଚତୁର୍ଦ୍ଧାମୂର୍ତ୍ତିଙ୍କର ଆବିର୍ଭାବ ହୋଇଥିଲା । କେହି କେହି କହନ୍ତି, ଇନ୍ଦ୍ରଦ୍ୟୁମ୍ନଙ୍କ ରାଣୀ ଗୁଣ୍ଡିଚା-ଦେବୀଙ୍କ ନାମାନୁସାରେ ରଥଯାତ୍ରାର ନାମ ଗୁଣ୍ଡିଚାଯାତ୍ରା ହୋଇଛି । ଏହି ମନ୍ଦିରରେ ଚାରୋଟି ଭାଗ ଅଛି; ବିମାନ, ଜଗମୋହନ, ନାଟମନ୍ଦିର, ଭୋଗମଣ୍ଡପ । ରଥଯାତ୍ରା ସମୟରେ ଏଠାରେ ଠାକୁରମାନଙ୍କର ଭୋଗ ରନ୍ଧା ହୁଏ । ମନ୍ଦିରର ଚାରିଆଡ଼େ ବଡ଼ ପଥର ପାଚେରି ଅଛି ।

ପୂର୍ବେ ଶାସନୀ ବ୍ରାହ୍ମଣମାନେ ଗୁଣ୍ଡିଚାବାଡ଼ିରେ ରନ୍ଧାହେଉଥିବା ଭୋଗକୁ ମହାପ୍ରସାଦ ବୋଲି ଗ୍ରହଣ କରୁ ନ ଥିଲେ । ଠାକୁରମାନେ ବଡ଼ଦେଉଳରେ ରତ୍ନସିଂହାସନ ଉପରେ ବସିଥିବା ସମୟରେ ଭୋଗ ବିମଳାଙ୍କୁ ସମର୍ପଣ କଲା ପରେ ଏହି ଭୋଗ ମହାପ୍ରସାଦ ହୁଏ, ଅନ୍ୟଥା ନୁହେଁ । ଏହି ଯୁକ୍ତି ଏଠାରେ ଅବତାରଣା କରାଯାଏ । ବର୍ତ୍ତମାନ ଆଉ ସେ ଆପତ୍ତି ଦେଖାଯାଉ ନାହିଁ ।

**ଇନ୍ଦ୍ରଦ୍ୟୁମ୍ନ ପୁଷ୍କରିଣୀ**—ଗୁଣ୍ଡିଚା ମନ୍ଦିରର ଉତ୍ତରକୁ ପ୍ରାୟ ପାଞ୍ଚ ଏକର ଜମି ଉପରେ ଏହି ପ୍ରାଚୀନ ପୁଷ୍କରିଣୀଟି ଅବସ୍ଥିତ । ଇନ୍ଦ୍ରଦ୍ୟୁମ୍ନ ସହସ୍ରେ ଅଶ୍ୱମେଧ ଯଜ୍ଞ କରିବା ପରେ ଅସଂଖ୍ୟ ଗୋଦାନ କରିଥିଲେ । ଏହି ଗୋରୁ-ମାନଙ୍କର ଖୁରା ବାଜି ଭୂମି ଖୋଳା ହୋଇଯିବାରୁ ଏହି ପୁଷ୍କରିଣୀଟି ହୋଇଗଲା । ମନ୍ଦିର ନିର୍ମାଣ କରିବା ସମୟରେ ଇନ୍ଦ୍ରଦ୍ୟୁମ୍ନ ମହାରାଜା ବଡ଼ ପଥର ବିଭିନ୍ନ ସ୍ଥାନରୁ ଅଣାଇଥିଲେ । ଯେଉଁସବୁ ଲୋକ ପିଠିରେ ପଥରଗୁଡ଼ିକ ଆଣିଥିଲେ, ସେମାନେ କୂର୍ମ ପାଲଟି ଗଲେ ଏବଂ ସେମାନେ ଏହି ପୋଖରୀ ଭିତରେ ରହିଛନ୍ତି । ପୃଥିବୀରେ ଏମାନେ ସର୍ବପ୍ରାଚୀନ ଜୀବ ଥିବାର ମହାଭାରତର ବନପର୍ବରୁ ଜଣାଯାଏ । ଏହି କୂର୍ମମାନେ ଇନ୍ଦ୍ରଦ୍ୟୁମ୍ନଙ୍କୁ ଚିହ୍ନିବାରୁ ଇନ୍ଦ୍ରଦ୍ୟୁମ୍ନ ସ୍ୱଦେହରେ ସ୍ୱର୍ଗକୁ ଗମନ କରିଥିଲେ ।

**ଶ୍ୱେତଗଙ୍ଗା**—ଶ୍ରେଷ୍ଠ ସରୋବରଟିଏ । ପ୍ରାୟ ୪୦ ଫୁଟ ଗଭୀର ହେବ । ଏଠାରେ ଶ୍ୱେତମାଧବ ପୂଜା ପାଉଛନ୍ତି ।

**ସ୍ୱର୍ଗଦ୍ୱାର**—ବଡ଼ଦେଉଳର ଦକ୍ଷିଣରେ ଥିବା ସମୁଦ୍ରକୂଳ । ଏଠାରେ ପିଣ୍ଡଦାନ ହୁଏ ।

**ଚକ୍ରତୀର୍ଥ**—ପୂର୍ବକୁ ପ୍ରାୟ ବଡ଼ଦେଉଳଠାରୁ ଦୁଇ ମାଇଲ ଦୂରରେ ବାଙ୍କୀ ମୁହାଣ ନଦୀର ମୁହାଣ ପାଖରେ ଚକ୍ରତୀର୍ଥ । ଏଠାରେ ଚକ୍ରନାରାୟଣଙ୍କ ମନ୍ଦିର ଅଛି । ଏହିଠାରେ ଲକ୍ଷ୍ମୀଙ୍କ ପିତା ବରୁଣଙ୍କ ଘର ଅଛି ବୋଲି କଳ୍ପନା କରାଯାଏ ଏବଂ ଜଗନ୍ନାଥଙ୍କ ପାଇଁ ଶ୍ୱଶୁରଙ୍କ ଘରୁ ( ଲକ୍ଷ୍ମୀଙ୍କ ବାପଘରୁ ) ଭାର ଆସେ ।

**ନୃସିଂହ ମନ୍ଦିର**—ଗୁଣ୍ଡିଚା ମନ୍ଦିରର ପୂର୍ବ ଉତ୍ତରକୁ ବେଢ଼ା ପାଚେରୀକୁ ଲାଗି ନୃସିଂହନାଥଙ୍କ ମନ୍ଦିର । ଚତୁର୍ଦ୍ଧାମୂର୍ତ୍ତିଙ୍କ ଆବିର୍ଭାବ ପୂର୍ବରୁ ଇନ୍ଦ୍ରଦ୍ୟୁମ୍ନ ମହାରାଜ ଏହି ଠାକୁରଙ୍କୁ ପ୍ରତିଷ୍ଠା କରିଥିଲେ, ଏବଂ ଏହିଠାରେ ସହସ୍ରେ ଅଶ୍ୱମେଧ ଯଜ୍ଞ କରିଥିଲେ । ପର୍ବପର୍ବାଣୀମାନଙ୍କରେ ଜଗନ୍ନାଥ ମନ୍ଦିରରୁ ପ୍ରଥମେ ନୃସିଂହଙ୍କଠାକୁ ଆଜ୍ଞାମାଳ ଯାଏ ।

## (୧) ପୁରୀ ସହରର କେତେକ ପ୍ରଧାନ ଜାଗାଘର—

ଜାଗାଘର ଅନୁଷ୍ଠାନ ପୁରୀ ସହରରେ ପ୍ରସିଦ୍ଧ । ଏହା ଏକ କ୍ଳବ ଘର ପରି ହେଲେ ମଧ୍ୟ ଦେବସ୍ଥାନର ମର୍ଯ୍ୟାଦା ପାଏ । ଏଠାରେ ଦେବଦେବୀ ପୂଜା ପାଆନ୍ତି । ପ୍ରଧାନ ଜାଗାମାନଙ୍କର ଜଗନ୍ନାଥ ମନ୍ଦିରର ଯାନଯାତ୍ରା, ପର୍ବପର୍ବାଣିରେ ସମ୍ପର୍କ ରହିଛି । ସ୍ଥାନୀୟ ଲୋକେ ସାଧାରଣତଃ, "ଜେଗାଘର" କହନ୍ତି ।

୧ । ମରିଚକୋଟ ଜାଗା (ଯାଗା)
୨ । ଗଣେଶ ଗୁରୁଜ
୩ । କଦମ୍ବଗଡ଼
୪ । ବ୍ରାହ୍ମୀ ଜାଗା
୫ । ଗୁରୁଜଙ୍ଗ
୬ । ନୂଆଗଡ଼
୭ । ଫକଟ
୮ । ମାଜେଣା
୯ । ମାଳ

୧୦ । ସାତବଖରା
୧୧ । ସୁନ୍ଦରା
୧୨ । ମାଳି
୧୩ । ବଶୁନ୍ଦ
୧୪ । ପାଣ୍ଡ
୧୫ । ଭୋଗ
୧୬ । ଦୁଆର
୧୭ । ଗୋପାଳତୀର୍ଥ
୧୮ । ପଞ୍ଚୁଆଡି
୧୯ । ନୂଆଗଡ଼
୨୦ । ଚମ୍ପାଗଡ଼
୨୧ । ଖୁଣ୍ଟିଆ
୨୨ । ଡାପଙ୍ଗ
୨୩ । ବାରବାଟି

(୨) **କେତେକ ପ୍ରସିଦ୍ଧ ମଠ**—ଶ୍ରୀ ଜଗନ୍ନାଥ ମନ୍ଦିରର ଦୈନନ୍ଦିନ ଯାତ୍ରାଯାତ୍ରା, ପର୍ବପର୍ବାଣି ସହିତ ସମ୍ପୃକ୍ତ ଥିବା କେତେକ ମଠ ।

୧ । ବେଡ଼ୀ ହନୁମାନ
୨ । ଗ୍ରୁଡ଼ଣି
୩ । ମଙ୍ଗୁ
୪ । ରାଧାବଲ୍ଲଭୀ
୫ । ଏମାର
୬ । ଶ୍ୟାମକୁଞ୍ଜ
୭ । ଉତ୍ତରପାର୍ଶ୍ୱ
୮ । ରାଘବଦାସ
୯ । ଶ୍ରୀ ରାମ ଦାସ
୧୦ । ବାଲିସାହି ମଠ ( ଶଙ୍କରାଚାର୍ଯ୍ୟ, ଗୋବର୍ଦ୍ଧନ ଭୋଗବର୍ଦ୍ଧନ )
୧୧ । ଗଙ୍ଗାମାତା
୧୨ । କୋଠଭୋଗ
୧୩ । ରେବସା

୧୪ । ଦକ୍ଷିଣ ପାର୍ଶ୍ୱ
୧୫ । ସଙ୍କାନ୍ତ
୧୬ । ତ୍ରିମାଳୀ
୧୭ । ଶିବତୀର୍ଥ
୧୮ । ଗୋପାଳତୀର୍ଥ
୧୯ । ଶଙ୍କରାନନ୍ଦ
୨୦ । ସୋନାର ଗୌରାଙ୍ଗ
୨୧ । ନେଉଳ ଦାସ
୨୨ । ବଡ଼ ଓଡ଼ିଆ ମଠ
୨୩ । ସାନ ଓଡ଼ିଆ ମଠ
୨୪ । ଆଉଲ ମଠ
୨୫ । ଚକଟି ମଠ
୨୬ । କେନ୍ଦୁଝର ମଠ
୨୭ । ଜୟପୁର ମଠ
୨୮ । ଘୁମୁସର ମଠ
୨୯ । ଦର୍ପଣୀ ମଠ
୩୦ । ଲବଣିଆ ମଠ
୩୧ । ବଢ଼ ଆଖେଡ଼ା
୩୨ । ପଥର ଆଖେଡ଼ା
୩୩ । ବାଘ ଆଖେଡ଼ା
୩୪ । ନମି ଆଖଡ଼ା
୩୫ । ଇନ୍ଦ୍ରସ୍ୱାମୀ ମଠ
୩୬ । ଗୁଣ୍ଡିଚଣୀ ମଠ
୩୭ । ମଟେଚ କୋଠ
୩୮ । ବଳରାମ କୋଟ
୩୯ । ନରସିଂହ କୋଠ
୪୦ । ଭଗବତୀ କୋଠ
୪୧ । ବଡ଼ଛତା
୪୨ । ସାନଛତା
୪୩ । ବଡ଼ ସନ୍ଥ

୪୪ । ସାନ ସନ୍ତ
୪୫ । ରାମଜା
୪୬ । ଚଉରା
୬୭ । ଅଙ୍ଗିରା ଆଶ୍ରମ
୪୮ । ପରାଶର ଆଶ୍ରମ
୪୯ । ଭୃଗୁ ଆଶ୍ରମ
୫୦ । ପଣ୍ଡୁ ଆଶ୍ରମ
୫୧ । ନେଉଳ ଦାସ
୫୨ । ଗିରସ୍ୱାମୀ
୫୩ । ଗୌସ୍ୱ ମଠ
୫୪ । ନାଗା ମଠ
୫୫ । ଖଡ଼ାଖିଆ ମଠ
୫୬ । ଚୁନାମୁଣ୍ଡି
୫୭ । ଉଗ୍ରସେନ ମୁଣ୍ଡି
୫୮ । ଗୁମଡ଼ା ମୁଣ୍ଡି

## ପୂର୍ବର ମଠ ସଂଖ୍ୟା

ପୂର୍ବେ ପୁରୀ-କ୍ଷେତ୍ରରେ ବହୁ ସନ୍ନ୍ୟାସୀ ମଠଥିବା ଜଣାଯାଏ । ଏହା ଅନଙ୍ଗଭୀମ-ଦେବଙ୍କ ତିଆଣ ବୋଲି କଥିତ । ଏଥିରୁ ସନ୍ନ୍ୟାସୀ ମଠ—୫୨ ।

ଆନ୍ଧ୍ର ମଠ—୧୨
ମହାରାଷ୍ଟ୍ର—୮
ଦ୍ରାବଡ଼—୮
କନୌଜ—୫
ହେଙ୍ଗୁଲା—୩
ଓଡ଼ିଆ—୧୪
ଗୌଡ଼ିଆ—୫
ଏକାଦଣୀ—୩
ମନୋଦଣ୍ଡୀ—୧୫
ତ୍ରିଦଣ୍ଡୀ—୭

## (୩) ପର୍ବପର୍ବାଣୀ, ଯାନଯାତ୍ରା ନିମନ୍ତେ ପୂର୍ବ ରାଜାମାନଙ୍କର ଜମି ଖଞ୍ଜା—

ଶ୍ରୀ ଜଗନ୍ନାଥ କ୍ଷେତ୍ରରେ ବିଜେ ହୋଇଥିବା ଠାକୁର ଠାକୁରାଣୀମାନଙ୍କର ବିଭିନ୍ନ ଯାନଯାତ୍ରାର ବ୍ୟୟନିର୍ବାହ ନିମନ୍ତେ ପୂର୍ବ ରାଜାମାନେ ଓଡ଼ିଶାର ବିଭିନ୍ନ ଅଞ୍ଚଳରେ ବହୁ ସମ୍ପତ୍ତି ଖଞ୍ଜିଥିବାର ଜଣାଯାଏ । ଏଥିରୁ ବହୁ ସମ୍ପତ୍ତି ଅନଙ୍ଗଭୀମ-ଦେବଙ୍କ ଦାନ ଥିବା ଜନଶ୍ରୁତି ରହିଛି । ଏ ସମ୍ବନ୍ଧରେ ମନ୍ଦିରର ପ୍ରାଚୀନ ଭଉଁରିଆମାନଙ୍କରେ କେତେକ ତଥ୍ୟ ଥିବାର ଜଣାଯାଏ ।

### ଲେମ୍ବାଇ ଦଣ୍ଡପାଟରେ—

ସାତୁରଗ୍ରାମ, ବାଲିହୁଙ୍କା, ଦୋରକଣା, ମାଙ୍ଗପଡ଼ା, ବଘିଲିପାର, ଧୂଆଁପଡ଼ା, କଡ଼ାମିଲେ, ଶଙ୍ଖପଡ଼ା, ଛାଲପଡ଼ା, ବାଣପୁର, ବାଲୁପଡ଼ା, ଗୁଡ଼ୁପାଇଲେ, ଅମୃତପୁର, ସିଉଣ୍ଡା, କାଲୁପଡ଼ା, କୁମଙ୍ଗ, ସିଂଘପୁର, ବସନ୍ତପୁର, ଚମ୍ପାପଡ଼ା, ଶ୍ରୀକଣ୍ଠପୁର, ଯମୁନା, ଝାଡ଼ପଡ଼ା, ଯାଜପୁର, ବଙ୍ଗ, ଜଗଦଳପୁର ପ୍ରଭୃତି ୮୪ଟି ଗ୍ରାମରେ ବହୁ ସହସ୍ର ବାଟି ଜମି ।

### ଦକ୍ଷିଣ ଦିଗ ଦଣ୍ଡପାଟ—ଗହାଙ୍ଗ ବିସେରେ—

କୋଟକଣା, କୁରୁଣ୍ଡିଗ୍ରାମ, ଖଣ୍ଡିହର, ଦୁଗଲ ବ୍ରହ୍ମପୁର, ପାଙ୍କୋଲ, ରେଣ୍ଡୁଅ, ଅଉବା, ଗଜଡ଼ୁଣୀ ପଲ୍ଲି, ଛେଳିଆକେର, କୋଧଡ଼ାପଡ଼ା, ବାଲିପଡ଼ା ପ୍ରଭୃତି ୨୪ଟି ଗ୍ରାମରେ ପ୍ରାୟ ସହସ୍ରାଧିକ ବାଟି ଜମି ।

ଏହିପରି ବହୁ ଦଣ୍ଡପାଟରେ ଜମି ଥିବା ଜଣାଯାଏ ।

**ଦଣ୍ଡପାଟ**

| | | |
|---|---|---|
| ଲେମ୍ବାଇ | ଅସିକାସି | ଜଳେଶ୍ୱର |
| ଦକ୍ଷିଣଦିଗ ଦଣ୍ଡପାଟ | କଳଙ୍ଗ | ଦାନ୍ତୁଡ଼ |
| କୋଠଦେଶ | ପଶ୍ଚିମଦିଗ | ମାଲକୋଟିଆ |
| ପରଙ୍ଗ | ଭଦ୍ରଖ | |
| କୋଦର | ସୋରେ | |
| ଚବିଶକୁଦ | ଭଣିଆ | |

ଏହିସବୁ ଜମିର ପରିମାଣ ଲକ୍ଷାଧିକ ବାଟି ଥିବା ଜଣାଯାଏ । କାଳକ୍ରମେ ଏହି ଖଞ୍ଜାଗୁଡ଼ିକର ତଥ୍ୟ ମଧ୍ୟ ଲୋପ ପାଉଛି ।

## ମୁସଲମାନ ଓ ମୋଗଲ ରାଜତ୍ୱରେ ଖଞ୍ଜା ଜମିର ବିବରଣ—

ଇଂରେଜମାନେ ଓଡ଼ିଶା ଅଧିକାର କରିବା ପୂର୍ବରୁ ମୁସଲମାନ ଓ ମରହଟ୍ଟା ରାଜତ୍ୱରେ ଯେଉଁସବୁ ସମ୍ପତ୍ତି ଜମିବାଡ଼ି ଥିଲି, ତାହାର ସମ୍ପୂର୍ଣ୍ଣ ବିବରଣ ମିଳି ନ ଥିବା ୧୮୦୭ରେ ପୁରୀ ମାଜିଷ୍ଟ୍ରେଟ୍ ରିପୋର୍ଟ କରିଥିଲେ । ତେବେ ସେ ସଂଗ୍ରହ କରିଥିବା ତଥ୍ୟଗୁଡ଼ିକ ସରକାରଙ୍କୁ ଜଣାଇଛନ୍ତି । ସେଥିରୁ ଜଣାଯାଏ—

## ମଠଧାରୀଙ୍କ ମାରଫତରେ ଜମି—

ଇଂରେଜ ସରକାର ୧୮୦୩ରେ ଜଗନ୍ନାଥ ମନ୍ଦିର ଅଧିକାର କରିସାରିବା ପରେ ଜଗନ୍ନାଥ (ପୁରୀ) କଲେକ୍ଟର ଶ୍ରୀଜଗନ୍ନାଥ ମନ୍ଦିରର ସମ୍ପତ୍ତି ବାଡ଼ିର ଏକ ତାଲିକା ପ୍ରସ୍ତୁତ କରି ବଙ୍ଗ ସରକାରଙ୍କଠାରେ ଦାଖଲ କରିଥିଲେ । ସରକାରୀ ରେକର୍ଡ଼ରେ ଏହାର ବିସ୍ତୃତ ବିବରଣ ଅଛି । ଏଥିରୁ ସଂଗ୍ରହ କରି ପୁରୀର ମଠଧାରୀମାନଙ୍କ ମାରଫତରେ ଯେଉଁସବୁ ଅମୃତମଣୋହି ସମ୍ପତ୍ତି ଥିଲି, ତାର ଏକ ତାଲିକା ଦିଆଗଲି ।

**(୧) ବଂଶୀ ଅଧିକାରୀ**—ଅବକାଶ ସମୟରେ ଟିକୁଲି ଧରିବା ନିମନ୍ତେ ପରଗଣା ଚଉବିଶକୁଦ ମଉଜା—କଙ୍କରେ ୭୫ ବାଟି ୧୦ ମାଣ; ଖୁଲିପିରଙ୍ଗା ୨୫ ବାଟି । ପ: ରାହଙ୍ଗ—ପାଟଣା ବିଷ୍ଣୁପୁର ବା ୧ ମା ୫ ଗୁ ୬ ବି୪, କି: ରାମେଶ୍ୱର ମୌଜା ଘଣ୍ଟି ୫ ବାଟି । ଏ ଜମିର ଦାତା ଜଣାପଡ଼ୁ ନାହିଁ । ପ: ରାହାଙ୍ଗ । ମୌ-ନରେନ୍ଦ୍ରପୁର । ଦାତା-ଖୋର୍ଦ୍ଧା ରାଜା । ବା ୧୨୮ ମା ୪ ଗୁ ୧ ବି୧୪ । ପୌଷମାସରେ ଭୋଗ, ରଥଯାତ୍ରା, ଶେଷ ସଂକ୍ରାନ୍ତି, ଚନ୍ଦନଯାତ୍ରା, ଅଣସର ସମୟରେ ଭୋଗ । ମକର ଯାତ୍ରାରେ ଛପନଭୋଗ । ଆଶ୍ୱିନମାସରେ ବିମଳା, ଉତ୍ତରାୟଣୀଙ୍କ ଭୋଗ । କାର୍ତ୍ତିକମାସରେ ମନ୍ଦିରରେ ଦୀପ ଓ ଗାଈଙ୍କୁ ଘାସ ଦେବା । ଦୋଳମଣ୍ଡପ ସଫା ରଖିବା, ଜଗନ୍ନାଥଙ୍କ ପାଇଁ ଛଅଟା ମାଣ୍ଡି, ବୃତଖଣ୍ଡ ଲୁଗା, ରଥଯାତ୍ରାରେ ଅତର ।

**(୨) ମହନ୍ତ ଯୋମଜାମାତୃ**—(ଏମାରମଠ) ପ. ଓଳାବର। ମୌଃ ଚାଉବାଇ ବା ୧୧୨। ପ-ରାହାଙ୍ଗ ଜଗନ୍ନାଥବଲ୍ଲଭ। ଗରଖଣ ବା୧୮; ପୁରୁଷୋତ୍ତମବଲ୍ଲଭ ବା ୧୨। ଶିକୁଳ ବା ୨୨। ଦାତା-ଖୋର୍ଦ୍ଧାରଜା। ଜଗନ୍ନାଥଙ୍କ ପାଇଁ ପୁଷ୍ପଣି ଓ ଫୁଲ।

**(୩) ମଠ ଜଗନ୍ନାଥବଲ୍ଲଭ**—ରାଜମାତାଙ୍କ ଦାନ। ଫୁଲପାଇଁ। ପାଟଣା ଗୁରନଳା ମା ୫ ଗୁ ୧୨। ପଃ ଚଉବଶକୁଦ କୋକଲଗଡ଼ ମୋଟ ବା ୧୩୫। ଖୋର୍ଦ୍ଧାରଜାଙ୍କ ଦାନ। ମନ୍ଦିରରେ ଧର୍ମଶାସ୍ତ୍ର ବୋଲିବା ନିମନ୍ତେ।

**(୪) ମଠ ରାଘବ ଦାସ**—(ମହନ୍ତ ତୁକୁମ ଦାସ)। ଦାତା କୃଷ୍ଣ-ନରେନ୍ଦ୍ର। ସ୍ନାନଯାତ୍ରା, ରଥଯାତ୍ରା, ଚନ୍ଦନଯାତ୍ରା, କୁମାରପୂର୍ଣ୍ଣିମା ପର୍ବରେ ଠାକୁରମାନଙ୍କ ଭୋଗପାଇଁ।

ନରେନ୍ଦ୍ରଙ୍କ ଦାନ। ପଃ ରାହାଙ୍ଗ। ମୌଃ ରାମଚନ୍ଦ୍ରପୁର ବା ୧ ମା ୧୫ ଗୁ ୧୨ ବ ୪. ଜୁରୁଲ ବା ୪ ମା ୧୦, ଖଜୁରଗୋଡ଼ା ବା ୨ ମା ୯, ବଜେ ରାମଚନ୍ଦ୍ରପୁର ବା ୨ ମା ୨, ଚନ୍ଦନପୁର ବା ୨ ମା ୨, ଦୋଳଗୋବିନ୍ଦପୁର ବା ୧ ମା ୧୩, କଣୁପୁର ବା ୩ ମା ୧୩, ଗୁ ୧୮ ବ ୧୨, କୃଷ୍ଣଜନପୁର ବା ୧ ମା ୩, କୁମାରପଡ଼ା ବାଲୁରଚର ବା ୫ ମା ୧୨, ଦାଣ୍ଡରୁହ ଦାରୁଠେଙ୍ଗ ବା ୨ ମା ୨, ମାଣିକଗୋଡ଼ା—ଚଣ୍ଡିପାଟଣା ମା ୧୦। ପଃ ସିରେଇ। ମୌ ରାନୁପଡ଼ା ବା ୮ ମା ୨। ଗଡ଼ନାଭ ବାଣପୁର ବଣଡ଼ା ବା ୧୦ ମା ୧୦ ଗୁ ୨ ବ୪, ବରମୂଲ ବା ୧୨, ଗୋଷ୍ଟୁଆପଡ଼ା ବା ୪ ମା ୩। ପ-ଓଲବର, ବାଉଲ-ପାଟଣା ବା ୧୪ ମା ୪। ପଃ ରାହାଙ୍ଗ। ଲେହକଣଆ ବା ୨୦ ମା ୧୫, ଗୁ ୨୧ ବ୧୪, ଭରତପୁର ବା ୮ ମା ୧୨, ସାନ୍ତରାପୁର ବା ୨ ମା ୭, ବାଲିକେରା ବା ୨ ମା ୧, ଘାସି—ଭବାନପୁର ବା ୬୦। ମଞ୍ଚକାଣଗରଡ଼ା ବା ୩ ମା ୧୦, ପଶ୍ଚିମଦ୍ୱାର ମା ୧', ଭୋଳମଣ ମା୧୨, ମଙ୍ଗରାଜ ମା ୭। ମୌ ଘୁମୁନ୍ଦ ମା ୧ ଗୁ ୩ ବ ୨। ଦାମୋଦରବଲ୍ଲଭ ବା ୩ ମା ୧୨। ବାଉଲଗରଡ଼ା ବା ୩ ମା ୧। ଲେହାଗଡ଼ ବା ୩ ମା ୭, ଡାଳଯୋଡ଼ା ବା ୨ ମା ୧୯, ଅଲବବୋରା ବା ୧ ମା ୧୯ ଗୁ ୨୧ ବ ୧୪, ବାଲିଚର ଗରବନ୍ଦ ବା ୨୦ ମା ୫ ଗୁ ୩ ବ ୨। ମୋଟ ବା ୧୭୩ ମା ୩ ଗୁ ୧୩।

## (୬) ମଠାଧିକାରୀ ଜୟରାମ ଦାସ —ପଃ ସିରେଇ । ମୌଜା

ଅଠରବାଟି ବା ୨୦ । ପଃ ରାହାଙ୍ଗ ମୌ ବାଙ୍କୁରୁବା ୫୦ ମା ୧୩ । ପଃ ବାଁଗୁଷ । ମୌଃ ଗଣେଶ୍ୱରପୁର ମା ୧୩ । ମୋଟ ବା ୭୭ ମା ୭ । ଦାତା-ମହାରାଜା ଦିବ୍ୟସିଂହଦେବ । ପଃ ରାହାଙ୍ଗ । ମୌ ବାଙ୍କୁରୁବା ବା ୫୦ ଗୋପାଳବଲ୍ଲଭ ଭୋଗ ନିମନ୍ତେ ।

## (୭) ମଠାଧିକାରୀ କୃଷ୍ଣଚନ୍ଦ୍ର ଗୋସ୍ୱାମୀ—

[କ] ଦାତା—ଖୋର୍ଦ୍ଧା ରାଜା । ଜଗନ୍ନାଥ ମନ୍ଦିରରେ ପଣାଭୋଗ, ଫୁଲ ଓ ଦୀପ ନିମନ୍ତେ । ପୁରୀସହର: ବସନ୍ତପଞ୍ଚମୀ ଟୋଟା ଓ ପାଟଣା ମଙ୍ଗଳାପଡ଼ା ବା ୧ । ପ; ରାହାଙ୍ଗ, ମୌ: ପହରରେଶ୍ୱର ପାଟଣା ମା ୧୫, ପ: କୋଠଦେଶ । ମୌ: ପାଟଣା ରୂପଦେଇ ମା ୧୨ । ମୋଟ ବା ୨ ମା ୭ ।

(ଖ) ଦାତା—ରାଜମାତା । ଆଲଟ ପଙ୍ଖା ନିମନ୍ତେ ଓ ଅବସର ସମୟରେ ବାହାରି ଭିତର ପନ୍ତିଭୋଗ, ଶୃଙ୍ଗାରଭୋଗ, ଭିତର ସରଭୋଗ ନିମନ୍ତେ । ପ: ଲିମ୍ବେଇ । ମୌ. ଅନ୍ତରଙ୍ଗ ବା ୪୧ ମ ୧୭ । ପୋଖୁଲ ବା ୫୦ ଗୁ ୮ ବ ୮ । ପଞ୍ଚପଲ୍ଲୀ ବା ୭ ମା ୧୭ । ତେଲଢଲା ବା ୨ । ମୂଳିଆ । ବା ୨ । ମୋଟ ବା ୧୦୩ ମା ୧୩ ଗୁ ୮ ବ ୮ ।

(ଗ) ଦାତା—ଖୋର୍ଦ୍ଧା ରାଜା । ଗୁଣ୍ଡିଚା ଘରକୁ ଠାକୁରମାନେ ଯିବା ସମୟରେ ଶୃଙ୍ଗାରଭୋଗ ନିମନ୍ତେ । ପଃ ରାହାଙ୍ଗ । ରାମଚନ୍ଦ୍ରପୁର ବା ୨୫, ପଃ ଲିମ୍ବେଇ ଆନ୍ଦରୁଡ଼ୁରେଇ ବା ୫ । ମୋଟ ବା ୩୦ ।

(ଘ) ରାଣୀ ଇଚ୍ଛାବତୀ ମହାଦେବୀ: ଖେଚୁଡ଼ି ଭୋଗ । ପ: ଚବିଶକୁଦ: ଘଣ୍ଟାକୁର ବା ୮୫ ମା ୧୯ ଗୁ ୨୧ ବ ୧୪ ।

(ଙ) ଜଗନ୍ନାଥ ପଟ୍ଟନାୟକ: ଖେଚୁଡ଼ି ଭୋଗ ପାଇଁ । ପ: ଲିମ୍ବେଇ, ମୌ: ଆଉରୁଡ଼ୁରେଇ ବା ୬ । ପ: ରାହାଙ୍ଗ ବା ୨୦ । ମୋଟ ବା ୨୬ ।

(ଚ) ରାଜାଙ୍କ ସୁଆର । ପିଲଣି (?) ଭୋଗ ନିମନ୍ତେ । ପ: କୋଟରାଙ୍ଗ । ମୌ: ଭଗିତାପୁର ମା ୧୭ । କୃଷ୍ଣାଞ୍ଜନପୁର ମା ୭ । ହାଟପଡ଼ା ବା ୧୪ ମା ୧୦ । ବେଙ୍କୁରୁବା ବା ୮ । କୁରସାଇ ବାଗସାଇ ବା ୧ ମା ୧୯ ଗୁ ୧୨ ବ ୮ । ମୋଟ ବା.୨୫ ମା ୧୨ ଗୁ ୧୨ ବ ୮ । ମୌ: ବାଲିଆ ବା ୧୧ ମା ୧୪ । ବାରବାଟି

ବଗିଚ୍ଚ ବା ୧୨ । ପିଣ୍ଡବଲ୍ଲଭ ବଗିଚ୍ଚ ବା ୧୨ । ରାଉତରାଇ ବା ୧ ମା ୧ ଗୁ ୧୨ ବ ୮ । ଗୋପିବଲ୍ଲଭ ବଗିଚ୍ଚ ମା '୫ ।

## (୭) ମଠଧାରୀ ଶ୍ରୀରାମଦାସ—

ପ୍ରିୟବତୀ ମହାଦେବୀ । ପ୍ରଭାଦନ ଭଣ୍ଡାରା ଖେଚଡ଼ି ଭୋଗ ନିମନ୍ତେ । ସରେଇ । ବଡ଼ମୁକୁନ୍ଦପୁର ବା ୫୦ । ପଃ ଚଉବିଶକୁଦ । ଅଉରା ବା ୪୦ । ମୋଟ ବା ୯୦ ।

## (୮) ଗଙ୍ଗାମାତା ମଠ—

ବର୍ତ୍ତମାନ ମା: ଗୌରାଙ୍ଗ ଦାସ ।

(କ) ଦାତା—ଗୋପିନାଥ ପଟ୍ଟନାୟକ । ଗୃହଭୋଗ ପାଇଁ । ପଃ ରାହାଙ୍ଗ ମୌ: ଛତରପୁର ବା ୧ ମା ୧୬ କଟେପୁର ବା ୬ ମା ୮ ।

(ଖ) ବର୍ଦ୍ଧମାନ ରାଜା କୀର୍ତ୍ତିଚନ୍ଦ । ଜଗନ୍ନାଥ ମନ୍ଦିର ପାଇଁ ଫୁଲ ଓ ମାର୍କଣ୍ଡ ପୋଖରୀ ବନ୍ଧ ଓଲେଇବା ନିମନ୍ତେ । ମୌ: ନୟାରଖୋଲ, ମୁରା ପୁପୁଲିଆ ବା ୬ ମା ୫ ।

## (୯) ମଠଧାରୀ ଶମ୍ଭୁଭାରତୀ ଗୋସ୍ୱାମୀ—

ଦାତା ଖୋର୍ଦ୍ଧାରାଜା । ଜଗନ୍ନାଥଙ୍କ ପାଇଁ ଫୁଲମାଳ, ଲତା ପାଇଁ । ପଃ ରାହାଙ୍ଗ, ପଞ୍ଚପଡ଼ା । ଜୟତୋଲା ପାଟଣା ସହ ।

ଜଗନ୍ନାଥ ଜିଲ୍ଲା ମାଜିଷ୍ଟ୍ରେଟ ଲେଖିଛନ୍ତି ଯେ ସାଧାରଣ ଭାବରେ ମଠଧାରୀମାନେ ଜମିର ଆୟ ସମ୍ବନ୍ଧରେ ତଥ୍ୟ ଯୋଗାଇବାକୁ ଅନିଚ୍ଛୁକ ଥିବାରୁ ଆୟ ତଥ୍ୟ ଦିଆଯାଇ ପାରିଲା ନାହିଁ ।

## ମଠାଧୀଶମାନଙ୍କ ମାରଫତରେ ଅମୃତମଣୋହି ସମ୍ପତ୍ତି—

ମରହଟ୍ଟା ରାଜା ରଘୋଜୀ ଭୋଁସଲାଙ୍କ ଶାସନାଧୀନରେ ଓଡ଼ିଶା ଥିବା ସମୟରେ ଅର୍ଥାତ୍ ଓଡ଼ିଶାକୁ ଇଂରେଜମାନେ ଅଧିକାର କରିବା (ଖ୍ରୀ ୧୮୦୩) ଅବ୍ୟବହିତ ପୂର୍ବରୁ ଜଗନ୍ନାଥଙ୍କ ସେବା ପୂଜା ପାଇଁ ବହୁ ସମ୍ପତ୍ତି ଗଚ୍ଛି ଦେଇଥିଲେ । ଖୋର୍ଦ୍ଧାର ରାଜାମାନେ ମଧ୍ୟ ବହୁ ଜମି ଦାନ କରିଥିଲେ । ଏହି ସବୁ ଜମିର ସୁବ୍ୟବସ୍ଥା ଓ

ସୁଚଶୃଙ୍ଖଳା ହେବା ଆଶାରେ ମଠ ପର ସ୍ଥାୟୀ ଅନୁଷ୍ଠାନମାନଙ୍କ ମାରଫତରେ ଏଗୁଡ଼ିକ ରଖିଯାଇଥିଲା । ୧୮୦୩ ଠାରୁ ୧୮୦୭ ଭିତରେ ଜଗନ୍ନାଥର ମାଜିଷ୍ଟ୍ରେଟ୍ (ସେତେବେଳକୁ ପୁରୀଜିଲ୍ଲାକୁ ଜଗନ୍ନାଥ ଜିଲ୍ଲା କୁହାଯାଉଥିଲା ।) ଏ ସମ୍ବନ୍ଧରେ କାଗଜପତ୍ର ଦେଖି ଏକ ତାଲିକା ସରକାରଙ୍କଠାରେ ଦାଖଲ କରିଥିଲେ । ସେଥିରୁ ଏହି ତାଲିକାଟି ଦିଆଗଲା । ତାଲିକାଟି ବିସ୍ତୃତ । ଏଥିରେ ପ୍ରତ୍ୟେକ ଗ୍ରାମରେ ଥିବା ଜମିର ପରିମାଣ ଦିଆଯାଇଛି । ବାହୁଲ୍ୟ ଭୟରୁ ଏହାର ସାର କେବଳ ଏଠାରେ ଦିଆଗଲା ।

## ୧ ମହନ୍ତ ସୋମକାମାତୃ (ଏମାର ମଠ)

| ପ୍ରଗଣା | ମୌଜାସଂଖ୍ୟା | ଜମା (କଉଡ଼ି) | | |
|---|---|---|---|---|
| | | କାହାଣ | ପଣ | ଗଣ୍ଡା |
| ରହାଙ୍ଗ | ୧୨ | ୧୨୮୭୫ | ୧୫ | — |
| ଚବଶକୁଦ | ୫ | ୩୨୦୪ | ୧୨ | ୧୩ |
| କୋଠଦେଶ | ୧୦ | ୧୬୩୩ | ୫ | ୩ |
| ଭିତର ଆଠସାହି | ୧ | ୨୨୨ | ୮ | ୧୩ |
| ବାହାର ଆଠସାହି | ୧ | ୨୨ | ୮ | — |
| କଟିଲେ | ୧ | ୨୮ | ୧୫ | — |

ଅସ୍ତରଙ୍ଗ, ସବଙ୍ଗ, ବାଁଗୃଷ, ରଣଦିଆ ପ୍ରଭୃତି ପରଗଣାର ୧୭ଖଣ୍ଡ ମୌଜା, ଗୋଲରାଗଡ଼, ମଟେଚପୁରଗଡ଼, ହରିଶପୁରଗଡ଼ ପ୍ରଭୃତିରେ ବହୁ ଜମି ଅଛି । ଏ ମହନ୍ତଙ୍କ ଜମା ଥିବା ସମ୍ପତ୍ତିର ମୋଟ ବାର୍ଷିକ ଜମା କଉଡ଼ିରେ କା ୩୫୭୬୩ ପ ୧୩ ଗ ୧୦ ।

## ୨ ମହନ୍ତ ଶ୍ରୀରାମଦାସ—

ରହାଙ୍ଗ, ଚବଶକୁଦ, ପୁରୁବ ଦୋହାଇ, ଓଲଧର, ପଶ୍ଚିମ ଦୋହାଇ, ବାଁଗୃଷ, ଡମରଖଣ୍ଡ, ହରିଶପୁର, ପରଗଣାମାନଙ୍କରେ ଥିବା ୧୮ ଖଣ୍ଡ ମୌଜାର ବାର୍ଷିକ ଜମା କଉଡ଼ି—କା ୧୭୫୯୯ ପ ୮ ଗ ୧୭ ।

## ୩ ମହନ୍ତ ଜୟରାମଦାସ—

କୋଢାର, ଓଲଧାର, କୋଠଦେଶ, ଡମରଖଣ୍ଡ, ରୁପାପି, ରହାଙ୍ଗ, ଗଣସରପୁର ପ୍ରଭୃତି ପରଗଣାରେ ଥିବା ୧୪ ଖଣ୍ଡ ମୌଜାର ବାର୍ଷିକ ଜମା— କା ୨୩୧୦୩ ପ ୧୧ ଗ ୯ ।

## ୪ ମହନ୍ତ ଶୁକଦେବ ଦାସ—

ପରଗଣା ରାହାଙ୍ଗ ଓ ଓଲଧାରରେ ଥିବା ୫ଟି ଗ୍ରାମର ଜମା କା ୭୫୧୧ ପ ୨ ଗ ୧୮ ।

# ଅନ୍ୟାନ୍ୟ ମହନ୍ତ

୫ ମହନ୍ତ ନେଉଳ ଦାସ—୪ଟା ଗ୍ରାମ । କା ୬୬୦୩ ପ ୧୪ ଗ ୧୧ ।

୬ ମହନ୍ତ ଗୋବିନ୍ଦ ଦାସ—୪ଟା ଗ୍ରାମ । କା ୧୧୪୪ ପ ୧୨ ଗ ୧୫ ।

୭ ମହନ୍ତ ରାମଜୀ—୧୦ଟା ଗ୍ରାମ । । କା ୧୮୪୮ ପ ୧୩ ।

୮ ମହନ୍ତ ମୌଜିରାମ ଦାସ—୨୨ଟା ଗ୍ରାମ ଓ ପୁରୀ ମନ୍ଦିରରେ ଚନ୍ଦନା— ବାଲିସାହି କାଳିକାଦେବୀ ସାହି, ଖଣ୍ଡିଆ ବେଡ଼ସାହି, ବାସୁଳିସାହି, ମୌଜା ବାଙ୍କରୁବା । ୪୭ଟି ମୌଜାର ଜମା କା ୧୮୯୧୬ ପ ୬ ଗ ୫ ।

୯ ମହନ୍ତ ନରସିଂହାଶ୍ରମ ମଠ—୭ଟା ମୌଜା । କା ୧୬୩୩ ପ ୭ ଗ ୬ ।

୧୦ ମହନ୍ତ ଦଳବଲଭ ଦାସ—୩ଟା ଗ୍ରାମ । କା ୬୯୮ ପ ୧୧ ।

୧୧ ମହନ୍ତ ଜୁଲୁଟ ଆଚାର୍ଯ୍ୟ—୩ଟା ଗ୍ରାମ । କା ୪୦୯୬ ପ ୫ ଗ ୧୦ ।

୧୨ ମହନ୍ତ ରାମାନନ୍ଦ ଦାସ ଅଧିକାରୀ—୩ଟା ଗ୍ରାମ । କା ୧୦୬୭ ପ ୧୩ ।

୧୩ ମହନ୍ତ ଆଉଲିଆ ଗୋସାଇଁ—୧୦ଟା ଗ୍ରାମ । କା ୨୧୧୫ ପ ୩ ଗ ୧୪ ।

୧୪ ମହନ୍ତ ସବାଦାସ—୨ଟା ଗ୍ରାମ । କା ୧୨୩୬ ପ ୨ ଗ ୪ ।

୧୫ ମହନ୍ତ ଚୈତନଦାସ ଖାକି—୨ଟା ଗ୍ରାମ । କା ୪୩୭ ପ ୪ ଗ ୨ ।

୧୬ ମହନ୍ତ ରାମପ୍ରସାଦ— ——। କା ୧୭୫୩ ପ ୧୫ ଗ ୧୦ ।

୧୭ ମହନ୍ତ ବଂଶୀ ଅଧିକାରୀ—୨୨ଟି ଗ୍ରାମ । କା ୫୦୦୮ ପ ୧୪ ଗ ୯ ।

୧୮ ମହନ୍ତ ସିଦ୍ଧ ଭଗବାନ ଦାସ—୨ଟି ଗ୍ରାମ । କା ୧୧୯୨ ପ ୧୦ ।

୧୯ ମହନ୍ତ କୃଷ୍ଣଚନ୍ଦ୍ର ଗୋସ୍ୱାମୀ—୩ଟି ଗ୍ରାମ । କା ୨୦୨୯ ପ ୧୨ ।

୨୦ ମହନ୍ତ ରାଧାବଲ୍ଲଭ—୩ଟି ଗ୍ରାମ କା ୫୮୧ ପ ୮ ଗ ୧୦ ।

୨୧ ମହନ୍ତ ଶାମାନନ୍ଦ! ପୀତାମ୍ବର ଦାସଙ୍କ ଦ୍ୱାରା (ଖଇରାତ ନିମନ୍ତେ) ଜମା କଉଡ଼ି ୪ଟା ଗ୍ରାମ । କା ୮୩୮୨ ପ ୯ ।

୨୨ ମହନ୍ତ ବଡ଼ସନ୍ଥ—୨ଟା ଗ୍ରାମ । କା ୨୦୭୯ ପ ୧୪ ଗ ୧୦ ।

୨୩ ମହନ୍ତ କୌଶଲ୍ୟା ଦାସ—୬ଟା ଗ୍ରାମ । କା ୧୦୬୮ ପ ୯ ।

୨୪ ମହନ୍ତ ରାମସେବକ—୧ଟି ଗ୍ରାମ । କା ୩୫୨ ପ ୧୨ ।

୨୫ ମହନ୍ତ ନଉର ଦାସ—ଚଉରଣ ଗ୍ରାମ । କା ୪୮୬ ପ ୧୨ ଗ ୫ ।

୨୬ ମହନ୍ତ ଗଙ୍ଗାମାତା—୭ଟା ଗ୍ରାମ । କା ୧୦୯୯ ପ ୧୧ ।

ଏହି ୨୭ଟି ମଠ ମାରଫତରେ ଥିବା ଜମିର ବାର୍ଷିକ ଜମା ଟ ୧, ୪୭, ୭୨୮ ପ ୧୧ ଗ ୧୫ ।

## ଗ୍ରାମର ନାମ

ଏହି ମଠମାନଙ୍କର ମାରଫତରେ ଏହିସବୁ ଗ୍ରାମରେ ଜମି ଥିବା ଜଣାଯାଏ । ଇଂରେଜୀରେ ନାମଗୁଡ଼ିକ ଲେଖା ହୋଇଥିବାରୁ କେତେକ ନାମ ସ୍ପଷ୍ଟ ହେଉନାହିଁ ।

ମଠ—ଏମାର ମଠ ଅଧୀନରେ ରହାଙ୍ଗ ପରଗଣା ଚୌରଡ଼ି, ବାଁଶଆର, ଖଣ୍ଡିଘର, ଆଳପୁର, ବଡ଼ ରାମଚନ୍ଦ୍ରପୁର, ଉତ୍ତରପୁନା, ପାଞ୍ଚକୁର, କରଣ୍ଡିପୁର, ଜଗନ୍ନାଥ ବଲ୍ଲଭ ଓ ପୁରୁଷୋତ୍ତମ ବଲ୍ଲଭ, ଜଗନ୍ନାଥ ଉଲସଣା, ବାସୁଦେଇପୁର ।

ପ୍ରଃ ଚଉଦଶକୁଦ । ତୁରମ, ଆମ୍ପଗ, ଢନକୁଦ, ବନ୍ଧାଲ, କାନକୋର । ପ୍ରଃ କୋଠଦେଶ—ଚକ୍ରଧରପୁର, ଦଣ୍ଡଳ, କୋଳଥପିଠା ପାଟଣା, ସନ୍ଧାସିମୁଲ୍ଲ, ଅରସୁନ୍ଦ, ସୁଙ୍ଗମିଳନ, ବାଙ୍ଗୁରବା, ଉସିଆ, ଗୋଲରା, ଅଲରା ପ୍ରଃ ଭିତର ଆଠଗାଡ଼—ବାଣଢ଼ୁଖ । ପ୍ରଃ ବାହାର ଆଠସାହି—ସୁଆର । ପ୍ରଃ କଶଲେ—ଅରଜି ମୁତଫରକା । ପ୍ରଃ ଅସୁରଙ୍ଗ—ଅରଜି ମୁତଫରକା । ପ୍ରଃ ବାଁରୁସ—ଅରଜି ମୁତଫରକା, ଜାଜପୁର, କଷ୍ଟସୁତା (?) ଅରଜି ମୁତଫରକତ୍ ।

ଚକଲା ଭଦ୍ରଖ—ରଣଡ଼ି, ରଚାଗାଙ୍ଗା ଅରଜି ମୁତଫରକତ ମୋହଳଉଲ ।

ପ୍ରଃ ସୁବଙ୍ଗଃ ପାଟଣା ଅରଜି ମୁତଫରକତ, ନମାତ, ପାଟଣା ହାଜରା, ପାଟଣା କୋସପୁର । କଳା ହରଶପୁର—ଖାଲ ଗାଁ । କଲ୍ଲା ମରଚପୁର—ଅଆର ।

ମଠ ମହନ୍ତ ଶ୍ରୀରାମଦାସ—ପ୍ରଃ ରହାଙ୍ଗ—ହୁଗୁଲ, ଅଁଉପୁଲ, ଗୋକୁଳପୁର, ମାଟିଆଘାଇ, ଜାନକାଦେଇପୁର । ମୌ ଅରଜି ମୁତଫରକତ, ରେବତୀରମଣ । ପ୍ରଃ ଚଉଦଶକୁଦ—ଆର, ପଞ୍ଚଉଆ, ପାଟପୁର । ପ୍ରଃ ପୂର୍ବଦୋହାଇ ଉଲୁପୁର, ଆରତ, ମାର୍କଣ୍ଡପୁର । ପ୍ରଃ ଓଲଧାର—ସୁନ୍ଦର ଗାଁ । ପ୍ରଃ ପଶ୍ଚିମ ଦୋହାଇ—ବଡ଼କର । ପ୍ରଃ ବାଁରୁସ—ବକଲ ଅରଜି ମୁତଫରକତ୍ ପ୍ରଃ ତମର ଖଣ୍ଡ—ଅରଜି ମୁତଫରକତ୍ । ଚକଲା ବଲଦବଣି—କୁଆସିମାଚକ । ପ୍ରଃ ହରଶପୁର—ଅରଜି ମୁତଫରକତ୍ ।

ମଠ ମହନ୍ତ ଜୟରାମ ଦାସ—ପ୍ରଃ କୋଠାର । ପ୍ରଃ ଓଲଧାର—ଝଣ୍ଡଲା । ପ୍ରଃ କୋଠଦେଶ—ଅରଜି ମୁତଫରକତ୍ । ପ୍ରଃ ତମରଝଣ୍ଡ—ଅରଜି ମୁତଫରକତ୍, କଲ୍ଲା ରୁପାସି—ଅରଜ ମୁତଫରକତ୍ । ପ୍ରଃ ରାହାଙ୍ଗ—ବଣହୁଡ଼ା, ଅଲଗୁ, ଚୁଣ୍ଡ, ବରମୁଲ, ଅରଜ ମୁତଫରକତ୍ । ପ୍ରଃ ଗଯେରପୁର—ଅରଜ ମୁତଫରକତ୍, ଖୁରାପଦା । ପ୍ରଃ ଓଲଧାର—ପାଟଣାମାନଙ୍କର ଖଜଣା, ବାଟିଗୁଆ । ପ୍ରଃ ବାଝରା-ବାଦ—ପାଟଣାର ଖଜଣା, ଅରଜ ମୁତଫରକତ୍ ।

ମଠ ମହନ୍ତ ସୁକଦେବ ଦାସ—ପ୍ରଃ ରାହାଙ୍ଗ—କୃଷ୍ଣଶରଣପୁର, ଖମାର, ଭକାରୀ ପଦା, ଜଗନ୍ନାଥପୁର । ପ୍ରଃ ଓଲଧାର । କଣ୍ଟାପିଲ ।

ମଠ ମହନ୍ତ ନେଉଳ ଦାସ—ପ୍ରଃ ବାଁଗ୍ୟସ—ଇରବଙ୍ଗ । ପ୍ରଃ ପଶ୍ଚିମ ଦୋହାଇ—ପଦ୍ମପୁର । ପ୍ରଃ ବାଁଗ୍ୟସ—କୋଟମୁଲ, ଇରବଙ୍ଗ । ପ୍ରଃ ରାହାଙ୍ଗ—ମଣ୍ଡଲ ।

ମଠ ମହନ୍ତ ଗୋବନ୍ଦ ଦାସ—ପ୍ରଃ କୋଠଦେଶ—ଖିଡ଼ୁଲି ଦେଉଳ, କନକପଡ଼ା । ପ୍ରଃ ରାହାଙ୍ଗ—କାନରଗୋଡ଼ା । ପ୍ରଃ ବାଁଗ୍ୟସ—ମୋଢଆପଡ଼ା ।

ମଠ ମହନ୍ତ ରାମଜୀ—ପ୍ରଃ କୋଠଦେଶ—ଚୁନାଖଣ୍ଡିହ । ପ୍ରଃ ରାହାଙ୍ଗ—ପାଟଣା ଓଗେର । ପାଟଣା ଜଗନ୍ନାଥ ପ୍ରସାଦ, ପାଟଣା ଦକ୍ଷିଣବର, ମଧୁପୁରଶାସନ । ଅରଜ ତୋଟା ଓଗେର । ମଡ଼ିଆ, ଗୁଆ । ପ୍ରଃ ପୂର୍ବବାହୁ—୧୪ଟି ମୌଜା, ଅରଜ ମୁତଫରକତ୍ । ପ୍ରଃ କୋଠଦେଶ—୧୭ଟା ମୌଜା, ଅରଜ ମୁତଫରକତ୍ ।

ମଠ ମହନ୍ତ ମୌଜୀରାମଦାସ—ପ୍ରଃ ରାହାଙ୍ଗ—ଘାସି ଭବାନୀପୁର, ପଞ୍ଚାଶବାଟି, କୁଆଣ୍ଡପଡ଼ା, ସତେଇଶିବାଟି, ରତନପାଟଣା, କରାପାଟଣା, ଖଜୁରୀଗୋଡ଼ା, ଚମାରକରା ଜଗନ୍ନାଥପୁର, କୋରଡ଼ପୁର, ଦେଉଳ ଗୋବିନ୍ଦପୁର, କ୍ଷୀର ଗୋବିନ୍ଦପୁର, ଧଉଳ, କଣ୍ଟାପୁର, ଚାରବାଟି ବଳହାରୀପୁର, ଅଲସୁଣ, କୁଞ୍ଜ, ଲୁହରେଇ, ବାଲିଆତୋଳା, ଚକରବାଟି, ଚମାଟପଡ଼ା, ଅଲସୁଣିଆ, କୃଷ୍ଣାଞ୍ଜନପୁର । ପୁରୁଷୋତ୍ତମ କ୍ଷେତ୍ରରେ ଗୃହକା—ପାଟଣା ବାଲିସାହି କାଳିକାଦେବୀ ସାହି, କୁଣ୍ଡେଇବେଣ୍ଟସାହି, ବାସୁଳିସାହି । ମୌଜା ବାଙ୍ଗୁଚୁନା । ସାନବନ୍ଧରା, ଖଟଗୁଡ଼ି, ପ୍ରଃ ପଶ୍ଚିମବାହୁ—ପରକଣା, ରଥ ପୁରୁଷୋତ୍ତମପୁର, ସୁଆଲୋ, ବିଦ୍ୟାଧରପୁର, ବଳଭଦ୍ରପୁର । ପ୍ରଃ ଅସୁରବରବର୍ତ୍ତୀ—ଅରଜ ମୁତଫରକତ୍, ପ୍ରଃ ଲୁହା-ଖଣ୍ଡ—ଅରଜ ମୁତଫରକତ୍ । ପ୍ରଃ ହାତାମୁଣ୍ଡା—ଅରଜ ମୁତଫରକତ୍, ପ୍ରଃ ବଡ଼ଗାଁ ଓ ବରମୁଲ—ଅରଜ ମୁତଫରକତ୍ । ପ୍ରଃ ଫିସନଆ, ଅରଜ ମୁତଫରକତ୍ ।

ପ୍ର· ରହାଙ୍ଗ, ପ୍ର· କୋଇମା—ଅରଜି ମୁତଫରକାତ । ପ୍ର· ଲମ୍ବେଇ ୩ଟି ମୌଜା । ପ୍ର· ଓଲଧାର—ବର, ନାଲହଣା । ପାଟଣା ଇନ୍ଦ୍ରଦ୍ୟୁମ୍ନ—ଅରଜି ମୁତଫରକାତ । ପ୍ର. ପୂର୍ବବାହୁ—ଗଲାନାଟି, ଅରଜି ମୁତଫରକାତ୍ ପ୍ର. ଓଡଙ୍ଗୀ—ବାହାଗୋଲ, ଅରଜି ମୁତ୍‌ଫରକତ୍ ।

ମଠ ମହନ୍ତ ନରସିଂହାରୀ—ପ୍ର. ପଶ୍ଚିମବାହୁ—ପରଜାପଡ଼ା, ଚକରପଡ଼ା, ବାଲଗାଁ । ପ୍ର. କୋଠଦେଶ—ପୁରୁବନ୍ଧ । ପ୍ର. ବାଁଗ୍ରସ—ହନ୍ତଜୂର, ଅରଜି ମୁତ୍‌ଫରକାତ୍ ।

ମଠ ମହନ୍ତ ବଲ୍ଲୀବାଲକ ଦାସ—ପ୍ର. ଓଲଧାର—ସନ୍ତରାମ, ଖଣ୍ଡମୁହାଣ, ଅଲଜି ମୁତ୍‌ଫରକାତ୍ ।

ମଠ ମହନ୍ତ ଜୋକୁଟ ଆଁଷୀ—ପ୍ର. ପଶ୍ଚିମବାହୁ—ଦାହୁର । ପ୍ର. କୋଠଦେଶ—ବାହାଲପୁର, ବାଲଥା ।

ମଠ ମଠାଧୀଶ ରାମାନୁଜ ଦାସ ଅଧିକାରୀ—ପ୍ର. ରହାଙ୍ଗ—ଅରବାଲ, ପ୍ରଃ ପୂର୍ବବାହୁ—ଗୁବସଲଙ୍ଗ, ଅରଜି ମୁତ୍‌ଫରକତ୍ ।

ମଠ ମଠାଧୀଶ ଆଉଲିଆ ଗୋସାଇଁ—ପ୍ର. କୋଠଦେଶ—ଲୋହାରକବ, ପାଟ । ପ୍ର. ସାଇବଶ—ନଡ଼ଲୋ । ପ୍ର. କୋଠଦେଶ, ଲୋହାରକୁଲ । ଅରଜି ମୁତ୍‌ଫରକାତ୍, ବରପଡ଼ା, ଅରଜି ମୁତଫରକତ୍ । ପ୍ର. ରହାଙ୍ଗ—ବ୍ରାହ୍ମଣପଡ଼ା ବନପୁର ।

ମଠାଧୀଶ ସେବାଦାସ—ପ୍ର· ରହାଙ୍ଗ—ଅନନ୍ତ କରପ, ବନ୍ଧଆର ।

ମହନ୍ତ ଚୈତନ ଦାସ ଖାକୀ—ପ୍ର· ଓଲଧାର—ବରଲୋ । ପ୍ର. ରହାଙ୍ଗ—କପିଳପୁର ।

ମଠାଧୀଶ ମହନ୍ତ ରାମପ୍ରସାଦ—କେତେକ ସମୁଦାୟ ମାହାଲର ଅରଜି ମୁତ୍‌ଫରକତ୍ ।

ମହନ୍ତ ବଂଶୀ ଅଧିକାରୀ—ପ୍ର. ଚୌବଶକୁଦ—କାନକୁର, କଣେନଗଡ଼, ବଦାଣ୍ଡପୁର, ସାହାସପୁର, ଖଟପିଡ଼ଙ୍ଗ, ମାଣପଡ଼ା ପାଟଣା । ପ୍ର. ରହାଙ୍ଗ—

ଫୁଲଉଲସା, ଗୋପାଳ, ପାଟଣା ବାଲପଡ଼ା, ବାଣ୍ଡର ମୁଣ୍ଡିଆ, ଭାଲୁସାହି, ପ୍ରତାପ ପୁରୁଷୋତ୍ତମପୁର, ଅରଜି ମୁକ୍ତଫରକା, ଖମାର, ଗଙ୍ଗାନାରାୟଣପୁର, ପାଇକପଡ଼ା, ସୁରୁକପୁର, ଆଲସୋନା, କାଳିଆକେରା, ନରେନ୍ଦ୍ରପୁର, ଅଲଗୁମ । ପ୍ର. କୋଠଦେଶ—ଭଗବାନସୁନ୍ଦର ।

ମଠ ମହନ୍ତ ସିଦ୍ଧ ଭଗବାନ ଦାସ (ସିଦ୍ଧମଠ)—ପ୍ର. ରାହାଙ୍ଗ—ବଟପାଳ । ପ୍ର. ଚଉବିଶକୁଦ—ବ୍ରହ୍ମଚାରୀ ବ୍ରହ୍ମପୁର ।

ମଠ ମହନ୍ତ କଣନଚନ୍ଦ୍ର ଗୋସାଇଁ—ପ୍ର. ଅନ୍ତରୋଧ—ଚରକିଗାଁ । ଚକଲା-ଦେଓଗାଁ—ନରପୁର, ବଳିପୁର, ଅରଜି ମୁକ୍ତଫରକାତ୍ ।

ମଠ ମହନ୍ତ କୌଶଲ୍ୟା ଦାସ—ପ୍ର. କୋଠଦେଶ—ତରହାଲ । ପ୍ର. ରାହାଙ୍ଗ—ବାଲପଡ଼ା, ଅରଜି ମୁକ୍ତଫରକତ୍ । ଜିଲ୍ଲା ଓଲାବର । ପ୍ର. ଲେମ୍ବେଇ—ଧନୁପୁର, ଅରଜି ମୁକ୍ତଫରକତ୍ ।

ମଠ ମହନ୍ତ ରାଧାବଲ୍ଲଭ—ପ୍ର. କୋଠଦେଶ—ଆଙ୍ଗୁପୁର, ପ୍ର. ବାଁରୁସ—ଶ୍ରୀକରଡ଼ା, ଅରଜି ମୁକ୍ତଫରକାତ୍ ।

ମଠ ମହନ୍ତ ସଦାନନ୍ଦ—ଦାତା-ପିତାମ୍ବର । ଖଇରାତ । ପ୍ର. ପଶ୍ଚିମ ବାହି—ରଥ ପୁରୁଷୋତ୍ତମପୁର, ଦେରବୋଇ । ପ୍ର. କୋଠଦେଶ—ରାଇସିଙ୍ଗ, ମାହାଲମାନଙ୍କର ଅରଜି ମୁକ୍ତଫରକତ୍ ।

ମଠ ମହନ୍ତ ବଡ଼ସନ୍ତ—ପ୍ର. ଚଉବିଶକୁଦ—ଦୁର୍ଗାପୁର, ପ୍ର. ଅନ୍ତରୋଧ—କୁନପୁର ।

ମଠ ମହନ୍ତ କୁଅର ଦାସ—ପ୍ର. ପୂର୍ବବାହି—କାଟୁରଣ ।

ମଠ ମହନ୍ତ ଗଙ୍ଗାମାତା—ପ୍ର. ରାହାଙ୍ଗ—ଅରଜି ମୁକ୍ତଫରକତ୍ ଜମି । ପ୍ର. କୋଠଦେଶ—ବାଲପୁଟ ଅରଜି ମୁକ୍ତଫରକତ୍ ।

## (୪) ଜଗନ୍ନାଥ ମନ୍ଦିରର ରତ୍ନଭଣ୍ଡାର

## ଏ ଶତାବ୍ଦୀର ତତ୍ତ୍ୱାବଧାନ

ଏହି ଶତାବ୍ଦୀରେ ବିଭିନ୍ନ ସମୟରେ ଭଣ୍ଡାରର ଦ୍ରବ୍ୟମାନଙ୍କର ତାଲିକା ହୋଇଥିଲା । ଏହି ଶତାବ୍ଦୀର ଦ୍ୱିତୀୟ ଦଶକରେ ଏକ ତାଲିକା ପ୍ରସ୍ତୁତ ହୋଇଥିବା ଶ୍ରୀମନ୍ଦିର ସ୍ପେଶାଲ ଅଫିସରଙ୍କ ରିପୋର୍ଟରୁ ଜଣାଯାଏ ।

୧୩୪ ତୋଳା ଓଜନର ରୂପାଅସ୍ତ୍ର ଉପରେ କୁଣ୍ଡଳ, ପ୍ରତ୍ୟେକ ୧୨° ତୋଳାରୁ ବେଶୀ ଓଜନର ଧନଗୋଟା ସୁନା ହରଡ଼ା କଣ୍ଠିମାଳ, ରୂପା ଓ ଅନ୍ୟାନ୍ୟ ଉପାଦାନ ବାଦ ୩୭୧ ତୋଳା ଓଜନର ସୁନା ଶ୍ରୀଭୁଜ, ୧୨୯ ତୋଳା ଓଜନର ସୁନା ଚନ୍ଦ୍ରରେଖା ଓ ଅନ୍ୟାନ୍ୟ ମାଲ ରହିଅଛି । ସ୍ୱତନ୍ତ୍ରଲିପିର ଚତୁର୍ଥଖଣ୍ଡରେ "ବାହାର ଭଣ୍ଡାରରେ ଥିବା ଜିନିଷପତ୍ର" ଶିରୋନାମାରେ ଉକ୍ତ ଜିନିଷମାନଙ୍କର ଉଲ୍ଲେଖ କରାଯାଇଅଛି । ଭିତର ଭଣ୍ଡାରରେ ଥିବା ଜିନିଷମାନଙ୍କର ତଦ୍ରୂପ ବିସ୍ତୃତ ତାଲିକା ସ୍ୱତନ୍ତ୍ରଲିପିରେ ଦିଆଯାଇଅଛି । ଏହି ଭଣ୍ଡାରରେ ହୀରା, ମୁକ୍ତା, ମାଣିକ୍ୟ, ମରକତ, ନୀଳା, ପୋହଳା ଆଦି ବହୁ ମୂଲ୍ୟବାନ ସଚ୍ଚା ଜହରତଖଚିତ ୧୮°ଟି ଭିନ୍ନଭିନ୍ନ ପ୍ରକାରର ଅଳଙ୍କାର ଅଛି । ଏତଦ୍‌ବ୍ୟତୀତ ପ୍ରତ୍ୟେକ ୨° ତୋଳାରୁ ଅଧିକ ଓଜନର ସଚ୍ଚା ମୁକ୍ତା ଓ ଚତୁର୍ଥ ଖଣ୍ଡ ବର୍ଣ୍ଣିତ ନକଲି ମଣିମୁକ୍ତାଖଚିତ ୪୯ ପ୍ରକାରର ସୁନା ଅଳଙ୍କାର, ୭୪ ଦଫା ଖାଣ୍ଟି ସୁନାର ଅଳଙ୍କାର (ସେଥିମଧ୍ୟରୁ କେତେକ ୧°° ତୋଳାରୁ ବେଶୀ ଓଜନର), ୧°° ତୋଳାରୁ ଅଧିକ ଓଜନର ପଦକ, ୨°୯ ତୋଳା ୧୨ ଅଣା ଓଜନର କୁରୁଜାତକ ମାଳ, ପ୍ରାୟ ୨୫° ତୋଳା ଓଜନର ସୁନାଥାଳି, ମଣିମୁକ୍ତାଖଚିତ ୨୯ ଗୋଟି ରତ୍ନ ଅଳଙ୍କାର, ୫୨ ତୋଳା ଓଜନର ସୁନାଖାଡ଼ୁ ସହିତ ୧୪୨ ଥାନ ରୂପା ଜିନିଷ (ଏଥିରେ ପ୍ରତ୍ୟେକ ୪°° ତୋଳାରୁ ଅଧିକ ଓଜନର କେତେକ ରୂପାର ଥାଳୀ, ୫୭୪ ତୋଳା ଓଜନର ଗରା, ପ୍ରାୟ ୭°° ତୋଳା ଓଜନର କୁଣ୍ଡ) ସୁନାର ଫିଙ୍ଗଣ (୧୫୮ ତୋଳା), ବହ୍ନିଲ ଗୁମର ଓଗେର ୯୨ ଥାନ ଜିନିଷ ତାଲିକାଭୁକ୍ତ ହୋଇଛି ।

## ୧୮°୭ର ଦ୍ରବ୍ୟ ତାଲିକା

୧୮°୩ରେ ଦ୍ରବ୍ୟମାନଙ୍କର ଏକ ତାଲିକା ପୁରୀ କଲେକ୍ଟର କରିଥିଲେ । ସେ ତାଲିକା ୧୮°୭ର ରିପୋର୍ଟରେ ଅଛି—

(ସୁବର୍ଣ୍ଣ ଅଳଙ୍କାର)

ଚୂଳକସ୍ର ୨, ମୟୂର ଚନ୍ଦ୍ରିକା ୩, ତ୍ରିଶାଖା ୨, ଚୂଳପଟି ୭, ଅପରାଜିତା ୪, ମୟୂର ପଖା ୪, ଚନ୍ଦ୍ର ସୂର୍ଯ୍ୟ ୩, ମୁକୁଟ ୩, କର୍ଣ୍ଣଫୁଲ ୧୮, କଆପତ୍ର ୩୪, କର୍ଣ୍ଣଚଳ ୪, କୁଣ୍ଡଳ ୪, ଅଚକନଆଳା (?) ୪, ଅଳକା ୩, ଘୋଡ଼ାଚଖା ୩, ଭେଟ ୧, ଶ୍ରୀଭୁଜ (ସୁନାହାତ) ୪, ନଳ ବାହୁଟି (ହାତ ଘୋଡା ପାଇଁ ସୁନାର ଅଳଙ୍କାର) ୪, ସୁନାଚକ୍ର ୧, ଅଭୁଳମୁଳ [ହାତର ଗହଣା] ୨, ଉଣଆ କମରପଟା ୩, ଗୁରୁକୁସିଆ ୨, ନୂକାସିଆ ୩, କମରଝୁମ୍ପା ୧୨, ପଦ୍ମପାଦ (ସୁନାଗୋଡ଼) ୪, ବାଘନଖ ୩, ପଦ୍ମମାଳା ୧୨, ସେବତୀମାଳା ୪, ଅଗସ୍ତିମାଳା ୨, ପାରିଜାତମାଳା ୪, କେଳିକଦମ୍ବମାଳା ୧, ପତ୍ରିଶୁଣ୍ଡମାଳା ୧, କଣ୍ଠିମାଳା ୭, ମୁକ୍ତାର ସାନ କଣ୍ଠିମାଳା ୫, ହରିତକିମାଳା [ମୁକ୍ତାସହ] ୨, ନାଦା ପଥରମାଳା [?] ୨, ନାଦା ପଥରମାଳା ରାମନାମୀ ୧, ମିରଗମାଳା [ମୁକ୍ତା] ୧, କଣ୍ଠିମାଳ ମାଳା [ମୁକ୍ତା] ୧, ମୁକ୍ତାମାଳା [ସୁନା ଗୁଉଣି] ୧, ଫୁଲସରି ମାଳା [ମୁକ୍ତା, ସୁନା] ୨, ପଞ୍ଚସୋରିଆ ଦୋସରୀ ପାଞ୍ଚ [ସୁନା କୁମ୍ଭପକା] ୪, ପଦକ ୧୦, ଧୁକୁଧୁକିଆ [ସାନ] ୧୧, ଉପଗୁରକ ପଦକ ୩, ବାଜୁବନ୍ଧ [ମୁକ୍ତା] ୧, ବାଜୁବନ୍ଧ ୧, ମୁଦ ୫, ଜୟମଙ୍ଗଳ ଆରତି ଦୀପ ୩, କର୍ପୂରଦୀପ ୩, ସୁନାଥାଳ ୪, ସୁନାବେଣ୍ଟ ଚଉରୀ ୫, ସୁନା ମୟୂରଚୂଳ ୧, ସୁନା ଗୁଞ୍ଜୁଣି ୧, ପଙ୍ଖାର ଚନ୍ଦ୍ରସୂର୍ଯ୍ୟ [ସୁନା] ୨, ପଙ୍ଖା ପାଇଁ ଦାଣ୍ଡି କଣ୍ଠି ୧, ସୁନା ବେତ ୪, କିଭଛେଲ ୩, ତାବିଜ ୨, ରକ୍ଷିବାହୁକା ୧୨, ରତ୍ନପାଦୁକା ୨, ଚମ୍ପାଫୁଲ [ମୁଣ୍ଡ ପାଇଁ] ୧୭, ସୁନାକଣ୍ଠି [ବିଭିନ୍ନ ଧରଣର] ୭୨, ସୁନାଝୁମ୍ପା [କମର ପାଇଁ] ୧, ସୁନା ଚକପଡର ୨, ସୁନା ନାକଫାସିଆ ୧, ଭଙ୍ଗା ସୁନା ଗହଣା ୧, ଅଗସ୍ତିମାଳା [ସୁନାଫୁଲ] ୭, ସୁନାର ପାନପତ୍ରୀ ଅଳକା ୨, ସୁନାର କେଳିକଦମ୍ବମାଳା ୧, ପଦ୍ମମାଳା [ସୁନା] ୧୧, ମୁଦ ୧, ମୁକ୍ତା ୨, ଛଟାଙ୍କି ୧ ।

ସୁନାପିଆ—ବାଡ଼ି ୧, ଚଉଁରୀବେଣ୍ଟ ୩, ପଙ୍ଖା ପାଇଁ ଚନ୍ଦ୍ର ସୂର୍ଯ୍ୟ ୧୭, ପଙ୍ଖା ପାଇଁ ଚନ୍ଦ୍ର ୨, ଛତାବେଣ୍ଟ ୧, ଜିଭନାଳ ମୁହଁନାଳ [?] ୨, କାନ ପାଇଁ କର୍ଣ୍ଣଫୁଲ [ରୂପାସହ] ୧, ପଣ୍ଟୁଦୁଆ [ବେକ ପାଇଁ] ୧୦, ମକରକୁଣ୍ଡଳ ୪, ଶିରପଞ୍ଚ ୪, କାନଫୁଲ ୧୧, ଟିକା ୭, ସୁନାର ମୁକ୍ତାମାଳ ୭, ନବରତ୍ନ ଜାହାଙ୍ଗି [ବାଜୁବନ୍ଧ] ୭, ହୀରା ଓ ମୁକ୍ତାର କଣ୍ଠମାଳା ୩, ଧୁକୁଧୁକିଆ [ପଥରଲଗା] ୮, ଝୁମ୍ପା ୨, ଝୁମୁକା ୩, ନାଣ୍ଡଭ୍ର ୨, ଘୁଣସି [ହୀରାମାଳା ଓ ବହୁମୂଲ୍ୟ ପଥର ସହ] ୧

ନାକଚଣା [ଶାନ] ୫, ଘୋଲଚଉତା ୩, କଲ ୨, ମଣିମୁକ୍ତା [ହୀରା ପଥର-ଲଗା] ୧୧୦୩ ।

ହୀରା ପଥରଲଗା ରତ୍ନ ଗହଣା—କଣ୍ଠମାଲା ପାଇଁ ସୁନା ପଦକ ୬, ଶିରପେଞ୍ଚ ୩, ବାଜୁବନ୍ଧ ୪୯, ବାହୁଟି ୨, କର୍ଣ୍ଣଫୁଲ ୨, ଚଡା ୨, ତଳର କଣ୍ଠେଇ ନୂଲୁକା ୫, ଧୁକୁଧୁକୁ ୧୪, ପସୁର [ପାହୁଡ଼ ?] ୧, ବାଲାକାଞ୍ଚ [ହୀରା ପଥର-ଲଗା] ୭, ପାନବଟା ହଲେ, ଦମ୍ଭିର ବାସନ ୩, ପେଗଲା ବାଟି ୩. ଗରା [ବଡ଼ ପାଣି ହାଣ୍ଡି] ୩, ସାନଗରା ୩, ଥାଳ ୫, ରେକାବ [ସାନଥାଳ] ୩୧, ଲୋଟା ୩, ଅବଖୋରା ୧୭, ଖୁରାବାଟି ୩୧, ପଙ୍ଖା ବେଣ୍ଟ ୩, ଚନ୍ଦ୍ର ପାଇଁ ରୂପାବେଣ୍ଟ ୧, ହାତ ଓ ଗୋଡ଼ ରଖିବା ପାଇଁ ପୀଠ ୪, ରୂପାଶଙ୍ଖ ୧, ଚନ୍ଦ୍ର ୧, ରୂପାପାରା ୨, ପାଲିଙ୍କିର ଟୁହନାଲ ମୁହନାଲ ୨, ଛତା ପାଇଁ ରୂପାର ଫୁଲ ୨, ଗରା ୧, ପାଲଙ୍କ ପାଇଁ କଲସ ୮ । ହାତୀ ଅମାରି ପାଇଁ କଲସ ୧, ଦୀପ ୪, ଅରଘା ୧, ଦୀପରୁଖା ୪, ରୁପା ଶଙ୍ଖ ୧, ପାନଦାନ ୧, ପଙ୍ଖାବେଣ୍ଟ ୧, ପିଲସଜ [ଦୀପଦଣ୍ଡି] ୩, ଚୁଆଦାନୀ ୩, ଛତାବେଣ୍ଟ ୨, କଂସାଦର୍ପଣ ବେଣ୍ଟ ୩, ୨୧ଟି ଦୀପଥିବା ଦୀପଦଣ୍ଡି ୨, ଖଟଖୁରା ୪, ରୂପାଛୁଆଣି ଖଟ ୩, ଛତାବେଣ୍ଟ ପାଇଁ ଚନ୍ଦ୍ର ସୂର୍ଯ୍ୟ ୨, ପଙ୍ଖାପାଇଁ ଚନ୍ଦ୍ର ସୂର୍ଯ୍ୟ ୧, ଜଗନ୍ନାଥଙ୍କ ଅଣ୍ଟାଲଗି ରୂପାଶିକୁଳ ୭, ରୁପାର କାଠି ଥିବା ଗୁଈନାଛତା ୨, ବର୍ଚ୍ଛାବେଣ୍ଟ ୫, ପତାକାବେଣ୍ଟ ୫, ମୟୂରଚୂଲବେଣ୍ଟ ୨, ରୁପାହୁଁମୁକା ୬, ଚଉଁରବେଣ୍ଟ ୨୧, ପଙ୍ଖାବେଣ୍ଟ ୨, ଦଶାବତାର ଚିତ୍ରଥିବା ପାନବଟା ୧, ରୁପାଛୁଆଣି ତକିଆ ୨, ଧୁକୁଧୁକିଆ ୧, ମୁଦି ୫୩, ରୂପାମୁକୁଟ ୧୫, ରୂପାକାଠିର ପାନପତ୍ରି ଛତି ୫, ରୁପାର ବୀଣା ୧, ଚୁପାଖୁରା ୫ ।

ଏହା ବ୍ୟତୀତ ବହୁତ ଶ୍ରେଷ୍ଠ ଶ୍ରେଷ୍ଠ ପଦାର୍ଥର ନାମ ଅଛି । ପିତଳର ଦୀପ, ରୁଖା, ଗରା, ଦୀପଦଣ୍ଡି, ପିକଦାନ, ବାସନ, ବଟ, ଥାଳ, ଖଟ, ଦଣ୍ଡି, କଳସ, ହାଣ୍ଡି ପ୍ରଭୃତି ୧୨୩ଟି ଦ୍ରବ୍ୟ ଅଛି । ଦର୍ପଣ, ହରି, ଘଣ୍ଟ, ଘଣ୍ଟି, ଗଡୁଆ, ବଡ଼ଥାଳ, ବଟା, ସୁରା, ଝାଞ୍ଜ, (୨୨ଟା) କରତାଳ (୧୦) ଇତ୍ୟାଦି ବହୁ ଜିନିଷର ନାମ ଅଛି । ଶତାଧିକ ଗରା ଥିବା ଲେଖା ଅଛି ।

ମଦନଗୋପାଳ ଠାକୁରଙ୍କର ରତ୍ନଜଡ଼ିତ ଅଳଙ୍କାର—କାନଫୁଲ ୧୦, କୁଣ୍ଡଳ ୨, ପଦ୍ମମାଲା ୧, ସେବତୀମାଲା ୩, ପଦମାଲା ୩, ଗୁପସାରିମାଲା ୧, ପାଜପନ୍ତି ୧, ବିଭିନ୍ନ ପ୍ରକାର ବେକର ମାଲା ୪୩, ବାଜୁବନ୍ଧ ୬, ପଦକ ୫, ପାଉଜିବ ୪, ନେପୁର ୨, ଗୁଞ୍ଜର (ଗୋଡ଼ର) ୨, କଙ୍କଣ ୨, ଖଡ଼ୁ ୨, ଅଳକା ୨, ନୁକସିଆ ୧୦,

ନୋଥ୨, ମୁଦ ୫, ଖଡ୍ଗ ୨, ଜଟ (ବେଣୀପାଇଁ) ୧, ମୁକୁଟ ୨, ଘଣ୍ଟା ୨, କଟାରି ୧, ଧନୁ ୧, ଶର ୨, ଝୁମ୍ପା ୯, ଚୁଡ଼ା ୧, ।

ଠାକୁରମୂର୍ତ୍ତି—ସୁନାଠାକୁର ମୂର୍ତ୍ତି ୭, ରୂପାମୂର୍ତ୍ତି ୧୧, ପାଷାଣ, ୧, ଦକ୍ଷିଣାବର୍ତ୍ତ ଶଙ୍ଖ ୧, ରାମାଭିଷେକ ମୋହର ୧, ସିଂହଜଟିଆ ଟଙ୍କା ୧ ।

ନଗଦ ଜମା—ସୁନାମୋହର ୧୨୮, ରୂପାଟଙ୍କା ୧୨୯୭, ତମ୍ବା ପଇସା ୧୦୭, ପ୍ରାଚୀନ ସୁବର୍ଣ୍ଣ ମୁଦ୍ରା ୨୪ ।

ଲୁଗା—ସୁତା, ପାଟ, ସିଲ୍କ ପ୍ରଭୃତିର ବିଭିନ୍ନ ପ୍ରକାର ଶାଢ଼ୀ, କନା, ଲୁଗା ପୋଷାକ ୧୩୩୩ଟି ଥିଲା ।

(୫) ଶ୍ରୀ ମନ୍ଦିରର ରୋଷଘରେ ମଠମାନଙ୍କ ସ୍ୱତନ୍ତ୍ର ଚୁଲି —

ଜଗନ୍ନାଥ ମନ୍ଦିରର ରୋଷଘର ଏକ ବିରାଟ ଅନୁଷ୍ଠାନ । ଏକ ସମୟରେ ଏକ ରୋଷେଇଘରେ ଲକ୍ଷାଧିକ ଲୋକଙ୍କ ପାଇଁ ରୋଷେଇ ହେବା ସ୍ଥାନ ପୁରୀର ଜଗନ୍ନାଥ ମନ୍ଦିର ରୋଷଘର ବ୍ୟତୀତ ପୃଥିବୀର ଅନ୍ୟ କୌଣସି ଧାର୍ମିକ ଅଧାର୍ମିକସ୍ଥାନରେ ଦେଖାଯାଏ ନାହିଁ । ଏହା ପୃଥିବୀର ବୃହତ୍ତମ ରୋଷଘର ।

ଏହି ରୋଷଘରର ରନ୍ଧନ ପ୍ରଣାଳୀରେ ବୈଶିଷ୍ଟ୍ୟତା ଅଛି । ଚୁଲିର ଗଠନ ପ୍ରଣାଳୀ ବିଚିତ୍ର ଧରଣର । ଏକ ସମୟରେ ଶତାଧିକ ଚୁଲି ଜଳେ । ପ୍ରତ୍ୟେକ ଚୁଲିରେ ବହୁ ସଂଖ୍ୟକ ଅଟିକା ବସାଯାଏ । ଏଠାରେ କେବଳ ସିଝା ହୁଏ । କୌଣସି ତରକାରି ବଘାରି ଛୁଙ୍କ ହୁଏ ନାହିଁ । ଛୋଟ ଅଟିକାକୁ କୁଡ଼ୁଆ କହନ୍ତି । ବଡ଼ ହାଣ୍ଡିକୁ ବାଇହାଣ୍ଡି କହନ୍ତି । ପରିମାଣ ଅନୁସାରେ ହାଣ୍ଡିର ନାମକରଣ ଅଛି ।

ଏହି ଭିତରେ ବହୁ ଭଦ୍ରବ୍ୟକ୍ତି, ସେବକ ଓ ମଠ ଚୁଲି ପଟ୍ଟା ନେଇଛନ୍ତି । କେତେକ ପ୍ରସିଦ୍ଧମଠର ନାମ ଏଠାରେ ଦିଆଗଲା ।

ଏମାରମଠ, ଶଙ୍କରାନନ୍ଦ ମଠ, ଗଙ୍ଗାମାତା ମଠ, କୌଶଲ୍ୟା ଦାସ ମଠ, ଶ୍ରୀ ରାମଦାସ ମଠ, ଲକ୍ଷ୍ମୀଭଦ୍ର ମଠ, ପଞ୍ଜାବୀ ମଠ, ବଉଳ ମଠ, ଜଗନ୍ନାଥବଲ୍ଲଭ ମଠ, ରାଘବଦାସ ମଠ, ରାଧାକାନ୍ତ ମଠ, କଡ଼ଖାଇ ମଠ, ମହାପ୍ରକାଶ ମଠ, ଓଡ଼ିଆ ମଠ, ଛଟିମାଲୀ ମଠ, ଆସ୍ଥଳ ମଠ, ଉତ୍ତରପାର୍ଶ୍ୱ ମଠ ଇତ୍ୟାଦି ।

**(୬) ଖଇ**—ଶ୍ରୀଜଗନ୍ନାଥ ମନ୍ଦିରରୁ ଓଡ଼ିଶାର ବହୁ ପ୍ରସିଦ୍ଧ ମନ୍ଦିରକୁ ଖଇପ୍ରସାଦ ଯାଏ । ସେଥିରୁ ଅଧିକାଂଶ ମଠ ପୁରୀଜିଲ୍ଲାରେ ଅବସ୍ଥିତ ।

ବାଙ୍କୀର ଚର୍ଚ୍ଚିକା ଠାକୁରାଣୀ ମନ୍ଦିର । ପୁରୀଜିଲ୍ଲାର କେତେକ ମନ୍ଦିର— ଅରୁଣେଇ ବରୁଣେଇ, ଛଧ୍ୱାଣୀ, ବାଟମଙ୍ଗଳା, ନାରାୟଣୀ (ଗଙ୍ଗାନାରାୟଣପୁର,) କନକ ଦୁର୍ଗା (ବାସୁଦେବପୁର) ହରଚଣ୍ଡୀ (ଆଳସରଙ୍ଗ), ପଞ୍ଚମୁଖୀ (କପିଳେଶ୍ୱରପୁର,) ଉଗ୍ରତାରା, (ମଲଝର) ଦକ୍ଷିଣକାଳୀ, ବାଲି ହରଚଣ୍ଡି, ଆଲମ୍‌ଚଣ୍ଡୀ, ଶୀତଳା, ବାଲିଆ ମଙ୍ଗଳା, ଦୁର୍ଗା (ନାଳଯୋଡ଼ା), ନାରାୟଣୀ (ଡ଼ମିରସେଣା,) ଡ଼ିଆ କପିଳେଶ୍ୱର ପୁର, କାକଟପୁର ମଙ୍ଗଳା ପ୍ରଭୃତି ।

## (୭) ରତ୍ନବେଦୀ ଉପରେ ଥିବା ଠାକୁରମାନଙ୍କ ଏକତ୍ର ଯାତ୍ରା କେତେକ ପ୍ରଧାନ ଯାତ୍ରା ଓ ପର୍ବପର୍ବାଣି—

ସ୍ନାନଯାତ୍ରା
ରଥଯାତ୍ରା
ଶୟନ ଏକାଦଶୀ
ଗରୁଡ଼ ଶୟନ
ଦକ୍ଷିଣାୟନ ବନ୍ଦାପନା
ଚିତାଲଗି ଅମାବାସ୍ୟା
ଝୁଲଣଯାତ୍ରା
ରାହୁରେଖା ଲାଗି
ଚନ୍ଦନ ଯାତ୍ରା

ଦେଉଳର ଯାନିଯାତ୍ରା ଓ ପର୍ବପର୍ବାଣୀମାନଙ୍କରେ ଜଗନ୍ନାଥ ଓ ଲକ୍ଷ୍ମୀ କେବଳ ନାରାୟଣ ଓ ଲକ୍ଷ୍ମୀ ରୂପରେ ପୂଜିତ ହେଉଛନ୍ତି । ଶ୍ରୀକୃଷ୍ଣ ଓ ରୁକ୍ମିଣୀଙ୍କ ଲୀଳାର ସ୍ଥାନ ଏଠାରେ ଅଛି । କୃଷ୍ଣଙ୍କ ସହିତ ରାଧାଙ୍କର ସ୍ଥାନ ନାହିଁ । କିନ୍ତୁ, ରାଧାଷ୍ଟମୀ ଦେଉଳରେ ପାଳିତ ହୁଏ । ସୁଭଦ୍ରା ବଳଦେବ ବା ଶିବଙ୍କ ଶକ୍ତିରୂପରେ ପୂଜା ପାଉଛନ୍ତି । ଏହି କାରଣରୁ ଭୁବନେଶ୍ୱରୀ ତାଙ୍କର ପ୍ରତିନିଧି ରୂପେ କେତେକ ପର୍ବପର୍ବାଣୀରେ ବିଜେ ହୁଅନ୍ତି ।

## (୮) ଶ୍ରୀକୃଷ୍ଣଲୀଳା ସମ୍ବନ୍ଧୀୟ ଯାତ୍ରା ଓ ପର୍ବପର୍ବାଣି—

**(କ) ବଳଭଦ୍ର ଜନ୍ମ**—ଗହ୍ମା ପୂର୍ଣ୍ଣିମା ଦିନ । ଏହି ଦିନ ବିବିଧବନ୍ଦାପନା ପରେ ସୁଦର୍ଶନ ବିମାନରେ ମାର୍କଣ୍ଡେଶ୍ୱର ମନ୍ଦିରଠାକୁ ଯାଆନ୍ତି ଏବଂ ମଣ୍ଡପ ଉପରେ ବିଜେ ହୁଅନ୍ତି । ଆଗରୁ କୁମ୍ଭାର ବିଶୋଇ ଚକଟା ମାଟି ଦେଇଥାଏ । ସୁଦୁସୁଆର ଏହି ମାଟିରେ

ବଳଭଦ୍ର ମୂର୍ତ୍ତି ନିର୍ମାଣ କରନ୍ତି । ପୂଜା ପଣ୍ଡା ଏହି ମୂର୍ତ୍ତିଙ୍କ ଜୀବନ୍ୟାସ କରି ବିଧାନୁଯାୟୀ ସବୁ ଜାତକର୍ମ କରନ୍ତି । ଏହାପରେ ପ୍ରସାଦ ଲାଗି, ପଞ୍ଚୋପଚାରରେ ପୂଜା, ଶୀତଳ ମଣୋହି ହୁଏ । ବନ୍ଦାପନା ପରେ ବଳଭଦ୍ର ପ୍ରତିମାକୁ ଜଳରେ ବିସର୍ଜନ କରାଯାଏ । ଏହାପରେ ସୁଦର୍ଶନ ଗୃହ ଆଶ୍ରମ ବୁଲି ନଗର ଭ୍ରମଣ କରି ଦେଉଳକୁ ଫେରି ଆସନ୍ତି ।

## (ଖ) ଶ୍ରୀକୃଷ୍ଣଜନ୍ମ, ନନ୍ଦୋତ୍ସବ, କୃଷ୍ଣଲୀଳା—

ଭାଦ୍ରବ କୃଷ୍ଣପକ୍ଷ ସପ୍ତମୀ ଦିନ ରାତି ଠାକୁର-ଠାକୁରାଣୀଙ୍କର ସନ୍ଧ୍ୟା ଆଳତି, ବେଶ, ବନ୍ଦାପନା ପରେ ମହାପ୍ରଭୁ ଜଗନ୍ନାଥଙ୍କ ବାଡ଼ରେ ଗୋଟିଏ ଅଧିକ ବନ୍ଦାପନା ହୁଏ । ଏହାର ନାମ ଗର୍ଭଉଦକ ବନ୍ଦାପନା । ପରେ ଅନ୍ୟାନ୍ୟ ଦୈନିକ ନୀତି ହୁଏ । ଅଷ୍ଟମୀ ଦିନ ସନ୍ଧ୍ୟା ଧୂପ ପରେ ଭଣ୍ଡାର ଦ୍ୱାର ଆଗରେ ପୋଡ଼ୁମାରି ସର୍ବତୋଭଦ୍ର ମଣ୍ଡଳ ମୁରୁଜରେ ଲେଖାହୁଏ । ଏହି ସ୍ଥାନଟିକୁ ଜନ୍ମ ଚକଡ଼ା କହନ୍ତି । ପଣ୍ଡା ଏହି ଜନ୍ମ ଚକଡ଼ାରେ ବସି କଳଶରେ ବରୁଣ ପୂଜା କରିବେ । ପୂର୍ବରୁ ଚିତ୍ରକାର କୃଷ୍ଣଜନ୍ମ ପଟିଟିଏ ଦେଇଥିବ । ବଣିଆ ନଅଟି ପାଖୁଡ଼ା ଥିବା ରୁପା ପଦ୍ମପାଖୁଡ଼ା ଦେଇଥିବ । କୃଷ୍ଣଜନ୍ମ ପଟିଟିକୁ ପଦ୍ମପାଖୁଡ଼ା ଉପରେ ରଖାହେବ । ନଅଟି ପାଖୁଡ଼ାରେ ନଅଟି ଚିତ୍ର ଥିବ । ଦେବକୀ, ବସୁଦେବ, ନନ୍ଦ, ଯଶୋଦା, ଲକ୍ଷ୍ମୀ, ଉଗ୍ରସେନ, ବଳଭଦ୍ର, ଗର୍ଗଋଷି ଓ କୃଷ୍ଣ—ଏ ନଅଟି ଚିତ୍ର ନଅଟି ପାଖୁଡ଼ାରେ ଥିବ । ଦକ୍ଷିଣ ଘରୁ ମଦନମୋହନ ଉଲଗ୍ନ (ଶିଶୁ ଅବସ୍ଥା) ହୋଇ ଜଗନ୍ନାଥଙ୍କଠାରୁ ଆଜ୍ଞାମାଳ ଆଣି ଜନ୍ମ ଚକଡ଼ାରେ ବିଜେ କରିବେ । ଏଠାରେ ଗର୍ଭୋଦକ କର୍ମମାନ ପୂଜାପଣ୍ଡା କରିବେ । ଦୁଇଜଣ ମହାଜନ ଲୁଗା ଘୋଡ଼ାଇ ହୋଇ ଦେବକୀ ବସୁଦେବ ବେଶ ହୋଇ ଜନ୍ମଚକଡ଼ାଠାରେ କୃଷ୍ଣଙ୍କ ଜନ୍ମ କରାଇବେ । ଏହାପରେ ରୁପା ଥାଳିରେ କୃଷ୍ଣ (ମଦନମୋହନ) ବିଜେ ହୋଇ "ଗୁମୁ ଦିହୁଡ଼ି ନ ଥାଇ, ଘଣ୍ଟା ବାଦ୍ୟ ନ ଥାଇ" ମହାଜନ-ହାତରେ ସରସ୍ୱତୀଙ୍କ ଆଗ ଯମୁନା ନଦୀଠରେ ବିଜେ କରାଇବେ । ଦେବକର ପୂଜାପଣ୍ଡା ଜଣେ ଉଗ୍ରସେନ ବେଶରେ ଠାକୁରଙ୍କୁ ଦଣ୍ଡପ୍ରଣାମ କରିବେ । ବିଜେ ସମୟରେ ବେହେରା ଖୁଣ୍ଟିଆ ଠାକୁରଙ୍କ ଶିର ଉପରେ ସପ୍ତଫେଣା ବାସୁକି ଧରି ଚାଲିଥିବେ । ଉଗ୍ରସେନଙ୍କ ପ୍ରଣାମ ପରେ ଭୋଗ ହେବ । ଏହାପରେ ଠାକୁର ଘଣ୍ଟା, ଛତା, କାହାଳୀ ସହ ତେଲିଙ୍ଗୀ ମେର୍ଦ୍ଦା ବା ନାଭିକଟା ମଣ୍ଡପଠାରେ ୯ଟି ଶେଯରେ ବିଜେ ହେବେ । ଦକ୍ଷିଣ ଘରୁ ରାମକୃଷ୍ଣ ଆସି ଶେଯରେ ବିଜେ କରିବେ । ପଣ୍ଡା ବସୁଧାରା ଦେଇ କୁଶରେ ନାଭିଚ୍ଛେଦନ କରିବେ । ଏହି ଜନ୍ମଦିନ ଉପଲକ୍ଷରେ

ରଶିଲଡ଼ୁ ଓ ରତ୍ନକୋଷ୍ଟ ଭୋଗ ହେବ । ଏହାପରେ ରାମକୃଷ୍ଣ, ମଦନମୋହନ ନିଜ ଘରକୁ ବିଜେ କରିବେ ।

କୃଷ୍ଣବାଳ୍ୟଲୀଳା ଭାଦ୍ରବ କୃଷ୍ଣ ସପ୍ତମୀଠାରୁ ମାସ ଶେଷ ପର୍ଯ୍ୟନ୍ତ ହୁଏ ।

ନବମୀ (କୃଷ୍ଣପକ୍ଷ)—ନନ୍ଦୋତ୍ସବ ।

ଦଶମୀ—ବନବେଶ, କୋଳିବିକା, ଅର୍ଘାସୁରବଧ, ବକାସୁରବଧ ।

ଏକାଦଶୀ—କାଳୀୟଦଳନ ବେଶ, ଧେନୁକାସୁରବଧ,

ଦ୍ୱାଦଶୀ—ପ୍ରଲମ୍ବାସୁରବଧ ।

ତ୍ରୟୋଦଶୀ—କୃଷ୍ଣବଳରାମବେଶ ।

ଚତୁର୍ଦ୍ଦଶୀ—କୃଷ୍ଣଜନ୍ମ ଯାତ୍ରା । ଏଦିନ ପଡ଼ିଆ ହୁଏ ।

ଅମାବାସ୍ୟା—ବସ୍ତ୍ରହରଣ ।

ଭାଦ୍ରବ ଶୁକ୍ଳ ପ୍ରତିପଦା—ଦାବାଗ୍ନି,

ଭାଦ୍ରବ ଶୁକ୍ଳ ଦ୍ୱିତୀୟା—ନିକୁଞ୍ଜଲୀଳା ।

" " ତୃତୀୟା—ଅକ୍ଷ ମନ୍ଦିର ହାତୀ ବା ଅକ୍ଷଲୀଳା ।

" " ଚତୁର୍ଥୀ—ପଡ଼ିଆ (ଲୀଳା ହେବ ନାହିଁ) ।

" " ପଞ୍ଚମୀ—ଦାହଲୀଳା ।

" " ଷଷ୍ଠୀ—ବତ୍ସାସୁରବଧ ।

" " ସପ୍ତମୀ—କେଶୀବଧ ।

" " ଦଶମୀ—କୃଷ୍ଣଲୀଳା, ଲବଣୀଚିଆ, ଅକ୍ରୂରଲୀଳା, ରଜକ ଲୀଳା, ଧନୁଯାଗ ପ୍ରସ୍ତାବ, ମଲ୍ଲଯୁଦ୍ଧ ପ୍ରସ୍ତାବ, କୁବୁଜାଉଦ୍ଧାର, କୁବଳୟାଗଜ ପ୍ରସ୍ତାବ, କଂସବଧ, ଉଗ୍ରସେନଙ୍କୁ ଶାଢ଼ୀ ପ୍ରଦାନ ।

ଭାଦ୍ରବ ଶୁକ୍ଳ ଦ୍ୱାଦଶୀଠାରୁ ପୂର୍ଣ୍ଣିମୀ—ଇନ୍ଦ୍ରଧ୍ୱଜପୂଜା ।

ବନ୍ଦୀଲୀକନ୍ୟାବଧ ପରେ ନନ୍ଦୋତ୍ସବ ହୁଏ । ଦୋଳରେ ରାମକୃଷ୍ଣ ମଦନ ମୋହନ ବିଜେ କରିବେ । ଏହାପରେ ଲକ୍ଷ୍ମୀଙ୍କ ଜଗମୋହନକୁ ବିଜେ ହୋଇ ଖଟ ଉପରେ ବସିବେ । ଭିତରଚ୍ଛୁ ମହାପାତ୍ର ନନ୍ଦରାଜା ବେଶ ଧାରଣ କରିଥିବେ, ସେ ସେହି ବେଶରେ ରାଜାଙ୍କ ନଅରକୁ ଯାଇ ଫେରି ଆସି ସ୍ନାନ ମଣ୍ଡପଠାରେ ବସିବ । ତାଙ୍କ ଲୋକମାନେ ଦୁହାଁଲି ଗାଈଟିଏ ଧରି ଲକ୍ଷ୍ମୀଙ୍କ ମନ୍ଦିର ନିକଟକୁ ଆସିବେ । ଭିତରଚ୍ଛୁ ଗୌଡ଼ ପୁତ୍ରଜନ୍ମ ହେବା ଖବର ସ୍ନାନ ମଣ୍ଡପରେ ବସିଥିବା ନନ୍ଦରାଜାଙ୍କୁ ଶୁଣାଇବ; ନନ୍ଦରାଜାଙ୍କ ଲୁଗା ଫେରକୁ ଧରି ଭିଡ଼ି ଭିଡ଼ି ଲକ୍ଷ୍ମୀଙ୍କ ମନ୍ଦିରକୁ ଆଣିବ । ଏଠାରେ ନନ୍ଦରାଜା ଗୋ-ଦୋହନ କରିବେ । ବନ୍ଦାପନା ହେବ । ପୁଅମାନଙ୍କୁ ଧରି ନନ୍ଦ

ଜଗମୋହନରେ ବନ୍ଧା ହୋଇଥିବା ଦୋଳରେ ବିଜେ କରାଇବେ । ଏହାପରେ ରାମ-କୃଷ୍ଣ, ମଦନମୋହନ ନିଜ ଘରକୁ ଫେରିଯିବେ । ଦେଉଳ ଭିତରେ ନନ୍ଦୋତ୍ସବର ଅନ୍ୟାନ୍ୟ ନୀତି ହେବ ।

ଯାହା କୋଳିବିକା—ଏ ଯାତ୍ରାଟି ମଧ କୌତୁକପ୍ରଦ । ଜଣେ ଲୋକ ଶବରୁଣୀ ବେଶ ହେବ । ଗୁଆ, କୋଳି, ନଡ଼ିଆ ଏକାଠି କରି ଡାକିବ—

"ପାଣିର ଫଳ ସିଙ୍ଗଡ଼ାର କୋଳି ଖାଇବ ଆସ ଏ ପୁଏ !"

ଭିତରରୁ ମହାପାତ୍ର ଶବରୁଣୀଙ୍କଠାରୁ କୋଳି କିଣି ଠାକୁରମାନଙ୍କୁ ଭୋଗ କରିବେ । ରାମକୃଷ୍ଣ ବଡ଼ଛତା ମଠ ଆଗରେ କାଠ ସିଂହାସନ ଉପରେ ବିଜେ ହୁଅନ୍ତି ଏଠାରେ କୋଳିବିକା ଲୀଳା ହୁଏ ।

ନନ୍ଦ-ଉତ୍ସବ ଦିନ ବିଜୁଳିକନ୍ୟା ବଧ ହୁଏ । ଭଣ୍ଡାରଘରୁ ଦୁର୍ଗାଦେବୀ ସାତପାହାଚ ଦ୍ୱାରଠାରେ ଡମ୍ବରୁ ଉପରେ ବିଜେହେବେ । ଜଣେ ସେବକ କାଠରେ ତିଆରି ହୋଇଥିବା ବିଜୁଳି କନ୍ୟାକୁ ଧରି ଫୋପାଡ଼ି ଦେବ, ଏହାପରେ ଠାକୁରାଣୀ ଭଣ୍ଡାରକୁ ବାହୁଡ଼ା ବିଜେ କରନ୍ତି ।

**ରାମଲୀଳା**— (ଚୈତ୍ର ଶୁକ୍ଳ ନବମୀଠାରୁ), ଶ୍ରୀରାମ ନବମୀର ପୂର୍ବଦିନ ରାତିଠାରୁ ରାମଜନ୍ମର ବିଧିବିଧାନ ଆରମ୍ଭ ହୁଏ । ଅଷ୍ଟମୀଦିନ ସନ୍ଧ୍ୟା ଧୂପ ସରିବା ପରେ ଜେଉଡ଼ ଭୋଗ ହୁଏ । ଜଗନ୍ନାଥଙ୍କଠାରେ ଗର୍ଭୋଦକ ନିମନ୍ତେ ଅଧିକ ବନ୍ଦାପନା ହୁଏ । ରାମ ବିଗ୍ରହ ଦକ୍ଷିଣ ଘରୁ ବିଜେ ହୋଇ ଜଗନ୍ନାଥଙ୍କ ପ୍ରତିନିଧି ହୁଅନ୍ତି ।

ଶ୍ରୀରାମନବମୀ—ଚୈତ୍ର ଶୁକ୍ଳ ନବମୀ ଶ୍ରୀରାମଜନ୍ମ । ମହାଜନଙ୍କ ଭିତରୁ ଦୁଇ ଜଣ ଦଶରଥ କୌଶଲ୍ୟା ହୋଇଥିବେ । ଜାତ କର୍ମ ସବୁ ହେବ ।

ଦଶମୀ—ଯଜ୍ଞଲୀଳା ।
ଏକାଦଶୀ—ସୀତା ବିବାହ ।
ଦ୍ୱାଦଶୀ—ବନବାସ
ଚତୁର୍ଦ୍ଦଶୀ—ମାୟାମୃଗ ପ୍ରସ୍ତାବ
ପୂର୍ଣ୍ଣିମା—ଲଙ୍କାପୋଡ଼ି
ବୈଶାଖ କୃଷ୍ଣ ପ୍ରତିପଦା—ସେତୁବନ୍ଧ

ଚୈତ୍ର ଶୁକ୍ଳ ଦ୍ୱିତୀୟା—ରାବଣବଧ
ଅଭିଷେକ

କୃଷ୍ଣଲୀଳା ଓ ରାମଲୀଳାର ବିଭିନ୍ନ ପ୍ରସ୍ତାବରେ ପୁରୀ ସହରର ପ୍ରାଚୀନ ବିଭିନ୍ନ ସାହିର ଲୋକ ସହଯୋଗ କରନ୍ତି । ସେମାନେ ପ୍ରସ୍ତାବ କରନ୍ତି । ପୁରୀର ସାହିଯାତ ଓଡ଼ିଶାରେ ପ୍ରସିଦ୍ଧ ।

## ମନ୍ଦିରର ଆୟବ୍ୟୟ

### ଦେଢ଼ଶହ ବର୍ଷତଳର ଆୟବ୍ୟୟ—

ମନ୍ଦିରକୁ ଇଂରେଜ ସରକାର ଖ୍ରୀ ୧୮୦୩ରେ ଅଧିକାର କରିବା ପରେ ମନ୍ଦିରର ପରିଚାଳନାରେ ପ୍ରତ୍ୟକ୍ଷ କର୍ତ୍ତୃତ୍ୱ ଦେଇଥିଲେ । ପ୍ରାଚୀନ କାଗଜପତ୍ରରୁ ମନ୍ଦିରର ଆୟବ୍ୟୟର ହିସାବ ଯାହା ମିଳୁଛି ସେଥିରୁ ଜଣାଯାଉଛି ଯେ ଖ୍ରୀ୧୮୦୮ ପର୍ଯ୍ୟନ୍ତ ଛଅ ବର୍ଷ ଭିତରେ ମନ୍ଦିରର ହାରାହାରି ବାର୍ଷିକ ଆୟ ସିକା ଟଙ୍କାରେ ଟ ୩୦୮୮୪୮ ତେରଗଣ୍ଡା ଏକ କଉଡ଼ି ଏବଂ ବାର୍ଷିକ ବ୍ୟୟ ସିକା ଟଙ୍କାରେ ଟ ୭୫, ୯୯୭। ନଅଗଣ୍ଡା ଏକ କଉଡ଼ି । ଆୟ ଅପେକ୍ଷା ବ୍ୟୟ ଅଧିକ ଥିବାରୁ ସରକାରଙ୍କୁ ବାର୍ଷିକ ହାରାହାରି ଟ ୨୯୩୩୫୪୮/ ତେରଗଣ୍ଡା ଏକ କଉଡ଼ି ଦେବାକୁ ପଡ଼ୁଥିଲା ।

କଉଡ଼ିରେ ମନ୍ଦିରର ଆୟବ୍ୟୟ ଏପରି ଥିଲା †

| ଅମଳ | ଆୟ (କା ଗ) | ବ୍ୟୟ |
|---|---|---|
| ୧୨୧୧ | ୧୫୫୨୮-୮-୭ କଉଡ଼ି | ୨୯୧୭୩-୧୦-୩ |
| ୧୨୧୨ | ୧୬୭୨୦-୧୮-୦ | ୨୪୩୭୦-୮-୩-୩ |
| ୧୨୧୩ | ୧୭୧୫୦-୭-୫ | ୪୨୮୨୪-୧-୯-୩ |
| ୧୨୧୪ | ୧୩୫୫୯-୨-୩ | ୧୭୩୪୦-୫-୧୦-୩ |

ଯାତ୍ରୀକରରୁ ଆୟ ୧୮୦୭ ଜାନୁଆରୀଠାରୁ ୧୮୦୭ ଅପ୍ରେଲ୍ ତା ୨୦ ରିଖ ପର୍ଯ୍ୟନ୍ତ ମୋଟ ୧୬ ମାସର ସିକା ଟଙ୍କାରେ ଟ୪୯୦୨୧୧ ।୵ ।

---

※ ବଙ୍ଗ ସରକାରଙ୍କ ରାଜସ୍ୱ ସେକ୍ରେଟାରୀ ଆର୍ ଟେକେରଙ୍କର କଟକ କମିସନରଙ୍କଠାରୁ ୧୮୦୮ ଫେବୃଆରୀ ତା ୫ ରିଖର ଚିଠି ।

**ବର୍ତ୍ତମାନ ମନ୍ଦିରର ବିଭିନ୍ନ ଆୟ**—ପୁରୀ କଲେକ୍ଟର ଗାରେଟ (GARRET) ସାହେବ ୧୯୦୩ରେ ମନ୍ଦିରର ନିମ୍ନଲିଖିତ ମତେ ଆୟ ଥିବା ତାଙ୍କ ରିପୋର୍ଟରେ ଲେଖିଛନ୍ତି ।

୧. ମହାପ୍ରସାଦ ବିକ୍ରୀ । ୨. ସେବକମାନଙ୍କ ସାଢ଼ିବନ୍ଧା (ପ୍ରଥମ ନିଯୁକ୍ତି ବେଳେ ସଲାମି) । ୩. ଆଲୁଅ ଓ ମଶାଲ ଧରି ମନ୍ଦିର ଭିତରକୁ ଯିବାପାଇଁ ଇଚ୍ଛୁକ ବ୍ୟକ୍ତିଙ୍କଠାରୁ ସଲାମି । ୪. ଠାକୁରମାନଙ୍କୁ ଅଳଙ୍କାରାଦି ଦେଉଥିବା ବ୍ୟକ୍ତିଙ୍କଠାରୁ ସଲାମି । ୫. ମନ୍ଦିର ଭିତରେ ପାହାଚ ଉପରେ ନାମଲେଖାଇବା ଫିସ୍ । ୬. ଟୋପର ଫିସ୍ ବା ପର୍ଦ୍ଦା ଭିତରେ ସ୍ତ୍ରୀମାନେ ଦର୍ଶନକୁ ଯିବା ପାଇଁ ଫିସ୍ । ୭. ଛପନ ଭୋଗ, ଲକ୍ଷବତୀ ଫିସ୍ । ୮. ମନ୍ଦିରଶୋଧ ଫିସ୍ । ୯. ମନ୍ଦିରରେ ବିଶେଷ ମର୍ଯ୍ୟାଦା ଓ ସେବା ନିମନ୍ତେ ଫିସ୍ । ୧୦. ଚୂଲି, ପନ୍ତ ଭଡ଼ା । ୧୧. ସରଘର ଆଦାୟ ଫିସ୍ । ୧୨. ପାଦୁକାକୁଣ୍ଡ ରୋହିଣୀକୁଣ୍ଡ ଜଳମ । ୧୩. ପସରିବାଲାଙ୍କଠାରୁ ମହାପ୍ରସାଦ ବିକ୍ରୀ ପାଇଁ ଫିସ୍ । ୧୪. ସୁଆରମାନଙ୍କଠାରୁ ଭୁଣିଆ ମାହାଲ ଫିସ୍ । ୧୫. ନିର୍ମାଲ୍ୟ ମାହାଲ ଫିସ୍ । ୧୬. ଗୁଣ୍ଡିଚା ଘର ଓ ଗୁଣ୍ଡିଚା ସମୟରେ ଜଗନ୍ନାଥ ମନ୍ଦିର ଭୋଗଘର ଦର୍ଶନ ଫିସ୍ ।

ବର୍ତ୍ତମାନ ଏସବୁ ପନ୍ଥାରୁ କେତେକ ଲୋପ ପାଇଛି ଏବଂ ବାକେ ମାହାଲ ଏକ ପ୍ରଧାନ ପନ୍ଥା ରୂପେ ରହିଛି ।

୧. ଭୂସମ୍ପତ୍ତିରୁ ଆୟ—ଧାନ, ନଗଦ ଟଙ୍କା, ନଜର, ପଥରଖଣି ପଟ୍ଟା ୨. ଧ୍ୱଜାଲାଗି ଓ ଅଳଙ୍କାର ଲାଗି ଫିସ୍ ୩. ପିଣ୍ଡିକା ଆୟ ୪. ଅରୁଣ ସ୍ତମ୍ଭଠାରୁ ଆରମ୍ଭ କରି ମନ୍ଦିର ଭିତରର ସବୁ ଦୋକାନ ଭଡ଼ା ୫. ଗୁଣ୍ଡିଚାଘର, ରୋହିଣୀ କୁଣ୍ଡ ପାଦୁକକୁଣ୍ଡ ୬. ନିର୍ମାଲ୍ୟ ୭. କୋଠଗୁମୁଟ ୮. ନରେନ୍ଦ୍ର ସଙ୍କଳ୍ପ ୯. ଅଟା ମଶାଲ ୧୦. ଦୀପଡିଅ ୧୧. କାଠ ମାହାଲ ଦୀପ ଇତ୍ୟାଦି ।

**ଭୋଗ ଖର୍ଚ୍ଚ** :—୧୮୮୭ରେ ପୁରୀ କଲେକ୍ଟର ଯେଉଁ ରିପୋର୍ଟ ସରକାରଙ୍କୁ ଦେଇଥିଲେ ସେଥିରୁ ମନ୍ଦିରର ଭୋଗ ସମ୍ପର୍କରେ ନିମ୍ନଲିଖିତ ମତେ ଖର୍ଚ୍ଚ ଜଣାଯାଏ ।

| ଦ୍ରବ୍ୟ | ମହଣ. ସେର ଛଟାଙ୍କି | | ଦ୍ରବ୍ୟରଦର | |
|---|---|---|---|---|
| ଚାଉଳ (ସରୁ) | ୧୧୦୦ | ମହଣକୁ | ଟ୧୵ | ଟ୧୨୩୭୴ |
| ଚାଉଳ (ସାଧାରଣ) | ୮୦୦ — | — | ଟ୦୳୵ | ଟ୭୦୦୧ |

| | ମ. | ସେ. | ଛ. | ମହନ୍ତଙ୍କୁ | | ଦ୍ରବ୍ୟରଦର |
|---|---|---|---|---|---|---|
| ବର | ୬୦୦ | — | — | ” | ଟ୦୳ | . ଟ୯୦୦୲ |
| ମୁଗ | ୧୬୬ | — | — | ” | ଟ୧୳୶ | ଟ ୨୨୯୳ |
| ହରଡ଼ତାଳ | ୩୩ | — | ୭ | ” | ଟ୧୳ | ଟ ୧୳ ୷ |
| ବୁଟ | ●୫ | — | — | ” | ଟ୧୳ | ଟ ୦ ୷ |
| ଧାନ | ୧୨ | — | ୮ | ” | | ଟ ୦ ୷ |
| ଚହ୍ନମ | ୩୧୦ | ୧୭ | ୪ | ” | ଟ୨୳ | ଟ୮୫୧/୫ଗଣ୍ଡା |
| ସୋରଷ | ମ୨ | ୧ | ୪ | ” | ଟ୧୳ | ଟ ୩୲ ୧୫ଗଣ୍ଡା |
| ହଳଦୀ | ମ୧ | ୩ | ୪ | ” | ଟ୧୦୲ | ଟ ୧୩୲ |
| ଲୁଣ | ୧୦୦ | — | — | ” | ଟ୧।୶ | ଟ ୧୩୭୲ |
| ଘିଅ | ୬୦୦ | — | — | ” | ଟ୨୩୲ | ଟ୧୩୮୦୦୲ |
| ଗୁଡ଼ | ୧୪୦୦ | — | — | ” | ଟ୩୳ | ଟ୪୯୦୦୲ |
| ମରିଚ (ଗୋଲ) | ମ୩ | ୧୦ | — | ” | ଟ୪୦୲ | ଟ୧୩୦୲ |
| ଅଳାଇଚ ? | | ୧୫ | — | ” | ଟ ୭୲ | ଟ୧୦୫୲ |
| ଜିରା | ମ୨ | — | — | ” | ଟ୧୫ | ଟ ୫୦୲ |
| ଲବଙ୍ଗ | | ୨ | ୪ | ” | ଟ୧୦୲ | ଟ ୧୨୲ |
| ଜାଇଫଳ | | ୨ | ୪ | ” | ଟ୩୪୲ | ଟ ୭୬୳ |
| ଲଙ୍କା | — | — | ୮ | ” | ଟ୦୳ | ଟ୦ ୳୲ |
| ପାନ | — | — | — | ” | ଟ୨୩୧ | ଟ୫୯୳୶ |
| | — | — | — | ” | ୧୬ଗ | ୪ଗଣ୍ଡା |
| ଗୁଆ | — | — | — | ” | ଟ୬୭୲ ୫ଗଣ୍ଡା | ଟ ୧୭୲ |
| ମହନ୍ତଭୋଗ (ମହନ୍ତ ଜସ୍ୱରାମ ଦାସ) | | | — | ” | ଟ୨୦୦୦୦୲ | ଟ୫୧୬୧। |
| ନଡ଼ିଆ | ୨୫୭୪୭ | | — | ” | ଟ୧୫୧୮। | ଟ୨୯୧୳୲ |

ମୋଟ ଟ୨୮୮୧୬।୷ ଛଅଗଣ୍ଡା

## ସୁବାସ ଦ୍ରବ୍ୟ

| | | | |
|---|---|---|---|
| ଗୁଗ୍‌ଗୁଳ | ୮ଛ | ଟ୦୳ସେ | ଟ୦।୶ |
| ଚନ୍ଦନ | ମ୪ ସେ ୧୭ ଛ୧୫ | ଟ୬୫ମ | ଟ୨୮୯୶ ୧୦ଗଣ୍ଡା |
| କସ୍ତୁରୀ | ଛ ୧ | | ଟ୩୯୩୳ |
| କର୍ପୂର | ସେ୨ | ଟ୩୧୫ସେର | ଟ୬୩୦ |
| ନାଗେଶ୍ୱର | , ସେ ୧ ଛ୪ | ଟ୧୦୫ସେର | ଟ୧୩୧। |

| | | | |
|---|---|---|---|
| ଚୂଆ | ସେ୧୫ ଛ୧୨ | ଟ୮୧ ସେର | ଟ୨୦୦୬ |
| ଅନ୍ୟ ମସଲା | | | ଟ ୩୧ |
| | | | ମୋଟ ୧୭୪୫।୵ ୧୦ଗଣ୍ଡା |

## ରଥ

| | | |
|---|---|---|
| ଚଉଡ଼ା ଲୁଗା | ୨୦ ଖଣ୍ଡ | ଟ୧୭୦୩୧ |
| ଦେଶୀ ସିଲ୍କ | ୨୭ ” | ଟ୨୪୨୧ |
| ଅନ୍ୟାନ୍ୟ ଲୁଗା | ୩ ” | ଟ ୫୭ ୨ |
| ଛିଟଲୁଗା | ୩ ” | ଟ ୧୩୪୬୵ |
| କଲିକତାର ଚଉଡ଼ାଲୁଗା ଆଣିବା ଖର୍ଚ୍ଚ | | ଟ୧୭୪ । |
| କାଠ କଣ୍ଟା, ରଙ୍ଗ, ରଥ ତିଆରି ମଜୁରି | ଟ୧୫୫୮୩୨୵କୁ | ଟ୪୦୨୧୨/୯ ଖଣ୍ଡ |
| ତୁଳି ? ୫ମ | ଟ୧୦୭୫୨୵କୁ | ଟ ୨୭୫୧ |
| ଫୁଲ ପ୍ରଭୃତି ଗଢ଼ା ପାଇଁ | ଟ୮୪୮୨୵କୁ | ଟ ୨୧୯୧ |
| | | ମୋଟ ଟ ୭୮୨୨ ।୵ |

ବଣା, ଅଠା, ଅବିର, ସିଲ୍କ, କପା, କୁସୁମ ଫୁଲ, ମହୁ, ହାଣ୍ଡି ଓଗେର ଟ୭୧୩୭।

ବର୍ତ୍ତମାନ ଠାକୁରମାନଙ୍କ ଭୋଗ ଲାଗି ଲୁଗା—ଜଗନ୍ନାଥ ମନ୍ଦିରରେ ବହୁ ପ୍ରାଚୀନ କାଳରୁ ବିଭିନ୍ନ ପର୍ବପର୍ବାଣି ଓ ଯାତ୍ରାଦିନମାନଙ୍କରେ ବିଭିନ୍ନ ପ୍ରକାର ଲୁଗା ଠାକୁରମାନଙ୍କ ପାଇଁ ବ୍ୟବହାର ହୁଏ । ପ୍ରକାର ଭେଦ ଓ ବ୍ୟବହାରର ବିଭିନ୍ନତା ଉକ୍ତ ସଂସ୍କୃତିର ପରିପୁଷ୍ଟକ ଥିବାରୁ ଏଥିରୁ କେତେକ ପ୍ରକାର ଲୁଗାର ନାମ ଏଠାରେ ଦିଆଗଲା ।

**ଲୁଗା** :—ବାରୁଲାଗି, ଷ୍ଟ୍ରେଟପାଟଣୀ, ମଲମଲ, ଚେମଡ଼ୀ, ଖଦିଫେଟା, ତୋଇରଣି, କଳା ଖଦି, ଦେଶୀଶାଢ଼ୀ, ଦେଶୀ ଫେଟା, ସୁତାପାଣ୍ଟ, ପାଲଟ୍‌ଗଡ଼ା, ଝିଖଣ୍ଡିଆ, ପାଲଟ୍ ଶାଢ଼ୀ, ଝିଖଣ୍ଡିଆ ଖଦି, ପାଟଣୀଗଡ଼ା, ପାଟଣୀ ଖଣ୍ଡୁଆ, ଫୁଲ-ପଡ଼ା ଚଦର, କବସ୍ତି କାଛଣୀ, ଜୋଡ଼ ପାହାଡ଼, ଦଣ୍ଡ ପାହାଡ଼, ପାଗ ମଲମଲ, ସୂତା ଗଡ଼ା, ସୂତାଚୂଳ ଫେଟା, ସୂତା ଜୋଡ଼ ପୋଷ୍ଟ, ଖଦି ପାଗ୍ରେଡ଼ା, ବାହୁଟ, ବିଜୟ ତୁଳିଗଡ଼ା, ଶ୍ରୀପୟର ତୁଳିଗଡ଼ା ସେନାଫୁଟା, ନେତାଳଫୁଟା, ଝଉଗୁଳି, ଚନ୍ଦ୍ରଲ, ଉତ୍ତରୀ, ମାଟଜୋଡ଼ା, ଚନ୍ଦନଗୁଡ଼ା, ବଉଳପାଟ, ଶ୍ରୀମୁଖ ଓଡ଼ା, ରଥ-ଘେର, ପାଟଣୀ ଖଣ୍ଡୁଆ, ବୈରଣି ଖଣ୍ଡୁଆ, ଶ୍ରୀକାପଡ଼ା, ତଡ଼ପ, ଚୂଳଫୁଟା, ହାତପାଣ୍ଟ, ଜୋଡ଼ ପାଏଡ଼ା, ବଉଳ ପାଟ, କେନ୍ଦୁଲି ଶାଢ଼ୀ, ଦେଶୀ ମରଷ୍ଟି ଶାଢ଼ୀ, ପାଣ୍ଟ, ଛେଦା, କେନ୍ଦୁଲି ଖଣ୍ଡୁଆ, କଣିଆ, ଇତ୍ୟାଦି ।

ବିଭିନ୍ନ ଯାତ୍ରାଯାତ୍ରାରେ ଠାକୁରମାନଙ୍କ ଲାଗି ଲୁଗା ପାଉଣା ପାଉଥିବା ବିଭିନ୍ନ ମଠ, ସେବକ, ଭଦ୍ରବ୍ୟକ୍ତିମାନଙ୍କର ଏକ ବିସ୍ତୃତ ତାଲିକା ଏହି ରିପୋର୍ଟରେ ଅଛି ।

**(୯) ଭୋଗଦ୍ରବ୍ୟ:**— ମନ୍ଦିରରେ ଭୋଗ ପାଇଁ ବହୁପ୍ରକାର ପିଠାପଣା, ତରକାରୀ ହୁଏ । ଏକ ସ୍ଥାନରେ ଏତେ ଭୋଗଦ୍ରବ୍ୟର ବ୍ୟବହାର ଅନ୍ୟଠାରେ ଦୁର୍ଲଭ । କେତୋଟିର ନାମ ଏଠାରେ ଦିଆଗଲା ।

ନାଡ଼ୀ, ତ୍ରିପୁରୀ, ପିଡା, ହଂସକେଳି, ପୁଳୀ, କାକରା, କାନ୍ତି, ପଣସୁଆ, ଡାଲମ୍ବ, ଗଜା, ଚନ୍ଦ୍ରମାଠପୁଳୀ, ଆରିସା, ଅମାଲୁ, କାନିକା, ଓଡିଆ, ମୁଖ, ମଣ୍ଡପାଣି, ଖିରି, ପଣା, ଡାଟ, ନାଡ଼ୁ, ଧଉଳା, ଖଇରଚୂଲ, ଖିରିସୋ, ସାକରା, ଝିଲି, ଦରପୁଆ ଝିଲି, କାକେରୀ ନଳୀ, ଏଣ୍ଡୁରି, ମୁଗେଇ, ଝଡ଼େଇ ନେଦା, ଛତୁ, ଚୂଡ଼ାପୁଆ, ବଡ଼ୀ, କଣ୍ଢୋଇ, ଡାଟନଡ଼ୁ, ଗଇଣ୍ଠା, ମଣ୍ଡା, ବଡା, ନାଡ଼ୁ ବଉଳ, ଫେଣୀ ବଉଳ, ଚୂନା ବଉଳ, ଘିଅନାଡ଼ୁ, ଅଧା ଡାଲିଆ, ଟାକୁଆ, କାନିକା, ମକରନାଡ଼ୁ, ଧୂପନାଡ଼ୁ, ଫେଣି, ଅଲ୍ଲକ୍ଷେ ମଣ୍ଡା, ନଡ଼ୁଣିଆ ମଣ୍ଡା, ସରକମ୍ପା, ଖୋଲ-ବଡା, ଘିଉଡ଼ୁ, ମୋଡ଼ଆ, ଧନସରଣ, ମନୋହର, ଟାକୁଆ, ମାଣ୍ଡୁଅ, ଚକୁଳି, ସରୁ ଚକୁଳି, ଛେନାକେଲୀ, ପାରିଜାତକ, ଛେନାନଡ଼ୁ, ସୋଧୁଅ, ଗୋଟି କାକରା, ଗୃଟିଭାତ, ସରପୁଳି, କଡ଼ମ୍ବା, ଦହିଟାଣ ପଖାଳ, ବଡ଼ ମନ୍ଦୁର, ମଣ୍ଡା କଡ଼େଇ, କଦଳି ଡଳିଆ, ଭଜା, ଅଦା ପାଚେରି, ଫେଣାପିକା, ସାକର, ଗୁଡ ସାକର, ଖଣ୍ଡମଣ୍ଡା, ଚଣାକୋରା, ପଣସୁଆ, କୁଳି, ଖମ୍ବବାଡ଼ୁ, ଘିନାଡ଼ୁ, କେଲୀ ରସାବଳୀ, ରସାବଳୀ ମାଣ୍ଡୁଅ, ପଟ ମାଣ୍ଡୁଅ, ଦୁଇପଟିଆ ମାଣ୍ଡୁଅ, ତିନପଟିଆ ମାଣ୍ଡୁଅ, ଚାରିପଟିଆ ମାଣ୍ଡୁଅ, ପାଞ୍ଚପଟିଆ ମାଣ୍ଡୁଅ, ନାନମାନ, ଶାଗ, ମାଠ-ପୁଳି, ଅଧିକ ମନୋହର, ପଖାଳ, ରଥ ମନୋହର, ସୁଆର ନଡ଼ୁ, ସରବଡ ପିଠା, ଡାଟକୋରା, ଦୋଭଜାଲିଆ, ନଡ଼ଆ ଖୁଦି, ପାପୁଡ଼ି, କାନ୍ତି କାକରା, ସୁଆର ପିଠା, ହଂସକେଳି ପିଠା, ହଂସବଲ୍ଲଭ ପିଠା, ଜେନାମଣି ପିଠା, ମହାଙ୍କର ପିଠା, ଗୋଟିକା ।

**(୧୦) ସେବକମାନଙ୍କ ଦଣ୍ଡ:**— ଦେଉଳ ନୀତି ଚଳିବା ପ୍ରଧାନ ଥିବାରୁ ସେବକମାନଙ୍କ ଅବହେଳାରୁ ନୀତିରେ ବିଳମ୍ବ ବା ବ୍ୟାଘାତ ଘଟିଲେ ସେବକମାନଙ୍କୁ ସେବାର ଗୁରୁତ୍ୱ ଅନୁସାରେ ଦଣ୍ଡ ଦିଆଯାଉଥିଲା ।

ମୁଦିରଥ, ପଢ଼ିଆରି, ସିଂହାରୀ, ଦଇତା, ପତି, ତଳିଚ୍ଛୁ, ଛତରିଚ୍ଛୁ, ଚଉଦଣ୍ଡା ନିଯୋଗ ନାୟକ,—ଏମାନଙ୍କୁ ତିନିଦିନର ଖେଇ ଦଣ୍ଡ ହେଉଥିଲା ।

ଏମାନଙ୍କ ଭାଗକୁ ବନ୍ଦୀ କରି ଜରିମାନା ସ୍ୱରୂପ ଆଦାୟ କରାଯାଉଥିଲା । ଦ୍ୱିତୀୟଥର ଦୋଷ କଲେ ପାଞ୍ଚ ଟଙ୍କାର ୫ଗୁଣ ପର୍ଯ୍ୟନ୍ତ ଅର୍ଥଦଣ୍ଡ ପାଉଥିଲେ । ତୃତୀୟଥର ଦୋଷ କଲେ କାର୍ଯ୍ୟରୁ ବରଖାସ୍ତ ହେଉଥିଲେ ।

ପଢ଼ିଆରୀ, ସୁଆରବଡ଼୍, ସନ୍ତବଡ଼ ଓ ଦେଉଳର ଅନ୍ୟାନ୍ୟ ସେବକମାନଙ୍କୁ ଛଅଟଙ୍କାର ଖେଇ ବାଜ୍ୟାପ୍ତ ଓ ଦଶ ବେତମାଡ଼ ଦଣ୍ଡ ଦିଆଯାଉଥିଲା । ଏମାନଙ୍କୁ ମଧ୍ୟ ପ୍ରଥମ ଓ ଦ୍ୱିତୀୟଥର ଦୋଷ ପାଇଁ ଏପରି ଦଣ୍ଡ ଥିଲା । ତୃତୀୟ ଥରକୁ ବରଖାସ୍ତ ଦଣ୍ଡ ମିଳୁଥିଲା ।

ଅଖଣ୍ଡ ମେକାପକୁ ଦୀପ ଜାଳିବା ଅବହେଳା କଲେ ଅର୍ଥଦଣ୍ଡ ହେଉଥିଲା ।

ମରହଟ୍ଟା ଓ ପୂର୍ବ ରାଜତ୍ୱକାଳରେ ଦଣ୍ଡର ବ୍ୟବସ୍ଥା ଥିବାରୁ ଇଂରେଜ ସରକାର ମଧ୍ୟ ପ୍ରଥମରୁ ଦଣ୍ଡ ବିଧାନର ପ୍ରଣାଳୀ ବିଚାର କରିଥିଲେ । ଗ୍ରୋମ ସାହେବ ଏହି ସବୁ ବିଧାନ ପୁନଃପ୍ରବର୍ତ୍ତନ କରିବା ସପକ୍ଷରେ ସରକାରଙ୍କୁ ସୁପାରିଶ କରିଥିଲେ । ସେବକମାନଙ୍କ ପ୍ରତି ମନ୍ଦିର କର୍ତ୍ତୃପକ୍ଷ ଓ ସରକାରଙ୍କ ଦଣ୍ଡବିଧାନ କ୍ଷମତା ପୂର୍ବେ ଥିବାହିଁ ଏଥିରୁ ସୂଚିତ ହେଉଛି ।

## (୧୧) ଶ୍ରୀଜଗନ୍ନାଥ କ୍ଷେତ୍ରରେ ଯାତ୍ରୀକର :—

ଇଂରେଜମାନେ ୧୮୦୩ରେ ଓଡ଼ିଶା ଅଧିକାର କରିବା ପରେ ଜଗନ୍ନାଥ ମନ୍ଦିରର ପରିଚାଳନା ପାଇଁ ତିନିଜଣ ପଣ୍ଡା ନିଯୁକ୍ତ କରିଥିଲେ । ମୋଗଲ ପଣ୍ଡିତ ପ୍ରଧାନ ପଣ୍ଡା, ଜଗନ୍ନାଥ ରାଜଗୁରୁ ଦ୍ୱିତୀୟ ପଣ୍ଡା ଓ ସେବାଜୀ ଆଙ୍ଗିଟିସ୍ ତୃତୀୟ ପଣ୍ଡା ଥିଲେ । ଏମାନଙ୍କ ସାହାଯ୍ୟରେ ଗ୍ରୋମ୍ ସାହେବ ୧୮୦୫ରେ ବହୁ ତଥ୍ୟ ସଂଗ୍ରହ କରି ଏକ ରିପୋର୍ଟ ପ୍ରସ୍ତୁତ କରିଥିଲେ ଏବଂ ସେହିବର୍ଷ ଜୁନମାସ ତା୧୦ରିଖରେ ସରକାରଙ୍କଠାକୁ ପଠାଇଥିଲେ । ସେହି ରିପୋର୍ଟରେ ତତ୍କାଳୀନ ଓ ପ୍ରାଚୀନ ରୀତିନୀତି, ଆୟବ୍ୟୟ ପ୍ରଭୃତିର ଏକ ଚିତ୍ର ମିଳୁଛି । ସେଥିରୁ ସାରାଂଶ ସଂଗ୍ରହ କରି ଏଠାରେ ଦିଆଗଲା ।

**ଯାତ୍ରୀକର ନିର୍ଘଣ୍ଟ :**—ଯାତ୍ରୀକର ଆଦାୟରେ ନିର୍ଦ୍ଦିଷ୍ଟ ନିୟମ ନ ଥିଲା । ଅବଶ୍ୟ ହାର ନିର୍ଦ୍ଧାରିତ ହୋଇଥିଲା । ଭାରତର ଉତ୍ତର ଅଞ୍ଚଳରୁ ଆସୁଥିବା ଯାତ୍ରୀମାନଙ୍କଠାରୁ ମୟୂରଭଞ୍ଜର ଖଣ୍ଟା ନାମକ ସ୍ଥାନରେ କର ଆଦାୟ କରାଯାଉଥିବା, ପୁରୀ ସହରର ଉପକଣ୍ଠରେ ଥିବା ଅଠରନଳାଠାରେ ମଧ୍ୟ ଯାତ୍ରୀକର ଆଦାୟ ଘାଟି ଥିଲା । ଯାତ୍ରୀମାନଙ୍କର ସାମାଜିକ ଅବସ୍ଥା ଅନୁସାରେ ଶ୍ରେଣୀ ବିଭାଗ ହୋଇଥିଲା । ଉଚ୍ଚ ଶ୍ରେଣୀର ଲୋକଙ୍କଠାରୁ ଯାହା ଆଦାୟ

ହେଉଥିଲା ତାର ଅଧା କିମ୍ବା ଚଉଠା ମଧ୍ୟବିତ୍ତ ଯାତ୍ରୀମାନଙ୍କଠାରୁ (ମୁଣ୍ଡିଖାସ) ଆଦାୟ କରାଯାଉଥିଲା । ଅତି ଗରିବଙ୍କଠାରୁ କିଛି ଆଦାୟ କରାଯାଉ ନ ଥିଲା । କିନ୍ତୁ ଏମାନଙ୍କ ଅଠରନଳା ଚଉକୀ ପାଖରେ ଭଲ ଭାବରେ ଖାନତଲାସ କରାଯାଉଥିଲା । ଲୁଗାପଟା ଦେଖା ହେଉଥିଲା । ସାଧାରଣତଃ ଏମାନଙ୍କୁ କିଛି ସମୟ ଆଠର-ନଳା ଜଗାଟରେ ଅଟକେଇ ଦିଆଯାଉଥିଲା । ବଡ଼ଯାତ୍ରା ସମୟରେ, ବିଶେଷତଃ ରଥଯାତ୍ରା, ଦୋଳଯାତ୍ରା, ସ୍ନାନଯାତ୍ରା ସମୟରେ, ଏମାନଙ୍କୁ ଏକାଧିକ ଦିନ ଅଟକାଇ ରଖା ଯାଉଥିଲା ଏବଂ ଠିକ ଯାତ୍ରାଦିନ ପୂର୍ବରୁ ଛାଡ଼ି ଦିଆ-ଯାଉଥିଲା ।

ଦକ୍ଷିଣରୁ ଆସିବା ଯାତ୍ରୀମାନଙ୍କଠାରୁ ମଧ୍ୟ ଏହିପରି ଲୋକନାଥ ଘାଟରେ କର ଆଦାୟ କରାଯାଉଥିଲା । ଗରିବ ଯାତ୍ରୀ (ଲାଲଯାତ୍ରୀ)ମାନଙ୍କୁ କର ଛାଡ଼ ହେଉ ଥିଲେ ମଧ୍ୟ ସେମାନଙ୍କୁ ନମ୍ବର ଦିଆଯାଉଥିଲା । ଏହା ବ୍ୟତୀତ ପ୍ରତ୍ୟେକ ଯାତ୍ରୀଠାରୁ ଅଧିକ କର ମଧ୍ୟ ଆଦାୟ କରାଯାଉଥିଲା । ସିଂହାସନ ପରିକ୍ରମା କଲେ ପଶ୍ଚିମା ଯାତ୍ରୀମାନଙ୍କ ମଧ୍ୟରୁ ଧନୀମାନଙ୍କଠାରୁ ଯାତ୍ରୀକର ବ୍ୟତୀତ ୪ପଣ ୧୨୫ ଗଣ୍ଡା କଉଡ଼ି ଆଦାୟ ହେଉଥିଲା । ଗରିବମାନେ ୩ ପ ୭୫ ଗ ଦେଉଥିଲେ । ବିଶେଷ ଭାବରେ ପଶ୍ଚିମଯାତ୍ରୀମାନେ କେବଳ ସିଂହାସନ ପରିକ୍ରମା କରି ଫିସ୍ ଦେଉଥିଲେ । ବଙ୍ଗୀୟଙ୍କ ସଂଖ୍ୟା କମ୍ ଥିଲା । ଏହି ଆୟରୁ ଅଧେ ସରକାର ପାଉ-ଥିଲେ ଏବଂ ଆଉ ଅଧେ ପଣ୍ଡାମାନେ ଓ ଦେଉଳ କରଣ ନେଇଯାଉଥିଲେ । ସାଥୁଆମାନଙ୍କୁ ପ୍ରତ୍ୟେକ ଯାତ୍ରୀ କରରୁ ଚାରିଅଣା ଦୁଇପଇସା ଦିଆଯାଉଥିଲା, କାରଣ ଏମାନେ ଦେଶର ବିଭିନ୍ନ ସ୍ଥାନରେ ବୁଲି ଯାତ୍ରୀଙ୍କୁ ସାଙ୍ଗରେ ଧରି ଆସୁ-ଥିଲେ । ସରକାରୀ ହାକିମ, ପେନସନ୍‌ବାଲା, କେତେକ ଜମିଦାର, ରାଜା, ଦଣ୍ଡୀ ସନ୍ନ୍ୟାସୀ, ମଠାଧୀଶ, ବ୍ରାହ୍ମଣ ଓ ସେମାନଙ୍କର ସେବକମାନଙ୍କୁ ଛାଡ଼ ମିଳୁଥିଲା । ବେପାରୀମାନେ ମଧ୍ୟ ଛାଡ଼ ପାଉଥିଲେ । ଆର୍ଥିକ ଅବସ୍ଥା, ଓ ମନ୍ଦିର ସହିତ ସମ୍ପର୍କ ଏହି ଛାଡ଼ର ମାନଦଣ୍ଡ ଥିଲା ।

୧୮୦୬ ଠାରୁ ୧୮୦୭ ଭିତରେ ୧୬ ମାସରେ ସିକା ଟଙ୍କା ଟ୪୯୦୨୧୧।୯ ଯାତ୍ରୀକରରୁ ଆଦାୟ ହୋଇଥିଲା । ଜରିମାନା ବାବଦରେ ଟ୧୫୩୯୭୫/ ଆଦାୟ ହୋଇଥିଲା । ଏଥିରୁ କର ଆଦାୟ ବାବଦରେ ଟ୨୦୩୦୯୧ ଖର୍ଚ୍ଚ ହୋଇଥିଲା । ସବୁ ଖର୍ଚ୍ଚ ବାଦେ ବାର୍ଷିକ ପ୍ରାୟ ଚାରିଲକ୍ଷ ଟଙ୍କା ଯାତ୍ରୀକର ବାବଦରୁ ସରକାର ଆଦାୟ କରୁଥିଲେ । ଏହା ମନ୍ଦିର ଫଣ୍ଡକୁ ଯାଉ ନ ଥିଲା ।

# ଯାତ୍ରୀକର ଆଦାୟର ଘାଟ

ଯାତ୍ରୀକର ଆଦାୟ ଓ ଯାତ୍ରୀକର ନିୟନ୍ତ୍ରଣ ପାଇଁ ନିମ୍ନଲିଖିତ ଘାଟ ରଖାଯାଇଥିଲା ।

୧ । ଗୁଜର ନରସିଂହପୁର
୨ । ଗୁଜର ଯୋବ୍ରା
୩ । ଗୁଜର ଗୁଣ୍ଡିଚା ଘର
୪ । ଗୁଜର ମଙ୍ଗଳାଘାଟ
୫ । ଗୁଜର ଲୋକନାଥ ଘାଟ
୬ । ଗୁଜର ଅଠରନଳା
୭ । ସଦର କଚେରୀ(ପୁରୀ)

ଏହି ଗୁଜର ବା ଘାଟମାନଙ୍କୁ ଜଗିବା ପାଇଁ ଫାଣ୍ଡି ବସାଯାଇଥିଲା । ପ୍ରତ୍ୟେକ ଗୁଜରରେ ଜଣେ ଦାରୋଗା, ଜଣେ ମୋହରିର, ଜଣେ ଜମାଦାର ଛଡା ଆବଶ୍ୟକ ଅନୁସାରେ ୧୦୦ରୁ ୨୦ ପର୍ଯ୍ୟନ୍ତ ପାଇକ ଚପରାସି ରହୁଥିଲେ । ଦରମା ଏପରି ଥିଲା :—

ଦାରୋଗାଙ୍କ ଦରମା ମାସିକ ଟ୧୫୦ଠାରୁ ଟ୧୦୦୲ ଥିଲା । ଗୁଣ୍ଡିଚାଘର ଘାଟ ଦାରୋଗା ଟ୧୫୲ ଓ ଅଠରନଳା ଘାଟ ଦାରୋଗା ଟ୧୦୦୲ ମାସିକ ଦରମା ପାଉଥିଲେ । ପାଇକ ବା ଚପରାସିଙ୍କ ଦରମା ଟ୪୲, ମୋହରିର ଦରମା ଟ୧୦୲ ଥିଲା ।

ଅଠରନଳା ଘାଟ ସବୁଠାରୁ ବଡ଼ ଘାଟ ଥିବାରୁ ସେଠାରେ ବେଶି ଲୋକ ନିଯୁକ୍ତ ଥିଲେ ।

| | | | | | |
|---|---|---|---|---|---|
| ୧ ଦାରୋଗା | ଟ୧୦୦ | ୪ ମୋହରିର | ଟ୧୦୲ | ହିସାବରେ | ଟ୪୦୲ |
| ୧ ଜମାଦାର | ଟ୧୦୲ | ୨୦ ପାଇକ | ଟ ୪୲ | ହିସାବରେ | ଟ ୮୦୲ |
| ୧ ପୋଦର | ଟ ୭୲ | ଅଫିସ ଜିନିଷ ଖର୍ଚ୍ଚ | ଟ ୪୲ | ମୋଟ | ଟ୨୪୧୲ |

ଯାତ୍ରୀମାନେ ଭାରତର ବିଭିନ୍ନ ସ୍ଥାନରୁ ହାତୀ, ଘୋଡ଼ା, ଓଟ, ବଳଦ ଗାଡ଼ି, ପାଲିଙ୍କି, ଡୋଳିରେ ଆସୁଥିଲେ । ଏମାନଙ୍କଠାରୁ ବାହନ ଅନୁସାରେ ଯାତ୍ରୀକର ହାର ନିର୍ଦ୍ଧାରିତ ହୋଇଥିଲା ।

ଏହି କରର ହାର ନିର୍ଣ୍ଣୟ କରିବା ପାଇଁ ଅଞ୍ଚଳ ଅନୁସାରେ ମୋଟାମୋଟି ଏପରି ଭାବରେ ବିଭାଗ କରାଯାଇଥିଲା :—

(୧) ଜଳେଶ୍ୱର—ମହାନଦୀ ଉତ୍ତରରୁ ଆସୁଥିବା ଯାତ୍ରୀ

(୨) ଦକ୍ଷିଣକୁ ମୁହାଁ ଯାତ୍ରୀ, ସିଂହଭୂଇଁଆ, ଗୁଜରାଟୀ, ଅଗରବାଲ, ଗଉଡ଼ କୁମ୍ଭଟି, କେନ୍ଦୁଝରିଆ, ବଉଦିଆ, ବୁନ୍ଦେଲ ।

(୩) ପଶ୍ଚିମା, ମରହଟ୍ଟା, ନାଗପୁରୀ, ଗଡ଼ ମଣ୍ଡଳା, ଛତିଶଗଡ଼, ସମ୍ବଲପୁର, ରତନପୁର, କମା, ତେଲେଙ୍ଗା, ଶ୍ରୀବୈଷ୍ଣବ, କଳାହାଣ୍ଡି, ବସ୍ତର, ରାୟପୁର, ଜୟପୁର, ରାୟଗଡ଼, ଗୁଣୁପୁର, ପାରଳା, ଟିକାଲି, ବଙ୍ଗିବରଦାର, ଗୁରେଇବାନ (ଗୁଜରାଟି); କୁରମ, ଦାସିଣ, ସୁନାରି, ମାଛଖିଆ କୁମ୍ଭଟି, କାମ୍ପ; ତରଳା, ଜରଡ଼ା, ବଉଦ, ଶ୍ରୀକୂର୍ମର, ବଙ୍ଗବରଦାର; ମଞ୍ଜୁଷା, ଇଚ୍ଛାପୁର, ଜରଡ଼ା, ସୁରଙ୍ଗି, ମୋହୁରି, ବିଜୟନଗର, ସୋରଡ଼ା, ଖିମୁଣ୍ଡି, ସେରଗଡ଼ ବଡ଼ଗଡ଼ ।

ଏଥିରୁ ଜଣାଯାଉଛି, ବିଭାଗରେ ବିଶେଷ କିଛି ନିୟମ ନ ଥିଲା । ୧୮୦୭-୮ ବିଶେଷ ଶ୍ରେଣୀ ବିଭାଗ କରି ପ୍ରତ୍ୟେକ ଶ୍ରେଣୀ ପାଇଁ କରର ହାର ସୁପାରିସ୍ କରି ପୁରୀ ମାଜିଷ୍ଟ୍ରେଟ୍ ସରକାରଙ୍କୁ ଏକ ପ୍ରସ୍ତାବ ଦେଇଥିଲେ । କିନ୍ତୁ ସରକାର ଏହା ଗ୍ରହଣ ନ କରି ପ୍ରାଚୀନ ହାରର ସାମାନ୍ୟ ପରିବର୍ତ୍ତନର ସୂଚନା ଦେଇଥିଲେ ।

—o—

## ଷୋଡ଼ଶ ପରିଚ୍ଛେଦ

## ଶ୍ରୀଜଗନ୍ନାଥ ମନ୍ଦିରରେ ଥିବା ଶିଳାଲିପି

ଶ୍ରୀଜଗନ୍ନାଥ ମନ୍ଦିର ବେଢ଼ାଭିତରେ ସଂସ୍କୃତ ଓ ଓଡ଼ିଆ ଭାଷାର କେତୋଟି ଶିଳାଲିପି ରହିଛି । ଶ୍ରୀ ମନ୍ଦିରର କାନ୍ଥମାନଙ୍କରେ ବହୁ ଲିପି ଥିବା ଜଣାଯାଏ । ଅନେକ ଲିପି ଉପରେ ଚୂନ ଦିଆ ହୋଇଯାଇଥିବାରୁ ଆଉ ଦେଖାଯାଉ ନାହିଁ ।

ଭିତର ବେଢ଼ାରେ ମୁକ୍ତି ମଣ୍ଡପର ପଶ୍ଚିମରେ ଥିବା ନୃସିଂହ ମନ୍ଦିରର ଦ୍ୱାରର ଦକ୍ଷିଣ କାନ୍ଥରେ ଚୋଡ଼ଗଙ୍ଗ ଦେବଙ୍କ ଏକ ଲିପି ଅଛି । ଏହାହିଁ ମନ୍ଦିରର ସର୍ବପ୍ରାଚୀନ ଲିପି ବୋଲିବାକୁ ହେବ, କାରଣ, ଏ ପର୍ଯ୍ୟନ୍ତ ଏହାର ପୂର୍ବବର୍ତ୍ତୀ କାଳର ଲିପି ମନ୍ଦିରଗାତ୍ରମାନଙ୍କରେ ମିଳି ନାହିଁ । ମାର୍କଣ୍ଡେଶ୍ୱର ମନ୍ଦିରରେ ଚୋଡ଼ଗଙ୍ଗଙ୍କର ଲିପି ଅଛି । ଜଗନ୍ନାଥ ମନ୍ଦିରବେଢ଼ା ଭିତରେ ପାତାଳେଶ୍ୱର ମନ୍ଦିରର କାନ୍ଥରେ ଚୋଡ଼ଗଙ୍ଗଙ୍କ ବଂଶଧର ରାଜାମାନଙ୍କର କେତୋଟି ସଂସ୍କୃତଲିପି ଅଛି ।

ଓଡ଼ିଆ ଲିପିଗୁଡ଼ିକ ସୂର୍ଯ୍ୟବଂଶ ଆଦିପାଟ ମହାରାଜା କପିଳେନ୍ଦ୍ରଦେବଙ୍କଠାରୁ ଆରମ୍ଭ ହୋଇଛି; କପିଳେନ୍ଦ୍ରଦେବଙ୍କ ରାଜତ୍ୱର ୪ର୍ଥ ଅଙ୍କର ଲିପିଟି ଜଗନ୍ନାଥ ମନ୍ଦିର ଭିତରେ ସବୁ ପ୍ରାଚୀନ ଓଡ଼ିଆ ଲିପି ।

ଏହି ଲିପିମାନଙ୍କରୁ ଓଡ଼ିଶାର ରାଜାମାନଙ୍କ ଜଗନ୍ନାଥଭକ୍ତି ସ୍ପଷ୍ଟ ହେଉଛି । କପିଳେନ୍ଦ୍ରଦେବ ସମଗ୍ର ଓଡ଼ିଶା ସାମ୍ରାଜ୍ୟକୁ ଜଗନ୍ନାଥଙ୍କ ହସ୍ତରେ ଅର୍ପଣ କରିଦେଇ— ଅଛନ୍ତି । ତାଙ୍କର ପୁତ୍ର ପୁରୁଷୋତ୍ତମ ଦେବ ଓ ନାତି ପ୍ରତାପରୁଦ୍ର ଦେବ କପିଳେନ୍ଦ୍ରଙ୍କ ମନୋଭାବକୁ ପୂର୍ଣ୍ଣଭାବରେ ଶ୍ରଦ୍ଧା ପ୍ରଦର୍ଶନ କରି ଜଗନ୍ନାଥଙ୍କୁ "ଓଡ଼ିଶା-ନାଥ" କରିଛନ୍ତି ।

## କପିଳେନ୍ଦ୍ରଦେବଙ୍କ ଓଡ଼ିଆ ଲିପି

ଶ୍ରୀଜଗନ୍ନାଥ ମନ୍ଦିରର ଜୟବିଜୟ ଦ୍ୱାରର ଉଭୟ ପଟ କାନ୍ଥରେ କପିଳେଶ୍ୱର (କପିଳେନ୍ଦ୍ର) ଦେବ ମହାରାଜାଙ୍କ ନିମ୍ନଲିଖିତ ପାଞ୍ଚଟି ଓଡ଼ିଆ ଲିପି ଅଛି :—

୧ମ—୪ର୍ଥ ଅଙ୍କ ଧନୁମାସ ଅମାବାସ୍ୟ (ଖ୍ରୀ ୧୪୩୭ ଡ଼ିସେମ୍ବର ତା୯) ବାମ ପଟ କାନ୍ଥ । ୨ଫୁଟ×୭ଇଞ୍ଚ । ୮ଧାଡ଼ି ।

୨ୟ— ଅ୧୯ଙ୍କ ମେଷ ଅମାବାସ୍ୟା ରବିବାର (ଖ୍ରୀ ୧୪୫୦ ଏପ୍ରେଲ୍ ତା୧୨) । ଡାହାଣ ପଟ କାନ୍ଥ ।

୩ୟ— ଅ୩୧ଙ୍କ କକଡ଼ା ଶୁକ୍ଳ ଦ୍ୱାଦଶୀ ଗୁରୁବାର (ଖ୍ରୀ ୧୪୫୯ ଡିସେମ୍ବର ତା୧୨) ଡାହାଣପଟ କାନ୍ଥ । ୪ଫୁଟ ୧ଇଞ୍ଚ×୧ଫୁଟ ଇଞ୍ଚ ; ୭ଧାଡ଼ି ।

୪ର୍ଥ—ଅ୩୫ଙ୍କ ମେଷ କୃଷ୍ଣ ଚତୁର୍ଥୀ ବୁଧବାର । (ଖ୍ରୀ୧୪୬୪ ଏପ୍ରେଲ୍ ତା୨୫) ବାମପଟ କାନ୍ଥ । ୨ଫୁଟ ୮ଇଞ୍ଚ×୯ଇଞ୍ଚ । ୭ଧାଡ଼ି ।

୫ମ— ୪୧ ଅଙ୍କ ଧନୁ ଶୁକ୍ଳ ସପ୍ତମୀ ରବିବାର (ଖ୍ରୀ୧୪୬୬ ଡିସେମ୍ବର ତା୧୪) । ବାମ କାନ୍ଥପଟ । ୪ଫୁଟ ୪ଇ×୧୧ଇଞ୍ଚ । ୯ ଧାଡ଼ି ।*

---

* ମନମୋହନ ଚକ୍ରବର୍ତ୍ତୀ : ୧୮୯୩ । J.A.S.B. । ଚକ୍ରବର୍ତ୍ତୀଙ୍କ ପାଠ ଓ ସମସ୍ତ ଏଠାରେ ଗୃହୀତ ହୋଇଛି । ବନ୍ଧନୀ ଭିତର ପାଠ ଏ ଗ୍ରନ୍ଥ ଲେଖକଙ୍କର ।

ଲିପି— ୧

ଧା୧— ବୀର ଶ୍ରୀପ୍ରତାପ କପିଳେଶ୍ୱର ଦେବ ମାହାରାଜାଙ୍କର ବିଜୟ ରାଜ୍ୟେ ସମସ୍ତ ୪ଅଙ୍କ ଶ୍ରାଶ୍ର
ଧା୨— ଧନୁ ଅମାବେ ସୌରବାରେ ଶ୍ରୀପୁରୁଷୋତ୍ତମ କଟକେ ପରମେଶ୍ୱର ଦର୍ଶନ ସମୟେ ମହାପାତ୍ର
ଧା୩— କକାଇ ସାନ୍ଧିରା ମହାପାତ୍ର ଜଳସର ସେନ ନରେନ୍ଦ୍ର ମହାପାତ୍ର ଗୋପିନାଥ ମଙ୍ଗରାଜ ମହାପାତ୍ର
ଧା୪— କାଶୀ ବିଦ୍ୟାଧର ମହାପାତ୍ର ବେଲଶ୍ୱର ପ୍ରହରାଜ ମହାପାତ୍ର ଲିଖନ ପୁରୋହିତ ପଟ୍ଟନାୟକ ଦାମୋଦର ମହା—
ଧା୫— ସେନାପତି ଥାଇ ପରମେଶ୍ୱରଙ୍କ ଶ୍ରୀଚରଣ ଅଗ୍ରତେ ଭୋଗ ପରୀକ୍ଷା ପାତ୍ର ଅଗ୍ନିସର୍ମା ମୁଦ୍ରହସ୍ତର ଗୋଚ—
ଧା୬— ରେ ବୋଇଲା ମୁଦଲେ ଶ୍ରୀପୁରୁଷୋତ୍ତମ ଦେବଙ୍କ ଦେଉଳ ଦ୍ୱାରେ ଲେଖନ କରିବା ଆମ୍ଭର ଓଡ଼ିଶା ରା—(ରାଜ୍ୟ)

ଧା୭— ର ଲେଣ କଉଡ଼ି ମୁଲକର ନ୍ୟାୟ ଗୁଡ଼ିଲ ଗୁଡ଼ିଲ ଗୁଡ଼ିଲ ଏହା ରାଜା ହୋଇ ଜେ ଲଙ୍ଗଇ ସେ ଶ୍ରୀ
ଧା୮— ଜଗନ୍ନାଥ ଦେବଙ୍କୁ ଦ୍ରୋହ କରଇ ।

ଲିପି— ୨

ଧା୧— ବୀର ଶ୍ରୀଗଜପତି ଗଉଡ଼େଶ୍ୱର ପ୍ରତାପ କପିଳେଶ୍ୱର ଦେବ
ଧା୨— ମାହାରାଜାଙ୍କର ବିଜେ ରାଜ୍ୟେ ସମସ୍ତ ୧୯ଙ୍କ ଶ୍ରାହ୍ମ ମେଷ ଅମା—
ଧା୩— ବେ ରବିବାରେ ମଲ୍ଲିକା ପରୋହାଦଗ ବିଜେ କରି ବାହୁଡ଼ା କଟକାଇ
ଧା୪— ଶ୍ରୀପୁରୁଷୋତ୍ତମ କଟକେ ବୀର ମୋନୋଇ (ମଣୋହି) ବିଜେ ସମୟେ ଶ୍ରୀଚରଣ

ଧା୫— ଅଗ୍ରତେ କୋଠଘର ସାନ୍ଧିରା ପରୀକ୍ଷ ମହାପାତ୍ର ରଘୁଦେଓ
ଧା୬— ନରେନ୍ଦ୍ର ଜଣାଇ ଗୁଡ଼ କରାଇଲାକୁ ଆଇଁଗାଁ ହୋଇଲା ଶ୍ରୀପୁରୁ-ଷୋତ୍ତମର
ଧା୭— ପୁଣ୍ଡରକ୍ଷ ଗୋପସାଢ଼ୀ ଦେଲା ଏଥିକୁ ଯେ ଅବା ଲଙ୍ଘଇ ସେ ଜଗ—

ଧା୮— ନାଥ ଦେବଙ୍କ ଦ୍ରୋହ କରଇ ମୁଦଲେ କେଲାଇ ଖୁଣ୍ଟିଆ ଲିହାଇଲା ।

ଲିପି (୩)—

କ ଧା ୨— ବୀର ଶ୍ରୀଗଜପତି ଗଉଡ଼େଶ୍ୱର ନବକୋଟୀ କର୍ଣ୍ଣାଟ
କଲବରଗେଶ୍ୱର ପ୍ରତାପ କପିଳେଶ୍ୱର

ଧା ୨— ଦେବ ମାହାରାଜାଙ୍କର ବିଜେ ରାଜ୍ୟେ ସମସ୍ତ ୩୧ ଅଙ୍କ
ଶ୍ରାହ୍ମ କକଡ଼ା ସୁ ୧୨ ଗୁରୁବାରେ ଶ୍ରୀପୁରୁ

ଧା ୩— ଷୋତ୍ତମ କଟକେ ଦକ୍ଷିଣ ଘରେ ମାଜଣାମଣ୍ଡପେ ବିଜେ
ସ୍ଥିଏ ଅବଧାରିତ (ଅବଧାନୁଂ) ଆଗ୍ୟା'

ଧା ୪— ବୋଇଲା ମୁଦଲେ ଭୋ ଶ୍ରୀଜଗନ୍ନାଥ ମୋହର ବାହୁଜ
ଅଭ୍ୟନ୍ତର ସମସ୍ତ ତ କାଣୁ

ଧା ୪— ମୋହର ଯେତେ ରତନ ପଦାର୍ଥ ଅଛି ସେ ତୋହର
ଏହା ଓ ଏହାଉଁ ଆବର ଆନଧନ

ଧା ୬—ଜସ ଅଛି ମୁଇ ବ୍ରାହ୍ମଣ ହାତରେ ତାହା ଯେତେ ଦେଇ
ପାରଇ ତାହା ଦେବ

ଧା ୭— ଏ ଭୂମିଖଣ୍ଡ ତୁ ଯାହାକୁ ଅନୁଗ୍ରହ କରୁ ମୋହର ସେ
ବେପ+ବେ ❊

ଲିପି— ୪

ଧା ୧— ବୀର .ଶ୍ରୀଗଜପତି ଗଉଡ଼େଶ୍ୱର ପ୍ରତାପ କପିଳେଶ୍ୱର ଦେବ
ମାହାରାଜାଙ୍କର ବିଜେ ରାଜ୍ୟେ

ଧା ୨— ସମସ୍ତ ୩୫ ଶ୍ରାହ୍ମ ମେଷ କୃ ୪ ବୁଧବାରେ ଭୋ ଜଗନ୍ନାଥ
ତୋହ ସେବକ ଏ—

ଧା ୩— ମନ୍ତ୍ର ଜଣାଉଅଛି ରାଇଜଜାକେ ଏ ସାଆନ୍ତମାନଙ୍କ ମୁଁଇ
ପାଇକ ରାଉତକୁ କଣ.

ଧା ୪— ××××× ବାଳକାନ୍ତୁ ଯୋସି ଅଣିଲ ଏମାନେ
ମୋତେ ସବୁହେଁ ଗୁଡ଼ିଲେ

ଧା ୫— ଏମାନଙ୍କୁ ମୁଇ ଯେ ଯାହା ଅନୁରୂପେ ବନ୍ଧିବା ନଯୋଗିବା
ଭୋ ଜଗନ୍ନାଥ

---

❊ (୭ମ ଧାଡ଼ିର ଅନ୍ୟପାଠ—ଏ ଭୂମିଖଣ୍ଡଓ ଯାହାକୁ ଅନୁଗ୍ରହ କରିଥା
ମୋହର କେବେ ନୁହେଁ ।

ଧା୭— ଏ କଥା ମୋହର ଦୋସ ଅଦୋସ ବିଗ୍ଭର ।

ଲିପି— ୫

ଧା୧— ଶ୍ରୀ ବୀର ପ୍ରତାପ କପିଳେସର ନବକୋଟୀ କର୍ଣ୍ଣାଟ କଲ-
ବରଗେଶ୍ୱର ଗଜପତି ଗୌଡ଼େଶ୍ୱର ଦେବ ମହାରାଜାଙ୍କ
ବିଜେ ରାଇଜେ ସମସ୍ତ ୪୧ ଶ୍ରାଙ୍କ

ଧା୨—ଧନୁ ଶୁକ୍ଳ ସପ୍ତମୀ ରବୀବାରେ ଶ୍ରୀପୁରୁଷୋତ୍ତମ ଜଗନ୍ନାଥ
ଦେବଙ୍କ ପଦ୍ମପାଦକୁ ଭକ୍ତି ନମିତ୍ତେ୍ୟ କପିଳେଶ୍ୱର ରାଜାଏ
ସେବା କରି ଦିଲେ ରତ୍ନ—

ଧା୩— ତୋଡ଼ରମାନ ଶ୍ରୀଭୁଜର ରତ୍ନଶଙ୍ଖ ଚକ୍ର ଦୁଇ ପ୍ରମେଶ୍ୱରଙ୍କ
ମନନ୍ଧଂକେ (ମ'ଣୋହିକ) ସୁନାଯୋଗାଡ଼ ଏମାନ ଅଣି
ପ୍ରବେଶ କଲେ ହାସିକ ମାହା—

ଧା୪— ପାତ୍ର ଜମସର ମହାପାତ୍ର ବିଶେଶ୍ୱର ମହାପାତ୍ର କରସୁ (ମୁ)
ମାହାପାତ୍ର ନାଥ ମାହାପାତ୍ର ଏତେ ଲୋକେ ପ୍ରବେଶ କଲେ
ନିଧି ମାହାପାତ୍ରଙ୍କ ଅଧିକାରେ ১

ଧା୫— ମାଜଣାମଣ୍ଡପେ ଚଉଦଶତ ପ୍ରକରଣ ଭୋଗରାଗର ସମସ୍ତନ୍ତ
ଥୋଇ ଦେଲି ପ୍ରମାଣେ ଲଗି କରାଇଲେ ରତ୍ନ ମୁକୁଟ
୮ କାନଫୁଲ ଜୋଡ଼ାତୁଙ୍ଗ

ଧା୬— ଲ ୪ ନୋଡ଼କା ନିସବ୍ବା କରି ଯୋଡ଼ା ୮୪ ହୀରା
ମାଣିକ ବିଚିତ୍ରମାଳ ୨ ନାନା ନାଏକ ମୁଦି ୧୨ ମୁକୁତା

ଧା୭— ଯାଉଳ ୮ ମୁକୁତା ବଡ କଣ୍ଠମାଳ ୪ ମାଣିକସୂତା
ମା (ମାଳ) ୮ ମରକତ ଯାଉଳି ୮ ମରକତ ମୁକୁତା ମା୫
ନାନାରତ୍ନ ନିପଦ୍ରକ କରପଦକ ୪ ମରକ (ମରକତ)

ଧା୮— ଢସରସରେ (ଢଯୋରାସାରେ) ମାଣିକସୁତା ପଦସରି ୪
ମୁକୁତା ଢସରା ଉତୁରୀ ୨ ଏକାରତ୍ନହାରେ ୧ ମୁକୁତା
ତୋଡ଼ର ୨

ଧା୯— ପାଦ ପଲ୍ଲବ ୨ ବାଡ଼ୁଡ଼ିଟି (ବାହୁଟି) ଯୋଡ଼ା ୧୨ ହିରା
ମାଣିକ ମାଳା ଜୋ ୨ ଜାଲି ତୋଡ଼ର ୨

ଦ୍ୱିତୀୟ ଭାଗ—

ଧା୧— ନାନା ପରତାଡ଼ ଯୋଡ଼ା ୧ ପାଉଡ଼ ୪ ମୁକୁତା କଙ୍କଣପଟ

ଧା୨— କାନ୍ତସ୍ବର କବର କଟୀମେଖଳା କନକ ଭୁଜର ଝୁଲର
ମାଳ ୫

ଧା୩— ସୁନା ଯୋଗିବ ୧ ନାନାପଦାର୍ଥ ଶଙ୍ଖଚକ୍ରର ରତ୍ନ ମା—

ଧା୪— ଢ଼ ୧୧୨ ସୁନା××× ଗୋଟିଏ ଶ୍ରୀକପିଳେଶ୍ବର ର—

ଧା୫— ଜାଏ ଏହା ଜଗନ୍ନାଥ ମହାପ୍ରଭୁଙ୍କ ଦଲେ ଏହା ନେମ ବୋ

ଧା୬— ଲ ଯେ ମନରେ ଧରଇ ସେ ଶ୍ରୀ ଜଗନ୍ନାଥଙ୍କ ଦ୍ରୋହ
କରଇ ।

## ପ୍ରତାପ ଶ୍ରୀପୁରୁଷୋତ୍ତମ ଦେବଙ୍କ ଲିପି

ଜଗନ୍ନାଥ ମନ୍ଦିରର ଜୟବିଜୟ ଦ୍ୱାରର ବାମପଟ କାନ୍ଥରେ ଥିବ ଓଡ଼ିଆ ଲିପି—

ଲିପି— ୧—୪ ଫୁ ୬ଇ×୧୦ଇ । ୫ ଧାଡ଼ି

ଧା୧— ବୀର ଶ୍ରୀଗଜପତି ଗୌଡ଼େଶ୍ବର ନବକୋଟୀ କର୍ଣ୍ଣାଟ
କଲବରଗେଶ୍ବର ପ୍ରତାପ ଶ୍ରୀପୁରୁଷୋତ୍ତ

ଧା୨— ଦେବ ମାହାରାଜାଙ୍କ ପ୍ରବର୍ଦ୍ଧମାନ ବିଜେ ରାଜ୍ୟ ଅଙ୍କ ସମସ୍ତ
୩ଅଙ୍କ ଶ୍ରାହ୍ମି ମଗୁସିର କୃ—

ଧା୩— ତ୍ରୟୋଦଶି ଭୂମିବାରେ ଶ୍ରୀପୁରୁଷୋତ୍ତମ କଟକେ ଆଇଗାଂ
ହୋଇଲା ଦକ୍ଷିଣ ଦ୍ୱାର

ଧା୪— ଦଣ୍ଡୋଆସି ଓହୋର ଆମ୍ଭେ ବ୍ରାହ୍ମଣଙ୍କୁ ଛାଡ଼ିଲୁ ଦଣ୍ଡା-
ଗୋପଥହରଣହିଁ ଛାଡ଼ିଲୁ

ଧା୫— ଏହା ଯେ ହରଇ ସେ ହରିଲା ଦୋଷ ପାଇ ।

ଲିପି— ୨ —ଜୟବିଜୟ ଦ୍ୱାରର ବାମପଟ କାନ୍ଥ । ୪ଫୁ ୮ଇ×୪ଇ । ୧୧ ଧାଡ଼ି ।

ଧା୧—ବୀର ଶ୍ରୀଗଜପତି ଗୌଡ଼େଶ୍ବର ନବକୋଟୀ କର୍ଣ୍ଣାଟ କଲ-
ବରଗେଶ୍ବର ପ୍ରତାପ ଶ୍ରୀପୁରୁଷୋତ୍ତମ ଦେବ ମାହାରାଜାଙ୍କ
ସମସ୍ତ

ଧା୨— ୨ ଅଙ୍କ ଶ୍ରାହ୍ମି ମେସ ସୁ ୧୨ ଗୁରୁବାରେ ଶ୍ରୀପୁରୁଷୋତ୍ତମ
କଟକେ ବିଜେ ସମସ୍ତେ ପୁରୁଷୋତ୍ତମ ଦେବ ମାହା-
ରାଜାଙ୍କର ଦତ୍ତ

ଧା୩— ଦକ୍ଷିଣ ଦ୍ୱାର ଦଣ୍ଡପାଟେ ଶ୍ରୀପୁରୁଷୋତ୍ତମ ଜଗନ୍ନାଥଦେବଙ୍କର

ପୂର୍ଣାମାଳ ଦେଶମାନଙ୍କର ଦକ୍ଷିଣଦ୍ୱାର ଅବଦାନ ସେବକ—
ଧା୪— ଙ୍କର ଦେଶମାନର ପ୍ରମେଶ୍ୱରଙ୍କ ଭୋଗ ଦେଶମାନ ଅବଦାନ
ପ୍ରମେଶ୍ୱରକୁ ଅଦ୍ରାଲୁ ସେବକମାନଙ୍କୁ

ଧା୫— ଅବଦାନ ସେବକଙ୍କୁ ଗ୍ରୁଡ଼ିଲ ଏ ପୁରୁଷୋତ୍ତମ ଦେବ
ମାହାରାଜାଙ୍କ ଭୋଗକୁ ଅନୁରୋଧ ବସେ ମାଧୋଧଳ ଗ୍ରାମ
ଧା୬— ଧାନ ଭରଣ ୫୦୦ କଉଡ଼ି କା ୨୦୦୦ କାମଳଗୁର
ଗ୍ରାମ ଏ ଭୋଗକୁ ହୋଇଲା ପରବ ଦେ ଦଅଁ ମାଜନା
ଧା୭— X X X X X (ସାତଟି ଅକ୍ଷର ଅସ୍ପଷ୍ଟ) ମହାଦେବଙ୍କ
ଭୋଗକୁ ଦକ୍ଷିଣ

ଧା୮— ଦାଗ ଦଣ୍ଡପାଟେ ଧାଁଆଗ୍ରାମ ବସେ ଗୋପ-
ଧା୯— ପୁର ଗ୍ରାମ ଦଲ୍ଲ ଏ ଅବଦାନମାନ ଏ ଭୋଗ ଦେଶ ଯେ
ହରଇ ସେ ଜଗନ୍ନାଥଙ୍କୁ ଦ୍ରୋହ କରଇ ।

ଲିପି—୩— ତାମ୍ରାଣପଟ କାନ୍ଥ । ୩ଟି ଭାଗ । ବଡ଼ଭାଗ ୨ଫୁଟ ୯ଇ X ୯ଇ । ୫
ଧାଡ଼ି ।

(କ) ଧା୧— ଵୀର ଶ୍ରୀଗଜପ୍ତ ଗୌଡ଼େଶ୍ୱର ନବକୋଟୀ କର୍ଣ୍ଣାଟ କଲ-
ବରଗେଶ୍ୱର

ଧା୨— ପ୍ରତାପ ପୁରୁଷୋତ୍ତମ ଦେବ ମାହାରାଜାଙ୍କର ସମସ୍ତ ୨ ଶ୍ରାଗ୍ର
ମେସ

ଧା୩— ସୁକଲ ୧୨ ଗୁବାରେ ଶ୍ରୀପୁରୁଷୋତ୍ତମ କଟକେ ବଜେ ସମଏ
ଧା୪— ଦନ୍ତରତ୍ନପଲଙ୍କ ୧ ରତ୍ନକଲସ ଧ୍ୱଜ ସିଂହାସନେ ୧ ରତ୍ନ-
ଛତ୍ର ୧

ଧା୫— ରତ୍ନଖଟ୧ ସୁନା ମାର୍ଜଣୀପଟ ୧ ରତ୍ନବେଣ୍ଡ ଚଅଁର ୨
ପଶ୍ଚିମ ପଟର ଗ୍ରେଟଭାଗ—୭୩ ଇ X ୧୧ଇ । ଧାଡ଼ି ୭ ।

(ଖ) ଧା୧— ପୁରୁଷୋତ୍ତମ ମାହାରାଜାଙ୍କର ଦତ୍ତ ର
ଧା୨—ରତ୍ନ ପଲଙ୍କ ୨
ଧା୩— ନୂ କାନଫୁଲ
ଧା୪— ମେରୁଗର୍ଭ
ଧା୫— ବାଉଟି ଯୋଡ଼ା ୨
ଧା୬— ରତ୍ନ ବଞ୍ଚଣା ୧
ଧା୭— ଗ୍ଭନ୍ଦୁଆ ଗୋ ୧

ପୂର୍ବ ପଟର ଶ୍ଳେଟଭାଗ—୧ଫୁଟ×୧୦ଇ । ୫ଧାଡ଼ି ।

(ଗ) ଧା୧— ରତ୍ନଦର୍ପଣ ଗୋଟିଏ
ଧା୨— ୧ ଏହା ନେମା
ଧା୩— ରେ ଯେ ମନରେ ଧରଇ
ଧା୪— ସେ ଜଗନ୍ନାଥ ଦେବଙ୍କ
ଧା୫— ଦ୍ରୋହ କରଇ

ଲିପି ୪ —ତାମ୍ବାଶପଟ କାନ୍ଥ । ୪ଫୁ ୧୦ଇ×୧୦ଇ । ଧାଡ଼ି ୭ ।

ଧା୧— ବୀର ଶ୍ରୀଗଜପତି ଗଉଡ଼େଶ୍ୱର ନବକୋଟି କର୍ଣ୍ଣାଟ କଲ-ବରଗେଶ୍ୱର ପ୍ରତାପ ପୁରୁଷୋତ୍ତମ ଦେବ ମାହାରାଜାଙ୍କର
ଧା୨— ବିଜୟ ରାଜ୍ୟେ ସମସ୍ତ ୧୯ ଅଙ୍କ ଶ୍ରାହ୍ମ ସିଂହ ଶୁକ୍ଳ ୮ ଗୁରୁବାରେ ବାରଣସି କଟକେ ଶ୍ରୀନଅର ଗୋପାଳ ପ୍ରିୟ ଜଗତାର ଦକ୍ଷିଣ ମେଢ଼ରେ ବଡ଼ ଅବକାଶେ
ଧା୩— ସମସ୍ତ ବେହେରା ମାହାପାତ୍ର ମାହାପାତ୍ର ପାତ୍ର ସନ ମିଶ୍ର ଖଟନ୍ତି ଗୁଡ଼ା ଲେଙ୍କା ସମସ୍ତଙ୍କ ମୁକାବିଲରେ ଆଇଗାଁ ହୋଇଲା ଆମ୍ଭେ ଅନୁଭବ କରି ଶୁଣି ଦେଖି ଏ ପୃଥ୍ୱୀ ଯେତେ କାଳ
ଧା୪— ଥାଇ ତେତେକାଳ ଏ ଓଡ଼ିଶା ରାଜ୍ୟର ରାଜାମାନଙ୍କୁ ଡାଆରୁ ଅଛୁ ସବୁ ରାଜାମାନେ ବ୍ରହ୍ମଣଙ୍କୁ ଦାନ ଦେବା ଶାନ୍ତିପୂର୍ବକ ମନଜୋଗ କରି ଧନ ସ୍ତ୍ରୀ ପ୍ରାଣ ରାଜ୍ୟ ରୀତି କଥାରେ ଦେବେହେଁ
ଧା୫— ବ୍ରହ୍ମାଣଙ୍କୁ ନଯୋଗ ନ କରିବ ଏହି ରୀତି କର୍ମରେ ନଯୋ-ଜିଲେ ବ୍ରାହ୍ମଣ ଯାଗ କର୍ମ୍ମହିଁ ସେ କରଇ ଛଳଣ କରଇ ମୁଁ ଶତଧା××× ନେକଡଆ ରାଜ୍ୟ ଜାଏ×ଧି ମାନଙ୍କୁ ଆଦେଶ
ଧା୬— ବଚନ ଲଙ୍ଘନ କରି ଯେ ଅବା ଆନ କରଇ ସେ ଜଗନ୍ନାଥଙ୍କୁ ଦ୍ରୋହ କରଇ ସେ ମହାପାତକ ଅଢ ପାତକ ବ×କୋ ସମସ୍ତ ପାତକ କଲାର ଫଳ ପାଇ
ଧା୭— ସବୁହେଁ ଏକଥା ଦୃଢ଼ କରି ମନରେ ଧରି ଆମ୍ଭର ଉପଦେଶ କର କର କର ।

## ପ୍ରତାପରୁଦ୍ରଦେବଙ୍କ ଲିପି

ଲିପି୧—ପଶ୍ଚିମପଟ । ୩ଫୁଟ ୩ଇଞ୍ଚ×୧ଫୁଟ ୩ଇଞ୍ଚ । ୧୦ ଧାଡ଼ି ।

ଧା୧— ବୀର ଶ୍ରୀଗଜପତି ଗଉଡ଼େଶ୍ୱର ନବକୋଟୀ କର୍ଣ୍ଣାଟ କଲ-
ବରଗେଶ୍ୱର ବୀରବର ପ୍ରତାପରୁଦ୍ର ଦେବ

ଧା୨— ମାହାରାଜାଙ୍କର ସମସ୍ତ ୪ ଅଙ୍କ ଶ୍ରାହି କକଡ଼ା ସୁ ୧୦
ବୁଧବାରେ ଅବଧାରିତ ହୋଇ ଆଇଗାଁ ପ୍ରମାଣେ ବଡ଼

ଧା୩— ଠାକୁରଙ୍କୁ ଗୀତଗୋବିନ୍ଦ ଠାକୁର ଭୋଗ ବେଳେ ଏ ନାଟ
ହେଉଥିବ । ସଂଧ୍ୟାଧୂପ ସରିଲାରୁ

ଧା୪— ବଡ଼ ସିଂଗାର ପର୍ଯ୍ୟନ୍ତେ ଏ ନାଟ ହୋଇବ । ବଡ଼
ଠାକୁରଙ୍କ ସମ୍ପରଦା କପିଳେଶ୍ୱର ଠାକୁରଙ୍କୁ ବନ୍ଧ୍ୟ

ଧା୫— ନାଚଣୀମାନ ପୁରୁଣା ସମ୍ପ୍ରଦରଦା ତେଲଙ୍ଗୀ ସମ୍ପରଦା
ଏମାନେ ସବହେଁ ବଡ଼ଠାକୁରଙ୍କୁ ଗୀତଗୋ—

ଧା୬— ବିନ୍ଦହିଁ ଆନଗୀତ ନ ଶିଖିବେ । ଆନ ଗୀତ ନ ଗାଇବେ
ଆନ ନାଟ ହୋଇ ପରମେଶ୍ୱରଙ୍କ ଶ୍ରୀମୁଖରେ ନ

ଧା୭— ହବ ଏ ନାଟ ବିତରେକେ ବଇଷ୍ଣବ ଗାଅଣ ଶୃଣନ୍ତ
ଅଛନ୍ତି ଏମାନେ ଗୀତଗୋବିନ୍ଦ ଗୀତହିଁ ସେ ଗାଇବେ

ଧା୮— ଏହାଙ୍କଠାରୁ ଅଶିକ୍ଷିତମାନେ ଏକ ଶ୍ୱରରେ ଶୁଣି ଗୀତ-
ଗୋବିନ୍ଦ ଗୀତହିଁ ସେ ଶିଖିବେ ଆନଗୀତ ନ ଶିଖିବେ ଏହା

ଧା୯— ଯେ ପରୀକ୍ଷା ଆନ ଗୀତ ନାଟ କରାଇଲେ ଜାଣି ସେ
ଜଗନ୍ନାଥଙ୍କ ଦ୍ରୋହ କରଇ ।

ଲିପି୨— ପଶ୍ଚିମ ପଟ । (ଲିପିଟିର ଅକ୍ଷରଗୁଡ଼ିକ ଘଷି ହୋଇ ନଷ୍ଟ ହୋଇଗଲାଣି)

ଧା୧— ବୀର ଶ୍ରୀ ଗଜପତି ଗୌଡ଼େଶ୍ୱର ନବକୋଟୀ କର୍ଣ୍ଣାଟ କଲ-
ବରଗେଶ୍ୱର ପ୍ରତାପ ଶ୍ରୀରୁଦ୍ର ଦେବ ମହାରାଜାଙ୍କ ସମସ୍ତ

ଧା୨— ୫ ଅଙ୍କ ଶ୍ରାହି ଧନୁ ଛନ୍ଦନ ସୋମବାରେ××× କଟକ ବଜେ ସମଏ×××

(ଅବଶିଷ୍ଟାଂଶ ଅସ୍ପଷ୍ଟ)

## ବୀରକେଶରୀଦେବଙ୍କ ସମୟ ଲିପି

ଭୋଗମଣ୍ଡପ ଭିତରେ ଈଶାନ୍ୟ କୋଣରେ ଥିବା ଖମ୍ବ ଉପର ଲିପି । ଲମ୍ବ
୧୩ ଇଞ୍ଚ ଓସାର ୧୦ ଇଞ୍ଚ ।

ଧାଡ଼ି୧— ଶ୍ରୀ ଶ୍ବେତ ମଣ୍ଡା [ପ] ଚକଡ଼ା କର୍ଣ୍ଣ
ଧା ୨— ଉଦ୍ଧାର କଲେ ଶ୍ରୀ ଶ୍ରୀ ଶ୍ରୀ ବୀରକେ
ଧା ୩— ଶରି ଦେବ ମାହାରାଜାଙ୍କ ୩୩ ଅ
ଧା ୪— ଙ୍କ ମେଷ ୨୯ଦିନ ଶ୍ରୀଠାକୁରମା
ଧା ୫— ଚକଡ଼ା ପାଟ ବସାଇଲେ ।

## ଚୋଡ଼ଗଙ୍ଗଦେବଙ୍କ ଲିପି

ଜଗନ୍ନାଥ ମନ୍ଦିର ବେଢ଼ା ଭିତରେ ମୁକ୍ତିମଣ୍ଡପର ପଶ୍ଚିମକୁ ଯେଉଁ ନୃସିଂହ-ନାଥ ମନ୍ଦିର ଅଛି ତାର ଦ୍ୱାରର ଦକ୍ଷିଣ ପଟରେ ଓଡ଼ିଶାରେ ଗଙ୍ଗବଂଶ ରାଜତ୍ୱ ପ୍ରତିଷ୍ଠାତା ମହାରାଜା ଚୋଡ଼ଗଙ୍ଗଦେବଙ୍କ ଏକ ଦାନଲିପି ଖୋଦିତ ହୋଇଛି । ଅନୁଶାସନଟି ସଂସ୍କୃତରେ ଲେଖା । ବହୁ ସ୍ଥାନ ଅସ୍ପଷ୍ଟ ହୋଇଗଲାଣି । ଚୂନ ମାଡ଼ି ଯାଇଥିବାରୁ ଲିପିର କେତେକ ଅଂଶ ଦୃଶ୍ୟ ହେଉ ନାହିଁ ।

ଧାଡ଼ି୧— [ଓଁ ସ୍ୱସ୍ତି ଶକ] ସମଧିଗତ××× 
" ୨— (ଖେନ୍ଦୁ ଗଣିତେ) ସୂନ୍ଦ ବମଦ୍ୱିକାଙ୍କ ନରତ ଚେ—
" ୩— ଡ଼ ଗଙ୍ଗାଧିତଃ ଶ୍ରୀଚୋଡ଼ଗଙ୍ଗ ନୃପତେ
" ୪— ପଞ୍ଚମଦ ସୁବଧିକେଃ ଅଖଣ୍ଡ ବଟେ କୃତ
" ୫— ॥ ଶ୍ରୀମତଃ ପୁରୁଷୋତ୍ତମେ ॥ ଏ ତଦ୍ଧୀ
" ୬— ନସ୍ୟ ଆରମ୍ଭ ବର୍ତ୍ତିଃ ଜଳଖଣ୍ଡ ବାସ୍ତବ୍ୟା [ଅନ୍ତ]
" ୭— ବର୍ତ୍ତିଃ ମଲୁଦ ଗ୍ରାମ ନିବାସୀ ଜନାଃ. ଶ୍ରୀ ରା×(ଜ)
" ୮— ××[ରାଜ] ପୁତ୍ରସ୍ୟ ଚୋଡ଼ଗଙ୍ଗସ୍ୟଃ ଧନଗ୍ରାହକାତ୍ତି ଆଚ
" ୯— ଦ୍ୱାର୍କ ପ୍ରଦୀପ ନିବାହକାଃ ॥ ମାଢ଼ ପାଞ୍ଚ ୦ ॥

ପୁରୀ ବଡ଼ ଦେଉଳର ଭିତର ବେଢ଼ା ଭିତରେ ମୁକ୍ତିମଣ୍ଡପର ପଶ୍ଚିମକୁ ନୃସିଂହନାଥଙ୍କ ମନ୍ଦିର । ମହାରାଜା ଇନ୍ଦ୍ରଦ୍ୟୁମ୍ନ ଶ୍ରୀନୀଳମାଧବଙ୍କୁ ଦର୍ଶନ କରିବା ପାଇଁ ଶ୍ରୀକ୍ଷେତ୍ରରେ ପହଞ୍ଚିବା ପରେ ପ୍ରଥମେ ନୃସିଂହଙ୍କୁ ଆରାଧନା କରିଥିଲେ; ଗୁଣ୍ଡିଚା ନିକଟରେ ଯେଉଁ ନୃସିଂହ ଅଛନ୍ତି ତାଙ୍କୁ ପୂଜା କରି ସେଠାରେ ଅଶ୍ୱମେଧ ଯଜ୍ଞ କରିଥିଲେ । ଜଗନ୍ନାଥଙ୍କ ପାଇଁ ନୀଳଗିରି ଉପରେ ମନ୍ଦିର ନିର୍ମାଣ କରିବା ପୂର୍ବରୁ ମଧ୍ୟ ପ୍ରଥମେ କଳ୍ପବଟ ସନ୍ନିକଟସ୍ଥ ନୃସିଂହଙ୍କୁ ପୂଜା କରିଥିଲେ । ସ୍ୱୟଂ ଜଗନ୍ନାଥ ଇନ୍ଦ୍ରଦ୍ୟୁମ୍ନଙ୍କୁ

✽ ନବଜୀବନ : ୯ମ ବର୍ଷ, ୨ୟ ସଂଖ୍ୟା । ଲେଖକଙ୍କଦ୍ୱାରା ପଠିତ ।

ଉଗ୍ର ନୃସିଂହ ରୂପରେ ଦର୍ଶନ ଦେବାରୁ ସେ ବନ୍ଦନା ସ୍ତୁତି କଲେ ଏବଂ ଜଗନ୍ନାଥ ପ୍ରୀତ ହୋଇ ଶାନ୍ତରୂପ ଧାରଣ କଲେ । ସେହି ନୃସିଂହ ମୂର୍ତ୍ତି ବଡ଼ ଦେଉଳର ଦକ୍ଷିଣରେ ଥିବା ମନ୍ଦିର ଭିତରେ ପୂଜା ପାଉଛନ୍ତି ।

ଏହି ମନ୍ଦିରଟି ପୂର୍ବାମୁଖୀ । ପ୍ରବେଶ ଦ୍ୱାରର ଦକ୍ଷିଣ କାନ୍ଥରେ ୧୧ ଫୁଟ ଲମ୍ବା ଓ ଏକଫୁଟ ଓସାରର କଳା ପଥର ଉପରେ ୯ ନଅ ଧାଡ଼ି ସଂସ୍କୃତ ଗଦ୍ୟ ଲେଖା ଅଛି । ଲିପି ନାଗରୀ । ଲିପିର ଉପରେ ଚୂନ ଲାଗିଥିବାରୁ କେତୋଟି ଅକ୍ଷର ଦିଶୁ ନାହିଁ । ଦୁଇ ବର୍ଷ ତଳେ କେହି ଜଣେ ସଂଗ୍ରାହକ ଅତି ଉତ୍ସାହରେ ଛୁରି ସାହାଯ୍ୟରେ ଲିପିକୁ ସଫା କରୁ କରୁ କେତୋଟି ଅକ୍ଷର ନଷ୍ଟ ହୋଇ ଯାଇଥିବା ବିଷୟ ମୁକ୍ତିମଣ୍ଡପର କେହି କେହି ସଦସ୍ୟଙ୍କଠାରୁ ଶୁଣାଗଲା ।

ଲିପିଟିର କେତୋଟି ଅକ୍ଷର ଲୋପ ହୋଇ ଯାଇଥିବାରୁ ଶୁଦ୍ଧପାଠ ବାହାର କରିବା ସମ୍ଭବ ହେଉନାହିଁ ।

ଦ୍ୱାରର ଉତ୍ତର କାନ୍ଥରେ ମଧ୍ୟ ଏହିଭଳି ଆଉ ଗୋଟିଏ ଲିପି ଥିବାର ଶୁଣା-ଯାଏ । କିନ୍ତୁ ଚୂନ ଲିପି ହୋଇଥିବାରୁ ବାହାରକୁ ଦେଖା ଯାଉ ନାହିଁ ।

ଲିପିଟିରେ ନଅଟି ଧାଡ଼ି ଅଛି । ସଂସ୍କୃତ ଗଦ୍ୟରେ ଅଭିଲେଖଟି ଲିଖିତ ହୋଇଛି । ଲମ୍ବରେ ପ୍ରାୟ ୧୪ ଇଞ୍ଚ ଓ ଓସାରରେ ପ୍ରାୟ ଦଶ ଇଞ୍ଚ ସ୍ଥାନ ଲିପିଟି ମାଡ଼ି ବସିଛି । ପ୍ରାଚୀନ ଦେବନାଗରାକ୍ଷର ଏହି ଶାସନରେ ବ୍ୟବହୃତ ହୋଇଛି । ଏହି ଲିପିରୁ ଓଡ଼ିଆ ଲିପି ବାହାରୁଥିବା ସମୟର ଏହି ଲିପି ।

ପ୍ରଥମ ଧାଡ଼ିରେ କେତେକ ଅଂଶ ଚୂନବୋଳା ଯୋଗୁଁ ଅସ୍ପଷ୍ଟ ହୋଇଛି । ଏହି ଧାଡ଼ି ଓ ଦ୍ୱିତୀୟ ଧାଡ଼ିର ପ୍ରଥମ ଅର୍ଦ୍ଧରେ ଦାନର ବର୍ଷ ଦିଆଯାଇଛି । ତୃତୀୟ ଧାଡ଼ିରେ ରାଜା ଚୋଡ଼ଗଙ୍ଗ ଦେବଙ୍କ ନାମ ଅଛି । ଚତୁର୍ଥ ଧାଡ଼ିରେ ୫୦ଟି ଆଖଣ୍ଡବର୍ତ୍ତୀ ଚୋଡ଼ଗଙ୍ଗ ଦେବ କରିଥିବା ପ୍ରକାଶ ପାଇଛି । ପଞ୍ଚମ ଧାଡ଼ିରେ ପୁରୁ-ଷୋତ୍ତମ କ୍ଷେତ୍ରର ନାମ ଅଛି । ଷଷ୍ଠ ଧାଡ଼ିରେ ଜଳଖଣ୍ଡ ବିଷୟ ଅନ୍ତର୍ଗତ ମାଲୁଦ ଗ୍ରାମବାସୀମାନେ ଦାନର ପ୍ରଥମ ଦୀପ ଦେବାପାଇଁ ବାଧ୍ୟ ରହିଲେ । ସପ୍ତମ ଧାଡ଼ିରେ ମାଲୁଦର ନାମ ଅଛି । ସପ୍ତମ ଧାଡ଼ିର ଶେଷ ଓ ଅଷ୍ଟମ ଧାଡ଼ିର ପ୍ରାରମ୍ଭରେ ଚୋଡ଼ଗଙ୍ଗଙ୍କ ପିତାଙ୍କ ନାମ—ରାଜରାଜ ଦେବ— ଅଛି । ଅଷ୍ଟମ ଧାଡ଼ିରେ ଦାତା ଚୋଡ଼ଗଙ୍ଗଙ୍କର ନାମ ଅଛି । ଦାନର ପରିମାଣ—ପାଞ୍ଚମାଢ଼ ସୁବର୍ଣ୍ଣ—ଶେଷଧାଡ଼ିରେ ଅଛି । ଓଡ଼ିଆ ପଦ "ମାଢ଼ପାଞ୍ଚ" ଏଠାରେ ବ୍ୟବହୃତ ହୋଇଛି ।

ମହାରାଜା ଶ୍ରୀଚୋଡ଼ଗଙ୍ଗ ଦେବ ଶକାବ୍ଦ ୧୦୩୭ ବା ଖ୍ରୀ:୧୧୧୨ରେ ପୁରୁଷୋତ୍ତମ କ୍ଷେତ୍ରରେ ୫୦ଟି ଅଖଣ୍ଡବତୀ ଦାନ କରିଥିଲେ । ଦାନ ସମ୍ବନ୍ଧର ସ୍ଥାନରେ ରସ (୬) ସ୍ପଷ୍ଟ ଲେଖା ଅଛି । ତା ପର ଶବ୍ଦଟି ଜଣାଯାଉ ନାହିଁ । ପର ଦୁଇଟି ଶବ୍ଦରୁ ୧୦ ପ୍ରକାଶ ପାଇବ । ସେଥିରୁ ପୁରୁଷୋତ୍ତମଙ୍କ ନିକଟରେ ଦିନର ପ୍ରଥମ ଦୀପ ଜଳଖଣ୍ଡ ବିଷୟାନ୍ତର୍ଗତ ମାଲୁଦ ଗ୍ରାମବାସୀମାନେ ନିର୍ବାହ କରିବାପାଇଁ ଆଜ୍ଞା ହୋଇଛି । ଏଥିପାଇଁ ସୁବର୍ଣ୍ଣ ପଞ୍ଚମାଢ଼ ଗ୍ରାମବାସୀମାନଙ୍କୁ ଦିଆଯାଇଛି ।

ଶ୍ରୀନୃସିଂହନାଥଙ୍କ ମନ୍ଦିର ଦ୍ୱାରରେ ଏହି ଲିପିଟି ଥିଲେ ମଧ୍ୟ ଶ୍ରୀନୃସିଂହନାଥଙ୍କ ନାମ ଏଥିରେ ନାହିଁ । ଏହି ଲିପିର ଅବସ୍ଥିତି ମୂଳରୁ ଏହି ମନ୍ଦିରରେ ଥିଲା ବୋଲି ଅନୁମାନ କଲେ ଏହାହିଁ ସିଦ୍ଧ ହେବ ଯେ ବର୍ତ୍ତମାନର ଜଗନ୍ନାଥ ମନ୍ଦିର ନିର୍ମିତ ହେବା ପୂର୍ବରୁ (ବା ନିର୍ମାଣ ସମ୍ପୂର୍ଣ୍ଣ ହେବା ପୂର୍ବରୁ) ଏହି ଦାନଟି ହୋଇଥିଲା । ନୃସିଂହନାଥଙ୍କ ମନ୍ଦିର କୂର୍ମବେଢ଼ା ଉପରେ ଥିବାରୁ ଏବଂ ଏହାର ପତ୍ତନ କୂର୍ମବେଢ଼ା ଓ ବଡ଼ ଦେଉଳ ସଙ୍ଗେ ପ୍ରାୟ ସମାନ ଥିବାରୁ ବଡ଼ ଦେଉଳ ଅନ୍ତତଃ ପାଦ ପର୍ଯ୍ୟନ୍ତ ନିର୍ମିତ ହୋଇ ଯାଇଥିବା ପରେ ନୃସିଂହ ମନ୍ଦିର ତିଆରି ହୋଇଥିବ । କାରଣ ବଡ଼ ଦେଉଳର ମୂଳଦୁଆ ପାଇଁ ଯେଉଁ ନିଅଁ ଖୋଳା ହୋଇଥିବ ତାହାର ଗଭୀର ଓ କ୍ଷେତ୍ର ଏତେ ବଡ଼ ଥିବ ଯେ ସେତେବେଳେ ନୃସିଂହ ମନ୍ଦିରର ଅବସ୍ଥିତି ଅସମ୍ଭବ । ନୃସିଂହ ମନ୍ଦିରଟି ବଡ଼ ଦେଉଳର କାନ୍ଥଠାରୁ ପ୍ରାୟ ୪୦ କି ୫୦ ଫୁଟ ଦୂରରେ ଥିବାରୁ ନିଅଁ ଖୋଳାବେଳେ ଏହା କେବେ ନ ଥିବ । ବଡ଼ ଦେଉଳର ମୂଳପତ୍ତନ ପରେ ବଡ଼ ଦେଉଳର ଅବଶିଷ୍ଟ ଅଂଶ ଓ ବେଢ଼ା ଭିତର ଚଟାଣ ଉପରେ ପାଦ ଥିବା ସବୁ ଦେଉଳ ନିର୍ମାଣ ହୋଇଥିବା ସମ୍ଭବ । ଚୋଡ଼ଗଙ୍ଗ ଦେବ ଖ୍ରୀ:୧୧୧୨ରେ ଓଡ଼ିଶା ଜୟ କରିଥିବା ବିଷୟ କୋରନି ତାମ୍ରଶାସନରୁ ଜଣାଯାଏ । ଏହି ଦାନଟି ଚୋଡ଼ଗଙ୍ଗଙ୍କର ଓଡ଼ିଶା ଅଧିକାର ସମୟର ବୋଲି ଜଣାଯାଉଛି । ସେତେବେଳକୁ ବର୍ତ୍ତମାନର ବିରାଟ ବଡ଼ଦେଉଳ ନିର୍ମିତ ହୋଇ ନ ଥିଲା । ନଗରୀ ତାମ୍ରଶାସନ ଅନୁସାରେ ଚୋଡ଼ଗଙ୍ଗଦେବ ଜଗନ୍ନାଥ ମନ୍ଦିର ନିର୍ମାଣ କରିଥିବା ଉଲ୍ଲେଖ ଅଛି । କିନ୍ତୁ ଏହା ଅବଶ୍ୟ ତାଙ୍କ ଓଡ଼ିଶା ଅଧିକାର ପରେ ହୋଇଛି । ଚୋଡ଼ଗଙ୍ଗଦେବ ଓଡ଼ିଶା ଅଧିକାର କରିବା ପରେ ପରେ ବିଭିନ୍ନ ସ୍ଥାନରେ ବିଭିନ୍ନ ଦେବଦେବୀଙ୍କଠାରେ ବହୁତ ଦାନ ଦେଇଥିଲେ ଏବଂ ତାହା ଲିପିବଦ୍ଧ କରିଥିଲେ । ପୁରୀରେ ଏହି ନୃସିଂହନାଥ ଲିପି, ମାର୍କଣ୍ଡେଶ୍ୱର ମନ୍ଦିର ଲିପି, ଭେଲଙ୍ଗରେ ଖିଲେଶ୍ୱର ଲିପି, ଭୁବନେଶ୍ୱରରେ ଲିଙ୍ଗରାଜମନ୍ଦିର ଲିପି ପ୍ରଭୃତି ଏହାର ପ୍ରମାଣ । ପୁଣି ମାର୍କଣ୍ଡେଶ୍ୱର ମନ୍ଦିରରେ ଓ ଭୁବନେଶ୍ୱର ଲିଙ୍ଗରାଜ ମନ୍ଦିରରେ ଚୋଡ଼ଗଙ୍ଗ ଓଡ଼ିଶା ଜୟ କରିଥିବା ବର୍ଷ (ଖ୍ରୀ ୧୧୧୨)ର ଲିପି ବିଦ୍ୟମାନ ଅଛି । ଏବର ଜଗନ୍ନାଥ ମନ୍ଦିର ଚୋଡ଼ଗଙ୍ଗ ଦେବ ନିର୍ମାଣ ଆରମ୍ଭ କରିଥିବା ସମ୍ଭବ ।

ମନ୍ଦିର ଶେଷ ହେବା ପୂର୍ବରୁ ତାଙ୍କର ମୃତ୍ୟୁ ଘଟିଥିଲା । ତାଙ୍କର ପରବର୍ତ୍ତୀ ଉତ୍ତରାଧିକାରୀ (ପୁତ୍ରମାନେ—କାମାର୍ଣ୍ଣବ, ରାଘବ, ରାଜରାଜ ପ୍ରଭୃତି) କେହିଁ ଏହା ସମ୍ପୂର୍ଣ୍ଣ କରିପାରି ନ ଥିଲେ । ପରେ ଅନଙ୍ଗଭୀମ ଦେବ (ଅନଙ୍ଗଭୀମଦେବଙ୍କ ନାତି) ଏହା ସମ୍ପୂର୍ଣ୍ଣ କରିଥିବାରୁ ମନ୍ଦିରର ନିର୍ମାତା ରୂପରେ ସେ ମଧ୍ୟ ଖ୍ୟାତ ହେଲେ । ଅତଏବ ଜଗନ୍ନାଥ ମନ୍ଦିର ନିର୍ମାଣରେ ଚୋଡ଼ଗଙ୍ଗ ଓ ଅନଙ୍ଗଭୀମଦେବଙ୍କ ନାମ ଜଡ଼ିତ ଥିବା ଯୁକ୍ତିଯୁକ୍ତ । (୧)

ଲିପିରେ ଦେବନାଗର ଅକ୍ଷରରେ ଓଡ଼ିଆ ଶବ୍ଦ "ପାଣ୍ଠି" ବ୍ୟବହୃତ ହୋଇଥିବାରୁ ମନେ ହୁଏ ସେ ବେଳକୁ ଓଡ଼ିଆ ଭାଷା କ୍ରମେ ଲିପିମାନଙ୍କରେ ସ୍ଥାନ ପାଇବାକୁ ଆରମ୍ଭ କଲାଣି । ଗଙ୍ଗବଂଶର ରାଜାମାନଙ୍କର ଓଡ଼ିଆ ଲିପି ଅଛି । ସେମାନଙ୍କର କେତେକ ସଂସ୍କୃତ ଅଭିଲେଖରେ ମଧ୍ୟ ଓଡ଼ିଆ ଭାଷା ସ୍ପଷ୍ଟ ଭାବରେ ବ୍ୟବହୃତ ହୋଇଛି । (୨)

ଲିପିଟିର ରୂପ ଲେଖକ ନିଜେ ନେଇ ପାଠ କରିଛି । ଲିପି ଉପରୁ ଚୂନ ବାହାର କରିଦେଲେ ଶୁଦ୍ଧପାଠ ନିର୍ଣ୍ଣୟ କରିବା ସହଜ ହୁଅନ୍ତା । ମନ୍ଦିର କର୍ତ୍ତୃପକ୍ଷ ଓ ଓଡ଼ିଶା ସରକାରଙ୍କ ପ୍ରତ୍ନତତ୍ତ୍ୱ ବିଭାଗ ଏଥି ପ୍ରତି ଦୃଷ୍ଟି ଦେବା ଆବଶ୍ୟକ ।

## ଲିପିର ପାଠ

ପଂକ୍ତି ୧ । (ଓଁ ସ୍ୱସ୍ତି ଶକ) ସମଧିଗତ ରସ······

୨ । (ଖେନ୍ଦୁ ଗଣିତେ) ସୂଦବମ ହ୍ନିଜାର୍ଚ୍ଚନରତଚ୍ଚୋ—

୩ । ଡ଼ ଗଙ୍ଗାଧିତଃ ଶ୍ରୀ ଚୋଡ଼ଗଙ୍ଗ ନୃପତେ

୪ । ପଞ୍ଚାସଦ ସୁବଧିକେଃ ଅଖଣ୍ଡବତେକୃତ

୫ । ।। ଶ୍ରୀମତଃ ଶ୍ରୀପୁରୁଷୋ (ତ୍ତ୍ମୋ) ତ (ଷ) ମେ ।। ଏ ତଦ୍ଧୀ

୬ । ନସ୍ୟ ଆରମ୍ଭବର୍ଷ ! ଜଳଖଣ୍ଡ ବଷସ୍କ ; (ଅନ୍ତ)

୭ । ବର୍ଷ (ତ୍ତି) ଃ ମ (ମା) ଲୁଦଗ୍ରାମ ବାସୀଜନା : ।। ଶ୍ରୀ ରା✕ (ଜ)

---

୧ । ଭୁବନେଶ୍ୱର ଲିଙ୍ଗରାଜ ମନ୍ଦିର ଲିପି : ଡାକ୍ତର କୃଷ୍ଣଚନ୍ଦ୍ର ପାଣିଗ୍ରାହୀ, ଓଡ଼ିଶା ହିଷ୍ଟୋରିକାଲ ରିସର୍ଚ୍ଚ ଜର୍ଣ୍ଣାଲ୍‌, ଖ ୧, ସ ୨ : ଓ "ଝଙ୍କାର" : ସୂର୍ଯ୍ୟନାରାୟଣ ଦାଶ । ପୁରୀର ମାର୍କଣ୍ଡେଶ୍ୱର ଲିପିର ପାଠ ମୁଁ ଉଦ୍ଧାର କରିଛି । ପରବର୍ତ୍ତୀ ସଂଖ୍ୟାରେ ପ୍ରକାଶ କରିବି— ସୂର୍ଯ୍ୟନାରାୟଣ ଦାଶ ।

୨ । ନରସିଂହଦେବଙ୍କ କେନ୍ଦୁପାଟଣା ତାମ୍ରଶାସନ ଦେଖ ।

୮ । XX (ରାଜା) ପୁତ୍ରସ୍ୟ ତ୍ରେ ଗଂଗସ୍ୟଃ : ଧନ ଗ୍ରାହକାଲ
୯ । ଆଚନ୍ଦ୍ରାର୍କ ପ୍ରଦୀପ ନବାଙ୍କୋ ମାଢ଼ ପାଞ୍ଚ (୦) ।

# ପୁରୀ ଜଗନ୍ନାଥ ମନ୍ଦିରରେ ଥିବା ପାତାଳେଶ୍ୱର ମନ୍ଦିରର ଶିଳାଲିପି

୧. ଓଁ ସ୍ୱସ୍ତି ଶକାବ୍ଦ ୧୧୫୮ ଶ୍ରୀପୁରୁଷୋତ୍ତମସ୍ୟ ପ୍ରବର୍ଦ୍ଧମାନ ବିଜୟ ରାଜ୍ୟ ଶ୍ରୀମଦନଙ୍ଗଭୀମ ଦେବସ୍ୟ ଦ୍ୱାତ୍ରିଂଶ ଅଙ୍କେ ଆଶ୍ୱିନାଖ୍ୟ ମାସେ ମକର କୃଷ୍ଣ ସୋମବାରେ......

୨ ।। ଓଁ ସ୍ୱସ୍ତି ଶ୍ରୀଅନଙ୍ଗଭୀମଦେବସ୍ୟ ପ୍ରବର୍ଦ୍ଧମାନ ସମସ୍ତ ଶ୍ରାଦ୍ଧ ୩୨ ଶକାବ୍ଦ ୧୧୫୮ କୁମ୍ଭ ଶୁକ୍ଳ ରବିବାରେ......

୩ ।। ଓଁ ସ୍ୱସ୍ତି ଶକାବେ ୧୧୫୮ ଶ୍ରୀଅନଙ୍ଗଭୀମଦେବସ୍ୟ ପ୍ରବର୍ଦ୍ଧମାନ......
[ଏରାଜାମାନଙ୍କ ଅନ୍ୟସ୍ଥାନର ଅନୁଶାସନ ବର୍ଗ]

୪ ।। ସ୍ୱସ୍ତି ସପ୍ତଦଶୋତ୍ତର ଦ୍ୱାଦଶଶତ (ଶକ) ବସରେ ଶ୍ରୀବୀର ନରସିଂହ ଦେବ ମହୀପତେଃ ସ୍ୱରାଜ୍ୟ ସୌକବିଂଶତ୍ୟଙ୍କେ.. ...(ଚତୁର୍ଥ ନରସିଂହଦେବଙ୍କ ତାମ୍ର ଶାସନ)

ଦ୍ୱାବିଂଶତ୍ୟଙ୍କେ ସପ୍ତଦଶାଧିକ ଦ୍ୱାଦଶ ଶତମତେ ଗତବତ ଶକ ବତ୍ସରେ.. ...୪ର୍ଥ ନରସିଂହଦେବଙ୍କ ତାମ୍ରଶାସନ

ଓଁ ସ୍ୱସ୍ତି ଶୁଭମସ୍ତୁ ଶକ ନୃପତେଃ ଚତୁସ୍ତ୍ରିଂଦଧିକ ଦ୍ୱାଦଶ ଶତ ପରମିତ ବତ୍ସରେ ସ୍ୱତବାହ୍ୟତେଷୁ ବଶମ୍ବଦ......ଶ୍ରୀପୁରୁଷୋତ୍ତମ ଦେବସ୍ୟ ପ୍ରବର୍ଦ୍ଧମାନ ବିଜୟ ରାଜ୍ୟେ ସପ୍ତମେଙ୍କଭ—ଲିଖ୍ୟମାନେ... ଶ୍ରୀପୁରୁଷୋତ୍ତମ କଟକେ ବୀର ଶ୍ରୀମଦ-ଭାନୁଦେବ ରାଉତସ୍ୟ ସୁରରୋଗ୍ୟଶ୍ରୀର୍ଯାଭିବୃଦ୍ଧୟେ

ଏମାରମଠ ତାମ୍ର ଶାସନ

ଗୃଲୁକ୍ୟକୁଳସମ୍ଭୂତା ବାଲା । ସୌନ୍ଦର୍ଯ୍ୟବାଣଧେ ନାମ୍ନାସଦ୍‌ଗୁଣଦେବୀତ ମହୀଷୀ ତସ୍ୟ ଭୂପତେ ଶଙ୍କରାନନ୍ଦ ମଠ ତାମ୍ର ଶାସନ ତୃତୀୟ ରାଜରାଜଦେବଙ୍କ ରାଣୀ ସଦ୍‌ଗୁଣଦେବୀ ମଙ୍କଣ ନୁହେଁ ।

[ପ୍ରାଚୀନ ଉତ୍କଳଃ ୧ମ. ଖ., ପୃ. ୫୧୮-୧୯]

# ପୁରୀ ମାର୍କଣ୍ଡେଶ୍ୱର ମନ୍ଦିର ଲିପି*

ପୁରୀର ମାର୍କଣ୍ଡେଶ୍ୱର ମନ୍ଦିରଟି ମାର୍କଣ୍ଡେଶ୍ୱର ପୁଷ୍କରଣୀର ଦକ୍ଷିଣ କୂଳରେ ଅବସ୍ଥିତ । ମନ୍ଦିରଟି ଅତି ପ୍ରାଚୀନ ଥିବାରୁ ଅନୁମାନ ହୁଏ । କାରଣ, ଓଡ୍ରଶାର

*ନବଜୀବ । ୧ମ ବର୍ଷ । ୮ମ ସଂଖ୍ୟା ।

ଗଙ୍ଗବଂଶର ପ୍ରଥମ ରାଜା ଚୋଡ଼ଗଙ୍ଗଦେବଙ୍କ ରାଜତ୍ୱ ସମୟର ଲିପି ଏଠାରେ ରହିଛି । ପ୍ରାଚୀନ ପୁରାଣମାନଙ୍କରେ ମଧ୍ୟ ମାର୍କଣ୍ଡେଶ୍ୱର ମହାଦେବ ଓ ମାର୍କଣ୍ଡେଶ୍ୱର ପୁଷ୍କରିଣୀର ବିବରଣୀ ଦେଖାଯାଏ । ବିଶେଷତଃ ସ୍କନ୍ଦ ପୁରାଣର ଉତ୍କଳଖଣ୍ଡରେ ମାର୍କଣ୍ଡ ମୁନିଙ୍କ ଚରିତ ବର୍ଣ୍ଣିତ ଅଛି । ସୃଷ୍ଟିପ୍ରଳୟ କାଳରେ ସ୍ୱୟଂ ବିଷ୍ଣୁ କଳ୍ପବୃକ୍ଷ ମୂଳରେ ଏକ ବଟପତ୍ର ଉପରେ ଶୟନ କରି ରହିଥିଲେ । ମାର୍କଣ୍ଡ ମୁନି ପ୍ରଳୟ ଜଳରେ ଭାସି ଭାସି ଆସି ବିଷ୍ଣୁଙ୍କ ନିକଟରେ ପ୍ରବେଶ ହେଲେ । ବିଷ୍ଣୁ ମୁନିଙ୍କୁ ଆଶ୍ରୟ ଦେବା ଉଦ୍ଦେଶ୍ୟରେ ସ୍ୱଗର୍ଭଭିତରେ ପ୍ରବେଶ କରାଇଲେ । ପ୍ରଳୟ ପରେ ମୁନି ପୁରୁଷୋତ୍ତମ କ୍ଷେତ୍ରରେ ପୁରୁଷୋତ୍ତମଙ୍କ ପୀଠର ଆଗ୍ନେୟ କୋଣରେ ଅବସ୍ଥାନ କଲେ ଏବଂ ତାଙ୍କର ମହିମା ପ୍ରଚାର ପାଇଁ ମାର୍କଣ୍ଡେଶ୍ୱର ପୁଷ୍କରିଣୀର ସୃଷ୍ଟି ହୋଇଛି । ଏହି ପୁଷ୍କରିଣୀରେ ଶ୍ରାଦ୍ଧ ବିଧି ପୁଣ୍ୟକାର୍ଯ୍ୟ ହୁଏ ।

ମନ୍ଦିରଟି ଚାରି ଭାଗରେ ବିଭକ୍ତ— ବିମାନ, ମୁଖଶାଳୀ (ଜଗମୋହନ), ନାଟମନ୍ଦିର ଓ ଭୋଗମଣ୍ଡପ । ବିମାନ ଓ ଜଗମୋହନ ଏକ ସମୟରେ ନିର୍ମିତ ହୋଇଥିବାର ଜଣାଯାଏ । ପରେ ଅନ୍ୟ ଦୁଇଟି ବା ମନ୍ଦିର ଯୋଡ଼ା ହୋଇଛି । ବିମାନର ପୂର୍ବ ଦ୍ୱାରଦେଶ ଟିକିଏ ଆଗକୁ ମାଡ଼ିଯାଇଛି ଏବଂ ସେହି କାରଣରୁ ଦ୍ୱାରମୁହଁର ଟିକିଏ ଆଗକୁ ଜଗମୋହନଙ୍କର କାନ୍ଥ ଆରମ୍ଭ ହୋଇଛି । ଜଗମୋହନରେ ବୃଷଭ ମୂର୍ତ୍ତି ଖମ୍ବ ଉପରେ ଅଛି । ଦେଉଳ ପୂର୍ବମୁଖା ।

ଦେଉଳର ଦ୍ୱାରମୁହଁର ଆଗୁଆ ଦୁଇ କାନ୍ଥରେ ଓ ଜଗମୋହନର କାନ୍ଥରେ କେତେକ ଲିପି ଥିବାର ଦେଖଯାଏ । କିନ୍ତୁ କାନ୍ଥରେ ବହୁତ ଚୂନ ଲିପ (ପଲସ୍ତରା) ଦିଆ ହୋଇଥିବାରୁ ଲିପିଗୁଡ଼ିକ ବାହାରକୁ ସ୍ପଷ୍ଟ ଦିଶୁ ନାହିଁ । ପୁରୁଣା ପଲସ୍ତରା ସ୍ଥାନେ ସ୍ଥାନେ ଟିକିଏ ଟିକିଏ ଛାଡ଼ି ଯାଇଛି । ଅଢ଼େଇ ବର୍ଷ ତଳେ ଲେଖକ ସେ ଦେଉଳକୁ ଯାଇଥିଲି । ଏହି ଚୂନ ଛାଡ଼ିଯାଇଥିବା ସ୍ଥାନମାନଙ୍କରେ କେତେକ ଲିପି-ଅଂଶ ଦେଖିପାରି ସେବାୟତଙ୍କୁ ଅନୁରୋଧ କରିବାରୁ ସେ ମହାଶୟ ତାଙ୍କୁ ସାହାଯ୍ୟ କରି କେତେକ ସ୍ଥାନରୁ ପୁରୁଣାଚୂନ ଛଡ଼ାଇ ଦେଲେ । ସେହି ସ୍ଥାନମାନଙ୍କରେ ଥିବା ୪ଟି ଲିପିର ଛାପ ଲେଖକ ନେଇଥିଲେ । ଆର୍ଥିକ ସମ୍ବଳଶୂନ୍ୟ ଓ ହାତରେ ଉପଯୁକ୍ତ ଯନ୍ତ୍ର ନ ଥିବା ଜଣେ ବେସରକାରୀ ଅନୁସନ୍ଧିତ୍ସୁ ପକ୍ଷରେ ଯେତିକି ଯତ୍ନରେ ଲିପି ବାହାର କରିବାର କଥା ସେତିକି କେବଳ କରି ପାରିଛନ୍ତି । ସରକାରୀ ଦୃଷ୍ଟି ଏଥିପ୍ରତି ପଡ଼ିଲେ ଲିପି ଉଦ୍ଧାର ହୁଅନ୍ତା ଏବଂ ପରିଷ୍କୃତ ସ୍ଥାନରୁ ଲିପିର ଶୁଦ୍ଧପାଠ ବାହାରନ୍ତା । ଏହି ଲିପି ଗୁଡ଼ିକର ଐତିହାସିକ ଓ ସାମାଜିକ ଗୁରୁତ୍ୱ ଯେ ବେଶୀ, ଏହା କହିବା ବାହୁଲ୍ୟମାତ୍ର । ଆଶା, ଓଡ଼ିଶା ସରକାରଙ୍କର ପ୍ରତ୍ନତତ୍ତ୍ୱ ଓ ମ୍ୟୁଜିଅମ୍‌ର ଗବେଷଣା ବିଭାଗଙ୍କ ଦୃଷ୍ଟି ଏଥିପ୍ରତି ପଡ଼ିବ । ମନ୍ଦିରରେ ଏହି ଲିପି ଥିବା ଓ ଲେଖକ କେତୋଟି

* ନବଜୀବନ । ୯ ମ ବର୍ଷ । ୮ମ ସଂଖ୍ୟା ।

ବାହାର କରିଥିବା କଥା ସେହି ସମୟର (୧୯୫୭ ସେପ୍ଟେମ୍ବର ମାସରେ) ଓଡ଼ିଶାର ଦୈନିକ କାଗଜମାନଙ୍କରେ ପ୍ରକାଶିତ ହୋଇଥିଲା । କିନ୍ତୁ ଏ ପର୍ଯ୍ୟନ୍ତ ସେ ଦିଗରେ କୌଣସି ଉଦ୍ୟମ ହୋଇ ନ ଥିବା ଜାଣି କେବଳ ସଂରକ୍ଷଣ ଲକ୍ଷ୍ୟରେ ଏହି ଲିପିଗୁଡ଼ିକର ପାଠ ପ୍ରକାଶ କରାଗଲା ।

ଓଡ଼ିଶାରେ ଗଙ୍ଗବଂଶ ରାଜତ୍ୱର ପ୍ରତିଷ୍ଠାତା ଅନନ୍ତବର୍ମ ଚୋଡ଼ଗଙ୍ଗ ଦେବଙ୍କର ରାଜତ୍ୱର ୩୭ ଅଙ୍କର ଗୋଟିଏ ଲିପି ଏହି ମୂଳ ମନ୍ଦିରର ଦ୍ୱାରମୁହଁ ଆଗରେ କାନ୍ଥରେ ଅଛି । ଅନେକ ଅସୁବିଧା ଭିତରେ ବାହାର କରିଥିବା ଛାପରୁ ଲିପିଟି ଅନେକାଂଶରେ ସ୍ପଷ୍ଟ ଥିବାର ଜଣାଯାଉଅଛି ।

ଲିପିଟିର ଲମ୍ବ ୨ ଫୁଟ ୮ ଇଞ୍ଚ; ଓସାର ୧ ଫୁଟ ୧ ଇଞ୍ଚ । ୯ଟି ଧାଡ଼ି ପ୍ରତ୍ୟେକ ଅକ୍ଷରର ହାରାହାରି ଆକାର—୧ ଇଞ୍ଚ × ୩/୪ ଇଞ୍ଚ । ପ୍ରାଚୀନ ଦେବ-ନାଗରୀ ଅକ୍ଷରରେ ଲିଖିତ । ଏହି ଲିପି ଓଡ଼ିଆ ଲିପିର ଆଦି ଅବସ୍ଥାର ଲିପି, ଲିପିଗୁଡ଼ିକ ବର୍ତ୍ତୁଳାକାର ଧାରଣ କଲାଣି ଏବଂ କେତୋଟି ଅକ୍ଷରର ଉପର ମୁଣ୍ଡ-ଗାର ବର୍ତ୍ତୁଳ ହୋଇଯାଇ ଆଧୁନିକ ଓଡ଼ିଆ ଲିପିର ଆକାର ଧାରଣ କରି ସାରି-ଲାଣି—ଇ, ଉ, ଏ, କ,ଖ, ଗ, ଚ, ଣ, ଧ, ପ, ନ, ଯ, ଶ, ଣ୍ଡ । ଇକାରର ମଧ୍ୟ ପଛର ଗାର ଲୋପ ପାଇ ଉପରର ଅର୍ଦ୍ଧଗୋଲାକାର ରେଖା ବା ଚିତା ବ୍ୟବହୃତ ହେଲାଣି । ଏଭଳି ଲିପି କେହି କେହି ପୂର୍ବକାଳରେ ସ୍ୱଳ୍ପ ଓ ଅସମ୍ପୂର୍ଣ୍ଣ ଉପାଦାନ ଉପରେ ନିର୍ଭର କରି ପ୍ରାଚୀନ ବଙ୍ଗଲିପି ବୋଲି କହୁଥିଲେ । ବିଶେଷତଃ ପଶ୍ଚିମବର୍ଷ ତଳର କେହି କେହି ୟୁରୋପୀୟ ଗବେଷକ ଏହାକୁ ଏ ଭଳି ନାମ-କରଣ କରିଥିଲେ । ଅନ୍ଧ ପରଂପରାର ବଶବର୍ତ୍ତୀ ହୋଇ ସ୍ୱଜାତି ପ୍ରୀତିରେ ମଜ୍ଜି ରହିଥିବା କେତେ କେତେ ବଙ୍ଗୀୟ ଐତିହାସିକ ତାକୁ ବର୍ତ୍ତମାନ ସୁଦ୍ଧା ଗ୍ରହଣ କରି ପ୍ରଚାର କରୁଛନ୍ତି । ଡାକ୍ତର ଦୀନେଶଚନ୍ଦ୍ର ସରକାର ଏହାକୁ ପ୍ରାଚୀନ ବଙ୍ଗଲିପି ବା ଗୌଡ଼ୀୟ ଲିପି ବୋଲି କହୁଛନ୍ତି । ଏହାର ଯଥାର୍ଥତା ଓ ଯୌକ୍ତିକତା କିଛି ନାହିଁ । ଏହି ଭ୍ରମ ସିଦ୍ଧାନ୍ତର ବଶବର୍ତ୍ତୀ ହୋଇ କେତେକ ବଙ୍ଗୀୟ ଲେଖକ ଓଡ଼ିଆ ଲିପିକୁ ବଙ୍ଗୀୟ ଲିପିରୁ ଜାତ ହୋଇଥିବା ଓ ଓଡ଼ିଆ ଭାଷା ବଙ୍ଗ ଭାଷାରୁ ଉତ୍ପନ୍ନ ହୋଇଥିବା ମଧ୍ୟ ପ୍ରମାଣ କରନ୍ତି । ବସ୍ତୁତଃ, ଚୋଡ଼ଗଙ୍ଗଙ୍କ ସମୟରୁ ଓଡ଼ିଆ ଲିପି ଓ ଓଡ଼ିଆ ଭାଷା ଥିବା ସେ ସମୟର ଶ୍ରୀକୂର୍ମନାଥ ମନ୍ଦିର ଓ ଶ୍ରୀସିଂହାଚଳ ମନ୍ଦିରର ଶିଳାଲିପିମାନଙ୍କରେ ପ୍ରମାଣ ମିଳୁଥିବା ସ୍ଥଳେ ପ୍ରାଚୀନ ବଙ୍ଗଅକ୍ଷରର କୌଣସି ବଙ୍ଗଳା ଲେଖା ମିଳିଥିବା ଜଣାଯାଇ ନାହିଁ । ବିଶେଷତଃ, ବଙ୍ଗ ଅକ୍ଷର କ୍ରମେ ତ୍ରିକୋଣା-କାର ଧାରଣ କଲାବେଳକୁ ଓଡ଼ିଆ ଲିପି ବର୍ତ୍ତୁଳ ଆକାର ଧାରଣ କରି ସାରିଲାଣି । ଏହିଗରୁ ଦେଖିଲେ ଏ "ପ୍ରାଚୀନ ବଙ୍ଗ ଲିପିର"ର ସିଦ୍ଧାନ୍ତ ଯେ ନିରର୍ଥକ ଓ ଯୁକ୍ତିହୀନ

ଏଥିରେ ସନ୍ଦେହ ନାହିଁ । କଟକର ରେଭେନ୍‌ସା କଲେଜର ଓଡ଼ିଆ ଓ ସଂସ୍କୃତର ପ୍ରଧାନ ଅଧ୍ୟାପକ ଡକ୍ଟର କୃଷ୍ଣବିହାରୀ ତ୍ରିପାଠୀ ଏହି ଅନ୍ଧ ସିଦ୍ଧାନ୍ତକୁ ଗ୍ରହଣ କରି ଏହି ସମୟର ଓଡ଼ିଆଲିପି ଓ ଦେବନାଗରୀ ଲିପିକୁ "ପ୍ରୋଟୋ ବେଙ୍ଗଲୀ ଲିପି" (ପ୍ରାଚୀନ ବଙ୍ଗ ଲିପି) ବୋଲି ପରିଚିତ କରାଇଛନ୍ତି ; ଏ ପରିଚୟ ଯୁକ୍ତିଯୁକ୍ତ ନୁହେଁ ।

ଶ୍ରୀମାର୍କଣ୍ଡେଶ୍ୱରଙ୍କୁ "ଯାବଚ୍ଚନ୍ଦ୍ରାର୍କ ପ୍ରବର୍ତ୍ତିମାନେ" ଅଖଣ୍ଡ ଦୀପ ଦାନ ଉଦ୍ଦେଶ୍ୟରେ ମହାରାଜ ଚୋଡ଼ଗଙ୍ଗଦେବ ତାଙ୍କର ରାଜତ୍ୱର ୩୭ ବର୍ଷ (ସମ୍ବତ୍ସର) ରେ କେତେକ ପରିମାଣ ସୁନା ନରଲୋ ଗ୍ରାମନିବାସୀ ଶ୍ରୀ ଭୀମଦେବ ପ୍ରମୁଖଙ୍କ ହାତରେ ଦେଲେ । ପ୍ରତି ମାସରେ ଏହି ଅଖଣ୍ଡ ଦୀପ ପାଇଁ ତେଲ ଯୋଗାଇବାକୁ ଏମାନେ ଦାୟୀ ରହିଲେ । ସୁନା ନେବାବେଳେ ଭୀମଦେବଙ୍କ ପୁତ୍ର ନାନେବ ଦାସ ସମ୍ମତି ଦେଇଥିଲେ । ଶ୍ରୀ ମାର୍କଣ୍ଡେଶ୍ୱର ମହାଦେବଙ୍କ ପୂଜାରୀ ହରି, କୃଷ୍ଣଚନ୍ଦ୍ର ଓ କୋଙ୍ଗ-ଣେଶ୍ୱର ମହାଦେବଙ୍କ ପୂଜାରୀ ବାସୁ ଏଥିରେ ସମ୍ମତ ହୋଇଥିଲେ । ଏହି ବିଷୟରେ ସାକ୍ଷୀ ମୁଦହସ୍ତ ଦେବ, ହରି, ନୀଳକଣ୍ଠ ପସା (ଶୁ) ପାଳକ, ଶ୍ରୀଧର, ନାରାୟଣ ସାମବା (ବ) ଜୀ ପ୍ରମୁଖ ।

ଦାନ (ସୁବର୍ଣ୍ଣ)ର ପରିମାଣ ସପ୍ତମ ଧାଡ଼ିରେ "ନିଷ୍କାପ୍ତ ଶତେ" ଥିବା ଜଣାଯାଏ ।

ପ୍ରଥମ ଧାଡ଼ିରେ ଚୋଡ଼ଗଙ୍ଗ ଦେବଙ୍କ ରାଜତ୍ୱର ସମ୍ବତ୍ ବା ସମ୍ବତ୍ସର ସଂଖ୍ୟା-୩୭-ଦିଆଯାଇଛି ଏବଂ ଶ୍ରୀ ମାର୍କଣ୍ଡେଶ୍ୱରଙ୍କୁ ସ୍ଥାୟୀ ଅଖଣ୍ଡ ଦୀପ ଦାନ ପ୍ରଥମ ଧାଡ଼ିର ଶେଷ ଭାଗରୁ ଦ୍ୱିତୀୟ ଧାଡ଼ିର ମଧ୍ୟ ପର୍ଯ୍ୟନ୍ତ ବର୍ଣ୍ଣିତ ହୋଇଛି । ଦ୍ୱିତୀୟ ଧାଡ଼ିର ଶେଷ ଭାଗରେ ଶ୍ରୀ ପୁରୁଷୋତ୍ତମ ଦେବ (ଶ୍ରୀ ଜଗନ୍ନାଥ ମହାପ୍ରଭୁଙ୍କ) ଅଙ୍ଗଭୋଗ ଗ୍ରାମ (ନରଲୋ) ର ବିଷୟ ଲେଖା ହୋଇଛି । ତୃତୀୟ ଧାଡ଼ିରେ ଏହି ଗ୍ରାମର ନାମ ନରଲୋ ଥିବା ଜଣା ଯାଇଛି । ଏହି ଗ୍ରାମର ଶ୍ରୀ ଭୀମଦେବ ପ୍ରମୁଖ ସୁନା ଗ୍ରହଣ କରିଥିବା କୁହାଯାଇଛି । ୪ର୍ଥ ଓ ୫ମ ଧାଡ଼ିରେ ମାର୍କଣ୍ଡେଶ୍ୱରଙ୍କ ପୂଜାରୀଙ୍କ ନାମ ଅଛି ଏବଂ ତାଙ୍କ ସହିତ କୋଙ୍ଗଣେଶ୍ୱର ମହାଦେବଙ୍କ ନାମ ମଧ୍ୟ ଅଛି । ପ୍ରତି ମାସରେ ତେଲ ଦେବା ବିଷୟ ଷଷ୍ଠ ଧାଡ଼ିର ଶେଷ ଭାଗରୁ ସପ୍ତମ ଧାଡ଼ିର ମଧ୍ୟ ପର୍ଯ୍ୟନ୍ତ ଅଛି । ଏଥିକୁ ସାକ୍ଷୀ ମୁଦହସ୍ତ ପ୍ରମୁଖଙ୍କ ନାମ ସପ୍ତମ, ଅଷ୍ଟମ ଓ ନବମ ଧାଡ଼ିରେ ଅଛି "ପସୁ(ଶୁ)ପାଳକ" (ଏକ ସେବାର ନାମ) ଅଷ୍ଟମ ଧାଡ଼ିରେ ଅଛି ।

ଏହି ଲିପିର ବିଶେଷତ୍ୱ ନିମ୍ନଲିଖିତ ବିଷୟ ଉପରେ ପ୍ରତିଷ୍ଠିତ—

୧ —ଶ୍ରୀଚୋଡ଼ଗଙ୍ଗ ଦେବଙ୍କ ରାଜତ୍ୱର ବର୍ଷ । ମହାରାଜା ଚୋଡ଼ଗଙ୍ଗ ଦେବ ଶକାବ୍ଦ ୯୯୯ (ବା ଖ୍ରୀ ୧୦୭୭)ରେ କୁମ୍ଭ ମାସରେ ସିଂହାସନ ଆରୋହଣ

କରିଥିଲେ । ସେ କେଉଁ ବର୍ଷ ଉତ୍କଳ ଜୟ କରିଥିଲେ ତାହା ସ୍ପଷ୍ଟ ଭାବରେ ଜଣା ପଡ଼ୁ ନ ଥିଲେ ମଧ୍ୟ ଶକାବ୍ଦ ୧୦୩୪ର କୋର୍ନି ତାମ୍ର ଶାସନ ଲେଖା ବେଳକୁ ଯେ ସେ ଉତ୍କଳ ଜୟ କରି ସାରିଥିଲେ ଏହା ସୁନିଶ୍ଚିତ, କାରଣ, ଏହି ତାମ୍ର ଶାସନରେ ସେ ଉତ୍କଳ ଜୟ କରିଥିବା ବିଷୟର ଉଲ୍ଲେଖ କରିଛନ୍ତି ।

ପୂର୍ବସ୍ୟାଂ ଦିଶି ପୂର୍ବମୁତ୍କଳପତିଂ
　　　　ରାଜ୍ୟେ ନିଧାୟାଭୃତଂ
ପଶ୍ଚାତ୍ ପଶ୍ଚିମଦିକ୍ପତେ ର୍ବିଘଟିତାମ୍
　　　　ବେଙ୍ଗୀଶ ମାପ୍ୟେତୟୋଃ । *

ପୂର୍ବ ଦିଗରେ ପରାଜିତ ଉତ୍କଳପତିଙ୍କୁ ପୁନର୍ବାର ସଂସ୍ଥାପନ କଲେ । ପଶ୍ଚିମଦିଗରେ ଅସ୍ତଗାମୀ ବେଙ୍ଗୀ ଅଧିପତିଙ୍କୁ ପୁଣି ସ୍ୱସ୍ଥାନରେ ଅଧିଷ୍ଠିତ କରାଇଲେ ।

ଶକାବ୍ଦ ୧୦୩୪ ବା ଖ୍ରୀ ୧୧୧୨ ବେଳକୁ ଚୋଡ଼ଗଙ୍ଗ ଦେବ ୩୫-୩୭ ବର୍ଷ ରାଜତ୍ୱ କରି ସାରିଲେଣି । ରାଜତ୍ୱ ସମ୍ବତ୍ ୩୭ ବା ରାଜତ୍ୱ କାଳ ୩୭ ବର୍ଷକୁ ସେତେବେଳକୁ ବର୍ତ୍ତମାନର ଅଙ୍କ ଗଣନା ପଦ୍ଧତି ପ୍ରଚଳିତ ହୋଇଥିବା ଅନୁମାନ ହୁଏ ନାହିଁ । ଅଙ୍କ ଗଣନା ପ୍ରଚଳିତ ଥିଲେ ମଧ୍ୟ ବର୍ତ୍ତମାନର ୧, ୬ ଛାଡ଼, ୧୦ ରଖି, ପରେ ୦ ଓ ୬ ଶେଷରେ ରହିବା ଅଙ୍କ ଛାଡ଼ ରୀତି ସେତେବେଳେ ପ୍ରଚଳିତ ହୋଇ ନ ଥିବ । ଚୋଡ଼ଗଙ୍ଗଦେବଙ୍କର ସିଂହାଚଳ ମନ୍ଦିର ଓ ଶ୍ରୀ କୂର୍ମ ମନ୍ଦିରର କେତେକ ଲିପିରୁ ମଧ୍ୟ ଏହା ଜଣାଯାଏ । ପ୍ରଥମ ବର୍ଷ ଛାଡ଼, ଷଷ୍ଠ ଛାଡ଼, ତା ପରେ ଆଉ କୌଣସି ଅଙ୍କ ଛାଡ଼ ଥିବାର ଜଣାଯାଏ ନାହିଁ । ପରେ ଗଙ୍ଗ ବଂଶର ଅନ୍ୟାନ୍ୟ ନରପତିମାନେ ଉତ୍କଳ ପ୍ରଚଳିତ ଅଙ୍କ ଗଣନା ଗ୍ରହଣ କରିଥିବାର ଦେଖାଯାଏ । ୩୭ ସମ୍ବତ୍‌ରୁ ପ୍ରଥମ ବର୍ଷ ଓ ଷଷ୍ଠ ବର୍ଷ ଛାଡ଼ି-ଦେଲେ ଚୋଡ଼ଗଙ୍ଗଙ୍କର ରାଜତ୍ୱର ପ୍ରକୃତ ୩୫ ବର୍ଷ ବେଳର ଏହି ଲିପି ହେବା ସମ୍ଭବ । ୩୫ ବର୍ଷ ବେଳର ହେଲେ ଶକାବ୍ଦ ୧୦୩୪ ବା ଖ୍ରୀ ୧୧୧୨ର ହେବ ଉତ୍କଳ ରାଜତ୍ୱ ପ୍ରତିଷ୍ଠା କରିବା ପରେ ପରେ ଚୋଡ଼ଗଙ୍ଗ ବିଜୟ ମାର୍ଗରେ ବହୁ ପ୍ରସିଦ୍ଧ ଦେବଦେବୀଙ୍କୁ ଦାନ ଦେଇଥିବା ଜଣାଯାଏ । ଏହି ୩୭ ସମ୍ବତ୍‌ର କେତୋଟି ଲିପି ଭୁବନେଶ୍ୱରରେ ଓ ପୁରୀରେ ମିଳୁଥିବାରୁ ସେ ଉତ୍କଳ ଜୟ ପରେ ଏହି ସବୁ ଦାନ କରିଛନ୍ତି । ଧର୍ମ ଅର୍ଜ୍ଜନ କରିବା ସଙ୍ଗେ ସଙ୍ଗେ ଲୋକମନ ଆକର୍ଷଣ କରିବା ପାଇଁ ମଧ୍ୟ ଦେବତା, ବ୍ରାହ୍ମଣଙ୍କୁ ଦାନ ବିଜୟୀ ରାଜାଙ୍କ ଏକ ଉପାୟ ଥିଲା । ସବୁ ପ୍ରସିଦ୍ଧ ଦେବମନ୍ଦିରରେ ପୂଜକମାନେ ତାଙ୍କର ବିଜୟ ଘୋଷଣା କରୁଥିଲେ । ଏହା ସଙ୍ଗେ

* Journal of Andhra Historical Society Vol. I Pt. 3.

ସଙ୍ଗେ ତାଙ୍କର ସାର୍ବଭୌମତ୍ୱର ଘୋଷଣା ମଧ୍ୟ ଏହି ଉପାୟରେ ସଙ୍ଘଟିତ ହେଉଥିଲା ।

(୨) ମହାରାଜା ଚୋଡ଼ଗଙ୍ଗ ପ୍ରଥମେ ଶୈବ ଥିଲେ, ପରେ ବୈଷ୍ଣବ ହେଲେ, ଏହିପରି ମତ କେହି କେହି ଐତିହାସିକ ବ୍ୟକ୍ତ କରନ୍ତି । କିନ୍ତୁ ପ୍ରକୃତରେ ଚୋଡ଼ଗଙ୍ଗ ଓ ତାଙ୍କର ବଂଶଧରମାନେ ଶୈବ, କି ବୈଷ୍ଣବ, କି ଶାକ୍ତ ଏପରି କୌଣସି ଭେଦଭାବ ରଖି ନ ଥିଲେ । ଉତ୍କଳ (ତ୍ରିକଳିଙ୍ଗ) ରେ ବହୁ ପ୍ରଧାନ ଶୈବ, ବୈଷ୍ଣବ, ଓ ଶାକ୍ତ, ପୀଠ ଥିବାରୁ ଉତ୍କଳର ରାଜାମାନେ କୌଣସି ଗୋଟିଏ ନିର୍ଦ୍ଦିଷ୍ଟ ମତବାଦକୁ ଗ୍ରହଣ କରି ଗଣଷ୍ଠାନ୍ୟୂନଭାବ ପ୍ରକାଶ କରିନାହାନ୍ତି । ଏହି କାରଣରୁ ସେମାନେ, ବିଶେଷତଃ ଚୋଡ଼ଗଙ୍ଗଦେବ, ନିଜ ବିରୁଦାବଳିରେ "ପରମ ମାହେଶ୍ୱର," "ପରମ ଭଟ୍ଟାରକ" "ପରମ ବୈଷ୍ଣବ" ଇତ୍ୟାଦି ପଦବୀ ଏକ ସଙ୍ଗରେ ବ୍ୟବହାର କରିଛନ୍ତି । ଚୋଡ଼ଗଙ୍ଗ ଦେବଙ୍କର ରାଜତ୍ୱର ଶେଷ ଆଡ଼କୁ ବା ୬୭ ଅଙ୍କର ଏକ ଦାନ ଲିପି ଭୁବନେଶ୍ୱରର ଶୈବ ମନ୍ଦିର-ଲିଙ୍ଗରାଜ ମନ୍ଦିରରେ ଅଛି * । ଚୋଡ଼ଗଙ୍ଗ ଦେବ ଓଡ଼ିଶାର ବହୁ ଶିବ ମନ୍ଦିରରେ ରାଜତ୍ୱର ବିଭିନ୍ନ ସମୟରେ ଦାନ କରିଛନ୍ତି ।

(୩) "ପୁରୁଷୋତ୍ତମ ଦେବ" ପଦର ବ୍ୟବହାର । ଚୋଡ଼ଗଙ୍ଗଙ୍କ ସମୟକୁ ପୁରୀକ୍ଷେତ୍ର ସାଧାରଣରେ "ପୁରୁଷୋତ୍ତମ କ୍ଷେତ୍ର" ଓ ଜଗନ୍ନାଥ "ପୁରୁଷୋତ୍ତମ" ନାମରେ ପରିଚିତ ଥିଲେ । ଜଗନ୍ନାଥ ନାମଟି ବହୁ ପ୍ରାଚୀନ ଗ୍ରନ୍ଥରେ ମିଳୁଛି ; କିନ୍ତୁ ପୁରୁଷୋତ୍ତମ ନାମଟି ବେଶୀ ପରିଚିତ ଥିବାର ଜଣାଯାଏ । ବର୍ତ୍ତମାନ ସୁଦ୍ଧା ପୁରୀର ପଞ୍ଚକୋଶୀ ଅଞ୍ଚଳରେ ପୁରୀକୁ ଲୋକେ "ପୁରସ୍ତମ" (ପୁରୁଷୋତ୍ତମ) କହୁଛନ୍ତି । ଚୋଡ଼ଗଙ୍ଗଙ୍କ ନୃସିଂହନାଥ ମନ୍ଦିର (ପୁରୀ ବଡ଼ ଦେଉଳ ବେଢ଼ା ଭିତର) ଲିପିରେ "ପୁରୁଷୋତ୍ତମ" ନାମ ଅଛି † ।

(୪) "ମୁଦ୍ରହସ୍ତ" ଶବ୍ଦର ବ୍ୟବହାର । ମୁଦ୍ରହସ୍ତ ଜଣେ ରାଜକର୍ମଚାରୀ, ତାଙ୍କ ହାତରେ ମୁଦ୍ରା (ସିଲ୍ ମୋହର) ଭାର ଥାଏ । ବର୍ତ୍ତମାନ ଏହି ମୁଦ୍ରହସ୍ତ ପଦଟି ଓଡ଼ିଶାରେ ଅପଭ୍ରଂଶ ହୋଇ ମୁଦିରଥ ହୋଇଛି । ଚୋଡ଼ଗଙ୍ଗ ଓଡ଼ିଶା ଆସିବା ବେଳକୁ ଏହି ରାଜକର୍ମଚାରୀ ପଦ ପ୍ରଚଳିତ ଥିଲା, ଏହି ଲିପିରୁ ଜଣାଯାଉଅଛି ।

୫) "ପଶୁ (ଶୁ) ପାଳକ" ପଦ ଏ ଲିପିରେ ଅଛି । ଦେଉଳର ଭିତରେ ପଶୁପାଳନ ସେବା ଏକ ପ୍ରଧାନ ସେବାରେ ଯାଏ । "ପୁଷ୍ପାଳକ" ଶବ୍ଦରୁ ଅପଭ୍ରଂଶ ହୋଇ ପଶୁ ପାଳକ ହୋଇଛି ବୋଲି କେହି କେହି ଭ୍ରମରେ କହନ୍ତି । ପୂର୍ବେ ଦେଉଳମାନଙ୍କରେ ରାଜାମାନେ ଓ ଅନ୍ୟାନ୍ୟ ଦାତାମାନେ ଗୋରୁ ଗାଈ, ମେଣ୍ଢା ଛେଳି, ମଇଁଷି ପ୍ରଭୃତି ଦାନ କରୁଥିଲେ । ଏମାନଙ୍କ ରକ୍ଷଣାବେକ୍ଷଣ ପାଇଁ ମନ୍ଦିର-

---

* ମ[illegible]ଜନ ୧ମ ଭାଗ, ୧ ସଂ । ଲେଖକଙ୍କ ଦ୍ୱାରା ପଠିତ । ଜଗନ୍ନାଥ ମନ୍ଦିର । ୧୬[illegible] ଅ ।

ମାନଙ୍କରେ ସ୍ୱତନ୍ତ୍ର ବିଭାଗ ଥିଲା । ଏହି ବିଭାଗୀୟ ଉଚ୍ଚକର୍ମଚାରୀର ନାମ ପଶୁ-ପାଳକ । ସିଂହାଚଳ ଓ ଶ୍ରୀ କୂର୍ମମନ୍ଦିରରେ ଏହି ସେବକ ପଦବୀ କେତେକ ଲିପିରେ ରହିଛି । ଗଙ୍ଗବଂଶର ରାଜାମାନେ କଟକ ବାରାଣାସୀରେ ରାଜଧାନୀ କରି ଓଡ଼ିଶାକୁ ଆପଣାର କରିନେବା ପରେ ତାଙ୍କ ଅଧୀନରେ ଥିବା ଦକ୍ଷିଣରେ ବଡ଼ ବଡ଼ ମନ୍ଦିରମାନଙ୍କରେ ଜଗନ୍ନାଥ ମନ୍ଦିରର ସେବାପ୍ରଣାଳୀ ଅନୁକରଣରେ ଏପରି କେତେକ ପଦବୀ ସୃଷ୍ଟି କରିଥିବା ପରି ଜଣାଯାଏ । କାରଣ, ଏସବୁ ନାମ ଏହି ସବୁ ମନ୍ଦିରମାନଙ୍କରେ ଥିବାର ଜଣାଯାଉ ନାହିଁ । ଓଡ଼ିଶାର ଏଭଳି ପ୍ରଭାବ, ସେବାପୂଜା, ସିଠାପଣା, ଅଳଙ୍କାର, ଲୁଗାପଟା ପ୍ରଭୃତିରେ ମଧ୍ୟ ଦାକ୍ଷିଣାତ୍ୟର ଏହି ସବୁ ମନ୍ଦିରମାନଙ୍କରେ ପଡ଼ିଥିବାର ଜଣାଯାଏ ।

ଲିପିଟିରେ ବର୍ଣ୍ଣାଶୁଦ୍ଧି ରହିଛି । କେତେକ ସ୍ଥାନରେ "ଶ" ସ୍ଥାନରେ "ସ" ବ୍ୟବହୃତ ହୋଇଛି—ଯଥା—"ମାର୍କଣ୍ଡେସ୍ୱର" ୧ମ ଧାଡ଼ି, ଓ ଷଷ୍ଠ ଧାଡ଼ି, "ଶ୍ରୀଧର" ସ୍ଥାନରେ "ସ୍ରୀଧର" ୬ଷ୍ଠ ଧାଡ଼ି ।

(୨) "ଷ" ସ୍ଥାନରେ "ସ"—ଯଥା—"ପୁରୁଷୋତ୍ତମ" ସ୍ଥାନରେ ପୁରୁ-ସୋତ୍ତମ"- ୨ୟ ଧାଡ଼ି ।

"ପୁରୁଷୋତ୍ତମ" ସ୍ଥାନରେ ପୁରୁଂସୋତ୍ମ"—ଶେଷରେ "ତ" "ମ" କୁ ଯୁକ୍ତ କରି "ତ୍ମ" କରଯାଇଛି । ଏଭଳି ବ୍ୟବହାର ଗଙ୍ଗବଂଶର ଓ ସୂର୍ଯ୍ୟବଂଶର ବହୁ ଅନୁଶାସନ ଓ ଲେଖାରେ ମିଳୁଛି ।

(୪) ଦୀର୍ଘ ଈକାର ଓ ହ୍ରସ୍ୱ ଇକାରର ଚିହ୍ନରେ କେତେକ ସ୍ଥାନରେ ପ୍ରଭେଦ ନାହିଁ । "ଶ୍ରୀମଦେବ" "ଶ୍ରୀଧର" "ପୂଜାହାରୀ"; ପଦରେ ଦୀର୍ଘ ଈକାର ସ୍ଥାନରେ ହ୍ରସ୍ୱ ଇ ବ୍ୟବହୃତ ହୋଇଛି । ଅବଶ୍ୟ ୧ମ ଧାଡ଼ିରେ "ଶ୍ରୀ ଚୋଡ଼ଗଙ୍ଗ"; -"ଶ୍ରୀ ମାର୍କ-ଣ୍ଡେସ୍ୱର", ୨ୟ ଧାଡ଼ିରେ ଶ୍ରୀ "ପୁରୁସୋତ୍ତମ" ଷଷ୍ଠ ଧାଡ଼ିରେ "ଶ୍ରୀ କରଣ" ପ୍ରଭୃତି ପଦରେ "ଶ୍ରୀ"ରେ ଦୀର୍ଘ ଈକାର ଚିହ୍ନ ବ୍ୟବହୃତ ହୋଇଛି ।

ମାର୍କଣ୍ଡେଶ୍ୱର ମନ୍ଦିରଟି ଯେ ପୁରୀର ବର୍ତ୍ତମାନର ଜଗନ୍ନାଥ ମନ୍ଦିରର ନିର୍ମାଣ ପୂର୍ବରୁ ନିର୍ମିତ ହୋଇଥିଲା ତାହା ଏହି ଲିପିର ଅବସ୍ଥିତିରୁ ଜଣାଯାଇଅଛି । କାରଣ ପୁରୀର ବର୍ତ୍ତମାନର ଜଗନ୍ନାଥ ମନ୍ଦିର ଗଙ୍ଗବଂଶ ରାଜତ୍ୱରେ ନିର୍ମିତ ହୋଇଥିଲା । ଏହି ମନ୍ଦିର ବେଢ଼ାଭିତରେ ସପ୍ତମାତୃକା ମୂର୍ତ୍ତିର ଅବସ୍ଥାନ ମଧ୍ୟ ଏହାର ବହୁ ପ୍ରାଚୀନତା ପ୍ରମାଣିତ କରୁଛି ।

## ପାଠ

୧ମ ଧାଡ଼ି— ଓଁ ସମ୍ଭନ୍ତୁ ୩୭ ଶ୍ରୀ ଗୈଡ଼ଗଙ୍ଗ ଦେବସ୍ୟ ପ୍ର[ବ]ର୍ଦ୍ଧମାନ ବିଜୟ ରାଜ୍ୟେ ଶ୍ରୀ ମାର୍କଣ୍ଡେଶ୍ୱ (ଶ୍ୱ)—

୨ୟ ଧାଡ଼ି—ରଦେବସ୍ୟ ଯାବତଚନ୍ଦ୍ରାର୍କ ପ୍ରବର୍ତ୍ତିମାନଃଖଣ୍ଡଦୀପ ଶ୍ରୀ ପୁରୁଷୋ-(ତ୍ତୋ) ମ୍ମ (ତ୍ତମ) ଦେବ ଅଙ୍ଗ—

୩ୟ ଧାଡ଼ି—ଦ୍ୱେଗ ନରେଲାଗ୍ରାମ ନାସ୍ତ୍ୟ ସାଧୁ ଭି(ଭୀ)ମଦେବ ଏବଂ ଚୁନ୍ଦ ଏବଂ ହର । ଏକ ଷ୍ଟାସ୍ଥୀ ଦ୍ୱୀ (ଦୀ)ପସୁନା—

୪ର୍ଥ ଧାଡ଼ି—ଗୃହ(ହ୍ୱା)ତ ଇଦାନ ସାଧୁ ଭି(ଭୀ)ମଦେବସ୍ୟ ପୁତ୍ର ନାନେବ ଦାସ ସ୍ୱୀକୃତ୍ୟ (।) ଶ୍ରୀ ମାର୍କଣ୍ଡେଶ୍ୱ ଶ୍ୱ)ର—

୫ମ ଧାଡ଼ି—ଦେବ ପୂଜାହାର (ସ୍ତା) ହରେକୃଷ୍ଣ ଚନ୍ଦ୍ରେ ଏବଂ କୋଙ୍ଗଣେଶ୍ୱର ଦେବସ୍ୟ ପୂଜାହାର (ସ୍ତ)—

୬ଷ୍ଠ ଧାଡ଼ି—ବାସୁ ଏବଂ ଏ ଅର୍କ (କୃ) ଶା (ନା) ଏକ ସ୍ଥାସ୍ଥୀ କା(କ୍ଷା)ବନ୍ତ ସ୍ରେ (ଶ୍ର)ଷ୍ଟ ଦୀପସୁନା ଗୃହ(ହ୍ୱା) ତ [।] ମାର୍କଣ୍ଡେଶ୍ୱ (ଶ୍ୱ)ରସ୍ୟ ପ୍ରତମାସେ ଦ୍ୱୀପଃ—

୭ମ ଧାଡ଼ି—ଉପକୋ (ଯୋ) ଗେ ନିସ୍ଥାସ୍ଥ ଶତେ [।] ଏତଦର୍ଥେ ସାକ୍ଷି (କ୍ଷୀ) ମୁଦହସ୍ତ ଦେବହର ଏବଂ ମାଲଜ—

୮ମ ଧାଡ଼ି—ଣ ପଶା (ଶୁ)ପାଳକ ସ୍ରି(ଶ୍ରୀ)ଧର ଏବଂ ନାରାୟଣ ସାମବାଜୀ ମହାଦେବ ଦେବ ମୋଣ୍ଡି ଶ୍ରୀକର—

<୯ ଣ ହର [।]

## ସପ୍ତଦଶ ପରିଚ୍ଛେଦ

## ପୁରୀର ଜଗନ୍ନାଥ ମନ୍ଦିର ଓ ସରକାର

ଓଡ଼ିଆ ରାଜାମାନଙ୍କ ଅମଳରେ ଜଗନ୍ନାଥ ମନ୍ଦିର ସରକାରଙ୍କ ଅଧୀନରେ ଥିଲା । ସେବକମାନଙ୍କୁ ସେବକ ରୂପରେ ହିଁ ଦେଖା ହେଉଥିଲା । ଦୋଷ ଅନୁସାରେ ଦଣ୍ଡ ଦିଆଯାଉଥିଲା । ବେତ ମାଡଠାରୁ ଆରମ୍ଭ କରି ଜେଲ ପର୍ଯ୍ୟନ୍ତ ଦଣ୍ଡବିଧାନ ଥିଲା । ବଡ଼ ଦୋଷୀକୁ କାର୍ଯ୍ୟରୁ ଅନ୍ତର କରି ଦିଆଯାଉଥିଲା ।

ମରହଟ୍ଟାମାନଙ୍କ ରାଜତ୍ୱ ସମୟରେ ମଧ୍ୟ ସରକାରଙ୍କର ପୂର୍ଣ୍ଣ କ୍ଷମତା ମନ୍ଦିର ଉପରେ ଥିଲା । ପ୍ରାୟ ଦୁଇଶହ ବର୍ଷ ପୂର୍ବେ ଦେଉଳ ଭିତରେ ୩୬ଟି ନିଯୋଗ ଥିଲା । କିନ୍ତୁ କାଳକ୍ରମେ ଏହା ବୃଦ୍ଧି ପାଇଛି; ଖ୍ରୀ: ୧୮୦୫ ବେଳକୁ ସେ ସମୟର କଲେକ୍ଟର ଗ୍ରୁମ୍ ସାହେବ ୬୫୦ ନିଯୋଗର ତାଲିକା ଦେଇଥିଲେ । ବର୍ତ୍ତମାନ ଆହୁରି ବଢ଼ି ଥିବାର ଆଶଙ୍କା କରା ଯାଉଛି । ମରହଟ୍ଟାମାନଙ୍କ ଅମଲରେ ଦଣ୍ଡର ପରିମାଣ ଟିକିଏ କମି ଯାଇଥିବା କଥା ଗ୍ରୁମ୍ ସାହେବ ଲେଖିଛନ୍ତି । ପିଆଦା ଲଗେଇ ଦୋଷୀକୁ ଦଣ୍ଡ ଦିଆଯାଉଥିଲା । ନ ହେଲେ ଦିନେ ଦୁଇ ଦିନ ପାଇଁ ତାଙ୍କର ଭୋଗ ଖେଇ ବନ୍ଦ କରି ଦିଆଯାଉଥିଲା । ଦେଉଳର ପରିଚାଳନାର ଭାର ମରହଟ୍ଟାମାନଙ୍କ ଅମଲରେ ଦେଉଳ ପରିଚ୍ଛାଙ୍କ ଉପରେ ଥିଲା । ସେବାଙ୍ଗୀ ଅଙ୍କିଟିସ ଖ୍ରୀ: ୧୯୦୩ ବେଳକୁ ଦେଉଳ ପରିଚ୍ଛା ରୂପେ ନିଯୁକ୍ତ ଥିଲେ । ପ୍ରାୟ ୨୫୦ ବର୍ଷ ପୂର୍ବେ ଦେଉଳର ପରିଚାଳନା ଭାର ଜଣେ ପରିଚ୍ଛାଙ୍କ ଉପରେ ଥିଲା । ତାଙ୍କୁ ବଡ଼ ଦେଉଳ ପରିଚ୍ଛା କୁହାଯାଉଥିଲା । କିନ୍ତୁ ମରହଟ୍ଟାମାନଙ୍କ ରାଜତ୍ୱରେ ପରିଚାଳନାରେ ସୁବିଧା ହେବା ଉଦ୍ଦେଶ୍ୟରେ ଦୁଇ ଜଣ ପରିଚ୍ଛା ସରକାରଙ୍କ ଦ୍ୱାରା ନିଯୁକ୍ତ ହୋଇଥିଲେ ।

ଖ୍ରୀ: ୧୮୦୩ରେ ଇଂରେଜମାନେ ମରହଟ୍ଟାମାନଙ୍କ ହାତରୁ ଓଡ଼ିଶାକୁ ଛଡ଼ାଇ ନେଲେ । ସେହି ବର୍ଷ ପୁରୀର ଜଗନ୍ନାଥ ମନ୍ଦିର ମଧ୍ୟ ଇଂରେଜମାନେ ଦଖଲ କଲେ । ମନ୍ଦିରଟି ଦଖଲ କରି ସାରିବା ପରେ ଇଂରେଜ ସରକାର ମନ୍ଦିର ଉପରେ ପୂର୍ଣ୍ଣ କ୍ଷମତା ବିସ୍ତାର କରିଥିଲେ । ଲର୍ଡ ଓ୍ୱେଲେସ୍‌ଲି ମନ୍ଦିର ଦଖଲ ବେଳେ କିପରି ଭାବରେ ଚଳିବାକୁ ହେବ ସେ ସମ୍ବନ୍ଧରେ ସୈନିକମାନଙ୍କୁ ଆଦେଶ ଦେଇଥିଲେ—"ତୁମ୍ଭେମାନେ ଜଗନ୍ନାଥରେ ପହଞ୍ଚିବା ପରେ ବଡ଼ ଦେଉଳର ମାନ-ମର୍ଯ୍ୟାଦା, ବ୍ରାହ୍ମଣ ଓ ଯାତ୍ରୀମାନଙ୍କର ଧର୍ମ ବିଶ୍ୱାସ ପ୍ରତି ଯେପରି କୌଣସି ଆଘାତ ନ ଲାଗେ ସେଥିପ୍ରତି ସତର୍କ ରହିବ । ବ୍ରାହ୍ମଣମାନଙ୍କର ଏବଂ ଦେବମନ୍ଦିର-ମାନଙ୍କର ନିରାପତ୍ତା ପାଇଁ ଯଥେଷ୍ଟ ଜଗୁଆଳ ରଖିବ । ନୀତି, ପର୍ବପର୍ବାଣି ଯେପରି ନିରାପଦରେ ସମାହିତ ହୁଏ, ସେଥିପ୍ରତି ଦୃଷ୍ଟି ରଖିବ । X X" ଇତ୍ୟାଦି । ପୁଣି ମରହଟ୍ଟାମାନଙ୍କ ସମୟରେ ଯେଉଁସବୁ କର ଆଦାୟ ହେଉଥିଲା ସେତିକି କେବଳ ଆଦାୟ କରିବା ପାଇଁ ଓ୍ୱେଲେସ୍‌ଲି ଆଦେଶ ଦେଇଥିଲେ । ଓ୍ୱେଲେସ୍‌ଲିଙ୍କ ଆଦେଶ ବଳରୁ ତାଙ୍କ ଅଫିସରମାନେ ଭଲ ବ୍ୟବହାର କରିଥିଲେ । ସେହି ବର୍ଷ (ଖ୍ରୀ ୧୮୦୩) ପୁରୀର ବିଶିଷ୍ଟ ବ୍ରାହ୍ମଣ ପଣ୍ଡିତ, ମଠମାନଙ୍କର ମହନ୍ତ ଓ ମୁଖ୍ୟ ସେବକମାନେ ଇଂରେଜ ଶାସକଙ୍କୁ ଦେଖା କରି ଇଂରେଜମାନେ ଓଡ଼ିଶା ଦଖଲ କରିଥିବାରୁ ଆନନ୍ଦ ପ୍ରକାଶ କରିଥିଲେ ଏବଂ ବଡ଼ ଦେଉଳ ଉପରେ ଇଂରେଜ-ମାନଙ୍କ କର୍ତ୍ତୃତ୍ୱକୁ ସ୍ୱୀକାର କରି ନେଇଥିଲେ ।

ମରହଟ୍ଟା ସରକାରଙ୍କ ରାଜତ୍ୱ ବେଳେ ବଡ଼ ଦେଉଳର ନୀତି ସବୁ ଯେପରି ଚାଲୁଥିଲା ଇଂରେଜ ସରକାର ସେହିପରି ଚଳାଇଲେ । ତିନି ଚାରି ବର୍ଷ ଏହିପରି ଚଳାଇବା ପରେ ଆୟଠାରୁ ବ୍ୟୟ ବେଶୀ ହୋଇଯିବାରୁ ସରକାର ନିଜ ହାତରୁ ଟଙ୍କା ଦେଇ ମନ୍ଦିର କାର୍ଯ୍ୟ ନିର୍ବାହ କରିବାକୁ ବାଧ୍ୟ ହେଲେ । ଇଂରେଜମାନେ ଖ୍ରୀଷ୍ଟଧର୍ମାବଲମ୍ବୀ ଥିବାରୁ ସେମାନଙ୍କ ସରକାର ନିଜ ପାଣ୍ଠିରୁ "ପ୍ରତିମା-ପୂଜା" ବାବଦରେ ଟଙ୍କା ଖର୍ଚ୍ଚ କରିବା ଏକ "ଧର୍ମବିରୋଧୀ" କାର୍ଯ୍ୟ ବୋଲି ଏହା ବିରୋଧରେ ବିଲାତରେ ଆନ୍ଦୋଳନ ଆରମ୍ଭ ହେଲା । ଏହି ଆନ୍ଦୋଳନ ଫଳରେ ଇଂରେଜ ସରକାର ମନ୍ଦିରକୁ ପ୍ରତ୍ୟକ୍ଷ ଭାବରେ ନ ବୁଝି ଅନ୍ୟଦ୍ୱାରା ପରିଚାଳନା କରାଇବା ବ୍ୟବସ୍ଥା କଲେ । ଖ୍ରୀ: ୧୮୦୮ରେ ଏକ ରେଗୁଲେସନ (ନଂ ୪) ଜାରି କରି ତିନିଜଣ ପଣ୍ଡିତଙ୍କୁ ନେଇ ଗୋଟିଏ କମିଟି ଗଠନ କଲେ ଏବଂ କମିଟି ହାତରେ ମନ୍ଦିରର ପରିଚାଳନାଭାର ରହିଲା । ସେତେବେଳେ ଯାତ୍ରୀକର ଆଦାୟ ହେଉଥିଲା । ଏଥିପାଇଁ ଜଣେ ଯାତ୍ରୀକର କଲେକ୍ଟର ନିଯୁକ୍ତ ହୋଇ ଏହି କମିଟିଙ୍କୁ ମନୋନୀତ କରୁଥିଲେ ।

୧୮୦୮ ଖ୍ରୀଷ୍ଟାବ୍ଦରେ ଖୋର୍ଦ୍ଧା ରାଜା ମୁକୁନ୍ଦଦେବ ଇଂରେଜ ଶାସନ ବିରୁଦ୍ଧରେ ବିଦ୍ରୋହ କରିବା ଉଦ୍ୟମ କରୁଥିବା ଅଭିଯୋଗରେ ତାହାଙ୍କୁ ଇଂରେଜ ସରକାର ଅଟକ କରି ରଖିଲେ ଏବଂ ଏହି ସମୟରୁ ଖୋର୍ଦ୍ଧା ରାଜବଂଶ ଉପାଧି ଲୋପ ପାଇଲା । ପରେ ସରକାର ମୁକୁନ୍ଦଦେବଙ୍କୁ ଛାଡ଼ିଦେଲେ ଏବଂ ପୁରୀରେ ଅବସ୍ଥାନ କରିବାକୁ ଅନୁମତି ଦେଲେ । ମୁକୁନ୍ଦଦେବଙ୍କ ରାଜ୍ୟ ବା ଜମିଦାରୀ ନ ଥିଲେ ମଧ୍ୟ ତାଙ୍କୁ "ପୁରୀରାଜା" ଉପାଧି ସରକାର ଦେଲେ । ୧୮୦୯ର ଆଇନ ବଳରେ ତାଙ୍କୁ ବଡ଼ ଦେଉଳ ଚଳାଇବା ପାଇଁ ନିଯୁକ୍ତ କରାଗଲା । ତାଙ୍କର ପଦବୀ ରହିଲା "ମନ୍ଦିର ସୁପରିଂଟେଣ୍ଡେଣ୍ଟ" ଓ ଏହି ପଦବୀ ମୌରସୀ ସୂତ୍ରରେ ତାଙ୍କୁ ଦିଆଗଲା । ମନ୍ଦିର ଉପରେ ତାଙ୍କର ମାଲିକତ୍ୱ ସ୍ୱୀକାର କରାଯାଇ ନ ଥିଲା । ଚିରାଚରିତ ବିଧିବିଧାନ ମାନି ନ୍ୟାୟାନୁମୋଦିତ ଭାବରେ ମନ୍ଦିର ପରିଚାଳନା କରିବା ପାଇଁ ଏହି ଆଇନରେ ନିର୍ଦ୍ଦେଶ ଦିଆଯାଇଥିଲା । ମନ୍ଦିର ପରିଚାଳନାରେ ସୁପରିଂଟେଣ୍ଡେଣ୍ଟଙ୍କୁ ସାହାଯ୍ୟ କରିବା ପାଇଁ ତିନିଜଣ ମୁଖ୍ୟ ସେବକଙ୍କୁ ମନୋନୀତ କରାଗଲା । ମନ୍ଦିରର ନୀତି ଚଳାଇବାରେ କୌଣସି ତ୍ରୁଟି ଦେଖା ଗଲେ ରାଜାଙ୍କ ବିରୁଦ୍ଧରେ ସରକାରଙ୍କଠାରେ ରିପୋର୍ଟ କରିବା ପାଇଁ ଏମାନଙ୍କୁ କ୍ଷମତା ଦିଆଗଲା ।

ମରହଟ୍ଟାମାନଙ୍କ ଅମଳରେ ସରକାର ବହୁତ ସମ୍ପତ୍ତି ଜଗନ୍ନାଥଙ୍କ ସେବା ପାଇଁ ଖଞ୍ଜିଥିଲେ । ସତାଇଶ ହଜାରୀ ମାହାଲ ସମ୍ପୂର୍ଣ୍ଣଭାବେ ଠାକୁରଙ୍କ ସେବା ପାଇଁ

ଦିଆଯାଇ ଥିଲା । ଏହାଛଡ଼ା ଯାତ୍ରୀକର ମଧ୍ୟ ଆଦାୟ କରି ସରକାର ମନ୍ଦିର ପରିଚାଳନାରେ ବ୍ୟୟ କରୁଥିଲେ । ଇଂରେଜ ଅମଳରେ ସରକାର ମରହଟ୍ଟା ସମୟର ବ୍ୟବସ୍ଥା କାଏମ ରଖିଥିଲେ । ୧୮୦୩ରେ ପୁରୀର ସେବକ, ମହନ୍ତ ଓ ବିଶିଷ୍ଟ ବ୍ରାହ୍ମଣମାନେ ଇଂରେଜ ସରକାରଙ୍କଠାରେ ଆସ୍ଥା ସ୍ଥାପନ କରି ମନ୍ଦିରଟିକୁ ଇଂରେଜ ସରକାରଙ୍କ ହାତରେ ଅର୍ପଣ କରି ଦେଇଥିବାରୁ ଇଂରେଜ ସରକାର ମନ୍ଦିର ପାଇଁ ପୂର୍ବ ସରକାରଙ୍କ ରୀତି ଅନୁସରଣ କରି, ବାର୍ଷିକ ୫୬୩୦୦୦୯ ଦେଉଥିଲେ । ସତେଇଶି ହଜାର ମାହାଲର ବାର୍ଷିକ ଆୟ ୫୧୭୪୮୦୯ ଥିଲା । ଏହାକୁ ଛାଡ଼ି ସରକାର ବାର୍ଷିକ ୫୩୫୭୩୮୯ ମଧ୍ୟ ଦେଉଥିଲେ ।

ପୁରୀ ରାଜାଙ୍କୁ ସୁପେରିଂଟେଣ୍ଡେଣ୍ଟ ରୂପେ ସ୍ୱୀକାର କରି ତାଙ୍କ ହାତରେ ମନ୍ଦିର ପରିଚାଳନା ଭାର ଦେବା ପରେ ବିଲାତରେ ଖ୍ରୀଷ୍ଟିୟାନ୍ ସମ୍ପ୍ରଦାୟର ସମାଲୋଚନା ହ୍ରାସ ପାଇ ଯିବା ଆଶା କରାଯାଇଥିଲା । କିନ୍ତୁ ତାହା ହେଲା ନାହିଁ; ଆନ୍ଦୋଳନ ତୀବ୍ର ହେଲା । ୧୮୩୨ ଖ୍ରୀଷ୍ଟାବ୍ଦରେ ହିନ୍ଦୁ ମନ୍ଦିରମାନଙ୍କର ପରିଚାଳନାରେ ସରକାରଙ୍କ ପ୍ରତ୍ୟକ୍ଷ ସମ୍ପର୍କ ତ୍ରୁଟି ବୋଲି ବିଧିବଦ୍ଧ ଭାବରେ ଆନ୍ଦୋଳନ ଆରମ୍ଭ ହେଲା । ହିନ୍ଦୁ ଦେବୋତ୍ତର ସମ୍ପତ୍ତିର ପର୍ଯ୍ୟବେକ୍ଷଣରୁ ସରକାର କ୍ଷାନ୍ତ ହେବା ଉଚିତ ବୋଲି ଲର୍ଡ ଗ୍ଲେନ୍‌ଲେଗ୍ ମତ ଦେଲେ । ଖ୍ରୀଷ୍ଟିଆନ ଧର୍ମଯାଜକମାନଙ୍କ ପ୍ରଚାର ମଧ୍ୟ ତୀବ୍ର ହେଲା । ଜଗନ୍ନାଥ ମନ୍ଦିର ଉପରେ ସେମାନଙ୍କର କଡ଼ା ନଜର ପଡ଼ିଲା । ଏହି ମନ୍ଦିର ଉପରେ ସରକାରଙ୍କର ସମ୍ପୂର୍ଣ୍ଣ କର୍ତ୍ତୃତ୍ୱ ଥିବାରୁ ଖ୍ରୀଷ୍ଟିଆନ ଧର୍ମଯାଜକଙ୍କ ତୀବ୍ର ଦୃଷ୍ଟି ଏହା ଉପରେ ବେଶୀ ପଡ଼ିଥିଲା । ବିଲାତରେ ଇଷ୍ଟଇଣ୍ଡିଆ କମ୍ପାନୀ ଡିରେକ୍‌ଟର ବୋର୍ଡ ଓ ଭାରତ ସରକାର ଏହି ଆନ୍ଦୋଳନରେ ବିଚଳିତ ହୋଇପଡ଼ିଲେ ଏବଂ ୧୮୪୦ ଖ୍ରୀଷ୍ଟାବ୍ଦରେ ଯାତ୍ରୀକର ଆଦାୟ ବନ୍ଦ କରି ଦିଆଗଲା ଏବଂ ସେହି ବର୍ଷର ନଂ ୧୦ ଆଇନରେ ମନ୍ଦିରର ପର୍ଯ୍ୟବେକ୍ଷଣ ଭାର ପୁରୀ ରାଜାଙ୍କ ହାତରେ ରହିଲା ।

ଖ୍ରୀ ୧୮୪୦ର ଆଇନରେ ଚାରୋଟି ଧାରା ଥିଲା । ପ୍ରଥମ ଧାରାରେ ପୁରୀ ଓ ଗୟାରେ ଯାତ୍ରୀକର ବନ୍ଦ କରି ଦିଆଗଲା । ଦ୍ୱିତୀୟ ଧାରାରେ ଜଗନ୍ନାଥ ମନ୍ଦିର ପରିଚାଳନା ଭାର ପୁରୀ ରାଜାଙ୍କ ହାତରେ ନ୍ୟସ୍ତ କରାଗଲା ଏବଂ ସେ ଓ ଅନ୍ୟାନ୍ୟ ସମ୍ପୃକ୍ତ ବ୍ୟକ୍ତିମାନେ ପରମ୍ପରା ଅନୁଯାୟୀ ବିଧିବିଧାନ ରକ୍ଷା କରି ମନ୍ଦିର କାର୍ଯ୍ୟ କରିବେ ବୋଲି ନିର୍ଦ୍ଦେଶ ଦିଆଗଲା । ତୃତୀୟ ଧାରାରେ ରାଜା ଯାତ୍ରୀମାନଙ୍କଠାରୁ ବାଧ୍ୟ କରି କୌଣସି ପାଉଣା ଆଦାୟ କରିବେ ନାହିଁ ବୋଲି ବିଧାନ ରହିଲା । ଚତୁର୍ଥ ଧାରାରେ ରାଜା ଓ ଅନ୍ୟମାନେ ବିଧିବିଧାନ ରକ୍ଷା ନ କଲେ, ବା ଠାକୁରଙ୍କ ସମ୍ପତ୍ତି ତୋସରପ କଲେ କିମ୍ବା ଏଭଳି କିଛି ଅନ୍ୟାନ୍ୟ ବିଶୃଙ୍ଖଳା ଘଟିଲେ

ସରକାର ସେମାନଙ୍କ ବିରୁଦ୍ଧରେ ଦେୱାନୀ ଅଦାଲତରେ ମକଦ୍ଦମା କରି ପାରିବେ ବୋଲି ବିଧାନ ହେଲା । କିନ୍ତୁ ଏହି ଆଇନର ଚାରୋଟି ଧାରା ଭିତରୁ ତିନୋଟି ଧାରା ପରେ ବିଭିନ୍ନ ସମୟରେ ରଦ୍ଦ କରି ଦିଆଗଲା । ପ୍ରଥମ ଧାରାଟି ଆଉ ଆବଶ୍ୟକ ନ ଥିବାରୁ ଖ୍ରୀ୧୮୬୮ର ୮ ନମ୍ବର ଆଇନରେ ଉଠାଇ ଦିଆଗଲା । ରାଜାଙ୍କ ପରିଚାଳନା ସଂପର୍କୀୟ ଧାରାଟି ଖ୍ରୀ ୧୮୮୨ର ୧୪ ନମ୍ବର ଆଇନର ୫୩୯ ଧାରା ଦ୍ୱାରା ଉଠାଇ ଦିଆଗଲା । ଚତୁର୍ଥ ଧାରାଟି ଖ୍ରୀ ୧୮୬୮ର ୮ ନମ୍ବର ଆଇନ ଦ୍ୱାରା ରଦ୍ଦ କରି ଦିଆଗଲା । ପୁଣି ଅବଶିଷ୍ଟ ଧାରା ସହିତ ଖ୍ରୀ ୧୮୪୦ର ୧୦ ନମ୍ବର ଆଇନଟି ସମ୍ପୂର୍ଣ୍ଣ ଭାବରେ ଖ୍ରୀ ୧୮୯୧ରେ ରଦ୍ଦ କରି ଦିଆଗଲା । ଅତଏବ ଖ୍ରୀ ୧୮୯୧ ବେଳକୁ ମନ୍ଦିର ସମ୍ବନ୍ଧରେ ସରକାରଙ୍କର କ୍ଷମତା ହସ୍ତାନ୍ତର ସଂପର୍କୀୟ କୌଣସି ଆଇନ ଆଉ ବଳବତ୍ତର ନ ଥିଲା । ଯେଉଁ ଆଇନ ବଳରେ ପୁରୀ ରାଜାଙ୍କୁ ମନ୍ଦିର ପରିଚାଳନା କରିବା ପାଇଁ ଭାର ଦିଆଯାଇଥିଲା ସେହି ଆଇନଟି ସରକାର ରଦ୍ଦ କରି ଦେବାରୁ ମନ୍ଦିର କର୍ତ୍ତୃତ୍ୱ ସରକାରଙ୍କ ହାତକୁ ପୁଣି ଫେରି ଆସିଲା ବୋଲିବାକୁ ହେବ । ଖ୍ରୀ ୧୮୯୧ରେ ପୂର୍ବ ଆଇନ ସବୁ ରଦ୍ଦ ହୋଇଯିବାରୁ ଖ୍ରୀ୧୮୯୭ରେ ପୁରୀ ରାଜା ମୁକୁନ୍ଦଦେବ ସରକାରଙ୍କ ସହିତ ଏକ ଚୁକ୍ତି ବଳରେ ମନ୍ଦିରର ସୁପେରିଂଟେଣ୍ଡେଣ୍ଟ ନିଯୁକ୍ତ ହେଲେ ।

ଏହା ପୂର୍ବରୁ ୧୮୭୮ ଖ୍ରୀଷ୍ଟାବ୍ଦରେ ପୁରୀ ରାଜା ଦିବ୍ୟସିଂହଦେବଙ୍କୁ ଦ୍ୱୀପାନ୍ତର ଦଣ୍ଡ ହେବାରୁ ମନ୍ଦିର ପରିଚାଳନାରେ ବିଭ୍ରାଟ ଘଟିଲା । ସେତେବେଳକୁ ମୁକୁନ୍ଦଦେବ ନାବାଳକ ଥିଲେ । ସରକାର କିଛି ନ କରି ତୁନି ରହିଲେ । ୧୮୮୨ ଖ୍ରୀଷ୍ଟାବ୍ଦରେ ଖ୍ରୀ୧୮୪୦ର ରାଜାଙ୍କୁ ସୁପରିଂଟେଣ୍ଡେଣ୍ଟ ନିଯୁକ୍ତ କରିଥିବା ଧାରାଟି ଉଠି ଯାଇ ଥିବାରୁ ପୁରୀ ରାଜାଙ୍କୁ ମନ୍ଦିରର ପରିଚାଳନା ଭାର ସରକାର ଆଉ ଦେବାକୁ ଇଚ୍ଛା ନ କରି ନିଜ ହାତକୁ ନେବା ବ୍ୟବସ୍ଥା କଲେ । କିନ୍ତୁ ନାବାଳକଙ୍କ ମାହାପିସ୍ ତାଙ୍କ ପିତାମହୀ ସୂର୍ଯ୍ୟମଣି ପାଟମହାଦେବୀ ଆପତ୍ତି କଲେ । ଓଡ଼ିଶାରେ ମଧ୍ୟ ରାଜାଙ୍କ ସପକ୍ଷରେ ଆନ୍ଦୋଳନ ହେଲା । ସରକାର ନିଜେ ଆଇନ ବଳରେ କିଛି ନ କରି ମନ୍ଦିରର ସୁପେରିଂଟେଣ୍ଡେଣ୍ଟ ସ୍ଥାନ ଶୂନ୍ୟ ହେଲା ବୋଲି ଘୋଷଣା କରିବାକୁ ଦେୱାନୀ କୋର୍ଟରେ ମକଦ୍ଦମା ଦାଏର କଲେ । କିନ୍ତୁ ଆଇନରେ ସରକାରଙ୍କ ମନ୍ଦିର ଉପରେ କର୍ତ୍ତୃତ୍ୱ ପୂର୍ଣ୍ଣମାତ୍ରାରେ ଥିଲା । ପରେ ଆନ୍ଦୋଳନରେ ବିଚଳିତ ହୋଇ ସରକାର ସୂର୍ଯ୍ୟମଣି ପାଟମହାଦେବୀଙ୍କ ସହିତ ଖ୍ରୀ ୧୮୮୮ରେ ଏକ ଚୁକ୍ତି କଲେ ଏବଂ କୋର୍ଟରେ ନିଷ୍ପତ୍ତି ହେବା ପୂର୍ବରୁ ମକଦ୍ଦମା ଉଠାଇ ନେଲେ । ଖ୍ରୀ ୧୮୮୯ର ଏହି ଚୁକ୍ତି ପରେ ୧୮୯୧ର ୧୨ ନମ୍ବର ଆଇନ ଜାରି ହେବାରୁ ସରକାର କେବଳ ଚୁକ୍ତିରେ ମୁକୁନ୍ଦ ଦେବ ସାବାଳକ ହେବା ପରେ ତାଙ୍କୁ ଖ୍ରୀ ୧୮୯୭ ରେ ସୁପରିଂଟେଣ୍ଡେଣ୍ଟ ନିଯୁକ୍ତ କରିଥିଲେ । ପୂର୍ବରୁ ସବୁ ଆଇନ ରଦ୍ଦ ହୋଇଯାଇଥିବାରୁ ମୁକୁନ୍ଦ ଦେବଙ୍କ

ନିଯୁକ୍ତିକୁ ବ୍ୟକ୍ତିଗତ ନିଯୁକ୍ତି ହିଁ ବୋଲିବାକୁ ହେବ । ଏଥିରେ ଆଇନର ବଳ ନାହିଁ । ମୁକୁନ୍ଦ ଦେବଙ୍କ ପରେ ବର୍ତ୍ତମାନର ରାଜାଙ୍କ ସୁପରିଂଟେଣ୍ଡେଣ୍ଟ ଗିରି ମଧ୍ୟ ସରକାରଙ୍କ ଉପରେ ନିର୍ଭର କରେ ।

ସ୍ୱାଧୀନତା ପ୍ରାପ୍ତି ପରେ ଓଡ଼ିଶା ସରକାର ପୁରୀ ଜଗନ୍ନାଥ ମନ୍ଦିର ପରିଚାଳନା ସମ୍ବନ୍ଧରେ ବିସ୍ତୃତ ଅନୁସନ୍ଧାନ କରିଥିଲେ । ମନ୍ଦିରର ସୁପରିଚାଳନା ନିମନ୍ତେ ଏକ ସ୍ୱତନ୍ତ୍ର ଆଇନ ହୋଇଛି ଏବଂ ଏହା ଅନୁସାରେ ପରିଚାଳନା ଓ ସମସ୍ତ ସମ୍ପତ୍ତି ରକ୍ଷଣାବେକ୍ଷଣର ଭାର ସରକାରଙ୍କଦ୍ୱାରା ନିଯୁକ୍ତ ଏକ କମିଟି ହାତରେ ନ୍ୟସ୍ତ ଅଛି । ପରିଚାଳନାର ଦାୟିତ୍ୱ ସରକାରଙ୍କଦ୍ୱାରା ନିଯୁକ୍ତ ଜଣେ ଆଡ୍‌ମିନିଷ୍ଟ୍ରେଟ୍‌ରଙ୍କ ହାତରେ ରହିଛି । ରାଜା ସୁପରିଂଟେଣ୍ଡେଣ୍ଟ କମିଟିର ଚେୟାରମ୍ୟାନ କେବଳ ଅଛନ୍ତି । କମିଟିରେ ସେବକ, ସର୍ବ-ସାଧାରଣ, ସଭ୍ୟ ଅଛନ୍ତି । ଏମାନେ ସରକାରଙ୍କଦ୍ୱାରା ମନୋନୀତ । ସେବକମାନଙ୍କ ସତ୍ତ୍ୱାସତ୍ତ୍ୱ ଆଇନଦ୍ୱାରା ନିର୍ଦ୍ଧାରିତ ହୋଇଯାଇଛି ।

—୦—